॥ ଶ୍ରୀହରିଃ ॥ 1956

# ଶ୍ରୀମଦ୍‌ଭଗବଦ୍‌ଗୀତା

## ପଦଚ୍ଛେଦ, ଅନ୍ୱୟ ଏବଂ

## ସାଧାରଣ ଭାଷା ଟୀକା ସହିତ




ଗୀତାପ୍ରେସ୍, ଗୋରଖପୁର



ବାସୁଦେବ ସୁତଂ ଦେବଂ କଂଶ ଚାଣୂର ମର୍ଦନମ୍ ।
ଦେବକୀ ପରମାନନ୍ଦଂ କୃଷ୍ଣଂ ବନ୍ଦେ ଜଗଦ୍‌ଗୁରୁମ୍ ॥

॥ ଶ୍ରୀହରିଃ ॥ **1956**

# ଶ୍ରୀମଦ୍‌ଭଗବଦ୍‌ଗୀତା

## ପଦଚ୍ଛେଦ, ଅନ୍ୱୟ ଏବଂ
## ସାଧାରଣ ଭାଷା ଟୀକା ସହିତ

( श्रीमद्भगवद्गीता पदच्छेद, अन्वय एवं साधारण भाषा टीकासहित )

[ ओड़िआ ]

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ଜୟଦୟାଲ ଗୋୟନ୍ଦକା

- ଭାଷାନ୍ତର -

କୃଷ୍ଣଚନ୍ଦ୍ର ନାୟକ

ସାଧକ ସଂଜୀବନୀ ପରିବାର

ଗୀତାପ୍ରେସ, ଗୋରଖପୁର

*Books are also available at—*

1. Gita Press, Gorakhpur Ki Pustak-Dukan,
   Bharatiya Towers, Badam Badi, Cuttack
   ✆ (0671) 2335481, Mob. 8847856627
2. Cuttack, Railway Station, Platform No.1
3. Bhubaneswar, Railway Station, Platform No.1
4. Howrah, Railway Station, Platform No.5&18 Both.
5. Gobind Bhavan, 151, Mahatma Gandhi Road,
   Kolkata ✆ (033) 40605293, 22680251; 22686894

Fifth Reprint 2019 3,000

Total 21,000

◆ **Price : ₹ 60**

**( Sixty Rupees only )**

Printed & Published by :

**Gita Press, Gorakhpur—273005 (INDIA)**

(a unit of Gobind Bhavan-Karyalaya, Kolkata)

Phone : (0551) 2334721, 2331250, 2331251

web : **gitapress.org** e-mail : **booksales@gitapress.org**

**Visit gitapressbookshop.in for online purchase of Gitapress publications.**

# ବିନମ୍ର ନିବେଦନ

ଗୀତା ଏକ ଅଦ୍ୱିତୀୟ, ଅନନ୍ୟ ଓ ଅନ୍ତହୀନ ଜ୍ଞାନର ସାଗର ଯେଉଁଥିରେ ଅବଗାହନ କରି ମନୁଷ୍ୟ କୃତକୃତ୍ୟ ହୋଇଥାଏ । ଏହାର ଭାବ ଏବଂ ଅର୍ଥ ସୁଦୂର ପ୍ରସାରୀ ଏବଂ ମନ ଓ ବାଣୀର ଊର୍ଦ୍ଧ୍ୱରେ । ସେଥିପାଇଁ ତ ଅଗଣିତ ଜ୍ଞାନୀଭକ୍ତ ଏହାର ଯେତେ ବି ପର୍ଯ୍ୟାଲୋଚନା କରିଛନ୍ତି, ତାହା ସିନ୍ଧୁ ତୁଳନାରେ ବିନ୍ଦୁପରି ।

ତଥାପି ଏହି କାଳଜୟୀ ମୁକ୍ତି ପ୍ରଦାୟିନୀ ଗ୍ରନ୍ଥର ପ୍ରବେଶ ଦ୍ୱାର ଭାବେ ସ୍ୱୀକୃତ ଜୟଦୟାଲ ଗୋୟନ୍ଦକାଙ୍କ ରଚିତ ଶ୍ରୀମଦ୍‌ଭଗବଦ୍‌ଗୀତା—ପଦଚ୍ଛେଦ, ଅନ୍ୱୟ, ସାଧାରଣ ଭାଷାଟୀକାର ସ୍ଥାନ ଭିନ୍ନ ଏବଂ ସ୍ୱତନ୍ତ୍ର । ଏଥିରେ ଗୀତାର ଅଧିକାଂଶ ଶ୍ଲୋକର ଏକାଧିକ ଚରଣରେ ଏକତ୍ର ସନ୍ନିବେଶିତ ଶବ୍ଦଗୁଡ଼ିକୁ ଅଲଗା ଅଲଗା (ପଦଚ୍ଛେଦ) କରି ତାହାର ମର୍ମାର୍ଥ କରାଯାଇଛି ଏବଂ ଶବ୍ଦଗୁଡ଼ିକୁ ତଥା ଅର୍ଥକୁ ଏପରି ଭାବରେ ସଜା ଯାଇଛି ଯେ ଉପରପଟୁ କ୍ରମରେ ତଳକୁ ପଢ଼ିଲେ ସେହି ଶ୍ଲୋକର ସଂପୂର୍ଣ୍ଣ ଅର୍ଥ ଓ ଭାବ ପ୍ରକାଶିତ ହୋଇପାରୁଛି ।

ଏହି ଗ୍ରନ୍ଥ ଭାରତର ମୁଖ୍ୟ ପ୍ରାନ୍ତୀୟ ଭାଷାମାନଙ୍କରେ ଅନୁବାଦପୂର୍ବକ ବହୁ ଆଗରୁ ପ୍ରକାଶ ପାଇସାରିଛି ଏବଂ ପାଠକ ତଥା ସାଧକମାନଙ୍କର ଗୀତାକୁ ତତ୍ତ୍ୱତଃ ଜାଣିବାରେ ବହୁ ପରିମାଣରେ ସହାୟକ ହୋଇପାରିଛି । ଓଡ଼ିଆ ଭାଷାରେ ଅଧୁନା ପ୍ରକାଶିତ ଏହି ଗୀତା ଗ୍ରନ୍ଥ ଓଡ଼ିଆ ଭାଷାଭାଷୀ ପାଠକଙ୍କୁ ଗୀତାର ଅର୍ଥ, ଭାବ ଓ ତତ୍ତ୍ୱକୁ ସମ୍ୟକ ତଥା ସଂକ୍ଷିପ୍ତ ଭାବେ ଜାଣିବାରେ ଉପଯୋଗୀ ହୋଇପାରିବ ତଥା ଗୀତାଜ୍ଞାନ ପ୍ରଚାର ଓ ପ୍ରସାରରେ ସହଯୋଗୀ ସିଦ୍ଧ ହେବ ବୋଲି ଆଶା କରାଯାଏ ।

—ପ୍ରକାଶକ

ଓଁ ଶ୍ରୀପରମାତ୍ମନେ ନମଃ

ବିଭିନ୍ନ ଶାସ୍ତ୍ର ଅଧ୍ୟୟନ କରି ଏବଂ ମହାପୁରୁଷମାନଙ୍କର ବଚନ ଶ୍ରବଣ କରି ମୁଁ ଏହି ସିଦ୍ଧାନ୍ତରେ ପହଞ୍ଚିଛି ଯେ, ଶ୍ରୀମଦ୍ଭଗବଦ୍‌ଗୀତାପରି କଲ୍ୟାଣକାରୀ ହୋଇ ସଂସାରରେ କୌଣସି ବି ଉପଯୋଗୀ ଗ୍ରନ୍ଥ ନାହିଁ । ଗୀତାରେ ଜ୍ଞାନଯୋଗ, ଧ୍ୟାନଯୋଗ, କର୍ମଯୋଗ ଓ ଭକ୍ତିଯୋଗ ଏବଂ ଅନ୍ୟ ଯେତେସବୁ ସାଧନା କୁହାଯାଇଛି, ତନ୍ମଧ୍ୟରୁ ଯେକୌଣସି ବି ସାଧନା ନିଜର ଶ୍ରଦ୍ଧା, ରୁଚି ଏବଂ ଯୋଗ୍ୟତା ଅନୁସାରେ କରିଗ୍ଲିଲେ ମନୁଷ୍ୟର ଶୀଘ୍ର କଲ୍ୟାଣ ହୋଇପାରିବ ।

ଅତଏବ ଉପର୍ଯ୍ୟୁକ୍ତ ସାଧନାଗୁଡ଼ିକର ତଥା ପରମାତ୍ମାଙ୍କର ତତ୍ତ୍ୱ-ରହସ୍ୟ ଜାଣିବା ନିମନ୍ତେ ଶ୍ରଦ୍ଧା ଓ ପ୍ରେମପୂର୍ବକ ମହାପୁରୁଷମାନଙ୍କର ବା ସେମାନଙ୍କ ଅଭାବରେ ଉଚ୍ଚକୋଟୀର ସାଧକମାନଙ୍କ ସଙ୍ଗଲାଭ କରିବାର ବିଶେଷ ଚେଷ୍ଟାରେ ବ୍ରତୀ ହୋଇ ଅର୍ଥ ଓ ଭାବ ସହିତ 'ଗୀତା' ମନନ କରିବା ତଥା ତଦନୁସାରେ ନିଜର ଜୀବନ ଗଢ଼ିବା ନିମନ୍ତେ ଆପ୍ରାଣ ପ୍ରଯତ୍ନ କରିବା ଆବଶ୍ୟକ ।

କାର୍ତ୍ତିକ ଶୁକ୍ଳପକ୍ଷ ଦ୍ୱାଦଶୀ,
ବିକ୍ରମ ସମ୍ବତ୍ ୨୦୦୬
ମୁକାମ୍ : ବାଙ୍କୁଡ଼ା

ନିବେଦକ
**ଜୟଦୟାଲ ଗୋୟନ୍ଦକା**

## ଅଥ କରନ୍ୟାସଃ

ଓଁ ଅସ୍ୟ ଶ୍ରୀମଦ୍-ଭଗବଦ୍-ଗୀତା-ମାଲା-ମନ୍ତ୍ରସ୍ୟ ଭଗବାନ୍-ବେଦବ୍ୟାସ ଋଷିଃ । ଅନୁଷ୍ଟୁପ୍ ଛନ୍ଦଃ । ଶ୍ରୀକୃଷ୍ଣଃ ପରମାତ୍ମା ଦେବତା ॥ ଅଶୋଚ୍ୟା-ନନ୍ୱ-ଶୋଚସ୍-ତ୍ୱଂ, ପ୍ରଜ୍ଞା-ବାଦାଂଶ୍-ଚ ଭାଷସେ ଇତି ବୀଜମ୍ ॥ ସର୍ବ-ଧର୍ମାନ୍ ପରିତ୍ୟଜ୍ୟ, ମାମେକଂ ଶରଣଂ ବ୍ରଜ ଇତି ଶକ୍ତିଃ ॥ ଅହଂ ତ୍ୱା ସର୍ବ-ପାପେଭ୍ୟୋ, ମୋକ୍ଷୟିଷ୍ୟାମି ମା ଶୁଚ ଇତି କୀଲକମ୍ ॥ ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକ ଇତ୍ୟଙ୍ଗୁଷ୍ଠାଭ୍ୟାଂ ନମଃ ॥ ନ ଚୈନଂ କ୍ଲେଦୟନ୍ତ୍ୟାପୋ, ନ ଶୋଷୟତି ମାରୁତ ଇତି ତର୍ଜନୀଭ୍ୟାଂ ନମଃ ॥ ଅଚ୍ଛେଦ୍ୟୋଽୟ-ମଦାହ୍ୟୋଽୟ,-ମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ଇତି ମଧ୍ୟମାଭ୍ୟାଂ ନମଃ ॥ ନିତ୍ୟଃ ସର୍ବଗତଃ ସ୍ଥାଣୁ,-ରଚଲୋଽୟଂ ସନାତନ ଇତ୍ୟନାମିକାଭ୍ୟାଂ ନମଃ ॥ ପଶ୍ୟ ମେ ପାର୍ଥ ରୂପାଣି, ଶତଶୋଽଥ ସହସ୍ରଶ ଇତି କନିଷ୍ଠିକାଭ୍ୟାଂ ନମଃ ॥ ନାନା-ବିଧାନି ଦିବ୍ୟାନି, ନାନା-ବର୍ଣ୍ଣାକୃତୀନି ଚ ଇତି କରତଳ-କରପୃଷ୍ଠାଭ୍ୟାଂ ନମଃ ॥ ଇତି କରନ୍ୟାସଃ ॥

## ଅଥ ହୃଦୟାଦିନ୍ୟାସଃ

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକ ଇତି ହୃଦୟାୟ ନମଃ ॥ ନ ଚୈନଂ କ୍ଲେଦୟନ୍ତ୍ୟାପୋ, ନ ଶୋଷୟତି ମାରୁତ ଇତି ଶିରସେ ସ୍ୱାହା ॥ ଅଚ୍ଛେଦ୍ୟୋଽୟ-ମଦାହ୍ୟୋଽୟ,-ମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ଇତି ଶିଖାୟୈ ବଷଟ୍ ॥ ନିତ୍ୟଃ ସର୍ବଗତଃ ସ୍ଥାଣୁ,-ରଚଲୋଽୟଂ ସନାତନ ଇତି କବଚାୟ ହୁମ୍ ॥ ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶ ଇତି ନେତ୍ରତ୍ରୟାୟ ବୌଷଟ୍ ॥ ନାନା-ବିଧାନି ଦିବ୍ୟାନି, ନାନା-ବର୍ଣ୍ଣାକୃତୀନି ଚ ଇତି ଅସ୍ତ୍ରାୟ ଫଟ୍ ॥

ଶ୍ରୀକୃଷ୍ଣ-ପ୍ରୀତ୍ୟର୍ଥେ ପାଠେ ବିନିୟୋଗଃ ॥

## ଅଥ ଧ୍ୟାନମ୍

ଶାନ୍ତାକାରଂ ଭୁଜଗ-ଶୟନଂ, ପଦ୍ମନାଭଂ ସୁରେଶଂ
ବିଶ୍ୱାଧାରଂ ଗଗନ-ସଦୃଶଂ, ମେଘ-ବର୍ଣ୍ଣଂ ଶୁଭାଙ୍ଗମ୍ ।
ଲକ୍ଷ୍ମୀ-କାନ୍ତଂ କମଲ-ନୟନଂ, ଯୋଗିଭିର୍-ଧ୍ୟାନ-ଗମ୍ୟଂ
ବନ୍ଦେ ବିଷ୍ଣୁଂ ଭବ-ଭୟ-ହରଂ, ସର୍ବ-ଲୋକୈକ-ନାଥମ୍ ॥ ୧ ॥

ଯଂ ବ୍ରହ୍ମା ବରୁଣେନ୍ଦ୍ର-ରୁଦ୍ର-ମରୁତଃ, ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈର୍-
ବେଦୈଃ ସାଙ୍ଗ-ପଦ-କ୍ରମୋପ-ନିଷଦୈର୍,-ଗାୟନ୍ତି ଯଂ ସାମଗାଃ ।
ଧ୍ୟାନା-ବସ୍ଥିତ-ତଦ୍-ଗତେନ ମନସା, ପଶ୍ୟନ୍ତି ଯଂ ଯୋଗିନୋ-
ଯସ୍ୟାନ୍ତଂ ନ ବିଦୁଃ ସୁରାସୁର-ଗଣା, ଦେବାୟ ତସ୍ମୈ ନମଃ ॥ ୨ ॥

# ଧ୍ୟାନଶ୍ଳୋକାଦି

ଓଁ ପାର୍ଥାୟ ପ୍ରତି-ବୋଧିତାଂ ଭଗବତା, ନାରାୟଣେନ ସ୍ୱୟଂ
ବ୍ୟାସେନ ଗ୍ରଥିତାଂ ପୁରାଣ-ମୁନିନା, ମଧ୍ୟେ-ମହାଭାରତମ୍ ।
ଅଦ୍ୱୈତାମୃତ-ବର୍ଷିଣୀଂ ଭଗବତୀ,-ମଷ୍ଟା-ଦଶା-ଧ୍ୟାୟିନୀ-
ମମ୍ବ ତ୍ୱା-ମନୁସନ୍ଦଧାମି ଭଗବଦ୍,-ଗୀତେ ଭବ-ଦ୍ୱେଷିଣୀମ୍ ॥ ୧ ॥

ନମୋଽସ୍ତୁ ତେ ବ୍ୟାସ ବିଶାଲ-ବୁଦ୍ଧେ
ଫୁଲ୍ଲାର-ବିନ୍ଦାୟତ-ପତ୍ର-ନେତ୍ର ।
ୟେନ ତ୍ୱୟା ଭାରତ-ତୈଲ-ପୂର୍ଣ୍ଣଃ
ପ୍ରଜ୍ୱାଲିତୋ ଜ୍ଞାନମୟଃ ପ୍ରଦୀପଃ ॥ ୨ ॥

ପ୍ରପନ୍ନ-ପାରିଜାତାୟ, ତୋତ୍ତ୍ର-ବେତ୍ରୈକ-ପାଣୟେ ।
ଜ୍ଞାନ-ମୁଦ୍ରାୟ କୃଷ୍ଣାୟ, ଗୀତାମୃତ-ଦୁହେ ନମଃ ॥ ୩ ॥
ବସୁଦେବ-ସୁତଂ ଦେବଂ, କଂସ-ଚାଣୂର-ମର୍ଦ୍ଦନମ୍ ।
ଦେବକୀ-ପରମାନନ୍ଦଂ, କୃଷ୍ଣଂ ବନ୍ଦେ ଜଗଦ୍-ଗୁରୁମ୍ ॥ ୪ ॥
ଭୀଷ୍ମ-ଦ୍ରୋଣ-ତଟା ଜୟଦ୍ରଥ-ଜଲା, ଗାନ୍ଧାର-ନୀଲୋତ୍ପଲା
ଶଲ୍ୟ-ଗ୍ରାହବତୀ କୃପେଣ ବହନୀ, କର୍ଣ୍ଣେନ ବେଲାକୁଲା ।
ଅଶ୍ୱତ୍ଥାମ-ବିକର୍ଣ୍ଣ-ଘୋର-ମକରା, ଦୁର୍ୟ୍ୟୋଧନା-ବର୍ତ୍ତିନୀ
ସୋତ୍ତୀର୍ଣ୍ଣା ଖଲୁ ପାଣ୍ଡବୈ ରଣ-ନଦୀ, କୈବର୍ତ୍ତକଃ କେଶବଃ ॥ ୫ ॥
ପାରାଶର୍ୟ୍ୟ-ବଚଃସରୋଜ-ମମଲଂ, ଗୀତାର୍ଥ-ଗନ୍ଧୋତ୍କଟଂ
ନାନା-ଖ୍ୟାନକ-କେସରଂ ହରିକଥା,-ସମ୍ବୋଧନା-ବୋଧିତମ୍ ।
ଲୋକେ ସଜ୍ଜନ-ଷଟ୍-ପଦୈ-ରହରହଃ, ପେପୀୟମାନଂ ମୁଦା
ଭୂୟାଦ୍-ଭାରତ-ପଙ୍କଜଂ କଲି-ମଲ,-ପ୍ରଧ୍ୱଂସି ନଃ ଶ୍ରେୟସେ ॥ ୬ ॥
ମୂକଂ କରୋତି ବାଚାଲଂ, ପଙ୍ଗୁଂ ଲଙ୍ଘୟତେ ଗିରିମ୍ ।
ୟତ୍କୃପା ତମହଂ ବନ୍ଦେ, ପରମାନନ୍ଦ-ମାଧବମ୍ ॥ ୭ ॥

# ଶ୍ରୀମଦ୍‌ଭଗବଦ୍‌ଗୀତା ମାହାତ୍ମ୍ୟ

ଗୀତାଶାସ୍ତ୍ରମିଦଂ ପୁଣ୍ୟଂ ଯଃ ପଠେତ୍ ପ୍ରଯତଃ ପୁମାନ୍ ।
ବିଷ୍ଣୋଃ ପଦମବାପ୍ନୋତି ଭୟଶୋକାଦିବର୍ଜିତଃ ॥ ୧ ॥

ଗୀତାଧ୍ୟୟନଶୀଳସ୍ୟ ପ୍ରାଣାୟାମପରସ୍ୟ ଚ ।
ନୈବ ସନ୍ତି ହି ପାପାନି ପୂର୍ବଜନ୍ମକୃତାନି ଚ ॥ ୨ ॥

ମଳନିର୍ମୋଚନଂ ପୁଂସାଂ ଜଳସ୍ନାନଂ ଦିନେ ଦିନେ ।
ସକୃଦ୍‌ଗୀତାମ୍ଭସି ସ୍ନାନଂ ସଂସାରମଳନାଶନମ୍ ॥ ୩ ॥

ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରବିସ୍ତରୈଃ ।
ଯା ସ୍ୱୟଂ ପଦ୍ମନାଭସ୍ୟ ମୁଖପଦ୍ମାଦ୍‌ବିନିଃସୃତା ॥ ୪ ॥

ଭାରତାମୃତସର୍ବସ୍ୱଂ ବିଷ୍ଣୋର୍ବକ୍ତ୍ରାଦ୍‌ବିନିଃସୃତମ୍ ।
ଗୀତାଗଙ୍ଗୋଦକଂ ପୀତ୍ୱା ପୁନର୍ଜନ୍ମ ନ ବିଦ୍ୟତେ ॥ ୫ ॥

ସର୍ବୋପନିଷଦୋ ଗାବୋ ଦୋଗ୍‌ଧା ଗୋପାଳନନ୍ଦନଃ ।
ପାର୍ଥୋ ବତ୍ସଃ ସୁଧୀର୍ଭୋକ୍ତା ଦୁଗ୍‌ଧଂ ଗୀତାମୃତଂ ମହତ୍ ॥ ୬ ॥

ଏକଂ ଶାସ୍ତ୍ରଂ ଦେବକୀପୁତ୍ରଗୀତ-
ମେକୋ ଦେବୋ ଦେବକୀପୁତ୍ର ଏବ ।
ଏକୋ ମନ୍ତ୍ରସ୍ତସ୍ୟ ନାମାନି ଯାନି
କର୍ମାପ୍ୟେକଂ ତସ୍ୟ ଦେବସ୍ୟ ସେବା ॥ ୭ ॥

ଓଁ

ଶ୍ରୀପରମାତ୍ମନେ ନମଃ

# ଶ୍ରୀଗୀତାର ମହିମା

ପ୍ରକୃତପକ୍ଷେ ଶ୍ରୀମଦ୍‌ଭଗବଦ୍‌ଗୀତାର ମହିମା ବାକ୍ୟଦ୍ୱାରା ବର୍ଣ୍ଣନା କରିବାର ସାମର୍ଥ୍ୟ କାହାର ବି ନାହିଁ, କାରଣ ଏହା ଏକ ପରମ ରହସ୍ୟମୟ ଗ୍ରନ୍ଥ । ଏଥିରେ ସକଳ ବେଦର ସାର ସଂଗ୍ରହ କରାହୋଇଛି । ଏହାର ସଂସ୍କୃତ ଭାଷା ଏତେ ସୁନ୍ଦର ଓ ସରଳ ଯେ ସାମାନ୍ୟ ପ୍ରୟାସରେ ତାହା ବୁଝାଯାଇପାରିବ । ତଥାପି ଏହାର ଅନ୍ତର୍ନିହିତ ତଥ୍ୟ ଏପରି ଗୂଢ଼ ଓ ଗମ୍ଭୀର ଯେ, ଆଜୀବନ ନିରନ୍ତର ଅଭ୍ୟାସ କରିଚାଲିଲେ ମଧ୍ୟ, ଏହାର ଅନ୍ତ ମିଳିପାରେ ନାହିଁ । ଏଥିରୁ ପ୍ରତିଦିନ ନୂଆ ନୂଆ ଭାବ ଉତ୍ପନ୍ନ ହେଉଥାଏ, ତେଣୁ ଏହା ସଦାସର୍ବଦା ନବୀନ ହୋଇ ହିଁ ରହେ ଏବଂ ଏକାଗ୍ରଚିତ୍ତ ହୋଇ ଶ୍ରଦ୍ଧା-ଭକ୍ତି ସହିତ ବିଚାର କଲେ ଏହାର ପ୍ରତିଟି ପଦରେ ପରମ ରହସ୍ୟ ପୂର୍ଣ୍ଣ ହୋଇ ରହିଥିବା ପ୍ରତ୍ୟକ୍ଷ ପ୍ରତୀତ ହୁଏ । ଏହି ଗୀତା ଶାସ୍ତ୍ରରେ ଭଗବାନଙ୍କର ଗୁଣ, ପ୍ରଭାବ, ସ୍ୱରୂପ, ତତ୍ତ୍ୱ, ରହସ୍ୟ ଏବଂ ଉପାସନା ତଥା କର୍ମ ଓ ଜ୍ଞାନର ବର୍ଣ୍ଣନା ଯେପରି ଭାବରେ କରାଯାଇଛି, ତାହା ଅନ୍ୟ କୌଣସି ଗ୍ରନ୍ଥରେ ଏକ ସଙ୍ଗରେ ମିଳିବା କଠିନ; କାରଣ ପ୍ରାୟ ସକଳ ଗ୍ରନ୍ଥରେ କିଛି ନା କିଛି ସାଂସାରିକ ବିଷୟ ମିଶିଥାଏ । ଭଗବତ୍‌ଗୀତା ଏପରି ଏକ ଅନୁପମ ଶାସ୍ତ୍ର ଯେ, ଏହାର ଗୋଟିଏ ବି ଶବ୍ଦ ସଦୁପଦେଶରୁ ବିଚ୍ୟୁତ ନୁହେଁ । ସ୍ୱୟଂ ଭଗବାନ୍ ବେଦବ୍ୟାସ କହିଛନ୍ତି—

**ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରସଂଗ୍ରହୈଃ ।**
**ଯା ସ୍ୱୟଂ ପଦ୍ମନାଭସ୍ୟ ମୁଖପଦ୍ମାଦ୍ ବିନିଃସୃତା ॥**

*(ମହାଭାରତ/ଭୀଷ୍ମପର୍ବ -୪୩/୧)*

ଗୀତା ସୁଗୀତା କରିବାର ଯୋଗ୍ୟ ଅର୍ଥାତ୍ ଶ୍ରୀଗୀତାକୁ ଭଲଭାବରେ ପଢ଼ି ଅର୍ଥ ଏବଂ ଭାବସହିତ ଅନ୍ତଃକରଣରେ ଧାରଣ କରିବା ହିଁ ପରମ କର୍ତ୍ତବ୍ୟ; ଯାହାକି ସ୍ୱୟଂ ଶ୍ରୀପଦ୍ମନାଭ ବିଷ୍ଣୁଭଗବାନଙ୍କ ମୁଖାରବିନ୍ଦରୁ ନିଃସୃତ ହୋଇଛି । ଅତଏବ ଅନ୍ୟାନ୍ୟ

ଅଧିକ ଶାସ୍ତ୍ର ବିସ୍ତାରରେ କି ପ୍ରୟୋଜନ? ସ୍ୱୟଂ ଭଗବାନ୍ ମଧ୍ୟ ଏହାର ମହିମା (ଅଧ୍ୟାୟ ୧୮ ଶ୍ଳୋକ ୬୮ ରୁ ୭୧ ଯାଏ) ବର୍ଣ୍ଣନା କରିଛନ୍ତି ।

ଏହି ଗୀତା ଶାସ୍ତ୍ରରେ ମନୁଷ୍ୟ ମାତ୍ରକେ ସମସ୍ତଙ୍କର ଅଧିକାର ଅଛି । ସେ ଯେକୌଣସି ବର୍ଣ୍ଣ ବା ଆଶ୍ରମର ହୋଇଥାଆନ୍ତୁ ନା କାହିଁକି, ଭଗବାନଙ୍କ ପ୍ରତି ଶ୍ରଦ୍ଧାଳୁ ହେବା ଆବଶ୍ୟକ । କାରଣ ନିଜର ଭକ୍ତମାନଙ୍କ ମଧ୍ୟରେ ଏହାର ପ୍ରଚାର କରିବା ପାଇଁ ଭଗବାନ୍ ଆଦେଶ ଦେଇଛନ୍ତି । ଏବଂ ଭଗବାନ୍ ଏହି କଥା ବି କହିଛନ୍ତି ଯେ ସ୍ତ୍ରୀ, ବୈଶ୍ୟ, ଶୂଦ୍ର ଏବଂ ପାପଯୋନି-ବିଶିଷ୍ଟ ମନୁଷ୍ୟ ମଧ୍ୟ ଭଗବାନଙ୍କର ପରାୟଣ ହୋଇ ପରମଗତିକୁ ପ୍ରାପ୍ତ ହୁଏ (ଗୀତା ଅଧ୍ୟାୟ ୯ ଶ୍ଳୋକ ୩୨); ଏବଂ ନିଜ ନିଜର ସ୍ୱାଭାବିକ କର୍ମଦ୍ୱାରା ମୋର ପୂଜା କରି ମନୁଷ୍ୟ ପରମ ସିଦ୍ଧିକୁ ପ୍ରାପ୍ତ ହୁଏ (ଅଧ୍ୟାୟ ୧୮ ଶ୍ଳୋକ ୪୬)—ଏହି ସବୁ କଥା ବିଚାରକୁ ନେଲେ ଏହି ଜ୍ଞାନ ହୁଏ ଯେ ପରମାତ୍ମ ପ୍ରାପ୍ତିରେ ସମସ୍ତଙ୍କର ଅଧିକାର ଅଛି ।

କିନ୍ତୁ ଉକ୍ତ ବିଷୟର ମର୍ମ ନ ବୁଝି ଅନେକ ଲୋକ ଯେଉଁମାନେ କେବଳ ଶ୍ରୀଗୀତାର ନାମ ମାତ୍ର ଶୁଣିଛନ୍ତି, ସେମାନେ କହନ୍ତି ଯେ ଗୀତା କେବଳ ସନ୍ନ୍ୟାସୀମାନଙ୍କ ପାଇଁ ହିଁ ଉଦ୍ଦିଷ୍ଟ, ଗୃହସ୍ଥମାନଙ୍କ ପାଇଁ ନୁହଁ । ସେଥିପାଇଁ ସେମାନେ ନିଜ ନିଜର ସନ୍ତାନମାନଙ୍କୁ ମଧ୍ୟ ଏହି ଭୟରେ ଶ୍ରୀଗୀତାର ଅଭ୍ୟାସ କରାନ୍ତି ନାହିଁ ଯେ କାଳେ ଗୀତାର ଜ୍ଞାନ ପ୍ରାପ୍ତ ହେଲେ ସେମାନେ ଗୃହତ୍ୟାଗ କରି ଯେପରି ସନ୍ନ୍ୟାସୀ ନହୋଇ ଯାଆନ୍ତି ।

କିନ୍ତୁ ସେମାନଙ୍କର ବିବେଚନା କରିବା ଉଚିତ ଯେ 'ମୋହ'ର ବଶବର୍ତ୍ତୀ ହୋଇ ନିଜର କ୍ଷାତ୍ର ଧର୍ମ ବିମୁଖ ଏବଂ ଭିକ୍ଷାନ୍ନ ଦ୍ୱାରା ଜୀବିକା ନିର୍ବାହ କରିବା ପାଇଁ ପ୍ରସ୍ତୁତ ଅର୍ଜୁନ ଯେତେବେଳେ ପରମ ରହସ୍ୟମୟ ଗୀତାର ଉପଦେଶ ପାଇ ସାରାଜୀବନ ଗୃହସ୍ଥ ଧର୍ମରେ ରହି ମଧ୍ୟ ନିଜର କର୍ତ୍ତବ୍ୟ ପାଳନ କଲେ, ସେତେବେଳେ ସେହି ଗୀତାଶାସ୍ତ୍ରର ଏପରି ବିପରୀତ ପରିଣାମ କିପରି ହୋଇପାରେ ?

ଅତଏବ ସମସ୍ତ କଲ୍ୟାଣକାମୀ ପୁରୁଷଙ୍କର ଉଚିତ ଯେ ସେମାନେ ମୋହ ତ୍ୟାଗ କରି ଅତିଶୟ ଶ୍ରଦ୍ଧା-ଭକ୍ତିପୂର୍ବକ ନିଜର ସନ୍ତାନମାନଙ୍କୁ ଅର୍ଥ ଏବଂ ଭାବ ସହିତ ଶ୍ରୀଗୀତାର ଅଧ୍ୟୟନ କରାନ୍ତୁ ଏବଂ ନିଜେ ବି ଏହାର ପଠନ ଓ ଚିନ୍ତନ କରି କରି ଭଗବାନଙ୍କ ଆଦେଶାନୁସାରେ ସାଧନା କରିବା ପାଇଁ ତତ୍ପର ହୁଅନ୍ତୁ । କାହିଁକି ନା, ଅତି

ଦୁର୍ଲଭ ମନୁଷ୍ୟ ଶରୀରକୁ ପ୍ରାପ୍ତ ହୋଇ ନିଜର ଅମୂଲ୍ୟ ସମୟର ଏକକ୍ଷଣ ମଧ୍ୟ କ୍ଷଣଭଙ୍ଗୁର ଭୋଗର ଉପଭୋଗରେ ନଷ୍ଟ କରିବା ଉଚିତ ନୁହେଁ ।

---

# ଶ୍ରୀଗୀତାର ପ୍ରଧାନ ବିଷୟ

ଶ୍ରୀଗୀତାରେ ଭଗବାନ୍ ତାଙ୍କୁ ପ୍ରାପ୍ତ କରିବା ପାଇଁ ଦୁଇଟି ମୁଖ୍ୟ ମାର୍ଗ ପ୍ରଦର୍ଶିତ କରିଛନ୍ତି—ଏକ ସାଂଖ୍ୟଯୋଗ ଏବଂ ଦ୍ୱିତୀୟଟି କର୍ମଯୋଗ । ଏହି ଦୁଇଟି ମାର୍ଗ ମଧ୍ୟରେ—

(୧) ସମ୍ପୂର୍ଣ୍ଣ ପଦାର୍ଥ ମୃଗତୃଷ୍ଣାର ଜଳ ସଦୃଶ ମାୟାମୟ ହୋଇଥିବା ହେତୁ ମାୟାର କାର୍ଯ୍ୟରୂପ ସମ୍ପୂର୍ଣ୍ଣ ଗୁଣ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି ଏହା ବୁଝି ମନ, ଇନ୍ଦ୍ରିୟ ଏବଂ ଶରୀରଦ୍ୱାରା ହେଉଥିବା ସମସ୍ତ କର୍ତ୍ତାପଣର ଅଭିମାନରୁ ରହିତ ହେବା (ଅଧ୍ୟାୟ ୫ ଶ୍ଳୋକ ୮,୯) ଏବଂ ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କାହାରି ବି ସତ୍ତା ଥିବାର ଅନୁଭବ ନ ହେବା—ଏହା ସାଂଖ୍ୟଯୋଗର ସାଧନ ଅଟେ ତଥା—

(୨) ସବୁକିଛି ଭଗବାନଙ୍କର ହିଁ ଜାଣି ସିଦ୍ଧି-ଅସିଦ୍ଧିରେ ସମତ୍ୱଭାବ ରଖି ଆସକ୍ତି ଏବଂ ଫଳେଚ୍ଛା ତ୍ୟାଗ କରି ଭଗବଦ୍ ଆଜ୍ଞା ଅନୁସାରେ କେବଳ ଭଗବାନଙ୍କ ପାଇଁ ହିଁ ସମସ୍ତ କର୍ମ କରିବା (ଅଧ୍ୟାୟ ୨ ଶ୍ଳୋକ ୪୮, ଅଧ୍ୟାୟ ୫ ଶ୍ଳୋକ ୧୦) ତଥା ଶ୍ରଦ୍ଧା-ଭକ୍ତିପୂର୍ବକ ମନ, ବାଣୀ ଏବଂ ଶରୀର ଦ୍ୱାରା ସବୁ ପ୍ରକାରେ ଭଗବାନଙ୍କ ଶରଣ ହୋଇ ତାଙ୍କର ନାମ, ଗୁଣ ଏବଂ ପ୍ରଭାବ ସହିତ ତାଙ୍କରି ସ୍ୱରୂପର ନିରନ୍ତର ଚିନ୍ତନ କରିବା (ଅଧ୍ୟାୟ ୬ ଶ୍ଳୋକ ୪୭)—ଏହା କର୍ମଯୋଗର ସାଧନ ଅଟେ । ଉପରୋକ୍ତ ଦୁଇଟି ସାଧନର ପରିଣାମ ଏକ ହୋଇଥିବା କାରଣରୁ ଦୁଇଟି ଯୋଗ ବାସ୍ତବରେ ଅଭିନ୍ନ ବୋଲି ମାନିବା ଉଚିତ (ଅଧ୍ୟାୟ ୫ ଶ୍ଳୋକ ୪,୫) । କିନ୍ତୁ ସାଧନାକାଳରେ ଅଧିକାରୀ-ଭେଦରେ ଦୁଇଟି ଯୋଗରେ ଭିନ୍ନତା ଥିବା ହେତୁ ଏହି ଦୁଇଟି ମାର୍ଗ ଭିନ୍ନ ବୋଲି କୁହାଯାଇଛି (ଅଧ୍ୟାୟ ୭ ଶ୍ଳୋକ ୭) । ଏଥିପାଇଁ ଜଣେ ମନୁଷ୍ୟ ଏକସଙ୍ଗରେ ଦୁଇଟି ମାର୍ଗ ଅନୁସରଣ କରି ପାରେ ନା ।

ଏହି ଦୁଇଟି ସାଧନା ମଧ୍ୟରେ କର୍ମଯୋଗର ସାଧନା ସନ୍ନ୍ୟାସ ଆଶ୍ରମରେ

ହୋଇପାରେନା କାରଣ ସନ୍ନ୍ୟାସ ଆଶ୍ରମରେ କର୍ମର ସ୍ୱରୂପତଃ ତ୍ୟାଗ କଥା କୁହାଯାଇଛି ଏବଂ ସାଂଖ୍ୟଯୋଗର ସାଧନା ସମସ୍ତ ଆଶ୍ରମରେ ହୋଇପାରେ ।

ଯଦି ଏହା କୁହାଯାଏ ଯେ ସାଂଖ୍ୟଯୋଗକୁ ଭଗବାନ୍ ସନ୍ନ୍ୟାସ ନାମରେ କହିଛନ୍ତି, ଏହି କାରଣରୁ ଏହାର ସନ୍ନ୍ୟାସ ଆଶ୍ରମରେ ହିଁ ଅଧିକାର ଅଛି, ଗୃହସ୍ଥରେ ନାହିଁ ତେବେ ଏହାକୁ ମଧ୍ୟ ଠିକ୍ ବୋଲି କହିବା ସମୁଚିତ ହେବ ନାହିଁ; କାରଣ କି ଦ୍ୱିତୀୟ ଅଧ୍ୟାୟର ଶ୍ଳୋକ ୧୧ ରୁ ୩୦ ଯାଏଁ ଯେଉଁ ସାଂଖ୍ୟନିଷ୍ଠାର ଉପଦେଶ ଦିଆଯାଇଛି ସେହି ଅନୁସାରେ ମଧ୍ୟ ଭଗବାନ୍ ସ୍ଥାନେ ସ୍ଥାନେ ଅର୍ଜୁନଙ୍କୁ ଯୁଦ୍ଧ କରିବାର ଯୋଗ୍ୟତା ଦେଖାଇଛନ୍ତି । ଯଦି ଗୃହସ୍ଥାଶ୍ରମରେ ସାଂଖ୍ୟଯୋଗର ଅଧିକାର ହିଁ ନଥାଆନ୍ତା ତେବେ ଭଗବାନଙ୍କର ଏପରି ଉପଦେଶ କିପରି ସମୀଚୀନ ହୋଇଥାଆନ୍ତା ? ହଁ, ଏପରି ଏକ ବିଶେଷତା ଅଛି ଯେ ସାଂଖ୍ୟମାର୍ଗର ଅଧିକାରୀ ଦେହାଭିମାନରୁ ରହିତ ହେବା ଉଚିତ, କାରଣ ଯେତେବେଳ ଯାଏଁ ଶରୀରରେ ଅହଂଭାବ ରହିଛି, ସେତେବେଳ ଯାଏଁ ସାଂଖ୍ୟଯୋଗର ସାଧନ ଠିକ୍‌ଭାବେ ହୃଦୟଙ୍ଗମ ହୋଇପାରିବ ନାହିଁ । ଏଥିପାଇଁ ଭଗବାନ୍ ସାଂଖ୍ୟଯୋଗକୁ କଠିନ ବୋଲି କହିଛନ୍ତି (ଗୀତା ଅଧ୍ୟାୟ ୫ ଶ୍ଳୋକ ୬) ତଥା କର୍ମଯୋଗ ସାଧନା ସୁଗମ ହୋଇଥିବାରୁ ଅର୍ଜୁନଙ୍କୁ ମଝିରେ ମଝିରେ କହିଛନ୍ତି କି, ତୁମେ ନିରନ୍ତର ମୋର ଚିନ୍ତନ କରି କରି କର୍ମଯୋଗର ଆଚରଣ କର ।

## ଅଥ ଧ୍ୟାନମ୍

ଶାନ୍ତାକାରଂ ଭୁଜଗଶୟନଂ ପଦ୍ମନାଭଂ ସୁରେଶଂ
ବିଶ୍ୱାଧାରଂ ଗଗନସଦୃଶଂ ମେଘବର୍ଣ୍ଣଂ ଶୁଭାଙ୍ଗମ୍ ।
ଲକ୍ଷ୍ମୀକାନ୍ତଂ କମଳନୟନଂ ଯୋଗିଭିର୍ଧ୍ୟାନଗମ୍ୟଂ
ବନ୍ଦେ ବିଷ୍ଣୁଂ ଭବଭୟହରଂ ସର୍ବଲୋକୈକନାଥମ୍ ॥ ୧ ॥

ଅର୍ଥ—ଯାହାଙ୍କର ଆକୃତି ଅତିଶୟ ଶାନ୍ତ, ଯେ ଶେଷନାଗଙ୍କ ଶଯ୍ୟା ଉପରେ ଶୟନ କରିଅଛନ୍ତି, ଯାହାଙ୍କ ନାଭିରେ କମଳ ଅଛି, ଯେ ଦେବତାମାନଙ୍କର ମଧ୍ୟ ଈଶ୍ୱର ଏବଂ ସମ୍ପୂର୍ଣ୍ଣ ଜଗତର ଆଧାର, ଯେ ଆକାଶ ସଦୃଶ ବ୍ୟାପ୍ତ, ନୀଳମେଘ ସମାନ ଯାହାଙ୍କର ବର୍ଣ୍ଣ, ଯାହାଙ୍କର ସମ୍ପୂର୍ଣ୍ଣ ଅଙ୍ଗ ଅତିଶୟ ସୁନ୍ଦର, ଯେ ଯୋଗୀମାନଙ୍କ ଧ୍ୟାନଦ୍ୱାରା ପ୍ରାପ୍ତ ହୁଅନ୍ତି, ଯେ ସକଳ ଲୋକର ସ୍ୱାମୀ, ଯେ ଜନ୍ମ-ମରଣରୂପୀ ଭୟର ନାଶକାରୀ—ଏପରି ଲକ୍ଷ୍ମୀପତି, କମଳନୟନ ଭଗବାନ୍ ଶ୍ରୀ ବିଷ୍ଣୁଙ୍କୁ ମୁଁ ପ୍ରଣାମ କରୁଛି ।

ଯଂ ବ୍ରହ୍ମା ବରୁଣେନ୍ଦ୍ରରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈ-
ର୍ବେଦୈଃ ସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ॥ ୨ ॥

ଅର୍ଥ—ବ୍ରହ୍ମା, ବରୁଣ, ଇନ୍ଦ୍ର, ରୁଦ୍ର ଏବଂ ମରୁଦ୍‌ଗଣ ଦିବ୍ୟସ୍ତୋତ୍ରମାନଙ୍କ ଦ୍ୱାରା ଯାହାଙ୍କର ସ୍ତୁତି କରନ୍ତି, ସାମବେଦ ଗାୟକଗଣ ଅଙ୍ଗ, ପଦ, କ୍ରମ ଏବଂ ଉପନିଷଦ୍‌ମାନଙ୍କ ସହିତ ବେଦଦ୍ୱାରା ଯାହାଙ୍କର ଗାୟନ କରନ୍ତି, ଯୋଗୀଜନ ଧ୍ୟାନସ୍ଥିତ ତଦ୍‌ଗତମନା ହୋଇ ଯାହାଙ୍କର ଦର୍ଶନ କରନ୍ତି, ସମସ୍ତ ଦେବତା ଏବଂ ଅସୁରଗଣ (କେହି ମଧ୍ୟ) ଯାହାଙ୍କର ଅନ୍ତ ଜାଣନ୍ତି ନାହିଁ, ସେହି ପରମପୁରୁଷ ନାରାୟଣ ଦେବତାଙ୍କୁ ମୋର ନମସ୍କାର ।



॥ ଓଁ ଶ୍ରୀପରମାତ୍ମନେ ନମଃ ॥

ଓଁ ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମମ୍ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥

# ଶ୍ରୀମଦ୍ ଭଗବଦ୍ ଗୀତା

(ତତ୍ତ୍ୱବିବେଚନୀ ଅନୁସାରେ)

ପଦଚ୍ଛେଦ, ଅନ୍ୱୟ ଏବଂ ସାଧାରଣ ଭାଷାଟୀକା ସହିତ ଓଡ଼ିଆ ଅନୁବାଦ

## ପ୍ରଥମ ଅଧ୍ୟାୟ

## ଅର୍ଜୁନବିଷାଦଯୋଗ

**ପ୍ରଧାନ ବିଷୟ**

୧ ରୁ ୧୧ ଉଭୟ ପକ୍ଷ ସେନାର ପ୍ରଧାନ ପ୍ରଧାନ ଶୂରବୀରଙ୍କ ଗଣନା ଏବଂ ସାମର୍ଥ୍ୟର କଥନ,
୧୨ ରୁ ୧୯ ଦୁଇ ସେନାର ଶଂଖଧ୍ୱନିର କଥନ,
୨୦ ରୁ ୨୭ ଅର୍ଜୁନଙ୍କ ଦ୍ୱାରା ସେନା ନିରୀକ୍ଷଣର ପ୍ରସଙ୍ଗ,
୨୮ ରୁ ୪୭ ମୋହରେ ଅଭିଭୂତ ଅର୍ଜୁନଙ୍କ ଭୀରୁତା, ସ୍ନେହ ଏବଂ ଶୋକଯୁକ୍ତ ବଚନ ।

*ଧୃତରାଷ୍ଟ୍ର ଉବାଚ*

ଧୃତରାଷ୍ଟ୍ରଙ୍କ ଯୁଦ୍ଧବିବରଣ ବିଷୟକ ପ୍ରଶ୍ନ ।

**ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବଃ ।**
**ମାମକାଃ ପାଣ୍ଡବାଶ୍ଚୈବ କିମକୁର୍ବତ ସଞ୍ଜୟ ॥ ୧ ॥**

ଧର୍ମକ୍ଷେତ୍ରେ, କୁରୁକ୍ଷେତ୍ରେ, ସମବେତାଃ, ଯୁଯୁତ୍ସବଃ,
ମାମକାଃ, ପାଣ୍ଡବାଃ, ଚ, ଏବ, କିମ୍, ଅକୁର୍ବତ, ସଞ୍ଜୟ ।।୧ ।।

**ଧୃତରାଷ୍ଟ୍ର ପଚାରିଲେ—**

| | | | |
|---|---|---|---|
| ସଂଜୟ | = ହେ ସଂଜୟ ! | ଚ | = ଏବଂ |
| ଧର୍ମକ୍ଷେତ୍ରେ | = ଧର୍ମଭୂମି | ଏବ | = * |
| କୁରୁକ୍ଷେତ୍ରେ | = କୁରୁକ୍ଷେତ୍ରରେ | ପାଣ୍ଡବାଃ | = ପାଣ୍ଡୁଙ୍କର ପୁତ୍ରମାନେ |
| ସମବେତାଃ | = ଏକତ୍ରିତ ହୋଇଥିବା | | |
| ଯୁଯୁତ୍ସବଃ | = ଯୁଦ୍ଧ କରିବାକୁ ଇଚ୍ଛୁକ | କିମ୍ | = କ'ଣ |
| ମାମକାଃ | = ମୋର (ପୁତ୍ରମାନେ) | ଅକୁର୍ବତ | = କଲେ ? |

*ସଞ୍ଜୟ ଉବାଚ*

ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଯାଇ ଦୁର୍ଯ୍ୟୋଧନଙ୍କ କଥାବାର୍ତ୍ତା ଆରମ୍ଭ କରିବା ।

**ଦୃଷ୍ଟ୍ୱା ତୁ ପାଣ୍ଡବାନୀକଂ ବ୍ୟୂଢଂ ଦୁର୍ଯ୍ୟୋଧନସ୍ତଦା ।**
**ଆଚାର୍ଯ୍ୟମୁପସଙ୍ଗମ୍ୟ ରାଜା ବଚନମବ୍ରବୀତ୍ ॥ ୨ ॥**

ଦୃଷ୍ଟ୍ୱା, ତୁ, ପାଣ୍ଡବାନୀକମ୍, ବ୍ୟୂଢମ୍, ଦୁର୍ଯ୍ୟୋଧନଃ, ତଦା,
ଆଚାର୍ଯ୍ୟମ୍, ଉପସଂଗମ୍ୟ, ରାଜା, ବଚନମ୍, ଅବ୍ରବୀତ୍ ।।୨।।

**ଧୃତରାଷ୍ଟ୍ରଙ୍କ ପଚାରିବାରେ ସଂଜୟ କହିଲେ—**

| | | | |
|---|---|---|---|
| ତଦା | = ସେହି ସମୟରେ | ତୁ | = ଏବଂ |
| ରାଜା | = ରାଜା | ଆଚାର୍ଯ୍ୟମ୍ | = ଦ୍ରୋଣାଚାର୍ଯ୍ୟଙ୍କ |
| ଦୁର୍ଯ୍ୟୋଧନଃ | = ଦୁର୍ଯ୍ୟୋଧନ | ଉପସଙ୍ଗମ୍ୟ | = ପାଖକୁ ଯାଇ |
| ବ୍ୟୂଢମ୍ | = ବ୍ୟୂହରଚନାଯୁକ୍ତ | | |
| ପାଣ୍ଡବାନୀକମ୍ | = ପାଣ୍ଡବସେନାକୁ | ବଚନମ୍ | = (ଏ) କଥା |
| ଦୃଷ୍ଟ୍ୱା | = ଦେଖି | ଅବ୍ରବୀତ୍ | = କହିଲେ । |

ବିଶାଳ ପାଣ୍ଡବ ସେନାକୁ ଦେଖିବା ପାଇଁ ଦ୍ରୋଣାଚାର୍ଯ୍ୟଙ୍କ ନିକଟରେ ଦୁର୍ଯ୍ୟୋଧନଙ୍କ ପ୍ରାର୍ଥନା ।

**ପଶ୍ୟୈତାଂ ପାଣ୍ଡୁପୁତ୍ରାଣାମାଚାର୍ଯ୍ୟ ମହତୀଂ ଚମୂମ୍ ।**
**ବ୍ୟୂଢାଂ ଦ୍ରୁପଦପୁତ୍ରେଣ ତବ ଶିଷ୍ୟେଣ ଧୀମତା ॥ ୩ ॥**

ପଶ୍ୟ, ଏତାମ୍, ପାଣ୍ଡୁପୁତ୍ରାଣାମ୍, ଆଚାର୍ଯ୍ୟ, ମହତୀମ୍, ଚମୂମ୍,
ବ୍ୟୂଢାମ୍, ଦ୍ରୁପଦପୁତ୍ରେଣ, ତବ, ଶିଷ୍ୟେଣ, ଧୀମତା ।।୩।।

---

* ଏଠାରେ 'ଏବ' ଶବ୍ଦ ସମୁଚ୍ଚୟାର୍ଥକ ହିଁ ଅଟେ ।

ସଜ୍ଜିତ ହୋଇଥିବା

| | |
|---|---|
| ଆଚାର୍ଯ୍ୟ | = ହେ ଆଚାର୍ଯ୍ୟ ! |
| ତବ | = ଆପଣଙ୍କର |
| ଧୀମତା | = ବୁଦ୍ଧିମାନ୍ |
| ଶିଷ୍ୟେଣ | = ଶିଷ୍ୟ |
| ଦ୍ରୁପଦପୁତ୍ରେଣ | = ଦ୍ରୁପଦପୁତ୍ର ଧୃଷ୍ଟଦ୍ୟୁମ୍ନଦ୍ୱାରା |
| ବ୍ୟୂଢାମ୍ | = ବ୍ୟୂହାକାରରେ ସଜ୍ଜିତ ହୋଇଥିବା |
| ପାଣ୍ଡୁପୁତ୍ରାଣାମ୍ | = ପାଣ୍ଡୁପୁତ୍ରମାନଙ୍କର |
| ଏତାମ୍ | = ଏହି |
| ମହତୀମ୍ | = ବିରାଟ |
| ଚମୂମ୍ | = ସେନାକୁ |
| ପଶ୍ୟ | = ଦେଖନ୍ତୁ । |

ପାଣ୍ଡବ ସେନାର ପ୍ରଧାନ ପ୍ରଧାନ ଯୋଦ୍ଧାଙ୍କ ନାମ ।

ଅତ୍ର ଶୂରା ମହେଷ୍ୱାସା ଭୀମାର୍ଜ୍ଜୁନସମା ଯୁଧି ।
ଯୁଯୁଧାନୋ ବିରାଟଶ୍ଚ ଦ୍ରୁପଦଶ୍ଚ ମହାରଥଃ ॥ ୪ ॥
ଧୃଷ୍ଟକେତୁଶ୍ଚେକିତାନଃ କାଶିରାଜଶ୍ଚ ବୀର୍ଯ୍ୟବାନ୍ ।
ପୁରୁଜିତ୍‌କୁନ୍ତିଭୋଜଶ୍ଚ ଶୈବ୍ୟଶ୍ଚ ନରପୁଙ୍ଗବଃ ॥ ୫ ॥
ଯୁଧାମନ୍ୟୁଶ୍ଚ ବିକ୍ରାନ୍ତ ଉତ୍ତମୌଜାଶ୍ଚ ବୀର୍ଯ୍ୟବାନ୍ ।
ସୌଭଦ୍ରୋ ଦ୍ରୌପଦେୟାଶ୍ଚ ସର୍ବେ ଏବ ମହାରଥାଃ ॥ ୬ ॥

ଅତ୍ର, ଶୂରାଃ, ମହେଷ୍ୱାସାଃ, ଭୀମାର୍ଜ୍ଜୁନସମାଃ, ଯୁଧି,
ଯୁଯୁଧାନଃ, ବିରାଟଃ, ଚ, ଦ୍ରୁପଦଃ, ଚ, ମହାରଥଃ ।।୪ ।।
ଧୃଷ୍ଟକେତୁଃ, ଚେକିତାନଃ, କାଶିରାଜଃ, ଚ, ବୀର୍ଯ୍ୟବାନ୍
ପୁରୁଜିତ୍, କୁନ୍ତିଭୋଜଃ, ଚ, ଶୈବ୍ୟଃ, ଚ, ନରପୁଙ୍ଗବଃ ।।୫ ।।
ଯୁଧାମନ୍ୟୁଃ, ଚ, ବିକ୍ରାନ୍ତଃ, ଉତ୍ତମୌଜାଃ, ଚ, ବୀର୍ଯ୍ୟବାନ୍,
ସୌଭଦ୍ରଃ, ଦ୍ରୌପଦେୟାଃ, ଚ, ସର୍ବେ, ଏବ, ମହାରଥାଃ ।।୬ ।।

| | |
|---|---|
| ଅତ୍ର | = ଏହି ସେନାରେ |
| ମହେଷ୍ୱାସାଃ | = ମହା ମହା ଧନୁର୍ଦ୍ଧାରୀମାନେ |
| ଚ | = ତଥା |
| ଯୁଧି | = ଯୁଦ୍ଧରେ |
| ଭୀମାର୍ଜ୍ଜୁନସମାଃ | = ଭୀମ ଓ ଅର୍ଜ୍ଜୁନଙ୍କ ସମାନ |
| ଶୂରାଃ | = ଶୂରବୀରମାନେ |
| ଯୁଯୁଧାନଃ | = ସାତ୍ୟକି |
| ଚ | = ଓ |

| | |
|---|---|
| ବିରାଟଃ | = ରାଜା ବିରାଟ |
| ଚ | = ତଥା |
| ମହାରଥଃ | = ମହାରଥୀ |
| ଦ୍ରୁପଦଃ | = ରାଜା ଦ୍ରୁପଦ, |
| ଧୃଷ୍ଟକେତୁଃ | = ଧୃଷ୍ଟକେତୁ |
| ଚ | = ଓ |
| ଚେକିତାନଃ | = ଚେକିତାନ |
| ଚ | = ତଥା |
| ବୀର୍ଯ୍ୟବାନ୍ | = ବଳବାନ୍ |
| କାଶିରାଜଃ | = କାଶିରାଜ, |
| ପୁରୁଜିତ୍ | = ପୁରୁଜିତ୍, |
| କୁନ୍ତିଭୋଜଃ | = କୁନ୍ତିଭୋଜ |
| ଚ | = ଓ |
| ନରପୁଙ୍ଗବଃ | = ମନୁଷ୍ୟମାନଙ୍କ ମଧ୍ୟରେ ଶ୍ରେଷ୍ଠ |
| ଶୈବ୍ୟଃ | = ଶୈବ୍ୟ, |
| ବିକ୍ରାନ୍ତଃ | = ପରାକ୍ରମୀ |
| ଯୁଧାମନ୍ୟୁଃ | = ଯୁଧାମନ୍ୟୁ |
| ଚ | = ତଥା |
| ବୀର୍ଯ୍ୟବାନ୍ | = ବଳବାନ୍ |
| ଉତ୍ତମୌଜାଃ | = ଉତ୍ତମୌଜା, |
| ସୌଭଦ୍ରଃ | = ସୁଭଦ୍ରା ପୁତ୍ର ଅଭିମନ୍ୟୁ |
| ଚ | = ଏବଂ |
| ଦ୍ରୌପଦେୟାଃ | = ଦୌପଦୀଙ୍କର ପାଞ୍ଚପୁତ୍ର (ଏମାନେ) |
| ସର୍ବେ, ଏବ | = ସମସ୍ତେ (ହିଁ) |
| ମହାରଥାଃ | = ମହାରଥୀ |
| (ସନ୍ତି) | = ଅଟନ୍ତି । |

ଦୁର୍ଯ୍ୟୋଧନ ଦ୍ୱାରା ନିଜ ସେନାର ପ୍ରଧାନ ପ୍ରଧାନ ମହାରଥୀ ମାନଙ୍କ ବର୍ଣ୍ଣନା ।

**ଅସ୍ମାକଂ ତୁ ବିଶିଷ୍ଟା ଯେ ତାନ୍ନିବୋଧ ଦ୍ୱିଜୋତ୍ତମ ।**
**ନାୟକା ମମ ସୈନ୍ୟସ୍ୟ ସଂଜ୍ଞାର୍ଥଂ ତାନ୍ ବ୍ରବୀମି ତେ ॥ ୭ ॥**

ଅସ୍ମାକମ୍, ତୁ, ବିଶିଷ୍ଟାଃ, ଯେ, ତାନ୍, ନିବୋଧ, ଦ୍ୱିଜୋତ୍ତମ,
ନାୟକାଃ, ମମ, ସୈନ୍ୟସ୍ୟ, ସଂଜ୍ଞାର୍ଥମ୍, ତାନ୍, ବ୍ରବୀମି, ତେ ।।୭ ।।

| | |
|---|---|
| ଦ୍ୱିଜୋତ୍ତମ | = ହେ ବ୍ରାହ୍ମଣ ଶ୍ରେଷ୍ଠ ! |
| ଅସ୍ମାକମ୍ | = ଆମ ପକ୍ଷରେ |
| ତୁ | = ବି |
| ଯେ | = ଯେଉଁ |
| ବିଶିଷ୍ଟାଃ | = ପ୍ରଧାନ (ଯୋଦ୍ଧାମାନେ) |
| (ସନ୍ତି) | = ଅଛନ୍ତି, |
| ତାନ୍ | = ସେମାନଙ୍କୁ |
| ନିବୋଧ | = (ଆପଣ) ଜାଣିନିଅନ୍ତୁ । |
| ତେ | = ଆପଣଙ୍କ |
| ସଂଜ୍ଞାର୍ଥମ୍ | = ଜାଣିବା ପାଇଁ |
| ମମ | = ମୋର |
| ସୈନ୍ୟସ୍ୟ | = ସେନାର |

| | | | |
|---|---|---|---|
| ନାୟକାଃ | = (ଯେଉଁ) ସେନାପତି ମାନେ (ଅଛନ୍ତି) | ତାନ୍ | = ସେମାନଙ୍କ ସମ୍ବନ୍ଧରେ |
| | | ବ୍ରବୀମି | = କହୁଛି । |

ଦୁର୍ଯ୍ୟୋଧନଙ୍କ ନିଜ ସେନାର ପ୍ରଧାନ ଶୂରବୀର ତଥା ସେମାନଙ୍କ ଯୁଦ୍ଧ କୌଶଳର ବର୍ଣ୍ଣନା ।

**ଭବାନ୍ ଭୀଷ୍ମଶ୍ଚ କର୍ଣ୍ଣଶ୍ଚ କୃପଶ୍ଚ ସମିତିଞ୍ଜୟଃ ।**
**ଅଶ୍ୱତ୍ଥାମା ବିକର୍ଣ୍ଣଶ୍ଚ ସୌମଦତ୍ତିସ୍ତଥୈବ ଚ ॥ ୮ ॥**

ଭବାନ୍, ଭୀଷ୍ମଃ, ଚ, କର୍ଣ୍ଣଃ, ଚ, କୃପଃ, ଚ, ସମିତିଞ୍ଜୟଃ,
ଅଶ୍ୱତ୍ଥାମା, ବିକର୍ଣ୍ଣଃ, ଚ, ସୌମଦତ୍ତିଃ, ତଥା, ଏବ, ଚ, ।।୮।।

**ସର୍ବପ୍ରଥମେ ସ୍ୱୟଂ—**

| | | | |
|---|---|---|---|
| ଭବାନ୍ | = ଆପଣ-ଦ୍ରୋଣାଚାର୍ଯ୍ୟ | ଚ | = ତଥା |
| ଚ | = ଏବଂ | ତଥା | = ସେହିପରି |
| ଭୀଷ୍ମଃ | = ପିତାମହ ଭୀଷ୍ମ | ଏବ | = ହିଁ |
| ଚ | = ତଥା | ଅଶ୍ୱତ୍ଥାମା | = ଅଶ୍ୱତ୍ଥାମା, |
| କର୍ଣ୍ଣଃ | = କର୍ଣ୍ଣ | ବିକର୍ଣ୍ଣଃ | = ବିକର୍ଣ୍ଣ |
| ଚ | = ଓ | ଚ | = ଓ |
| ସମିତିଞ୍ଜୟଃ | = ସଂଗ୍ରାମ ବିଜୟୀ | ସୌମଦତ୍ତିଃ | = ସୋମଦତ୍ତ ପୁତ୍ର ଭୂରିଶ୍ରବା (ଅଛନ୍ତି) । |
| କୃପଃ | = କୃପାଚାର୍ଯ୍ୟ | | |

**ଅନ୍ୟେ ଚ ବହବଃ ଶୂରା ମଦର୍ଥେ ତ୍ୟକ୍ତଜୀବିତାଃ ।**
**ନାନାଶସ୍ତ୍ରପ୍ରହରଣାଃ ସର୍ବେ ଯୁଦ୍ଧବିଶାରଦାଃ ॥ ୯ ॥**

ଅନ୍ୟେ, ଚ, ବହବଃ, ଶୂରାଃ, ମଦର୍ଥେ, ତ୍ୟକ୍ତଜୀବିତାଃ,
ନାନାଶସ୍ତ୍ରପ୍ରହରଣାଃ, ସର୍ବେ, ଯୁଦ୍ଧବିଶାରଦାଃ ।।୯।।

**ତଥା—**

| | | | |
|---|---|---|---|
| ଅନ୍ୟେ | = ଏମାନଙ୍କ ଛଡ଼ା | ଚ | = ଆହୁରି ମଧ୍ୟ |

| | |
|---|---|
| ମଦର୍ଥେ | = ମୋ ପାଇଁ |
| ତ୍ୟକ୍ତଜୀବିତାଃ | = ଜୀବନର ଆଶା ତ୍ୟାଗ କରି ଦେଇଥିବା |
| ବହବଃ | = ବହୁ |
| ଶୂରାଃ | = ଶୂରବୀରମାନେ |
| ନାନାଶସ୍ତ୍ର-ପ୍ରହରଣାଃ | = ନାନା ପ୍ରକାର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ |
| ସର୍ବେ | = ସମସ୍ତେ (ହିଁ) |
| ଯୁଦ୍ଧବିଶାରଦାଃ | = ଯୁଦ୍ଧରେ ନିପୁଣ |
| (ସନ୍ତି) | = ଅଟନ୍ତି । |

ଦୁର୍ଯ୍ୟୋଧନ କର୍ତ୍ତୃକ ପାଣ୍ଡବସେନା ଅପେକ୍ଷା ନିଜ ସେନାର ଅଜେୟତ୍ୱ ଜ୍ଞାପନ ।

**ଅପର୍ଯ୍ୟାପ୍ତଂ ତଦସ୍ମାକଂ ବଳଂ ଭୀଷ୍ମାଭିରକ୍ଷିତମ୍ ।**
**ପର୍ଯ୍ୟାପ୍ତଂ ତ୍ୱିଦମେତେଷାଂ ବଳଂ ଭୀମାଭିରକ୍ଷିତମ୍ ॥ ୧୦ ॥**

ଅପର୍ଯ୍ୟାପ୍ତମ୍, ତତ୍, ଅସ୍ମାକମ୍, ବଳମ୍, ଭୀଷ୍ମାଭିରକ୍ଷିତମ୍,
ପର୍ଯ୍ୟାପ୍ତମ୍, ତୁ, ଇଦମ୍, ଏତେଷାମ୍, ବଳମ୍, ଭୀମାଭିରକ୍ଷିତମ୍ ।।୧୦।।

ଏବଂ—

| | |
|---|---|
| ଭୀଷ୍ମାଭିରକ୍ଷିତମ୍ | = ଭୀଷ୍ମପିତାମହଙ୍କ ଦ୍ୱାରା ରକ୍ଷିତ |
| ଅସ୍ମାକମ୍ | = ଆମ୍ଭମାନଙ୍କର |
| ତତ୍ | = ସେହି |
| ବଳମ୍ | = ସେନା |
| ଅପର୍ଯ୍ୟାପ୍ତମ୍ | = ସବୁ ଦୃଷ୍ଟିରୁ ଅଜେୟ |
| ତୁ | = ଏବଂ |
| ଭୀମାଭିରକ୍ଷିତମ୍ | = ଭୀମଙ୍କ ଦ୍ୱାରା ରକ୍ଷିତ |
| ଏତେଷାମ୍ | = ଏମାନଙ୍କର |
| ଇଦମ୍ | = ଏହି |
| ବଳମ୍ | = ସେନା |
| ପର୍ଯ୍ୟାପ୍ତମ୍ | = ପରିମିତ ଅର୍ଥାତ୍ ଏହାକୁ ଜୟ କରିବା ଅତି ସହଜ । |

ଭୀଷ୍ମଙ୍କ ରକ୍ଷାପାଇଁ ଦ୍ରୋଣାଦି ବୀରଗଣଙ୍କୁ ଦୁର୍ଯ୍ୟୋଧନଙ୍କ ଅନୁରୋଧ ।

**ଅୟନେଷୁ ଚ ସର୍ବେଷୁ ଯଥାଭାଗମବସ୍ଥିତାଃ ।**
**ଭୀଷ୍ମମେବାଭିରକ୍ଷନ୍ତୁ ଭବନ୍ତଃ ସର୍ବ ଏବ ହି ॥ ୧୧ ॥**

ଅୟନେଷୁ, ଚ, ସର୍ବେଷୁ, ଯଥାଭାଗମ୍, ଅବସ୍ଥିତାଃ,
ଭୀଷ୍ମମ୍, ଏବ, ଅଭିରକ୍ଷନ୍ତୁ, ଭବନ୍ତଃ, ସର୍ବେ, ଏବ, ହି ।।୧୧।।

| | | | |
|---|---|---|---|
| ଚ | = ତେଣୁ | ସର୍ବେ, ଏବ | = ସମସ୍ତେ |
| ସର୍ବେଷୁ | = ସକଳ | ହି | = ନିଶ୍ଚିତ ଭାବରେ |
| ଅୟନେଷୁ | = ବ୍ୟୂହଦ୍ୱାରରେ | ଭୀଷ୍ମମ୍ | = ଭୀଷ୍ମଙ୍କୁ |
| ଯଥାଭାଗମ୍ | = ନିଜ-ନିଜ ସ୍ଥାନରେ | ଏବ | = ହିଁ |
| ଅବସ୍ଥିତାଃ | = ସଜାଗ ରହି | ଅଭିରକ୍ଷନ୍ତୁ | = ସକଳଦିଗରୁ ରକ୍ଷା କରନ୍ତୁ । |
| ଭବନ୍ତଃ | = ଆପଣମାନେ | | |

ଦୁର୍ଯ୍ୟୋଧନଙ୍କ ପ୍ରସନ୍ନତା ପାଇଁ ଭୀଷ୍ମଙ୍କ ଗର୍ଜନ ସହକାରେ ଶଙ୍ଖବାଦନ ଏବଂ କୌରବ ସେନାଙ୍କ ମଧ୍ୟରେ ଶଙ୍ଖ ତଥା ବିଭିନ୍ନ ବାଜା ଏକ ସାଥିରେ ବାଜିଉଠିବା ।

**ତସ୍ୟ ସଂଜନୟନ୍ ହର୍ଷଂ କୁରୁବୃଦ୍ଧଃ ପିତାମହଃ ।**
**ସିଂହନାଦଂ ବିନଦ୍ୟୋଚ୍ଚୈଃ ଶଙ୍ଖଂ ଦଧ୍ମୌ ପ୍ରତାପବାନ୍ ॥ ୧୨ ॥**

ତସ୍ୟ, ସଂଜନୟନ୍, ହର୍ଷମ୍, କୁରୁବୃଦ୍ଧଃ, ପିତାମହଃ,
ସିଂହନାଦମ୍, ବିନଦ୍ୟ, ଉଚ୍ଚୈଃ, ଶଙ୍ଖମ୍, ଦଧ୍ମୌ, ପ୍ରତାପବାନ୍ ।।୧୨।।

**ଏହି ପ୍ରକାରେ ଦ୍ରୋଣାଚାର୍ଯ୍ୟଙ୍କୁ କୁହାଯାଉଥିବା ଦୁର୍ଯ୍ୟୋଧନର ବଚନ ଶୁଣି—**

| | | | |
|---|---|---|---|
| କୁରୁବୃଦ୍ଧଃ | = କୌରବମାନଙ୍କ ମଧ୍ୟରେ ବୃଦ୍ଧ | ସଂଜନୟନ୍ | = ଉତ୍ପନ୍ନ କରାଇବା ପାଇଁ |
| ପ୍ରତାପବାନ୍ | = ମହାପ୍ରତାପୀ | ଉଚ୍ଚୈଃ | = ଉଚ୍ଚ ସ୍ୱରରେ |
| ପିତାମହଃ | = ପିତାମହ ଭୀଷ୍ମ | ସିଂହନାଦମ୍ | = ସିଂହପରି |
| ତସ୍ୟ | = ସେହି (ଦୁର୍ଯ୍ୟୋଧନଙ୍କ ହୃଦୟରେ) | ବିନଦ୍ୟ | = ଗର୍ଜନ କରି |
| | | ଶଙ୍ଖମ୍ | = ଶଙ୍ଖ |
| ହର୍ଷମ୍ | = ହର୍ଷ | ଦଧ୍ମୌ | = ବଜାଇଲେ । |

ପିତାମହ ଭୀଷ୍ମଙ୍କ ଶଙ୍ଖ ବାଦନର ପରିଣାମ କଣ ହେଲା ତାହାର ବର୍ଣ୍ଣନା ।

**ତତଃ ଶଙ୍ଖାଶ୍ଚ ଭେର୍ଯ୍ୟଶ୍ଚ ପଣବାନକଗୋମୁଖାଃ ।**
**ସହସୈବାଭ୍ୟହନ୍ୟନ୍ତ ସ ଶବ୍ଦସ୍ତୁମୁଲୋଽଭବତ୍ ॥ ୧୩ ॥**

ତତଃ, ଶଙ୍ଖାଃ, ଚ, ଭେର୍ଯ୍ୟଃ, ଚ, ପଣବାନକଗୋମୁଖାଃ ।
ସହସା, ଏବ, ଅଭ୍ୟହନ୍ୟନ୍ତ, ସଃ, ଶବ୍ଦଃ, ତୁମୁଲଃ, ଅଭବତ୍ ।।୧୩।।

| | |
|---|---|
| ତତଃ | = ତା' ପରେ ପରେ |
| ଶଙ୍ଖାଃ | = ବହୁ ଶଙ୍ଖ |
| ଚ | = ଓ |
| ଭେର୍ଯ୍ୟଃ | = ବହୁ ଭେରୀ (ନାଗରା) |
| ଚ | = ତଥା |
| ପଣବାନକ-ଗୋମୁଖାଃ | = ଢୋଲ, ମୃଦଙ୍ଗ ଓ ରଣଶିଙ୍ଗା ଆଦି ବାଦ୍ୟ |

| | |
|---|---|
| ସହସା, ଏବ | = ଏକସଙ୍ଗେ |
| ଅଭ୍ୟହନ୍ୟନ୍ତ | = ବାଜିଉଠିଲା (ଏବଂ) |
| ସଃ | = ସେହି |
| ଶବ୍ଦଃ | = ଶବ୍ଦ |
| ତୁମୁଳଃ | = ଅତି ଭୟଙ୍କର |
| ଅଭବତ୍ | = ହେଲା । |

କ୍ରମଶଃ ଶ୍ରୀକୃଷ୍ଣ, ଅର୍ଜୁନ, ଭୀମସେନ, ଯୁଧିଷ୍ଠିର, ନକୁଳ, ସହଦେବ ତଥା ପାଣ୍ଡବ ସେନାର ଅନ୍ୟାନ୍ୟ ସମସ୍ତ ବିଶିଷ୍ଟ ଯୋଦ୍ଧାମାନଙ୍କ ଦ୍ୱାରା ନିଜ ନିଜ ଶଙ୍ଖ ବଜାଇବା ବର୍ଣ୍ଣନା ।

**ତତଃ ଶ୍ୱେତୈର୍ହୟୈର୍ଯୁକ୍ତେ ମହତି ସ୍ୟନ୍ଦନେ ସ୍ଥିତୌ ।**
**ମାଧବଃ ପାଣ୍ଡବଶ୍ଚୈବ ଦିବ୍ୟୌ ଶଙ୍ଖୌ ପ୍ରଦଧ୍ମତୁଃ ॥ ୧୪ ॥**

ତତଃ, ଶ୍ୱେତୈଃ, ହୟୈଃ, ଯୁକ୍ତେ, ମହତି, ସ୍ୟନ୍ଦନେ, ସ୍ଥିତୌ,
ମାଧବଃ, ପାଣ୍ଡବଃ, ଚ, ଏବ, ଦିବ୍ୟୌ, ଶଙ୍ଖୌ, ପ୍ରଦଧ୍ମତୁଃ ।।୧୪।।

| | |
|---|---|
| ତତଃ | = ତାହାପରେ |
| ଶ୍ୱେତୈଃ | = ଧଳା |
| ହୟୈଃ | = ଘୋଡ଼ାମାନଙ୍କ ଦ୍ୱାରା |
| ଯୁକ୍ତେ | = ଯୋଚା ଯାଇଥିବା |
| ମହତି | = ଉତ୍ତମ |
| ସ୍ୟନ୍ଦନେ | = ରଥରେ |
| ସ୍ଥିତୌ | = ବସିଥିବା |

| | |
|---|---|
| ମାଧବଃ | = ଶ୍ରୀକୃଷ୍ଣ ପରମାତ୍ମା |
| ଚ | = ଓ |
| ପାଣ୍ଡବଃ | = ପାଣ୍ଡୁପୁତ୍ର ଅର୍ଜୁନ |
| ଏବ | = ମଧ୍ୟ |
| ଦିବ୍ୟୌ | = ଅଲୌକିକ |
| ଶଙ୍ଖୌ | = ଶଙ୍ଖ ଦୁଇଟି |
| ପ୍ରଦଧ୍ମତୁଃ | = ବଜାଇଲେ । |

**ପାଞ୍ଚଜନ୍ୟଂ ହୃଷୀକେଶୋ ଦେବଦତ୍ତଂ ଧନଞ୍ଜୟଃ ।**
**ପୌଣ୍ଡ୍ରଂ ଦଧ୍ମୌ ମହାଶଙ୍ଖଂ ଭୀମକର୍ମା ବୃକୋଦରଃ ॥ ୧୫ ॥**

ପାଞ୍ଚଜନ୍ୟମ୍, ହୃଷୀକେଶଃ, ଦେବଦତ୍ତମ୍, ଧନଞ୍ଜୟଃ,
ପୌଣ୍ଡ୍ରମ୍, ଦଧ୍ମୌ, ମହାଶଙ୍ଖମ୍, ଭୀମକର୍ମା, ବୃକୋଦରଃ ।।୧୫।।

**ଏହିମାନଙ୍କ ମଧ୍ୟରେ—**

| | | | |
|---|---|---|---|
| ହୃଷୀକେଶଃ | = ଶ୍ରୀକୃଷ୍ଣ ପରମାତ୍ମା | ଭୀମକର୍ମା | = ଭୟଙ୍କର କର୍ମ କରୁଥିବା |
| ପାଞ୍ଚଜନ୍ୟମ୍ | = ପାଞ୍ଚଜନ୍ୟ ନାମକ ଶଙ୍ଖ, | ବୃକୋଦରଃ | = ଭୀମସେନ |
| ଧନଞ୍ଜୟଃ | = ଅର୍ଜୁନ | ପୌଣ୍ଡ୍ରମ୍ | = ପୌଣ୍ଡ୍ର ନାମକ |
| ଦେବଦତ୍ତମ୍ | = ଦେବଦତ୍ତ ନାମକ ଶଙ୍ଖ ଓ | ମହାଶଙ୍ଖମ୍ | = ମହାଶଙ୍ଖ |
| | | ଦଧ୍ମୌ | = ବଜାଇଲେ । |

**ଅନନ୍ତବିଜୟଂ ରାଜା କୁନ୍ତୀପୁତ୍ରୋ ଯୁଧିଷ୍ଠିରଃ ।**
**ନକୁଳଃ ସହଦେବଶ୍ଚ ସୁଘୋଷମଣିପୁଷ୍ପକୌ ॥ ୧୬ ॥**

ଅନନ୍ତବିଜୟମ୍, ରାଜା, କୁନ୍ତୀପୁତ୍ରଃ, ଯୁଧିଷ୍ଠିରଃ,
ନକୁଳଃ, ସହଦେବଃ, ଚ, ସୁଘୋଷମଣିପୁଷ୍ପକୌ ।।୧୬।।

| | | | |
|---|---|---|---|
| କୁନ୍ତୀପୁତ୍ରଃ | = କୁନ୍ତୀପୁତ୍ର | ନକୁଳଃ | = ନକୁଳ |
| ରାଜା | = ରାଜା | ଚ | = ଓ |
| ଯୁଧିଷ୍ଠିରଃ | = ଯୁଧିଷ୍ଠିର | ସହଦେବଃ | = ସହଦେବ |
| ଅନନ୍ତବିଜୟମ୍ | = ଅନନ୍ତବିଜୟ ନାମକ ଶଙ୍ଖ (ଏବଂ) | ସୁଘୋଷ-ମଣିପୁଷ୍ପକୌ | = ସୁଘୋଷ ଓ ମଣିପୁଷ୍ପକ ନାମକ ଶଙ୍ଖ (ବଜାଇଲେ) । |

**କାଶ୍ୟଶ୍ଚ ପରମେଷ୍ୱାସଃ ଶିଖଣ୍ଡୀ ଚ ମହାରଥଃ ।**
**ଧୃଷ୍ଟଦ୍ୟୁମ୍ନୋ ବିରାଟଶ୍ଚ ସାତ୍ୟକିଶ୍ଚାପରାଜିତଃ ॥ ୧୭ ॥**

**ଦ୍ରୁପଦୋ ଦ୍ରୌପଦେୟାଶ୍ଚ ସର୍ବଶଃ ପୃଥିବୀପତେ ।**
**ସୌଭଦ୍ରଶ୍ଚ ମହାବାହୁଃ ଶଙ୍ଖାନ୍ ଦଧ୍ମୁଃ ପୃଥକ୍ ପୃଥକ୍ ॥ ୧୮ ॥**

କାଶ୍ୟଃ, ଚ, ପରମେଷ୍ୱାସଃ, ଶିଖଣ୍ଡୀ, ଚ, ମହାରଥଃ,
ଧୃଷ୍ଟଦ୍ୟୁମ୍ନଃ, ବିରାଟଃ, ଚ, ସାତ୍ୟକିଃ, ଚ, ଅପରାଜିତଃ।।୧୭।।
ଦ୍ରୁପଦଃ, ଦ୍ରୌପଦେୟାଃ, ଚ, ସର୍ବଶଃ, ପୃଥିବୀପତେ,
ସୌଭଦ୍ରଃ, ଚ, ମହାବାହୁଃ, ଶଙ୍ଖାନ୍, ଦଧ୍ମୁଃ, ପୃଥକ୍, ପୃଥକ୍।।୧୮।।

| | |
|---|---|
| ପରମେଷ୍ୱାସଃ | = ଶ୍ରେଷ୍ଠ ଧନୁର୍ଦ୍ଧାରୀ |
| କାଶ୍ୟଃ | = କାଶିରାଜ |
| ଚ | = ଓ |
| ମହାରଥଃ | = ମହାରଥୀ |
| ଶିଖଣ୍ଡୀ | = ଶିଖଣ୍ଡୀ |
| ଚ | = ତଥା |
| ଧୃଷ୍ଟଦ୍ୟୁମ୍ନଃ | = ଧୃଷ୍ଟଦ୍ୟୁମ୍ନ |
| ଚ | = ଓ |
| ବିରାଟଃ | = ରାଜା ବିରାଟ |
| ଚ | = ଓ |
| ଅପରାଜିତଃ | = ଅଜେୟ |
| ସାତ୍ୟକିଃ | = ସାତ୍ୟକି, |
| ଦ୍ରୁପଦଃ | = ରାଜା ଦ୍ରୁପଦ |
| ଚ | = ଓ |
| ଦ୍ରୌପଦେୟାଃ | = ଦ୍ରୌପଦୀଙ୍କ ପଞ୍ଚପୁତ୍ର |
| ଚ | = ଓ |
| ମହାବାହୁଃ | = ବିଶାଳବାହୁ |
| ସୌଭଦ୍ରଃ | = ସୁଭଦ୍ରାପୁତ୍ର ଅଭିମନ୍ୟୁ (ଏ ସମସ୍ତେ) |
| ପୃଥିବୀପତେ | = ହେ ରାଜନ ! |
| ସର୍ବଶଃ | = ସକଳ ଦିଗରୁ |
| ପୃଥକ୍-ପୃଥକ୍ | = ପୃଥକ୍-ପୃଥକ୍ |
| ଶଙ୍ଖାନ୍ | = ଶଙ୍ଖମାନ |
| ଦଧ୍ମୁଃ | = ବଜାଇଲେ। |

ପାଣ୍ଡବ ସେନାଙ୍କ ଶଙ୍ଖଧ୍ୱନି ଦ୍ୱାରା ଦୁର୍ଯ୍ୟୋଧନାଦି କୌରବ ସେନାଙ୍କ ବ୍ୟଥିତ ହେବା।

**ସ ଘୋଷୋ ଧାର୍ତ୍ତରାଷ୍ଟ୍ରାଣାଂ ହୃଦୟାନି ବ୍ୟଦାରୟତ୍ ।**
**ନଭଶ୍ଚ ପୃଥିବୀଂ ଚୈବ ତୁମୁଲୋ ବ୍ୟନୁନାଦୟନ୍ ॥ ୧୯ ॥**

ସଃ, ଘୋଷଃ, ଧାର୍ତରାଷ୍ଟ୍ରାଣାମ୍, ହୃଦୟାନି, ବ୍ୟଦାରୟତ୍,
ନଭଃ, ଚ, ପୃଥିବୀମ୍, ଚ, ଏବ, ତୁମୁଲଃ, ବ୍ୟନୁନାଦୟନ୍।।୧୯।।

| | |
|---|---|
| ଚ | = ଏବଂ |
| ସଃ | = ସେହି |
| ତୁମୁଲଃ | = ଭୟଙ୍କର |
| ଘୋଷଃ | = ଶବ୍ଦ |
| ନଭଃ | = ଆକାଶ |
| ଚ | = ଓ |

| | | | |
|---|---|---|---|
| ପୃଥିବୀମ୍ | = ପୃଥିବୀକୁ | ଧାର୍ତ୍ତରାଷ୍ଟ୍ରାଣାମ୍ | = ଦୁର୍ଯ୍ୟୋଧନାଦି କୌରବମାନଙ୍କର |
| ଏବ | = ମଧ୍ୟ | ହୃଦୟାନି | = ହୃଦୟକୁ |
| ବ୍ୟନୁନାଦୟନ୍ | = ପ୍ରତିଧ୍ୱନିତ କରି | ବ୍ୟଦାରୟତ୍ | = ବିଦୀର୍ଣ୍ଣ କରିଦେଲା । |

ଧୃତରାଷ୍ଟ୍ର ପୁତ୍ରଙ୍କର ଯୁଦ୍ଧ ପାଇଁ ପ୍ରସ୍ତୁତି ଦେଖି ଉଭୟ ସେନାଙ୍କ ମଧ୍ୟସ୍ଥଳେ ରଥ ସ୍ଥାପନ କରିବା ପାଇଁ ଶ୍ରୀକୃଷ୍ଣଙ୍କୁ ଅର୍ଜୁନଙ୍କ ଉତ୍ସାହପୂର୍ଣ୍ଣ ବଚନ ।

**ଅଥ ବ୍ୟବସ୍ଥିତାନ୍ ଦୃଷ୍ଟ୍ୱା ଧାର୍ତ୍ତରାଷ୍ଟ୍ରାନ୍ କପିଧ୍ୱଜଃ ।**
**ପ୍ରବୃତ୍ତେ ଶସ୍ତ୍ରସମ୍ପାତେ ଧନୁରୁଦ୍ୟମ୍ୟ ପାଣ୍ଡବଃ ॥ ୨୦ ॥**
**ହୃଷୀକେଶଂ ତଦା ବାକ୍ୟମିଦମାହ ମହୀପତେ ।**

*ଅର୍ଜୁନ ଉବାଚ*

**ସେନୟୋରୁଭୟୋର୍ମଧ୍ୟେ ରଥଂ ସ୍ଥାପୟ ମେଽଚ୍ୟୁତ ॥ ୨୧ ॥**

ଅଥ, ବ୍ୟବସ୍ଥିତାନ୍, ଦୃଷ୍ଟ୍ୱା, ଧାର୍ତ୍ତରାଷ୍ଟ୍ରାନ୍, କପିଧ୍ୱଜଃ, ପ୍ରବୃତ୍ତେ, ଶସ୍ତ୍ରସମ୍ପାତେ, ଧନୁଃ, ଉଦ୍ୟମ୍ୟ, ପାଣ୍ଡବଃ ।।୨୦।।

ହୃଷୀକେଶମ୍, ତଦା, ବାକ୍ୟମ୍, ଇଦମ୍, ଆହ, ମହୀପତେ, ସେନୟୋଃ, ଉଭୟୋଃ, ମଧ୍ୟେ, ରଥମ୍, ସ୍ଥାପୟ, ମେ, ଅଚ୍ୟୁତ ।।୨୧।।

| | | | |
|---|---|---|---|
| ମହୀପତେ | = ହେ ରାଜନ ! | ତଦା | = ସେହି ସମୟରେ |
| ଅଥ | = ଏହାପରେ | ଶସ୍ତ୍ରସମ୍ପାତେ ପ୍ରବୃତ୍ତେ | = ଶସ୍ତ୍ର ଚଳାଇବାକୁ ଯାଉଥିବା ବେଳେ |
| କପିଧ୍ୱଜଃ | = କପିଧ୍ୱଜ | ଧନୁଃ | = ଧନୁ |
| ପାଣ୍ଡବଃ | = ଅର୍ଜୁନ | ଉଦ୍ୟମ୍ୟ | = ଉଠାଇ |
| ବ୍ୟବସ୍ଥିତାନ୍ | = ବ୍ୟୂହ ରଚନା କରି ଯୁଦ୍ଧ ପାଇଁ ପ୍ରସ୍ତୁତ ରହିଥିବା | ହୃଷୀକେଶମ୍ | = ହୃଷୀକେଶ ଶ୍ରୀକୃଷ୍ଣ ପରମାତ୍ମାଙ୍କୁ |
| ଧାର୍ତ୍ତରାଷ୍ଟ୍ରାନ୍ | = ଧୃତରାଷ୍ଟ୍ରଙ୍କ ସମ୍ବନ୍ଧୀୟମାନଙ୍କୁ | ଇଦମ୍ | = ଏହି |
| | | ବାକ୍ୟମ୍ | = ବଚନ |
| ଦୃଷ୍ଟ୍ୱା | = ଦେଖି | ଆହ | = କହିଲେ- |

| | | | |
|---|---|---|---|
| ଅଚ୍ୟୁତ | = ହେ ଅଚ୍ୟୁତ ! | ସେନୟୋଃ | = ସେନାଙ୍କ |
| ମେ | = ମୋର | ମଧ୍ୟେ | = ମଧ୍ୟସ୍ଥଳରେ |
| ରଥମ୍ | = ରଥକୁ | ସ୍ଥାପୟ | = ଠିଆ କରାନ୍ତୁ । |
| ଉଭୟୋଃ | = ଦୁଇ | | |

ରଥକୁ ମଧ୍ୟସ୍ଥଳରେ ରଖିବାକୁ ସଂକେତ କରି ସମସ୍ତଙ୍କୁ ଦେଖିବା ପାଇଁ ଇଚ୍ଛା ପ୍ରକଟ କରିବା ।

**ଯାବଦେତାନ୍ନିରୀକ୍ଷେଽହଂ ଯୋଦ୍ଧୁକାମାନବସ୍ଥିତାନ୍ ।**
**କୈର୍ମୟା ସହ ଯୋଦ୍ଧବ୍ୟମସ୍ମିନ୍ ରଣସମୁଦ୍ୟମେ ॥ ୨୨ ॥**

ଯାବତ୍, ଏତାନ୍, ନିରୀକ୍ଷେ, ଅହମ୍, ଯୋଦ୍ଧୁକାମାନ୍, ଅବସ୍ଥିତାନ୍,
କୈଃ, ମୟା, ସହ, ଯୋଦ୍ଧବ୍ୟମ୍, ଅସ୍ମିନ୍, ରଣସମୁଦ୍ୟମେ ।।୨୨।।

ଏବଂ—

| | | | |
|---|---|---|---|
| ଯାବତ୍ | = ଯେଉଁପର୍ଯ୍ୟନ୍ତ | ରଣସମୁଦ୍ୟମେ | = ଯୁଦ୍ଧରୂପକ ବ୍ୟାପାରରେ |
| ଅହମ୍ | = ମୁଁ | ମୟା | = ମୋତେ |
| ଏତାନ୍ | = ଏହି | କୈଃ | = କେଉଁ କେଉଁମାନଙ୍କ |
| ଅବସ୍ଥିତାନ୍ | = ଯୁଦ୍ଧକ୍ଷେତ୍ରରେ ଠିଆ ହୋଇଥିବା | ସହ | = ସହିତ |
| ଯୋଦ୍ଧୁକାମାନ୍ | = ଯୁଦ୍ଧାଭିଳାଷୀ ମାନଙ୍କୁ | ଯୋଦ୍ଧବ୍ୟମ୍ | = ଯୁଦ୍ଧ କରିବାକୁ ହେବ (ସେ ପର୍ଯ୍ୟନ୍ତ ରଥ ଠିଆ କରାନ୍ତୁ) । |
| ନିରୀକ୍ଷେ | = ଭଲରୂପେ ଦେଖି ଚିହ୍ନିବି (କି) | | |
| ଅସ୍ମିନ୍ | = ଏହି | | |

**ଯୋତ୍ସ୍ୟମାନାନବେକ୍ଷେଽହଂ ଯ ଏତେଽତ୍ର ସମାଗତାଃ ।**
**ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ବୁଦ୍ଧେର୍ଯୁଦ୍ଧେ ପ୍ରିୟଚିକୀର୍ଷବଃ ॥ ୨୩ ॥**

ଯୋତ୍ସ୍ୟମାନାନ୍, ଅବେକ୍ଷେ, ଅହମ୍, ଯେ, ଏତେ, ଅତ୍ର, ସମାଗତାଃ,
ଧାର୍ତ୍ତରାଷ୍ଟ୍ରସ୍ୟ, ଦୁର୍ବୁଦ୍ଧେଃ, ଯୁଦ୍ଧେ, ପ୍ରିୟଚିକୀର୍ଷବଃ ।।୨୩।।

ଏବଂ—

| | | | |
|---|---|---|---|
| ଦୁର୍ବୁଦ୍ଧେଃ | = ଦୁର୍ବୁଦ୍ଧି | ଅତ୍ର | = ଏହି ସେନାରେ |
| ଧାର୍ତ୍ତରାଷ୍ଟ୍ରସ୍ୟ | = ଦୁର୍ଯ୍ୟୋଧନର | ସମାଗତାଃ | = ଆସିଛନ୍ତି |
| ଯୁଦ୍ଧେ | = ଯୁଦ୍ଧରେ | (ତାନ୍) | = (ସେହି) |
| ପ୍ରିୟଚିକୀର୍ଷବଃ | = ହିତାକାଙ୍‌କ୍ଷୀ | ଯୋତ୍ସ୍ୟମାନାନ୍ | = ଯୋଦ୍ଧାମାନଙ୍କୁ |
| ଯେ | = ଯେଉଁ-ଯେଉଁ | ଅହମ୍ | = ମୁଁ |
| ଏତେ | = ଏହି ରାଜାମାନେ | ଅବେକ୍ଷେ | = ଭଲ କରି ଦେଖିବି । |

*ସଞ୍ଜୟ ଉବାଚ*

ଶ୍ରୀକୃଷ୍ଣ ରଥକୁ ଉଭୟ ସେନାଙ୍କ ମଧ୍ୟରେ ଠିଆ କରାଇ ଯୁଦ୍ଧ ପାଇଁ ଏକତ୍ରିତ ବୀରମାନଙ୍କୁ ଦେଖିବା ପାଇଁ ଅର୍ଜୁନଙ୍କୁ କହିବା ।

**ଏବମୁକ୍ତୋ ହୃଷୀକେଶୋ ଗୁଡାକେଶେନ ଭାରତ ।**
**ସେନୟୋରୁଭୟୋର୍ମଧ୍ୟେ ସ୍ଥାପୟିତ୍ୱା ରଥୋତ୍ତମମ୍ ॥ ୨୪ ॥**
**ଭୀଷ୍ମଦ୍ରୋଣପ୍ରମୁଖତଃ ସର୍ବେଷାଂ ଚ ମହୀକ୍ଷିତାମ୍ ।**
**ଉବାଚ ପାର୍ଥ ପଶ୍ୟୈତାନ୍ ସମବେତାନ୍ କୁରୂନିତି ॥ ୨୫ ॥**

ଏବମ୍, ଉକ୍ତଃ, ହୃଷୀକେଶଃ, ଗୁଡ଼ାକେଶେନ, ଭାରତ ।
ସେନୟୋଃ, ଉଭୟୋଃ, ମଧ୍ୟେ, ସ୍ଥାପୟିତ୍ୱା, ରଥୋତ୍ତମମ୍, ।।୨୪।।

ଭୀଷ୍ମଦ୍ରୋଣପ୍ରମୁଖତଃ, ସର୍ବେଷାମ୍, ଚ, ମହୀକ୍ଷିତାମ୍,
ଉବାଚ, ପାର୍ଥ, ପଶ୍ୟ, ଏତାନ୍, ସମବେତାନ୍, କୁରୂନ୍, ଇତି।।୨୫।।

**ସଂଜୟ କହିଲେ—**

| | | | |
|---|---|---|---|
| ଭାରତ | = ହେ ଧୃତରାଷ୍ଟ୍ର ! | ଏବମ୍ | = ଏହିପରି |
| ଗୁଡ଼ାକେଶେନ | = ନିଦ୍ରାଜୟୀ ଅର୍ଜୁନଙ୍କ ଦ୍ୱାରା | ଉକ୍ତଃ | = କୁହାଯିବାପରେ |
| | | ହୃଷୀକେଶଃ | = ଭଗବାନ୍ ଶ୍ରୀକୃଷ୍ଣ |

| | | | |
|---|---|---|---|
| ଉଭୟୋଃ | = ଦୁଇ | ସ୍ଥାପୟିତ୍ୱା | = ଠିଆ କରାଇଦେଇ |
| ସେନୟୋଃ | = ସେନାଙ୍କ | ଇତି | = ଏହିପରି |
| ମଧ୍ୟେ | = ମଝିରେ | ଉବାଚ | = କହିଲେ, |
| ଭୀଷ୍ମଦ୍ରୋଣ- | = ଭୀଷ୍ମ ଓ ଦ୍ରୋଣଙ୍କ | ପାର୍ଥ | = "ହେ ପାର୍ଥ ! |
| ପ୍ରମୁଖତଃ | ସମ୍ମୁଖରେ | ସମବେତାନ୍ | = (ଯୁଦ୍ଧ ପାଇଁ) ଏକତ୍ରିତ ହୋଇଥିବା |
| ଚ | = ତଥା | ଏତାନ୍ | = ଏହି |
| ସର୍ବେଷାମ୍ | = ସମସ୍ତ | କୁରୂନ୍ | = କୌରବମାନଙ୍କୁ |
| ମହୀକ୍ଷିତାମ୍ | = ରାଜାମାନଙ୍କ ସମ୍ମୁଖରେ | ପଶ୍ୟ | = ଦେଖ" । |
| ରଥୋତ୍ତମମ୍ | = ଉତ୍ତମ ରଥଟିକୁ | | |

ସ୍ୱଜନ ସମୁଦାୟକୁ ଦେଖି ଅର୍ଜୁନଙ୍କ ବ୍ୟାକୁଳ ହେବା ତଥା ଅର୍ଜୁନଙ୍କ ଦ୍ୱାରା ସ୍ୱୀୟ ଶୋକାକୁଳ ସ୍ଥିତିର ବର୍ଣ୍ଣନ ।

**ତତ୍ରାପଶ୍ୟତ୍ ସ୍ଥିତାନ୍ ପାର୍ଥଃ ପିତୃନଥ ପିତାମହାନ୍ ।**
**ଆଚାର୍ଯ୍ୟାନ୍ମାତୁଳାନ୍ ଭ୍ରାତୃନ୍ ପୁତ୍ରାନ୍ ପୌତ୍ରାନ୍ ସଖୀଂସ୍ତଥା ॥ ୨୬ ॥**
**ଶ୍ୱଶୁରାନ୍ ସୁହୃଦଶ୍ଚୈବ ସେନୟୋରୁଭୟୋରପି ।**

ତତ୍ର, ଅପଶ୍ୟତ୍, ସ୍ଥିତାନ୍, ପାର୍ଥଃ, ପିତୃନ୍, ଅଥ, ପିତାମହାନ୍ ।
ଆଚାର୍ଯ୍ୟାନ୍, ମାତୁଳାନ୍, ଭ୍ରାତୃନ୍, ପୁତ୍ରାନ୍, ପୌତ୍ରାନ୍, ସଖୀନ୍, ତଥା ।।୨୬।।
ଶ୍ୱଶୁରାନ୍, ସୁହୃଦଃ, ଚ, ଏବ, ସେନୟୋଃ, ଉଭୟୋଃ, ଅପି

| | | | |
|---|---|---|---|
| ଅଥ | = ଏହା ପରେ | ଆଚାର୍ଯ୍ୟାନ୍ | = ଆଚାର୍ଯ୍ୟଗଣଙ୍କୁ, |
| ପାର୍ଥଃ | = ପୃଥାନନ୍ଦନ ଅର୍ଜୁନ | ମାତୁଳାନ୍ | = ମାତୁଳଗଣଙ୍କୁ, |
| ତତ୍ର | = ସେହିଠାରେ | ଭ୍ରାତୃନ୍ | = ଭାଇମାନଙ୍କୁ, |
| ଉଭୟୋଃ,ଏବ | = ଦୁଇ | ପୁତ୍ରାନ୍ | = ପୁତ୍ରମାନଙ୍କୁ, |
| ସେନୟୋଃ | = ସେନାରେ | ପୌତ୍ରାନ୍ | = ନାତିମାନଙ୍କୁ |
| ସ୍ଥିତାନ୍ | ଉପସ୍ଥିତ ଥିବା | ତଥା | = ତଥା |
| ପିତୃନ୍ | = ପିତାମାନଙ୍କୁ, | ସଖୀନ୍ | = ବନ୍ଧୁଗଣଙ୍କୁ, |
| ପିତାମହାନ୍ | = ପିତାମହମାନଙ୍କୁ, | ଶ୍ୱଶୁରାନ୍ | = ଶ୍ୱଶୁରମାନଙ୍କୁ |

| | | | |
|---|---|---|---|
| ଚ | = ଓ | ଅପି | = ମଧ୍ୟ |
| ସୁହୃଦଃ | = ସୁହୃଦ୍‌ଗଣଙ୍କୁ | ଅପଶ୍ୟତ୍ | = ଦେଖିଲେ । |

ତାନ୍ ସମୀକ୍ଷ୍ୟ ସ କୌନ୍ତେୟଃ ସର୍ବାନ୍ ବନ୍ଧୂନବସ୍ଥିତାନ୍ ॥ ୨୭ ॥
କୃପୟା ପରୟାବିଷ୍ଟୋ ବିଷୀଦନ୍ନିଦମବ୍ରବୀତ୍ ।

ତାନ୍, ସମୀକ୍ଷ୍ୟ, ସଃ, କୌନ୍ତେୟଃ, ସର୍ବାନ୍, ବନ୍ଧୂନ୍, ଅବସ୍ଥିତାନ୍,
କୃପୟା, ପରୟା, ଆବିଷ୍ଟଃ, ବିଷୀଦନ୍, ଇଦମ୍, ଅବ୍ରବୀତ୍ ।।୨୭।।

| | | | |
|---|---|---|---|
| ତାନ୍ | = ସେହି | ପରୟା | = ଅତ୍ୟନ୍ତ |
| ଅବସ୍ଥିତାନ୍ | = ଉପସ୍ଥିତ | କୃପୟା | = କରୁଣା ଦ୍ୱାରା |
| ସର୍ବାନ୍ | = ସମସ୍ତ | ଆବିଷ୍ଟଃ | = କାତର ହୋଇ |
| ବନ୍ଧୂନ୍ | = ବନ୍ଧୁମାନଙ୍କୁ | ବିଷୀଦନ୍ | = ଶୋକ କରୁ କରୁ |
| ସମୀକ୍ଷ୍ୟ | = ଦେଖି | | |
| ସଃ | = ସେହି | ଇଦମ୍ | = ଏହା |
| କୌନ୍ତେୟଃ | = କୁନ୍ତିପୁତ୍ର ଅର୍ଜୁନ | ଅବ୍ରବୀତ୍ | = କହିଲେ । |

*ଅର୍ଜୁନ ଉବାଚ*

ଦୃଷ୍ଟ୍ୱେମଂ ସ୍ୱଜନଂ କୃଷ୍ଣ ଯୁଯୁତ୍ସୁଂ ସମୁପସ୍ଥିତମ୍ ॥ ୨୮ ॥
ସୀଦନ୍ତି ମମ ଗାତ୍ରାଣି ମୁଖଂ ଚ ପରିଶୁଷ୍ୟତି ।
ବେପଥୁଶ୍ଚ ଶରୀରେ ମେ ରୋମହର୍ଷଶ୍ଚ ଜାୟତେ ॥ ୨୯ ॥

ଦୃଷ୍ଟ୍ୱା, ଇମମ୍, ସ୍ୱଜନମ୍, କୃଷ୍ଣ, ଯୁଯୁତ୍ସୁମ୍, ସମୁପସ୍ଥିତମ୍।।୨୮।।
ସୀଦନ୍ତି, ମମ, ଗାତ୍ରାଣି, ମୁଖମ୍, ଚ, ପରିଶୁଷ୍ୟତି,
ବେପଥୁଃ, ଚ, ଶରୀରେ, ମେ, ରୋମହର୍ଷଃ, ଚ, ଜାୟତେ।।୨୯।।

**ଅର୍ଜୁନ କହିଲେ—**

କୃଷ୍ଣ = ହେ କୃଷ୍ଣ !
ସମୁପସ୍ଥିତମ୍= (ଯୁଦ୍ଧ କ୍ଷେତ୍ରରେ) ଦୃଢ଼ଭାବରେ ଦଣ୍ଡାୟମାନ ହୋଇଥିବା
ଯୁଯୁତ୍ସୁମ୍ = ଯୁଦ୍ଧାଭିଳାଷୀ
ଇମମ୍ = ଏହି
ସ୍ୱଜନମ୍ = ସ୍ୱଜନ ସମୁଦାୟକୁ
ଦୃଷ୍ଟ୍ୱା = ଦେଖି
ମମ = ମୋର
ଗାତ୍ରାଣି = ଅଙ୍ଗମାନ
ସୀଦନ୍ତି = ଶିଥିଳ ହୋଇଯାଉଛି
ଚ = ଓ
ମୁଖମ୍ = ମୁଖ
ପରିଶୁଷ୍ୟତି = ଶୁଖିଯାଉଛି
ଚ = ତଥା
ମେ = ମୋର
ଶରୀରେ = ଦେହରେ
ବେପଥୁଃ = କମ୍ପ
ଚ = ଓ
ରୋମହର୍ଷଃ = ରୋମାଞ୍ଚ
ଜାୟତେ = ଜାତ ହେଉଛି ।

**ଗାଣ୍ଡୀବଂ ସ୍ରଂସତେ ହସ୍ତାତ୍ ତ୍ୱକ୍ ଚୈବ ପରିଦହ୍ୟତେ ।**
**ନ ଚ ଶକ୍ନୋମ୍ୟବସ୍ଥାତୁଂ ଭ୍ରମତୀବ ଚ ମେ ମନଃ ॥ ୩୦ ॥**

ଗାଣ୍ଡୀବମ୍, ସ୍ରଂସତେ, ହସ୍ତାତ୍, ତ୍ୱକ୍, ଚ, ଏବ, ପରିଦହ୍ୟତେ,
ନ, ଚ, ଶକ୍ନୋମି, ଅବସ୍ଥାତୁମ୍, ଭ୍ରମତି, ଇବ, ଚ, ମେ, ମନଃ ।।୩୦ ।।

**ତଥା—**

ହସ୍ତାତ୍ = ହାତରୁ
ଗାଣ୍ଡୀବମ୍ = ଗାଣ୍ଡୀବ ଧନୁ
ସ୍ରଂସତେ = ଖସି ପଡୁଛି
ଚ = ଓ
ତ୍ୱକ୍ = ଚର୍ମ
ଏବ = ବି
ପରିଦହ୍ୟତେ = ଅତ୍ୟନ୍ତ ଦଗ୍ଧ ହେଉଛି
ଚ = ତଥା
ମେ = ମୋର
ମନଃ = ମନ
ଭ୍ରମତି, ଇବ = ଭ୍ରମିତ ହେଲା ପରି ଲାଗୁଛି
(ଅତଃ) = ଏଣୁ

| | | | |
|---|---|---|---|
| ଅବସ୍ଥାତୁମ୍ | = (ମୁଁ) ଠିଆ ହୋଇ ରହିବାକୁ | ନ, ଶକ୍ନୋମି | = ସମର୍ଥ ହୋଇପାରୁ ନାହିଁ । |
| ଚ | = ବି | | |

ଯୁଦ୍ଧର ବିପରୀତ ପରିଣାମର ବର୍ଣ୍ଣନ ।

**ନିମିତ୍ତାନି ଚ ପଶ୍ୟାମି ବିପରୀତାନି କେଶବ ।**
**ନ ଚ ଶ୍ରେୟୋଽନୁପଶ୍ୟାମି ହତ୍ୱା ସ୍ୱଜନମାହବେ ॥ ୩୧ ॥**

ନିମିତ୍ତାନି, ଚ, ପଶ୍ୟାମି, ବିପରୀତାନି, କେଶବ,
ନ, ଚ, ଶ୍ରେୟଃ, ଅନୁପଶ୍ୟାମି, ହତ୍ୱା, ସ୍ୱଜନମ୍, ଆହବେ ।।୩୧ ।।

| | | | |
|---|---|---|---|
| କେଶବ | = ହେ କେଶବ ! (ମୁଁ) | ଆହବେ | = ଯୁଦ୍ଧରେ |
| ନିମିତ୍ତାନି | = ଲକ୍ଷଣମାନଙ୍କୁ | ସ୍ୱଜନମ୍ | = ସ୍ୱଜନ ସମୁଦାୟକୁ |
| ଚ | = ବି | ହତ୍ୱା | = ମାରି |
| ବିପରୀତାନି | = ବିପରୀତ ହିଁ | ଶ୍ରେୟଃ | = କଲ୍ୟାଣ |
| ପଶ୍ୟାମି | = ଦେଖୁଛି (ତଥା) | ଚ | = ବି |
| | | ନ, ଅନୁପଶ୍ୟାମି | = ଦେଖିପାରୁ ନାହିଁ । |

**ନ କାଙ୍କ୍ଷେ ବିଜୟଂ କୃଷ୍ଣ ନ ଚ ରାଜ୍ୟଂ ସୁଖାନି ଚ ।**
**କିଂ ନୋ ରାଜ୍ୟେନ ଗୋବିନ୍ଦ କିଂ ଭୋଗୈର୍ଜୀବିତେନ ବା ॥ ୩୨ ॥**

ନ, କାଙ୍କ୍ଷେ, ବିଜୟମ୍, କୃଷ୍ଣ, ନ, ଚ, ରାଜ୍ୟମ୍, ସୁଖାନି, ଚ,
କିମ୍, ନଃ, ରାଜ୍ୟେନ, ଗୋବିନ୍ଦ, କିମ୍, ଭୋଗୈଃ, ଜୀବିତେନ, ବା ।।୩୨ ।।

| | | | |
|---|---|---|---|
| କୃଷ୍ଣ | = ହେ କୃଷ୍ଣ ! (ମୁଁ) | ରାଜ୍ୟମ୍ | = ରାଜ୍ୟ |
| ବିଜୟମ୍ | = ବିଜୟ | ଚ | = ତଥା |
| ନ, କାଙ୍କ୍ଷେ | = ଚାହୁଁନାହିଁ | ସୁଖାନି | = ସୁଖ (ମଧ୍ୟ) |
| ଚ | = ଓ | ନ | = ଚାହୁଁନାହିଁ । |

| | | | |
|---|---|---|---|
| ଗୋବିନ୍ଦ | = ହେ ଗୋବିନ୍ଦ ! | ଭୋଗୈଃ | = (ଏପରି) ଭୋଗମାନଙ୍କରେ (ଓ) |
| ନଃ | = ଆମର (ଏପରି) | ଜୀବିତେନ | = ଜୀବନରେ (ମଧ୍ୟ) |
| ରାଜ୍ୟେନ | = ରାଜ୍ୟରେ | କିମ୍ | = କି (ଲାଭ ଅଛି) ? |
| କିମ୍ | = କି ପ୍ରୟୋଜନ ଅଛି | | |
| ବା | = ଅଥବା | | |

**ଯେଷାମର୍ଥେ କାଂକ୍ଷିତଂ ନୋ ରାଜ୍ୟଂ ଭୋଗାଃ ସୁଖାନି ଚ ।**
**ତ ଇମେଽବସ୍ଥିତା ଯୁଦ୍ଧେ ପ୍ରାଣାଂସ୍ତ୍ୟକ୍ତ୍ୱା ଧନାନି ଚ ॥ ୩୩ ॥**

ଯେଷାମ୍, ଅର୍ଥେ, କାଙ୍‌କ୍ଷିତମ୍, ନଃ, ରାଜ୍ୟମ୍, ଭୋଗାଃ, ସୁଖାନି, ଚ,
ତେ, ଇମେ, ଅବସ୍ଥିତାଃ, ଯୁଦ୍ଧେ, ପ୍ରାଣାନ୍, ତ୍ୟକ୍ତ୍ୱା, ଧନାନି, ଚ ।।୩୩।।

**କାହିଁକି ନା—**

| | | | |
|---|---|---|---|
| ନଃ | = ଆମର | ତେ | = ସେମାନେ(ହିଁ) |
| ଯେଷାମ୍ | = ଯେଉଁମାନଙ୍କ | ଇମେ | = ଏସବୁ |
| ଅର୍ଥେ | = ପାଇଁ | ଧନାନି | = ଧନ |
| ରାଜ୍ୟମ୍ | = ରାଜ୍ୟ, | ଚ | = ଓ |
| ଭୋଗାଃ | = ଭୋଗ | ପ୍ରାଣାନ୍ | = ଜୀବନର (ଆଶା) |
| ଚ | = ଓ | ତ୍ୟକ୍ତ୍ୱା | = ପରିତ୍ୟାଗ କରି |
| ସୁଖାନି | = ସୁଖାଦି | ଯୁଦ୍ଧେ | = ଯୁଦ୍ଧରେ |
| କାଙ୍‌କ୍ଷିତମ୍ | = ଅଭୀଷ୍ଟ, | ଅବସ୍ଥିତାଃ | = ଠିଆ ହୋଇଛନ୍ତି । |

ଅର୍ଜୁନଙ୍କ ଆଚାର୍ଯ୍ୟାଦିଙ୍କ ଦର୍ଶନ ତଥା ସେମାନଙ୍କୁ ନମାରିବା ପାଇଁ ଇଚ୍ଛା ପ୍ରକଟ ।

**ଆଚାର୍ଯ୍ୟାଃ ପିତରଃ ପୁତ୍ରାସ୍ତଥୈବ ଚ ପିତାମହାଃ ।**
**ମାତୁଳାଃ ଶ୍ୱଶୁରାଃ ପୌତ୍ରାଃ ଶ୍ୟାଳାଃ ସମ୍ବନ୍ଧିନସ୍ତଥା ॥ ୩୪ ॥**

ଆଚାର୍ଯ୍ୟାଃ, ପିତରଃ, ପୁତ୍ରାଃ, ତଥା, ଏବ, ଚ, ପିତାମହାଃ,
ମାତୁଳାଃ, ଶ୍ୱଶୁରାଃ, ପୌତ୍ରାଃ, ଶ୍ୟାଳାଃ, ସମ୍ବନ୍ଧିନଃ, ତଥା ।।୩୪।।

| | | | |
|---|---|---|---|
| ଆଚାର୍ଯ୍ୟାଃ | = ଗୁରୁଜନ, | ଶ୍ୱଶୁରାଃ | = ଶ୍ୱଶୁରମାନେ, |
| ପିତରଃ | = ପିତୃମାନେ, | ପୌତ୍ରାଃ | = ନାତିମାନେ, |
| ପୁତ୍ରାଃ | = ପୁତ୍ରମାନେ | ଶ୍ୟାଳାଃ | = ଶାଳକମାନେ |
| ଚ | = ଏବଂ | ତଥା | = ତଥା |
| ତଥା, ଏବ | = ସେହିପରି | ସମ୍ବନ୍ଧିନଃ | = ଅନ୍ୟ ସମ୍ବନ୍ଧୀୟମାନେ (ମଧ୍ୟ ଅଛନ୍ତି) । |
| ପିତାମହାଃ | = ପିତାମହମାନେ, | | |
| ମାତୁଳାଃ | = ମାମୁମାନେ, | | |

**ଏତାନ୍ନ ହନ୍ତୁମିଚ୍ଛାମି ଘ୍ନତୋଽପି ମଧୁସୂଦନ ।**
**ଅପି ତ୍ରୈଲୋକ୍ୟରାଜ୍ୟସ୍ୟ ହେତୋଃ କିଂ ନୁ ମହୀକୃତେ ॥ ୩୫ ॥**

ଏତାନ୍, ନ, ହନ୍ତୁମ୍, ଇଚ୍ଛାମି, ଘ୍ନତଃ, ଅପି, ମଧୁସୂଦନ,
ଅପି, ତ୍ରୈଲୋକ୍ୟରାଜ୍ୟସ୍ୟ, ହେତୋଃ, କିମ୍, ନୁ, ମହୀକୃତେ ।।୩୫ ।।

**ଏହି କାରଣରୁ—**

| | | | |
|---|---|---|---|
| ମଧୁସୂଦନ | = ହେ ମଧୁସୂଦନ ! | ଅପି | = ମଧ୍ୟ |
| ଘ୍ନତଃ | = (ଏମାନେ ମୋତେ) ମାରିଦେଲେ | ଏତାନ୍ | = (ମୁଁ) ଏମାନଙ୍କୁ |
| | | ହନ୍ତୁମ୍ | = ମାରିବାକୁ |
| | | ନ, ଇଚ୍ଛାମି | = ଚାହେଁ ନାହିଁ ; |
| ଅପି | = ବି (କିମ୍ବା) | ମହୀକୃତେ | = ପୃଥିବୀ ଲାଭ କରିବା ନିମନ୍ତେ (ବା) |
| ତ୍ରୈଲୋକ୍ୟ-ରାଜ୍ୟସ୍ୟ | = ତିନି ଲୋକର ରାଜ୍ୟ ଅଧିକାର | | |
| ହେତୋଃ | = ନିମନ୍ତେ | ନୁ, କିମ୍ | = କହିବା କ'ଣ ? |

ଆତତାୟୀ ହେଲେବି ସ୍ୱଜନଙ୍କୁ ମାରିବା ଦ୍ୱାରା ପାପର ପ୍ରାପ୍ତି ତଥା ସୁଖ ଓ ପ୍ରସନ୍ନତାର ଅଭାବ ।

**ନିହତ୍ୟ ଧାର୍ତ୍ତରାଷ୍ଟ୍ରାନ୍ନଃ କା ପ୍ରୀତିଃ ସ୍ୟାଜ୍ଜନାର୍ଦ୍ଦନ ।**
**ପାପମେବାଶ୍ରୟେଦସ୍ମାନ୍ ହତ୍ୱୈତାନାତତାୟିନଃ ॥ ୩୬ ॥**

ନିହତ୍ୟ, ଧାର୍ତ୍ତରାଷ୍ଟ୍ରାନ୍, ନଃ, କା, ପ୍ରୀତିଃ, ସ୍ୟାତ୍, ଜନାର୍ଦ୍ଦନ,
ପାପମ୍, ଏବ, ଆଶ୍ରୟେତ୍, ଅସ୍ମାନ୍, ହତ୍ୱା, ଏତାନ୍, ଆତତାୟିନଃ ।।୩୬।।

| | | | |
|---|---|---|---|
| ଜନାର୍ଦ୍ଦନ | = ହେ ଜନାର୍ଦ୍ଦନ ! | ଏତାନ୍ | = ଏସବୁ |
| ଧାର୍ତ୍ତରାଷ୍ଟ୍ରାନ୍ | = ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ | ଆତତାୟିନଃ | = ଆତତାୟୀମାନଙ୍କୁ |
| ନିହତ୍ୟ | = ମାରି | ହତ୍ୱା | = ମାରିଲେ (ତ) |
| ନଃ | = ଆମକୁ | ଅସ୍ମାନ୍ | = ଆମକୁ |
| କା | = କେଉଁ | ପାପମ୍ | = ପାପ |
| ପ୍ରୀତିଃ | = ପ୍ରସନ୍ନତା | ଏବ | = ହିଁ |
| ସ୍ୟାତ୍ | = ହେବ ? | ଆଶ୍ରୟେତ୍ | = ଲାଗିବ । |

ତସ୍ମାନ୍ନାର୍ହା ବୟଂ ହନ୍ତୁଂ ଧାର୍ତ୍ତରାଷ୍ଟ୍ରାନ୍ ସ୍ୱବାନ୍ଧବାନ୍ ।
ସ୍ୱଜନଂ ହି କଥଂ ହତ୍ୱା ସୁଖିନଃ ସ୍ୟାମ ମାଧବ ॥ ୩୭ ॥

ତସ୍ମାତ୍, ନ, ଅର୍ହାଃ, ବୟମ୍, ହନ୍ତୁମ୍, ଧାର୍ତ୍ତରାଷ୍ଟ୍ରାନ୍, ସ୍ୱବାନ୍ଧବାନ୍,
ସ୍ୱଜନମ୍, ହି, କଥମ୍, ହତ୍ୱା, ସୁଖିନଃ, ସ୍ୟାମ, ମାଧବ ।।୩୭।।

| | | | |
|---|---|---|---|
| ତସ୍ମାତ୍ | = ତେଣୁ | ନ, ଅର୍ହାଃ | = ଯୋଗ୍ୟ ନୋହୁଁ; |
| ମାଧବ | = ହେ ମାଧବ ! | ହି | = କାରଣ |
| ସ୍ୱବାନ୍ଧବାନ୍, | = ନିଜର ହିଁ ବାନ୍ଧବ | ସ୍ୱଜନମ୍ | = ନିଜ କୁଟୁମ୍ବ ଲୋକଙ୍କୁ |
| ଧାର୍ତ୍ତରାଷ୍ଟ୍ରାନ୍ | = ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କୁ | ହତ୍ୱା | = ମାରି |
| | | କଥମ୍ | = (ଆମେ) କିପରି |
| ହନ୍ତୁମ୍ | = ମାରିବାପାଇଁ | ସୁଖିନଃ | = ସୁଖୀ |
| ବୟମ୍ | = ଆମ୍ଭେମାନେ | ସ୍ୟାମ | = ହେବୁ ? |

ଅର୍ଜୁନ କୁଳକ୍ଷୟ ଏବଂ ମିତ୍ରଦ୍ରୋହ ରୂପକ ପାପରୁ ରକ୍ଷା ପାଇବା ପାଇଁ ଯୁଦ୍ଧ ନ କରିବା ଉଚିତ ବୋଲି କହିବା ।

ଯଦ୍ୟପ୍ୟେତେ ନ ପଶ୍ୟନ୍ତି ଲୋଭୋପହତଚେତସଃ ।
କୁଳକ୍ଷୟକୃତଂ ଦୋଷଂ ମିତ୍ରଦ୍ରୋହେ ଚ ପାତକମ୍ ॥ ୩୮ ॥
କଥଂ ନ ଜ୍ଞେୟମସ୍ମାଭିଃ ପାପାଦସ୍ମାନ୍ନିବର୍ତ୍ତିତୁମ୍ ।
କୁଳକ୍ଷୟକୃତଂ ଦୋଷଂ ପ୍ରପଶ୍ୟଦ୍ଭିର୍ଜନାର୍ଦ୍ଦନ ॥ ୩୯ ॥

ଯଦ୍ୟପି, ଏତେ, ନ, ପଶ୍ୟନ୍ତି, ଲୋଭୋପହତଚେତସଃ, କୁଳକ୍ଷୟକୃତମ୍, ଦୋଷମ୍, ମିତ୍ରଦ୍ରୋହେ, ଚ, ପାତକମ୍ ।।୩୮ ।।
କଥମ୍, ନ, ଜ୍ଞେୟମ୍, ଅସ୍ମାଭିଃ, ପାପାତ୍, ଅସ୍ମାତ୍, ନିବର୍ତ୍ତିତୁମ୍, କୁଳକ୍ଷୟକୃତମ୍, ଦୋଷମ୍, ପ୍ରପଶ୍ୟଦ୍ଭିଃ, ଜନାର୍ଦ୍ଦନ ।।୩୯ ।।

| | | | |
|---|---|---|---|
| ଯଦ୍ୟପି | = ଯଦ୍ୟପି | ଜନାର୍ଦ୍ଦନ | = ହେ ଜନାର୍ଦ୍ଦନ ! |
| ଲୋଭୋପହତ-ଚେତସଃ | = ଲୋଭରେ ଭ୍ରଷ୍ଟଚିତ୍ତ ହୋଇଥିବା | କୁଳକ୍ଷୟକୃତମ୍ | = କୁଳକ୍ଷୟରୁ ଉତ୍ପନ୍ନ |
| ଏତେ | = ଏମାନେ | ଦୋଷମ୍ | = ଦୋଷକୁ |
| କୁଳକ୍ଷୟକୃତମ୍ | = କୁଳକ୍ଷୟ ଜନିତ | ପ୍ରପଶ୍ୟଦ୍ଭିଃ | = ଜାଣି ପାରୁଥିବା |
| ଦୋଷମ୍ | = ଦୋଷକୁ | ଅସ୍ମାଭିଃ | = ଆମ୍ଭେମାନେ |
| ଚ | = ଓ | ଅସ୍ମାତ୍ | = ଏହି |
| ମିତ୍ରଦ୍ରୋହେ | = ମିତ୍ରଦ୍ରୋହ ଜନିତ | ପାପାତ୍ | = ପାପରୁ |
| ପାତକମ୍ | = ପାପକୁ | ନିବର୍ତ୍ତିତୁମ୍ | = ଦୂରେଇ ରହିବାକୁ |
| ନ, ପଶ୍ୟନ୍ତି | = ଦେଖି ପାରୁନାହାଁନ୍ତି; | କଥମ୍ | = କାହିଁକି |
| | | ନ, ଜ୍ଞେୟମ୍ | = ବିଚାର ନ କରିବୁ ? |

କୁଳନାଶରୁ ଉତ୍ପନ୍ନ ହେବା ଦୋଷମାନଙ୍କ ବିସ୍ତୃତ ବର୍ଣ୍ଣନା ।

କୁଳକ୍ଷୟେ ପ୍ରଣଶ୍ୟନ୍ତି କୁଳଧର୍ମାଃ ସନାତନାଃ ।
ଧର୍ମେ ନଷ୍ଟେ କୁଳଂ କୃତ୍ସ୍ନମଧର୍ମୋଽଭିଭବତ୍ୟୁତ ॥ ୪୦ ॥

କୁଳକ୍ଷୟେ, ପ୍ରଣଶ୍ୟନ୍ତି, କୁଳଧର୍ମାଃ, ସନାତନାଃ, ଧର୍ମେ, ନଷ୍ଟେ, କୁଳମ୍, କୃତ୍ସ୍ନମ୍, ଅଧର୍ମଃ, ଅଭିଭବତି, ଉତ ।।୪୦ ।।

କାରଣ—

| | | | |
|---|---|---|---|
| କୁଳକ୍ଷୟେ | = କୁଳନାଶ ହେଲେ | କୃତ୍ସ୍ନମ୍ | = ସମ୍ପୂର୍ଣ୍ଣ |
| ସନାତନାଃ | = ସନାତନ | କୁଳମ୍ | = କୁଳକୁ |
| କୁଳଧର୍ମାଃ | = କୁଳଧର୍ମ | ଅଧର୍ମଃ | = ପାପ |
| ପ୍ରଣଶ୍ୟନ୍ତି | = ନଷ୍ଟ ହୋଇଯାଏ, | ଉତ | = ମଧ୍ୟ |
| ଧର୍ମେ | = ଧର୍ମ | ଅଭିଭବତି | = ବିଶେଷଭାବରେ ବ୍ୟାପିଯାଏ। |
| ନଷ୍ଟେ | = ନଷ୍ଟ ହୋଇଗଲେ | | |

**ଅଧର୍ମାଭିଭବାତ୍‌କୃଷ୍ଣ ପ୍ରଦୁଷ୍ୟନ୍ତି କୁଳସ୍ତ୍ରିୟଃ ।**
**ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ଜାୟତେ ବର୍ଣ୍ଣସଙ୍କରଃ ॥ ୪୧ ॥**

ଅଧର୍ମାଭିଭବାତ୍, କୃଷ୍ଣ, ପ୍ରଦୁଷ୍ୟନ୍ତି, କୁଳସ୍ତ୍ରିୟଃ,
ସ୍ତ୍ରୀଷୁ, ଦୁଷ୍ଟାସୁ, ବାର୍ଷ୍ଣେୟ, ଜାୟତେ, ବର୍ଣ୍ଣସଙ୍କରଃ ।।୪୧।।

ତଥା—

| | | | |
|---|---|---|---|
| କୃଷ୍ଣ | = ହେ କୃଷ୍ଣ ! | | (ଏବଂ) |
| ଅଧର୍ମାଭିଭବାତ୍ | = ପାପ ଅଧିକ ବଢ଼ି ଗଲେ | ବାର୍ଷ୍ଣେୟ | = ହେ ବାର୍ଷ୍ଣେୟ ! |
| | | ସ୍ତ୍ରୀଷୁ | = ସ୍ତ୍ରୀମାନେ |
| କୁଳସ୍ତ୍ରିୟଃ | = କୁଳସ୍ତ୍ରୀମାନେ | ଦୁଷ୍ଟାସୁ | = ଦୂଷିତା ହୋଇଗଲେ |
| ପ୍ରଦୁଷ୍ୟନ୍ତି | = ଅତ୍ୟନ୍ତ ଦୂଷିତା ହୋଇଯାଆନ୍ତି | ବର୍ଣ୍ଣସଂକରଃ | = ବର୍ଣ୍ଣସଂକର |
| | | ଜାୟତେ | = ଉତ୍ପନ୍ନ ହୁଏ - |

**ସଙ୍କରୋ ନରକାୟୈବ କୁଳଘ୍ନାନାଂ କୁଳସ୍ୟ ଚ ।**
**ପତନ୍ତି ପିତରୋ ହ୍ୟେଷାଂ ଲୁପ୍ତପିଣ୍ଡୋଦକକ୍ରିୟାଃ ॥ ୪୨ ॥**

ସଙ୍କରଃ, ନରକାୟ, ଏବ, କୁଳଘ୍ନାନାମ୍, କୁଳସ୍ୟ, ଚ,
ପତନ୍ତି, ପିତରଃ, ହି, ଏଷାମ୍, ଲୁପ୍ତପିଣ୍ଡୋଦକକ୍ରିୟାଃ ।।୪୨।।

ଏବଂ ସେମାନେ–

| | | | | | |
|---|---|---|---|---|---|
| ସଙ୍କରଃ | = | ବର୍ଣ୍ଣସଙ୍କର | ଦକକ୍ରିୟା | | ଜଳଦାନ-କ୍ରିୟା ଲୁପ୍ତ ହୋଇ (ଶ୍ରାଦ୍ଧ ଓ ତର୍ପଣରୁ ବଞ୍ଚିତ ହୋଇ) |
| କୁଳଘ୍ନାନାମ୍ | = | କୁଳନାଶକାରୀ ମାନଙ୍କୁ | | | |
| ଚ | = | ଓ | | | |
| କୁଳସ୍ୟ | = | କୁଳକୁ | ଏଷାମ୍ | = | ଏମାନଙ୍କର |
| ନରକାୟ | = | ନରକକୁ ନେଇଯିବାଲାଗି | ପିତରଃ | = | ପିତୃଲୋକମାନେ |
| | | | ହି | = | ବି |
| ଏବ | = | ହିଁ (ହୋଇଥାଏ) । | ପତନ୍ତି | = | ଅଧୋଗତିକୁ ପ୍ରାପ୍ତ ହୁଅନ୍ତି । |
| ଲୁପ୍ତପିଣ୍ଡୋ- | = | ପିଣ୍ଡ ଓ | | | |

**ଦୋଷୈରେତୈଃ କୁଳଘ୍ନାନାଂ ବର୍ଣ୍ଣସଙ୍କରକାରକୈଃ ।**
**ଉତ୍ସାଦ୍ୟନ୍ତେ ଜାତିଧର୍ମାଃ କୁଳଧର୍ମାଶ୍ଚ ଶାଶ୍ୱତାଃ ॥ ୪୩ ॥**

ଦୋଷୈଃ, ଏତୈଃ, କୁଳଘ୍ନାନାମ୍, ବର୍ଣ୍ଣସଙ୍କରକାରକୈଃ,
ଉତ୍‌ସାଦ୍ୟନ୍ତେ, ଜାତିଧର୍ମାଃ, କୁଳଧର୍ମାଃ, ଚ, ଶାଶ୍ୱତାଃ ।।୪୩।।

ଏବଂ–

| | | | | | |
|---|---|---|---|---|---|
| ଏତୈଃ | = | ଏହି | ଶାଶ୍ୱତାଃ | = | ସନାତନ |
| ବର୍ଣ୍ଣସଙ୍କର- | = | ବର୍ଣ୍ଣସଙ୍କର | କୁଳଧର୍ମାଃ | = | କୁଳଧର୍ମ |
| କାରକୈଃ | | କାରକ | ଚ | = | ଓ |
| ଦୋଷୈଃ | = | ଦୋଷମାନଙ୍କଦ୍ୱାରା | ଜାତିଧର୍ମାଃ | = | ଜାତିଧର୍ମ |
| କୁଳଘ୍ନାନାମ୍ | = | କୁଳଘାତକ ମାନଙ୍କର | ଉତ୍ସାଦ୍ୟନ୍ତେ | = | ନଷ୍ଟ ହୋଇଯାଏ । |

**ଉତ୍ସନ୍ନକୁଳଧର୍ମାଣାଂ ମନୁଷ୍ୟାଣାଂ ଜନାର୍ଦ୍ଦନ ।**
**ନରକେଽନିୟତଂ ବାସୋ ଭବତୀତ୍ୟନୁଶୁଶ୍ରୁମ ॥ ୪୪ ॥**

ଉତ୍‌ସନ୍ନକୁଳଧର୍ମାଣାମ୍, ମନୁଷ୍ୟାଣାମ୍, ଜନାର୍ଦ୍ଦନ,
ନରକେ, ଅନିୟତମ୍, ବାସଃ, ଭବତି, ଇତି, ଅନୁଶୁଶ୍ରୁମ ।।୪୪।।

ତଥା–

| | | | |
|---|---|---|---|
| ଜନାର୍ଦ୍ଦନ | = ହେ ଜନାର୍ଦ୍ଦନ ! | ନରକେ | = ନରକରେ |
| ଉତ୍ସନ୍ନକୁଳ-ଧର୍ମାଣାମ୍ | = ଯେଉଁମାନଙ୍କର କୁଳଧର୍ମ ନଷ୍ଟ ହୋଇଯାଇଛି (ସେପରି) | ବାସଃ | = ବାସ |
| | | ଭବତି | = ହୁଏ, |
| | | ଇତି | = ଏପରି (ବୋଲି) |
| ମନୁଷ୍ୟାଣାମ୍ | = ମନୁଷ୍ୟମାନଙ୍କର | | |
| ଅନିୟତମ୍ | = ଅନିଶ୍ଚିତ କାଳ ପର୍ଯ୍ୟନ୍ତ | ଅନୁଶୁଶ୍ରୁମ | = (ଆମେ) ଶୁଣିଆସିଛୁ । |

ରାଜ୍ୟସୁଖ ଲୋଭରେ ସ୍ୱଜନଙ୍କୁ ମାରିବା ପାଇଁ କରାଯାଇଥିବା ଯୁଦ୍ଧକୁ ମହାନ ପାପର ଆରମ୍ଭ ବୋଲି କହି ଅର୍ଜୁନ ଦୁର୍ଯ୍ୟୋଧନ ଦ୍ୱାରା ନିହତ ହେବାକୁ ଶ୍ରେୟ ବୋଲି କହିବା ।

**ଅହୋ ବତ ମହତ୍ପାପଂ କର୍ତ୍ତୁଂ ବ୍ୟବସିତା ବୟମ୍ ।**
**ଯଦ୍‌ରାଜ୍ୟସୁଖଲୋଭେନ ହନ୍ତୁଂ ସ୍ୱଜନମୁଦ୍ୟତାଃ ॥ ୪୫ ॥**

ଅହୋ, ବତ, ମହତ୍, ପାପମ୍, କର୍ତ୍ତୁମ୍, ବ୍ୟବସିତାଃ, ବୟମ୍,
ଯତ୍, ରାଜ୍ୟସୁଖଲୋଭେନ, ହନ୍ତୁମ୍, ସ୍ୱଜନମ୍, ଉଦ୍ୟତାଃ ।।୪୫।।

| | | | |
|---|---|---|---|
| ଅହୋ | = ହାୟ ! | ଯତ୍ | = ଯେ |
| ବତ | = (କି) ଦୁଃଖର କଥା ! | ରାଜ୍ୟସୁଖ-ଲୋଭେନ | = ରାଜ୍ୟ ଓ ସୁଖପ୍ରାପ୍ତି ଲୋଭରେ |
| ବୟମ୍ | = ଆମେ (ବୁଦ୍ଧିମାନ୍ ହୋଇ ମଧ୍ୟ) | | |
| ମହତ୍ | = ମହା | ସ୍ୱଜନମ୍ | = ଆତ୍ମୀୟ ସ୍ୱଜନଙ୍କୁ |
| ପାପମ୍ | = ପାପ | | |
| କର୍ତ୍ତୁମ୍ | = କରିବାକୁ | ହନ୍ତୁମ୍ | = ମାରିଦେବାକୁ |
| ବ୍ୟବସିତାଃ | = ପ୍ରସ୍ତୁତ ହୋଇଯାଉଛୁ, | ଉଦ୍ୟତାଃ | = ଉଦ୍ୟତ ହୋଇଯାଇଛୁ । |

ଯଦି ମାମପ୍ରତୀକାରମଶସ୍ତ୍ରଂ ଶସ୍ତ୍ରପାଣୟଃ ।
ଧାର୍ତ୍ତରାଷ୍ଟ୍ରା ରଣେ ହନ୍ୟୁସ୍ତନ୍ମେ କ୍ଷେମତରଂ ଭବେତ୍ ॥ ୪୬ ॥

ଯଦି, ମାମ୍, ଅପ୍ରତୀକାରମ୍, ଅଶସ୍ତ୍ରମ୍, ଶସ୍ତ୍ରପାଣୟଃ, ଧାର୍ତ୍ତରାଷ୍ଟ୍ରାଃ, ରଣେ, ହନ୍ୟୁଃ, ତତ୍, ମେ, କ୍ଷେମତରମ୍, ଭବେତ୍ ।।୪୬।।

| | | | |
|---|---|---|---|
| ଯଦି | = ଯଦି | ଅପ୍ରତୀକାରମ୍ | = ପ୍ରତୀକାରରହିତ |
| ଶସ୍ତ୍ରପାଣୟଃ | = ହାତରେ ଅସ୍ତ୍ରଶସ୍ତ୍ର ଧରିଥିବା | ଅଶସ୍ତ୍ରମ୍ | = (ଓ) ଶସ୍ତ୍ରବିହୀନ |
| | | ମାମ୍ | = ମୋତେ |
| | | ହନ୍ୟୁଃ | = ମାରିଦିଅନ୍ତି, |
| ଧାର୍ତ୍ତରାଷ୍ଟ୍ରାଃ | = ଧୃତରାଷ୍ଟ୍ରଙ୍କ ପକ୍ଷର ଲୋକେ | ତତ୍ | = ତାହା |
| | | ମେ | = ମୋ ପାଇଁ |
| ରଣେ | = ରଣ ପ୍ରାଙ୍ଗଣରେ | କ୍ଷେମତରମ୍ | = ଅତି ହିତକର |
| | | ଭବେତ୍ | = ହେବ । |

### ସଞ୍ଜୟ ଉବାଚ

ଯୁଦ୍ଧ ନ କରିବା ପାଇଁ ନିଶ୍ଚୟ କରି ଶୋକମଗ୍ନ ଅର୍ଜୁନ ଶସ୍ତ୍ରତ୍ୟାଗ ପୂର୍ବକ ରଥ ଉପରେ ବସିଯିବା କଥାକୁ କହି ସଂଜୟ ଅଧ୍ୟାୟର ସମାପ୍ତି କରୁଛନ୍ତି ।

ଏବମୁକ୍ତ୍ୱାର୍ଜୁନଃ ସଙ୍ଖ୍ୟେ ରଥୋପସ୍ଥ ଉପାବିଶତ୍ ।
ବିସୃଜ୍ୟ ସଶରଂ ଚାପଂ ଶୋକସଂବିଗ୍ନମାନସଃ ॥ ୪୭ ॥

ଏବମ୍, ଉକ୍ତ୍ୱା, ଅର୍ଜୁନଃ, ସଂଖ୍ୟେ, ରଥୋପସ୍ଥେ, ଉପାବିଶତ୍, ବିସୃଜ୍ୟ, ସଶରମ୍, ଚାପମ୍, ଶୋକସଂବିଗ୍ନମାନସଃ ।।୪୭।।

### ସଂଜୟ କହିଲେ—

| | | | |
|---|---|---|---|
| ସଂଖ୍ୟେ | = ରଣଭୂମିରେ | ଅର୍ଜୁନଃ | = ଅର୍ଜୁନ |
| ଶୋକସଂବିଗ୍ନ-ମାନସଃ | = ଶୋକରେ ଉଦ୍‌ବିଗ୍ନମନା | ଏବମ୍ | = ଏପରି |
| | | ଉକ୍ତ୍ୱା | = କହି |

| | | | |
|---|---|---|---|
| ସଶରମ୍ | = ବାଣସହିତ | ରଥୋପସ୍ଥେ | = ରଥର ପଛପଟେ |
| ଚାପମ୍ | = ଧନୁକୁ | | |
| ବିସୃଜ୍ୟ | = ତ୍ୟାଗ କରିଦେଇ | ଉପାବିଶତ୍ | = ବସିପଡ଼ିଲେ । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ*
*ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଅର୍ଜୁନବିଷାଦଯୋଗୋ*
*ନାମ ପ୍ରଥମୋଽଧ୍ୟାୟଃ ॥ ୧ ॥*



**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ଅର୍ଜୁନବିଷାଦଯୋଗ' ନାମକ ପ୍ରଥମ ଅଧ୍ୟାୟ ପୂର୍ଣ୍ଣ ହେଲା ।।୧ ।।**

**ହରିଃ ଓଁ ତତ୍ସତ୍ ହରିଃ ଓଁ ତତ୍ସତ୍ ହରିଃ ଓଁ ତତ୍ସତ୍**

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଦ୍ୱିତୀୟ ଅଧ୍ୟାୟ

## ସାଙ୍ଖ୍ୟଯୋଗ

**ପ୍ରଧାନ ବିଷୟ**

୧ ରୁ ୧୦ ଅର୍ଜୁନଙ୍କ କାପୁରୁଷତା ବିଷୟରେ ଶ୍ରୀକୃଷ୍ଣାର୍ଜୁନ ସଂବାଦ,
୧୧ ରୁ ୩୦ ସାଂଖ୍ୟ-ଯୋଗର ବିଷୟ,
୩୧ ରୁ ୩୮ କ୍ଷାତ୍ରଧର୍ମ ଅନୁସାରେ ଯୁଦ୍ଧ କରିବା ପାଇଁ ଆବଶ୍ୟକତାର ନିରୂପଣ,
୩୯ ରୁ ୫୩ ନିଷ୍କାମ କର୍ମଯୋଗର ବିଷୟ,
୫୪ ରୁ ୭୨ ସ୍ଥିରବୁଦ୍ଧି ପୁରୁଷଙ୍କ ଲକ୍ଷଣ ତଥା ତାହାର ମହିମା ।

*ସଞ୍ଜୟ ଉବାଚ*

ସଞ୍ଜୟଙ୍କ ଦ୍ୱାରା ଅର୍ଜୁନଙ୍କ ବିଷାଦର ବର୍ଣ୍ଣନ ।

**ତଂ ତଥା କୃପୟାବିଷ୍ଟମଶ୍ରୁପୂର୍ଣ୍ଣାକୁଲେକ୍ଷଣମ୍ ।**
**ବିଷୀଦନ୍ତମିଦଂ ବାକ୍ୟମୁବାଚ ମଧୁସୂଦନଃ ॥ ୧ ॥**

ତମ୍, ତଥା, କୃପୟା, ଆବିଷ୍ଟମ୍, ଅଶ୍ରୁପୂର୍ଣ୍ଣାକୁଲେକ୍ଷଣମ୍,
ବିଷୀଦନ୍ତମ୍, ଇଦମ୍, ବାକ୍ୟମ୍, ଉବାଚ, ମଧୁସୂଦନଃ ।।୧।।

**ସଞ୍ଜୟ କହିଲେ—**

| | | | | | |
|---|---|---|---|---|---|
| ତଥା | = | ସେପରି | ତମ୍ | = | ସେହି ଅର୍ଜୁନଙ୍କୁ |
| କୃପୟା | = | କରୁଣାରେ | ମଧୁସୂଦନଃ | = | ଭଗବାନ୍ ମଧୁସୂଦନ |
| ଆବିଷ୍ଟମ୍ | = | ବ୍ୟାପ୍ତ (ଏବଂ) | ଇଦମ୍ | = | ଏହି |
| ଅଶ୍ରୁପୂର୍ଣ୍ଣା-କୁଲେକ୍ଷଣମ୍ | = | ଅଶ୍ରୁଦ୍ୱାରା ପୂର୍ଣ୍ଣ ତଥା ବ୍ୟାକୁଳ ନେତ୍ରଯୁକ୍ତ | ବାକ୍ୟମ୍ | = | କଥା |
| ବିଷୀଦନ୍ତମ୍ | = | ଶୋକାକୁଳ | ଉବାଚ | = | କହିଲେ । |

## ଶ୍ରୀଭଗବାନ ଉବାଚ

ଶ୍ରୀକୃଷ୍ଣଙ୍କ ଦ୍ୱାରା ଅର୍ଜୁନଙ୍କ ମୋହ ତଥା କାପୁରୁଷତାଯୁକ୍ତ ବିଷାଦର ନିନ୍ଦା ଏବଂ ଅର୍ଜୁନଙ୍କୁ ଯୁଦ୍ଧ ପାଇଁ ଉତ୍ସାହିତ କରିବା ।

କୁତସ୍ତ୍ୱା କଶ୍ମଲମିଦଂ ବିଷମେ ସମୁପସ୍ଥିତମ୍ ।
ଅନାର୍ଯ୍ୟଜୁଷ୍ଟମସ୍ୱର୍ଗ୍ୟମକୀର୍ତ୍ତିକରମର୍ଜୁନ ॥ ୨ ॥

କୁତଃ, ତ୍ୱା, କଶ୍ମଲମ୍, ଇଦମ୍, ବିଷମେ, ସମୁପସ୍ଥିତମ୍,
ଅନାର୍ଯ୍ୟଜୁଷ୍ଟମ୍, ଅସ୍ୱର୍ଗ୍ୟମ୍, ଅକୀର୍ତ୍ତିକରମ୍, ଅର୍ଜୁନ ।।୨।।

**ଶ୍ରୀଭଗବାନ କହିଲେ—**

ଅର୍ଜୁନ = ହେ ଅର୍ଜୁନ !
ତ୍ୱା = ତୁମକୁ
ବିଷମେ = ଏହି ଅସମୟରେ
ଇଦମ୍ = ଏହି
କଶ୍ମଲମ୍ = ମୋହ
କୁତଃ = କେଉଁଠାରୁ (କି ହେତୁରୁ)
ସମୁପସ୍ଥିତମ୍ = ପ୍ରାପ୍ତ ହେଲା ?

ଅନାର୍ଯ୍ୟଜୁଷ୍ଟମ୍ = (ଯାହାକି) ଶ୍ରେଷ୍ଠ ପୁରୁଷମାନଙ୍କ ଦ୍ୱାରା ଆଚରିତ ନୁହେଁ;
ଅସ୍ୱର୍ଗ୍ୟମ୍ = ସ୍ୱର୍ଗଗତି ପ୍ରଦାୟକ ନୁହେଁ, (ଏବଂ)
ଅକୀର୍ତ୍ତିକରମ୍ = କୀର୍ତ୍ତିଦାୟକ ମଧ୍ୟ ନୁହେଁ ।

କ୍ଲୈବ୍ୟଂ ମା ସ୍ମ ଗମଃ ପାର୍ଥ ନୈତତ୍ତ୍ୱୟ୍ୟୁପପଦ୍ୟତେ ।
କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ ॥ ୩ ॥

କ୍ଲୈବ୍ୟମ୍, ମା, ସ୍ମ, ଗମଃ, ପାର୍ଥ, ନ, ଏତତ୍, ତ୍ୱୟି, ଉପପଦ୍ୟତେ,
କ୍ଷୁଦ୍ରମ୍, ହୃଦୟଦୌର୍ବଲ୍ୟମ୍, ତ୍ୟକ୍ତ୍ୱା, ଉତ୍ତିଷ୍ଠ, ପରନ୍ତପ ।।୩।।

ପାର୍ଥ = (ତେଣୁ) ହେ ଅର୍ଜୁନ !
କ୍ଲୈବ୍ୟମ୍ = ନପୁଂସକତାକୁ
ମା, ସ୍ମ, ଗମଃ = ପ୍ରାପ୍ତ ହୁଅ ନାହିଁ ।

ତ୍ୱୟି = ତୁମ ପକ୍ଷରେ
ଏତତ୍ = ଏହା
ନ, ଉପପଦ୍ୟତେ = ଉଚିତ ନୁହେଁ ।
ପରନ୍ତପ = ହେ ଶତ୍ରୁତାପନ !

| | | | |
|---|---|---|---|
| କ୍ଷୁଦ୍ରମ୍, ହୃଦୟ-ଦୌର୍ବଲ୍ୟମ୍ | = ହୃଦୟର ଏହି ତୁଚ୍ଛ ଦୁର୍ବଳତାକୁ | ଉତ୍ତିଷ୍ଠ | = (ଯୁଦ୍ଧ କରିବାକୁ) ଠିଆ ହୋଇଯାଅ । |
| ତ୍ୟକ୍ତ୍ୱା | = ତ୍ୟାଗକରି | | |

*ଅର୍ଜୁନ ଉବାଚ*

ଭୀଷ୍ମ-ଦ୍ରୋଣ ଆଦି ପୂଜ୍ୟ ଗୁରୁଜନଙ୍କୁ ମାରିବା ଅପେକ୍ଷା ଭିକ୍ଷା ଦ୍ୱାରା ଜୀବନ ନିର୍ବାହ ଶ୍ରେଷ୍ଠ ବୋଲି ଅର୍ଜୁନଙ୍କ ଉକ୍ତି ।

**କଥଂ ଭୀଷ୍ମମହଂ ସଙ୍ଖ୍ୟେ ଦ୍ରୋଣଂ ଚ ମଧୁସୂଦନ ।**
**ଇଷୁଭିଃ ପ୍ରତିଯୋତ୍ସ୍ୟାମି ପୂଜାର୍ହାବରିସୂଦନ ॥ ୪ ॥**

କଥମ୍, ଭୀଷ୍ମମ୍, ଅହମ୍, ସଂଖ୍ୟେ, ଦ୍ରୋଣମ୍, ଚ, ମଧୁସୂଦନ,
ଇଷୁଭିଃ, ପ୍ରତି, ଯୋତ୍ସ୍ୟାମି, ପୂଜାର୍ହୌ, ଅରିସୂଦନ ।।୪।।

**ସେତେବେଳେ ଅର୍ଜୁନ କହିଲେ ଯେ—**

| | | | |
|---|---|---|---|
| ମଧୁସୂଦନ | = ହେ ମଧୁସୂଦନ ! | ଦ୍ରୋଣମ୍ | = ଦ୍ରୋଣାଚାର୍ଯ୍ୟଙ୍କ |
| ଅହମ୍ | = ମୁଁ | ପ୍ରତି,ଯୋତ୍ସ୍ୟାମି | = ବିରୁଦ୍ଧରେ ଲଢ଼ିବି ? |
| ସଂଖ୍ୟେ | = ରଣଭୂମିରେ | (ଯତଃ) | = ଯେଣୁ |
| କଥମ୍ | = କିପରି | ଅରିସୂଦନ | = ହେ ଅରିସୂଦନ ! |
| ଇଷୁଭିଃ | = ବାଣମାନଙ୍କ ଦ୍ୱାରା | (ତୌ) | = ଏ ଦୁହେଁ |
| ଭୀଷ୍ମମ୍ | = ଭୀଷ୍ମ ପିତାମହ | ପୂଜାର୍ହୌ | = (ତ ମୋର) ପୂଜନୀୟ ଅଟନ୍ତି । |
| ଚ | = ଓ | | |

**ଗୁରୂନହତ୍ୱା ହି ମହାନୁଭାବାନ୍**
**ଶ୍ରେୟୋ ଭୋକ୍ତୁଂ ଭୈକ୍ଷ୍ୟମପୀହ ଲୋକେ ।**
**ହତ୍ୱାର୍ଥକାମାଂସ୍ତୁ ଗୁରୂନିହୈବ**
**ଭୁଞ୍ଜୀୟ ଭୋଗାନ୍ ରୁଧିରପ୍ରଦିଗ୍ଧାନ୍ ॥ ୫ ॥**

ଗୁରୂନ୍, ଅହତ୍ୱା, ହି, ମହାନୁଭାବାନ୍,
ଶ୍ରେୟଃ, ଭୋକ୍ତୁମ୍, ଭୈକ୍ଷ୍ୟମ୍, ଅପି, ଇହ, ଲୋକେ,
ହତ୍ୱା, ଅର୍ଥକାମାନ୍, ତୁ, ଗୁରୂନ୍, ଇହ, ଏବ,
ଭୁଞ୍ଜୀୟ, ଭୋଗାନ୍, ରୁଧିରପ୍ରଦିଗ୍ଧାନ୍ ।।୫।।

**ଏହି କାରଣରୁ ଏହି—**

| | | | |
|---|---|---|---|
| ମହାନୁଭାବାନ୍ | = ମହାନୁଭାବ | ହି | = କାହିଁକିନା |
| ଗୁରୂନ୍ | = ଗୁରୁଜନମାନଙ୍କୁ | ଗୁରୂନ୍ | = ଗୁରୁଜନମାନଙ୍କୁ |
| ଅହତ୍ୱା | = ନ ମାରି | ହତ୍ୱା | = ମାରିଲେ |
| | (ମୁଁ) | (ଅପି) | = ମଧ୍ୟ |
| ଇହ, ଲୋକେ | = ଏହି ଲୋକରେ | ଇହ | = ଏହି ଲୋକରେ |
| ଭୈକ୍ଷ୍ୟମ୍ | = ଭିକ୍ଷାନ୍ନ | ରୁଧିରପ୍ରଦିଗ୍ଧାନ୍ | = ରକ୍ତସିକ୍ତ |
| ଭୋକ୍ତୁମ୍ | = ଭକ୍ଷଣ କରିବାକୁ | ଅର୍ଥକାମାନ୍ | = ଅର୍ଥ ଓ କାମରୂପକ |
| ଅପି | = ମଧ୍ୟ | ଭୋଗାନ୍, ଏବ | = ଭୋଗମାନଙ୍କୁ ହିଁ |
| ଶ୍ରେୟଃ | = କଲ୍ୟାଣକାରକ (ବୋଲି ମନେ କରୁଛି) । | ତୁ | = ତ |
| | | ଭୁଞ୍ଜୀୟ | = ଭୋଗ କରିବି ! |

ଯୁଦ୍ଧ କରିବା ବା ନକରିବା ବିଷୟରେ ଅର୍ଜୁନଙ୍କ ସଂଶୟ ।

**ନ ଚୈତଦ୍‌ବିଦ୍ମଃ କତରନ୍ନୋ ଗରୀୟୋ**
**ଯଦ୍‌ବା ଜୟେମ ଯଦି ବା ନୋ ଜୟେୟୁଃ ।**
**ଯାନେବ ହତ୍ୱା ନ ଜିଜୀବିଷାମ-**
**ସ୍ତେଽବସ୍ଥିତାଃ ପ୍ରମୁଖେ ଧାର୍ତ୍ତରାଷ୍ଟ୍ରାଃ ॥ ୬ ॥**

ନ, ଚ, ଏତତ୍, ବିଦ୍ମଃ, କତରତ୍, ନଃ, ଗରୀୟଃ,
ଯତ୍, ବା, ଜୟେମ, ଯଦି, ବା, ନଃ, ଜୟେୟୁଃ,
ଯାନ୍, ଏବ, ହତ୍ୱା, ନ, ଜିଜୀବିଷାମଃ,
ତେ, ଅବସ୍ଥିତାଃ, ପ୍ରମୁଖେ, ଧାର୍ତ୍ତରାଷ୍ଟ୍ରାଃ ।।୬।।

| | | | |
|---|---|---|---|
| ନଃ | = ଆମର (ଯୁଦ୍ଧ କରିବା କିମ୍ବା ନ କରିବା) | ଚ | = ବି |
| କତରତ୍ | = ଏହି ଦୁଇଟି ମଧ୍ୟରୁ କେଉଁଟି | (ନ, ବିଦ୍ମଃ) | = ଜାଣି ନାହୁଁ । |
| ଗରୀୟଃ | = ଶ୍ରେଷ୍ଠ | ଯାନ୍ | = ଯେଉଁମାନଙ୍କୁ |
| ନ, ବିଦ୍ମଃ | = ଜାଣି ନାହୁଁ (କି) | ହତ୍ୱା | = ମାରି |
| ଯତ୍, ବା, | = ଆମେ ସେମାନଙ୍କୁ | ନ, ଜିଜୀବିଷାମଃ | = ଆମେ ବଞ୍ଚିବାକୁ ବି ଇଚ୍ଛା କରୁନା (ଆମର ଆତ୍ମୀୟ) |
| ଜୟେମ | = ଜିତିବୁ | ତେ | = ସେହି |
| ଯଦି, ବା | = ଅଥବା | ଧାର୍ତ୍ତରାଷ୍ଟ୍ରାଃ | = ଧୃତରାଷ୍ଟ୍ରଙ୍କ ପୁତ୍ରମାନେ |
| ନଃ | = ଆମକୁ | ଏବ | = ହିଁ |
| ଜୟେୟୁଃ | = (ସେମାନେ) ଜିତିବେ | ପ୍ରମୁଖେ | = (ଆମ) ସମ୍ମୁଖରେ |
| ଏତତ୍ | = (ଆମେ) ଏ କଥା | ଅବସ୍ଥିତାଃ | = (ଯୁଦ୍ଧ ପାଇଁ) ଠିଆ ହୋଇଛନ୍ତି । |

ମୋହ ଏବଂ କାପୁରୁଷତା ଦୋଷର ବର୍ଣ୍ଣନା ତଥା ଭଗବାନଙ୍କ ଶରଣ ହୋଇ କଲ୍ୟାଣପ୍ରଦ ଉପଦେଶ ପାଇଁ ଅର୍ଜୁନଙ୍କ ପ୍ରାର୍ଥନା ।

**କାର୍ପଣ୍ୟଦୋଷୋପହତସ୍ୱଭାବଃ**
**ପୃଚ୍ଛାମି ତ୍ୱାଂ ଧର୍ମସମ୍ମୂଢଚେତାଃ ।**
**ଯଚ୍ଛ୍ରେୟଃ ସ୍ୟାନ୍ନିଶ୍ଚିତଂ ବ୍ରୂହି ତନ୍ମେ**
**ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନମ୍ ॥ ୭ ॥**

କାର୍ପଣ୍ୟଦୋଷୋପହତସ୍ୱଭାବଃ,
ପୃଚ୍ଛାମି, ତ୍ୱାମ୍, ଧର୍ମସଂମୂଢଚେତାଃ,
ଯତ୍, ଶ୍ରେୟଃ, ସ୍ୟାତ୍, ନିଶ୍ଚିତମ୍, ବ୍ରୂହି, ତତ୍, ମେ,
ଶିଷ୍ୟଃ, ତେ, ଅହମ୍, ଶାଧି, ମାମ୍, ତ୍ୱାମ୍, ପ୍ରପନ୍ନମ୍, ।।୭।।

**ଏହି କାରଣରୁ କି—**

| | | | |
|---|---|---|---|
| କାର୍ପଣ୍ୟ- ଦୋଷୋପହତ- | = କାପୁରୁଷତା ରୂପକ ଦୋଷ ହେତୁ | ସ୍ୱଭାବଃ | ନଷ୍ଟସ୍ୱଭାବଯୁକ୍ତ (ତଥା) |

| | | | |
|---|---|---|---|
| ଧର୍ମସମ୍ମୂଢଚେତାଃ | = ଧର୍ମ ସମ୍ବନ୍ଧରେ ମୋହିତ ଚିତ୍ତ ହୋଇଥିବା (ମୁଁ) | ମେ | = ମୋତେ |
| ତ୍ୱାମ୍ | = ଆପଣଙ୍କୁ | ବ୍ରୂହି | = କହନ୍ତୁ; (କାରଣ) |
| ପୃଚ୍ଛାମି | = ପଚାରୁଅଛି (ଯେ) | ଅହମ୍ | = ମୁଁ |
| ଯତ୍ | = ଯାହା କରିବା | ତେ | = ଆପଣଙ୍କର |
| ନିଶ୍ଚିତମ୍ | = ନିଶ୍ଚିତଭାବରେ | ଶିଷ୍ୟଃ | = ଶିଷ୍ୟ (ତେଣୁ) |
| ଶ୍ରେୟଃ | = କଲ୍ୟାଣପ୍ରଦ | ତ୍ୱାମ୍ | = ଆପଣଙ୍କ |
| ସ୍ୟାତ୍ | = ଅଟେ, | ପ୍ରପନ୍ନମ୍ | = ଶରଣାଗତ ହୋଇଥିବା |
| ତତ୍ | = ତାହା | ମାମ୍ | = ମୋତେ |
| | | ଶାଧି | = ଉପଦେଶ ଦିଅନ୍ତୁ । |

ଅର୍ଜୁନ ତିନି ଲୋକର ନିଷ୍କଣ୍ଟକ ରାଜ୍ୟ ବି ଶୋକ ନିବାରଣର କାରଣ ମାନୁନଥିବା ତଥା ବୈରାଗ୍ୟ ଭାବ ପ୍ରଦର୍ଶିତ କରିବା ।

**ନ ହି ପ୍ରପଶ୍ୟାମି ମମାପନୁଦ୍ୟାଦ୍**
**ଯଚ୍ଛୋକମୁଚ୍ଛୋଷଣମିନ୍ଦ୍ରିୟାଣାମ୍ ।**
**ଅବାପ୍ୟ ଭୂମାବସପତ୍ନମୃଦ୍ଧଂ**
**ରାଜ୍ୟଂ ସୁରାଣାମପି ଚାଧିପତ୍ୟମ୍ ॥ ୮ ॥**

ନ, ହି, ପ୍ରପଶ୍ୟାମି, ମମ, ଅପନୁଦ୍ୟାତ୍,
ଯତ୍, ଶୋକମ୍, ଉଚ୍ଛୋଷଣମ୍,
ଇନ୍ଦ୍ରିୟାଣାମ୍, ଅବାପ୍ୟ, ଭୂମୌ, ଅସପତ୍ନମ୍, ଋଦ୍ଧମ୍,
ରାଜ୍ୟମ୍, ସୁରାଣାମ୍, ଅପି, ଚ, ଆଧିପତ୍ୟମ୍ । ।୮ । ।

| | | | |
|---|---|---|---|
| ହି | = କାରଣ | ରାଜ୍ୟମ୍ | = ରାଜ୍ୟକୁ |
| ଭୂମୌ | = ଭୂଲୋକରେ | ଚ | = ଏବଂ |
| ଅସପତ୍ନମ୍ | = ନିଷ୍କଣ୍ଟକ, | ସୁରାଣାମ୍ | = ଦେବତାମାନଙ୍କର |
| ଋଦ୍ଧମ୍ | = ଧନଧାନ୍ୟସମ୍ପନ୍ନ | ଆଧିପତ୍ୟମ୍ | = ଆଧିପତ୍ୟକୁ |

| | | | |
|---|---|---|---|
| ଅବାପ୍ୟ | = ପ୍ରାପ୍ତ ହୋଇ | ଉଚ୍ଛୋଷଣମ୍ | = ଶୁଷ୍କ କରିଦେଉଥିବା |
| ଅପି | = ମଧ୍ୟ (ମୁଁ), | ଶୋକମ୍ | = ଶୋକକୁ |
| ଯତ୍ | = ଯାହା | ଅପନୁଦ୍ୟାତ୍ | = ଦୂର କରି ପାରିବ |
| ମମ | = ମୋର | (ତତ୍) | = ସେହି ଉପାୟକୁ |
| ଇନ୍ଦ୍ରିୟାଣାମ୍ | = ଇନ୍ଦ୍ରିୟମାନଙ୍କୁ | ନ, ପ୍ରପଶ୍ୟାମି | = ଦେଖି ପାରୁ ନାହିଁ । |

*ସଞ୍ଜୟ ଉବାଚ*

(ସଞ୍ଜୟଙ୍କ ଦ୍ୱାରା ବର୍ଣ୍ଣିତ) ଅର୍ଜୁନଙ୍କ ଯୁଦ୍ଧ ନକରିବା କଥା କହି ମୌନ ରହିବା ତଥା ଭଗବାନ ଈଷତ୍ ହସି କହିବା ।

**ଏବମୁକ୍ତ୍ୱା ହୃଷୀକେଶଂ ଗୁଡାକେଶଃ ପରନ୍ତପ ।**
**ନ ଯୋତ୍ସ୍ୟ ଇତି ଗୋବିନ୍ଦମୁକ୍ତ୍ୱା ତୂଷ୍ଣୀଂ ବଭୂବ ହ ॥ ୯ ॥**

ଏବମ୍, ଉକ୍ତ୍ୱା, ହୃଷୀକେଶମ୍, ଗୁଡ଼ାକେଶଃ, ପରନ୍ତପ,
ନ, ଯୋତ୍ସ୍ୟେ, ଇତି, ଗୋବିନ୍ଦମ୍, ଉକ୍ତ୍ୱା, ତୂଷ୍ଣୀମ୍, ବଭୂବ, ହ ।।୯ ।।

**ସଂଜୟ କହିଲେ—**

| | | | |
|---|---|---|---|
| ପରନ୍ତପ | = ହେ ରାଜନ୍ ! | ଗୋବିନ୍ଦମ୍ | = ଭଗବାନ ଗୋବିନ୍ଦଙ୍କୁ |
| ଗୁଡ଼ାକେଶଃ | = ନିଦ୍ରାକୁ ଜୟ କରିଥିବା ଅର୍ଜୁନ | ନ,ଯୋତ୍ସ୍ୟେ | = 'ମୁଁ ଯୁଦ୍ଧ କରିବି ନାହିଁ' |
| ହୃଷୀକେଶମ୍ | = ଇନ୍ଦ୍ରିୟମାନଙ୍କ ସ୍ୱାମୀ ଶ୍ରୀକୃଷ୍ଣଙ୍କୁ | ଇତି | = ବୋଲି |
| | | ହ | = ସ୍ପଷ୍ଟଭାବରେ |
| | | ଉକ୍ତ୍ୱା | = କହିଦେଇ |
| ଏବମ୍ | = ଏହିପରି | ତୂଷ୍ଣୀମ୍ | = ଚୁପ୍ |
| ଉକ୍ତ୍ୱା | = କହି (ପୁଣି) | ବଭୂବ | = ହୋଇଗଲେ । |

**ତମୁବାଚ ହୃଷୀକେଶଃ ପ୍ରହସନ୍ନିବ ଭାରତ ।**
**ସେନୟୋରୁଭୟୋର୍ମଧ୍ୟେ ବିଷୀଦନ୍ତମିଦଂ ବଚଃ ॥ ୧୦ ॥**

ତମ୍, ଉବାଚ, ହୃଷୀକେଶଃ, ପ୍ରହସନ୍, ଇବ, ଭାରତ,
ସେନୟୋଃ, ଉଭୟୋଃ, ମଧ୍ୟେ, ବିଷୀଦନ୍ତମ୍, ଇଦମ୍, ବଚଃ ।।୧୦ ।।

**ଏହାପରେ—**

| | | | |
|---|---|---|---|
| ଭାରତ | = ହେ ଭରତବଂଶୀ ଧୃତରାଷ୍ଟ୍ର ! | ବିଷୀଦନ୍ତମ୍ | = ବିଷାଦମଗ୍ନ |
| ହୃଷୀକେଶଃ | = ଅନ୍ତର୍ଯାମୀ ଶ୍ରୀକୃଷ୍ଣ ପରମାତ୍ମା | ତମ୍ | = ସେହି ଅର୍ଜୁନଙ୍କୁ |
| ଉଭୟୋଃ | = ଦୁଇ | ପ୍ରହସନ୍, ଇବ | = ସ୍ମିତହାସକରିବା ଭଳି ହୋଇ |
| ସେନୟୋଃ | = ସେନାଙ୍କ | ଇଦମ୍, ବଚଃ | = ଏହିକଥା |
| ମଧ୍ୟେ | = ମଧ୍ୟରେ | ଉବାଚ | = କହିଲେ । |

*ଶ୍ରୀଭଗବାନ ଉବାଚ*

ଭଗବାନଙ୍କ ଅର୍ଜୁନଙ୍କୁ ଉପଦେଶ ଦେବା ଆରମ୍ଭ ।

**ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ ପ୍ରଜ୍ଞାବାଦାଂଶ୍ଚ ଭାଷସେ ।**
**ଗତାସୂନଗତାସୂଂଶ୍ଚ ନାନୁଶୋଚନ୍ତି ପଣ୍ଡିତାଃ ॥ ୧୧ ॥**

ଅଶୋଚ୍ୟାନ୍, ଅନ୍ୱଶୋଚଃ, ତ୍ୱମ୍, ପ୍ରଜ୍ଞାବାଦାନ୍, ଚ, ଭାଷସେ,
ଗତାସୂନ୍, ଅଗତାସୂନ୍, ଚ, ନ, ଅନୁଶୋଚନ୍ତି, ପଣ୍ଡିତାଃ ।।୧୧ ।।

**ଶ୍ରୀଭଗବାନ କହିଲେ, ହେ ଅର୍ଜୁନ !—**

| | | | |
|---|---|---|---|
| ତ୍ୱମ୍ | = ତୁମେ | ଗତାସୂନ୍ | = ଯାହାଙ୍କର ପ୍ରାଣ ଚାଲିଯାଇଛି, ସେମାନଙ୍କ ପାଇଁ |
| ଅଶୋଚ୍ୟାନ୍ | = ଯେଉଁମାନଙ୍କ ପାଇଁ ଶୋକ କରିବା ଉଚିତ ନୁହେଁ (ସେମାନଙ୍କ ପାଇଁ) | ଚ | = ଏବଂ |
| | | ଅଗତାସୂନ୍ | = ଯାହାଙ୍କର ପ୍ରାଣ ଯାଇନାହିଁ, ସେମାନଙ୍କ ପାଇଁ ମଧ୍ୟ |
| ଅନ୍ୱଶୋଚଃ | = ଶୋକ କରୁଛ | | |
| ଚ | = ଏବଂ | | |
| ପ୍ରଜ୍ଞାବାଦାନ୍ | = ପଣ୍ଡିତଙ୍କ ପରି କଥାମାନ | ପଣ୍ଡିତାଃ | = ପଣ୍ଡିତମାନେ |
| | | ନ, | = ଶୋକ କରନ୍ତି |
| ଭାଷସେ | = କହୁଛ (କିନ୍ତୁ) | ଅନୁଶୋଚନ୍ତି | ନାହିଁ । |

ଆତ୍ମାର ନିତ୍ୟତା ଏବଂ ନିର୍ବିକାରତାର ନିରୂପଣ ।

ନ ତ୍ୱେବାହଂ ଜାତୁ ନାସଂ ନ ତ୍ୱଂ ନେମେ ଜନାଧିପାଃ ।
ନ ଚୈବ ନ ଭବିଷ୍ୟାମଃ ସର୍ବେ ବୟମତଃ ପରମ୍ ॥ ୧୨ ॥

ନ, ତୁ, ଏବ, ଅହମ୍, ଜାତୁ, ନ, ଆସମ୍, ନ, ତ୍ୱମ୍, ନ, ଇମେ, ଜନାଧିପାଃ,
ନ, ଚ, ଏବ, ନ, ଭବିଷ୍ୟାମଃ, ସର୍ବେ, ବୟମ୍, ଅତଃ, ପରମ୍ ।।୧୨।।

| | | | |
|---|---|---|---|
| ନ,ତୁ, (ଏବମ୍), ଏବ | = ଏପରି ନୁହେଁ ଯେ | ନ (ଆସନ୍) | = ନଥିଲେ |
| ଅହମ୍ | = ମୁଁ | ଚ | = ଏବଂ |
| ଜାତୁ | = କୌଣସି କାଳରେ | ନ, (ଏବମ୍), ଏବ | = ପୁଣି ଏପରି ମଧ୍ୟ (ଘଟିବ) ନାହିଁ ଯେ |
| ନ, ଆସମ୍ | = ନଥିଲି | | |
| ତ୍ୱମ୍, ନ, (ଆସୀଃ) | = ତୁମେ ନଥିଲ, (ଅଥବା) | ଅତଃ, ପରମ୍ | = ଭବିଷ୍ୟତରେ |
| | | ବୟମ୍ | = ଆମେ |
| ଇମେ | = ଏହି | ସର୍ବେ | = ସମସ୍ତେ |
| ଜନାଧିପାଃ | = ରାଜାମାନେ | ନ, ଭବିଷ୍ୟାମଃ | = ରହିବା ନାହିଁ । |

ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା ।
ତଥା ଦେହାନ୍ତରପ୍ରାପ୍ତିର୍ଧୀରସ୍ତତ୍ର ନ ମୁହ୍ୟତି ॥ ୧୩ ॥

ଦେହିନଃ, ଅସ୍ମିନ୍, ଯଥା, ଦେହେ, କୌମାରମ୍, ଯୌବନମ୍, ଜରା,
ତଥା, ଦେହାନ୍ତରପ୍ରାପ୍ତିଃ, ଧୀରଃ, ତତ୍ର, ନ, ମୁହ୍ୟତି ।।୧୩।।

**କିନ୍ତୁ-**

| | | | |
|---|---|---|---|
| ଯଥା | = ଯେପରି | ଜରା | = ବୃଦ୍ଧାବସ୍ଥା (ଆସେ) |
| ଦେହିନଃ | = ଜୀବାତ୍ମାର | | |
| ଅସ୍ମିନ୍, ଦେହେ | = ଏହି ଦେହରେ | ତଥା | = ସେପରି |
| କୌମାରମ୍ | = ବାଲ୍ୟାବସ୍ଥା, | ଦେହାନ୍ତରପ୍ରାପ୍ତିଃ | = ଅନ୍ୟ ଶରୀରର ପ୍ରାପ୍ତି (ମଧ୍ୟ ହୁଏ); |
| ଯୌବନମ୍ | = ଯୌବନାବସ୍ଥା (ଓ) | | |

| | | | |
|---|---|---|---|
| ତତ୍ର | = ସେହି ବିଷୟରେ | ନ, ମୁହ୍ୟତି | = ମୋହଗ୍ରସ୍ତ ହୁଅନ୍ତି ନାହିଁ । |
| ଧୀରଃ | = ଧୀର ପୁରୁଷ | | |

ସକଳ ପ୍ରକାର ଭୋଗ ଅନିତ୍ୟ ବୋଲି କହି, ସୁଖ-ଦୁଃଖାଦି ଦ୍ୱନ୍ଦ୍ୱକୁ ସହିଯିବା ପାଇଁ ଅର୍ଜୁନଙ୍କୁ ଆଜ୍ଞା ।

**ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣସୁଖଦୁଃଖଦାଃ ।**
**ଆଗମାପାୟିନୋଽନିତ୍ୟାସ୍ତାଂସ୍ତିତିକ୍ଷସ୍ୱ ଭାରତ ॥ ୧୪ ॥**

ମାତ୍ରାସ୍ପର୍ଶାଃ, ତୁ, କୌନ୍ତେୟ, ଶୀତୋଷ୍ଣସୁଖଦୁଃଖଦାଃ,
ଆଗମାପାୟିନଃ, ଅନିତ୍ୟାଃ, ତାନ୍, ତିତିକ୍ଷସ୍ୱ, ଭାରତ ।।୧୪।।

| | | | |
|---|---|---|---|
| ତୁ | = କିନ୍ତୁ | ଆଗମାପାୟିନଃ | = ଉତ୍ପତ୍ତି-ବିନାଶଶୀଳ (ଓ) |
| କୌନ୍ତେୟ | = ହେ କୁନ୍ତିପୁତ୍ର ! | ଅନିତ୍ୟାଃ | = ଅନିତ୍ୟ ଅଟେ, (ତେଣୁ) |
| ଶୀତୋଷ୍ଣ-ସୁଖଦୁଃଖଦାଃ | = ଶୀତ-ଉଷ୍ଣ ଏବଂ ସୁଖ-ଦୁଃଖକୁ ଦେଉଥିବା | ଭାରତ | = ହେ ଭାରତ ! |
| ମାତ୍ରାସ୍ପର୍ଶାଃ | = ଇନ୍ଦ୍ରିୟ ଏବଂ ବିଷୟମାନଙ୍କର ସଂଯୋଗମାନ | ତାନ୍ | = ସେଗୁଡ଼ିକୁ (ତୁମେ) |
| | | ତିତିକ୍ଷସ୍ୱ | = ସହିଯାଅ । |

ଏହି ସହନଶୀଳତାକୁ ମୋକ୍ଷ ପ୍ରାପ୍ତିରେ ହେତୁ ବୋଲି କହିବା ।

**ଯଂ ହି ନ ବ୍ୟଥୟନ୍ତ୍ୟେତେ ପୁରୁଷଂ ପୁରୁଷର୍ଷଭ ।**
**ସମଦୁଃଖସୁଖଂ ଧୀରଂ ସୋଽମୃତତ୍ୱାୟ କଳ୍ପତେ ॥ ୧୫ ॥**

ଯମ୍, ହି, ନ, ବ୍ୟଥୟନ୍ତି, ଏତେ, ପୁରୁଷମ୍, ପୁରୁଷର୍ଷଭ,
ସମଦୁଃଖସୁଖମ୍, ଧୀରମ୍, ସଃ, ଅମୃତତ୍ୱାୟ, କଳ୍ପତେ ।।୧୫।।

| | | | |
|---|---|---|---|
| ହି | = କାରଣ | | ସମାନ ଦୃଷ୍ଟିରେ ଦେଖୁଥିବା |
| ପୁରୁଷର୍ଷଭ | = ହେ ପୁରୁଷଶ୍ରେଷ୍ଠ ! | | |
| ସମଦୁଃଖସୁଖମ୍ | = ଦୁଃଖ-ସୁଖକୁ | ଯମ୍ | = ଯେଉଁ |

| | | | |
|---|---|---|---|
| ଧୀରମ୍ | = ଧୀର | ନ, ବ୍ୟଥୟନ୍ତି | = ବ୍ୟାକୁଳ କରିପାରେ ନାହିଁ |
| ପୁରୁଷମ୍ | = ପୁରୁଷଙ୍କୁ | ସଃ | = ସେ |
| ଏତେ | = ଏହି (ଇନ୍ଦ୍ରିୟ ଓ ବିଷୟର ସଂଯୋଗମାନ) | ଅମୃତତ୍ୱାୟ | = ମୋକ୍ଷଲାଭ ନିମନ୍ତେ |
| | | କଳ୍ପତେ | = ଯୋଗ୍ୟ ହୁଅନ୍ତି । |

ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ ।
ଉଭୟୋରପି ଦୃଷ୍ଟୋଽନ୍ତସ୍ତ୍ୱନୟୋସ୍ତତ୍ତ୍ୱଦର୍ଶିଭିଃ ॥ ୧୬ ॥

ସତ୍ ଓ ଅସତ୍‌ର ଲକ୍ଷଣ ।

ନ, ଅସତଃ, ବିଦ୍ୟତେ, ଭାବଃ, ନ, ଅଭାବଃ, ବିଦ୍ୟତେ, ସତଃ, ଉଭୟୋଃ, ଅପି, ଦୃଷ୍ଟଃ, ଅନ୍ତଃ, ତୁ, ଅନୟୋଃ, ତତ୍ତ୍ୱଦର୍ଶିଭିଃ ।।୧୬।।

ଏବଂ ହେ ଅର୍ଜୁନ !—

| | | | |
|---|---|---|---|
| ଅସତଃ | = ଅସତ୍ ବସ୍ତୁର | ଅନୟୋଃ | = ଏହି |
| ଭାବଃ | = ଅସ୍ତିତ୍ୱ | ଉଭୟୋଃ, ଅପି | = ଦୁଇଟିର ମଧ୍ୟ |
| ନ, ବିଦ୍ୟତେ | = ନାହିଁ | ଅନ୍ତଃ | = ତତ୍ତ୍ୱ |
| ତୁ | = ଏବଂ | ତତ୍ତ୍ୱଦର୍ଶିଭିଃ | = ତତ୍ତ୍ୱଜ୍ଞାନୀ ପୁରୁଷଙ୍କ ଦ୍ୱାରା |
| ସତଃ | = ସତ୍ ବସ୍ତୁର | ଦୃଷ୍ଟଃ | = ଦେଖାଯାଇଛି- |
| ଅଭାବଃ | = ଅଭାବ | | |
| ନ, ବିଦ୍ୟତେ | = ନାହିଁ (ଏପରି ଭାବରେ) | | |

ଅବିନାଶି ତୁ ତଦ୍‌ବିଦ୍ଧି ଯେନ ସର୍ବମିଦଂ ତତମ୍ ।
ବିନାଶମବ୍ୟୟସ୍ୟାସ୍ୟ ନ କଶ୍ଚିତ୍ କର୍ତ୍ତୁମର୍ହତି ॥ ୧୭ ॥

ସତ୍ ଓ ଅସତ୍ ବସ୍ତୁର ସ୍ୱରୂପ ନିରୂପଣ ଏବଂ ଅର୍ଜୁନଙ୍କୁ ଯୁଦ୍ଧ କରିବା ପାଇଁ ଆଜ୍ଞା ଦେବା ।

ଅବିନାଶି, ତୁ, ତତ୍, ବିଦ୍ଧି, ଯେନ, ସର୍ବମ୍, ଇଦମ୍, ତତମ୍, ବିନାଶମ୍, ଅବ୍ୟୟସ୍ୟ, ଅସ୍ୟ, ନ, କଶ୍ଚିତ୍, କର୍ତ୍ତୁମ୍, ଅର୍ହତି ।।୧୭।।

### ଏହି ନ୍ୟାୟ ଅନୁସାରେ—

| | |
|---|---|
| ତୁ = ଏହି କାରଣରୁ | ତତମ୍ = ବ୍ୟାପ୍ତ । |
| ଅବିନାଶି = ନାଶରହିତ (ବୋଲି) | ଅସ୍ୟ = ଏହି |
| ତତ୍ = ତାହାକୁ | ଅବ୍ୟୟସ୍ୟ = ଅବିନାଶୀଙ୍କ |
| ବିଦ୍ଧି = ଜାଣ, | ବିନାଶମ୍ = ବିନାଶ |
| ଯେନ = ଯାହାଙ୍କଦ୍ୱାରା | କର୍ତ୍ତୁମ୍ = କରିବାକୁ |
| ଇଦମ୍ = ଏହି | କଶ୍ଚିତ୍ = କେହିହେଲେ |
| ସର୍ବମ୍ = ସମ୍ପୂର୍ଣ୍ଣ ଦୃଶ୍ୟଜଗତ | ନ, ଅର୍ହତି = ସମର୍ଥ ନୁହେଁ । |

**ଅନ୍ତବନ୍ତ ଇମେ ଦେହା ନିତ୍ୟସ୍ୟୋକ୍ତାଃ ଶରୀରିଣଃ ।**
**ଅନାଶିନୋଽପ୍ରମେୟସ୍ୟ ତସ୍ମାଦ୍ ଯୁଧ୍ୟସ୍ୱ ଭାରତ ॥ ୧୮ ॥**

ଅନ୍ତବନ୍ତଃ, ଇମେ, ଦେହାଃ, ନିତ୍ୟସ୍ୟ, ଉକ୍ତାଃ, ଶରୀରିଣଃ,
ଅନାଶିନଃ, ଅପ୍ରମେୟସ୍ୟ, ତସ୍ମାତ୍, ଯୁଧ୍ୟସ୍ୱ, ଭାରତ ।।୧୮।।

### ଏବଂ ଏହି-

| | |
|---|---|
| ଅନାଶିନଃ = ନାଶରହିତ, | ଅନ୍ତବନ୍ତଃ = ନାଶବାନ୍ (ବୋଲି) |
| ଅପ୍ରମେୟସ୍ୟ = ଅପ୍ରମେୟ, | ଉକ୍ତାଃ = କୁହାଯାଇଛି । |
| ନିତ୍ୟସ୍ୟ = ନିତ୍ୟସ୍ୱରୂପ | ତସ୍ମାତ୍ = ତେଣୁ |
| ଶରୀରିଣଃ = ଜୀବାତ୍ମାର | ଭାରତ = ହେ ଭରତବଂଶୀ ଅର୍ଜୁନ ! |
| ଇମେ = ଏହିସବୁ | |
| ଦେହାଃ = ଶରୀରଗୁଡ଼ିକ | ଯୁଧ୍ୟସ୍ୱ = (ତୁମେ) ଯୁଦ୍ଧ କର । |

**ଯ ଏନଂ ବେତ୍ତି ହନ୍ତାରଂ ଯଶ୍ଚୈନଂ ମନ୍ୟତେ ହତମ୍ ।**
**ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ ॥ ୧୯ ॥**

ଯଃ, ଏନମ୍, ବେତ୍ତି, ହନ୍ତାରମ୍, ଯଃ, ଚ, ଏନମ୍, ମନ୍ୟତେ, ହତମ୍,
ଉଭୌ, ତୌ, ନ, ବିଜାନୀତଃ, ନ, ଅୟମ୍, ହନ୍ତି, ନ, ହନ୍ୟତେ ।।୧୯।।

ଯେଉଁମାନେ ଆତ୍ମାକୁ ମରଣଧର୍ମୀ ତଥା ହତ୍ୟାକାରୀ ବୋଲି ମନେ କରନ୍ତି, ସେମାନେ ଅଜ୍ଞାନୀ ବୋଲି ଅଟନ୍ତି ।

ଏବଂ—

| | | | |
|---|---|---|---|
| ଯଃ | = ଯେ | ତୌ, ଉଭୌ | = ସେ ଉଭୟେ |
| ଏନମ୍ | = ଏହି ଆତ୍ମାକୁ | ନ, ବିଜାନୀତଃ | = ଜାଣନ୍ତି ନାହିଁ ; (କାରଣ) |
| ହନ୍ତାରମ୍ | = ହତ୍ୟାକାରୀ | ଅୟମ୍ | = ଏହି ଆତ୍ମା (ବାସ୍ତବରେ) |
| ବେତ୍ତି | = (ବୋଲି) ବୁଝେ | ନ, ହନ୍ତି | = କାହାରିକୁ ହତ୍ୟା କରେନାହିଁ (କି) |
| ଚ | = ତଥା | ନ, ହନ୍ୟତେ | = କାହାରିଦ୍ୱାରା ହତ ହୁଏ ନାହିଁ । |
| ଯଃ | = ଯେ | | |
| ଏନମ୍ | = ଏହାକୁ | | |
| ହତମ୍ | = ମରଣଶୀଳ | | |
| ମନ୍ୟତେ | = ମନେ କରେ | | |

ଜନ୍ମାଦି ଷଡ୍‌ବିକାରରୁ ରହିତ ଆତ୍ମସ୍ୱରୂପର ନିରୂପଣ ।

**ନ ଜାୟତେ ମ୍ରିୟତେ ବା କଦାଚିନ୍-**
**ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।**
**ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ**
**ନ ହନ୍ୟତେ ହନ୍ୟମାନେ ଶରୀରେ ॥ ୨୦ ॥**

ନ, ଜାୟତେ, ମ୍ରିୟତେ, ବା, କଦାଚିତ୍,
ନ, ଅୟମ୍, ଭୂତ୍ୱା, ଭବିତା, ବା, ନ, ଭୂୟଃ,
ଅଜଃ, ନିତ୍ୟଃ, ଶାଶ୍ୱତଃ, ଅୟମ୍, ପୁରାଣଃ,
ନ, ହନ୍ୟତେ, ହନ୍ୟମାନେ, ଶରୀରେ ।।୨୦ ।।

| | | | |
|---|---|---|---|
| ଅୟମ୍ | = ଏହି ଆତ୍ମା | ଭୂତ୍ୱା | = ଉତ୍ପନ୍ନ ହୋଇ |
| କଦାଚିତ୍ | = କୌଣସି କାଳରେ | ଭୂୟଃ | = ପରେ (ପୁନର୍ବାର) |
| ନ, ଜାୟତେ | = ଜନ୍ମ ହୁଏ ନାହିଁ | ନ, ଭବିତା | = ହୁଏ ନାହିଁ; |
| ବା | = ଏବଂ | ଅୟମ୍ | = ଏହା |
| ନ,ମ୍ରିୟତେ | = ମରେ ନାହିଁ | ଅଜଃ | = ଅଜନ୍ମା, |
| ବା | = ତଥା | ନିତ୍ୟଃ | = ନିତ୍ୟ, |

| | | | |
|---|---|---|---|
| ଶାଶ୍ୱତଃ | = ସନାତନ (ଏବଂ) | ହନ୍ୟମାନେ | = ହତ୍ୟା କଲେ ମଧ୍ୟ (ଏହା) |
| ପୁରାଣଃ | = ପୁରାତନ ଅଟେ; | | |
| ଶରୀରେ | = ଶରୀରକୁ | ନ, ହନ୍ୟତେ | = ନିହତ ହୁଏନାହିଁ । |

ଆତ୍ମତତ୍ତ୍ୱବିତ୍ କାହାକୁ ବଧ କରେ ନାହିଁ କିମ୍ବା କରାଏ ନାହିଁ ।

**ବେଦାବିନାଶିନଂ ନିତ୍ୟଂ ଯ ଏନମଜମବ୍ୟୟମ୍ ।**
**କଥଂ ସ ପୁରୁଷଃ ପାର୍ଥ କଂ ଘାତୟତି ହନ୍ତି କମ୍ ॥ ୨୧ ॥**

ବେଦ, ଅବିନାଶିନମ୍, ନିତ୍ୟମ୍, ଯଃ, ଏନମ୍, ଅଜମ୍, ଅବ୍ୟୟମ୍,
କଥମ୍, ସଃ, ପୁରୁଷଃ, ପାର୍ଥ, କମ୍, ଘାତୟତି, ହନ୍ତି, କମ୍ ।।୨୧ ।।

| | | | |
|---|---|---|---|
| ପାର୍ଥ | = ହେ ପୃଥାପୁତ୍ର ଅର୍ଜୁନ ! | ବେଦ | = ବୋଲି ଜାଣେ |
| ଯଃ | = ଯେଉଁ | ସଃ | = ସେହି ପୁରୁଷ |
| ପୁରୁଷଃ | = ପୁରୁଷ | କଥମ୍ | = କିପରି |
| ଏନମ୍ | = ଏହି ଆତ୍ମାକୁ | କମ୍ | = କାହାକୁ |
| ଅବିନାଶିନମ୍ | = ନାଶ ରହିତ, | ଘାତୟତି | = ବଧ କରାଇବ (ଏବଂ) |
| ନିତ୍ୟମ୍ | = ନିତ୍ୟ, | (କଥମ୍) | = କିପରି |
| ଅଜମ୍ | = ଅଜନ୍ମା (ଏବଂ) | କମ୍ | = କାହାକୁ |
| ଅବ୍ୟୟମ୍ | = ଅବ୍ୟୟ | ହନ୍ତି | = ବଧ କରିବ ? |

ମନୁଷ୍ୟ ପୁରୁଣା ବସ୍ତ୍ର ବଦଳାଇ ନୂତନ ବସ୍ତ୍ର ଗ୍ରହଣ କରିବା ଉଦାହରଣ ଦେଇ ଶରୀରାନ୍ତର ପ୍ରାପ୍ତିର ତତ୍ତ୍ୱ ବୁଝାଇବା ।

**ବାସାଂସି ଜୀର୍ଣ୍ଣାନି ଯଥା ବିହାୟ**
**ନବାନି ଗୃହ୍ଣାତି ନରୋଽପରାଣି ।**
**ତଥା ଶରୀରାଣି ବିହାୟ ଜୀର୍ଣ୍ଣା-**
**ନ୍ୟନ୍ୟାନି ସଂଯାତି ନବାନି ଦେହୀ ॥ ୨୨ ॥**

ବାସାଂସି, ଜୀର୍ଣ୍ଣାନି, ଯଥା, ବିହାୟ,
ନବାନି, ଗୃହ୍ଣାତି, ନରଃ, ଅପରାଣି,
ତଥା, ଶରୀରାଣି, ବିହାୟ, ଜୀର୍ଣ୍ଣାନି,
ଅନ୍ୟାନି, ସଂଯାତି, ନବାନି, ଦେହୀ ।।୨୨ ।।

**ଏବଂ ଯଦି ତୁମେ କୁହକି ଯେ ମୁଁ ତ ଶରୀର ମାନଙ୍କର ବିୟୋଗ ପାଇଁ ଶୋକ କରୁଛି, ତେବେ ଏହା ବି ଅନୁଚିତ ହେବ, କାହିଁକି ନା—**

| | | | |
|---|---|---|---|
| ଯଥା | = ଯେପରି | ତଥା | = ସେପରି |
| ନରଃ | = ମନୁଷ୍ୟ | ଦେହୀ | = ଜୀବାତ୍ମା |
| ଜୀର୍ଣ୍ଣାନି | = ପୁରୁଣା | ଜୀର୍ଣ୍ଣାନି | = ପୁରୁଣା |
| ବାସାଂସି | = ବସ୍ତ୍ରଗୁଡ଼ିକୁ | ଶରୀରାଣି | = ଶରୀର ଗୁଡ଼ିକୁ |
| ବିହାୟ | = ତ୍ୟାଗକରି | ବିହାୟ | = ତ୍ୟାଗ କରି |
| ଅପରାଣି | = ଅନ୍ୟ | ଅନ୍ୟାନି | = ଅନ୍ୟ |
| ନବାନି | = ନୂତନ (ବସ୍ତ୍ର) | ନବାନି | = ନୂତନ (ଶରୀରକୁ) |
| ଗୃହ୍ଣାତି | = ଗ୍ରହଣ କରେ | ସଂଯାତି | = ପ୍ରାପ୍ତ ହୁଏ । |

ଆତ୍ମତତ୍ତ୍ୱକୁ ଅଚ୍ଛେଦ୍ୟ, ଅକ୍ଳେଦ୍ୟ, ଅଦାହ୍ୟ, ଅଶୋଷ୍ୟ, ନିତ୍ୟ, ସର୍ବଗତ, ସ୍ଥାଣୁ, ଅଚଳ, ସନାତନ, ଅବ୍ୟକ୍ତ, ଅଚିନ୍ତ୍ୟ ଏବଂ ନିର୍ବିକାର ବୋଲି ଉକ୍ତି ।

**ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ ।**
**ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ॥ ୨୩ ॥**

ନ, ଏନମ୍, ଛିନ୍ଦନ୍ତି, ଶସ୍ତ୍ରାଣି, ନ, ଏନମ୍, ଦହତି, ପାବକଃ,
ନ, ଚ, ଏନମ୍, କ୍ଲେଦୟନ୍ତି, ଆପଃ, ନ, ଶୋଷୟତି, ମାରୁତଃ ।।୨୩।।

**ଏବଂ, ହେ ଅର୍ଜୁନ !—**

| | | | |
|---|---|---|---|
| ଏନମ୍ | = ଏହି ଆତ୍ମାକୁ | ଏନମ୍ | = ଏହାକୁ |
| ଶସ୍ତ୍ରାଣି | = ଶସ୍ତ୍ରମାନେ | ଆପଃ | = ଜଳ |
| ନ, ଛିନ୍ଦନ୍ତି | = କାଟି ପାରନ୍ତି ନାହିଁ, | ନ, କ୍ଲେଦୟନ୍ତି | = ଭିଜାଇ ପାରେନାହିଁ |
| ଏନମ୍ | = ଏହାକୁ | ଚ | = ଏବଂ |
| ପାବକଃ | = ଅଗ୍ନି | ମାରୁତଃ | = ବାୟୁ |
| ନ, ଦହତି | = ଜଳାଇ ପାରେନାହିଁ, | ନ, ଶୋଷୟତି | = ଶୁଖାଇ ପାରେନାହିଁ । |

**ଅଚ୍ଛେଦ୍ୟୋଽୟମଦାହ୍ୟୋଽୟମକ୍ଲେଦ୍ୟୋଽଶୋଷ୍ୟ ଏବ ଚ ।**
**ନିତ୍ୟଃ ସର୍ବଗତଃ ସ୍ଥାଣୁରଚଲୋଽୟଂ ସନାତନଃ ॥ ୨୪ ॥**

ଅଚ୍ଛେଦ୍ୟଃ, ଅୟମ୍, ଅଦାହ୍ୟଃ, ଅୟମ୍, ଅକ୍ଲେଦ୍ୟଃ, ଅଶୋଷ୍ୟଃ, ଏବ, ଚ,
ନିତ୍ୟଃ, ସର୍ବଗତଃ, ସ୍ଥାଣୁଃ, ଅଚଳଃ, ଅୟମ୍, ସନାତନଃ ।।୨୪।।

**କାହିଁକି ନା—**

| | | | |
|---|---|---|---|
| ଅୟମ୍ | = ଏହି ଆତ୍ମାକୁ | ଅଶୋଷ୍ୟଃ, | = ଶୁଷ୍କ କରାଯାଇ |
| ଅଚ୍ଛେଦ୍ୟଃ | = ଛେଦନ କରାଯାଇ ପାରେ ନାହିଁ, | ଏବ | ପାରେ ନାହିଁ (କାରଣ) |
| ଅୟମ୍ | = ଏହାକୁ | ଅୟମ୍ | = ଏହି ଆତ୍ମା |
| ଅଦାହ୍ୟଃ | = ଜଳାଯାଇ ପାରେ ନାହିଁ, | ନିତ୍ୟଃ | = ନିତ୍ୟ |
| | | ସର୍ବଗତଃ | = ସର୍ବବ୍ୟାପୀ, |
| ଅକ୍ଲେଦ୍ୟଃ | = ଆର୍ଦ୍ର କରାଯାଇ ପାରେ ନାହିଁ | ଅଚଳଃ | = ଅଚଳ, |
| | | ସ୍ଥାଣୁଃ | = ସ୍ଥାଣୁ (ଓ) |
| ଚ | = ଓ | ସନାତନଃ | = ଅନାଦି ଅଟେ । |

**ଅବ୍ୟକ୍ତୋଽୟମଚିନ୍ତ୍ୟୋଽୟମବିକାର୍ଯ୍ୟୋଽୟମୁଚ୍ୟତେ ।**
**ତସ୍ମାଦେବଂ ବିଦିତ୍ୱୈନଂ ନାନୁଶୋଚିତୁମର୍ହସି ॥ ୨୫ ॥**

ଅବ୍ୟକ୍ତଃ, ଅୟମ୍, ଅଚିନ୍ତ୍ୟଃ, ଅୟମ୍, ଅବିକାର୍ଯ୍ୟଃ, ଅୟମ୍, ଉଚ୍ୟତେ,
ତସ୍ମାତ୍, ଏବମ୍, ବିଦିତ୍ୱା, ଏନମ୍, ନ, ଅନୁଶୋଚିତୁମ୍, ଅର୍ହସି ।।୨୫।।

**ଏବଂ—**

| | | | |
|---|---|---|---|
| ଅୟମ୍ | = ଏହି ଆତ୍ମା | ଅଚିନ୍ତ୍ୟଃ | = ଅଚିନ୍ତ୍ୟ (ଏବଂ), |
| ଅବ୍ୟକ୍ତଃ | = ଅବ୍ୟକ୍ତ (ପ୍ରତ୍ୟକ୍ଷ ଦୃଷ୍ଟିଗୋଚର ହୁଏ ନାହିଁ), | ଅୟମ୍ | = ଏହି ଆତ୍ମାକୁ |
| | | ଅବିକାର୍ଯ୍ୟଃ | = ବିକାର ରହିତ |
| ଅୟମ୍ | = ଏହି ଆତ୍ମା | ଉଚ୍ୟତେ | = କୁହାଯାଏ । |

| | | | |
|---|---|---|---|
| ତସ୍ମାତ୍ | = ତେଣୁ (ହେ ଅର୍ଜୁନ!) | ଅନୁଶୋଚିତୁମ୍ | = ଅନୁଶୋଚନା କରିବା |
| ଏନମ୍ | = ଏହି ଆତ୍ମାକୁ | ନ, ଅର୍ହସି | = ତୁମର ଉଚିତ ନୁହେଁ। |
| ଏବମ୍ | = ଏପରି | | |
| ବିଦିତ୍ୱା | = (ବୋଲି) ଜାଣି | | |

ଆତ୍ମାକୁ ଜନ୍ମ-ମରଣଶୀଳ ମାନିଲେ ବି ଶରୀରର ଅନିତ୍ୟତାକୁ ଜାଣି ଶୋକ କରିବା ନିଷେଧ।

**ଅଥ ଚୈନଂ ନିତ୍ୟଜାତଂ ନିତ୍ୟଂ ବା ମନ୍ୟସେ ମୃତମ୍ ।**
**ତଥାପି ତ୍ୱଂ ମହାବାହୋ ନୈବଂ ଶୋଚିତୁମର୍ହସି ॥ ୨୬ ॥**

ଅଥ, ଚ, ଏନମ୍, ନିତ୍ୟଜାତମ୍, ନିତ୍ୟମ୍, ବା, ମନ୍ୟସେ, ମୃତମ୍,
ତଥାପି, ତ୍ୱମ୍, ମହାବାହୋ, ନ, ଏବମ୍, ଶୋଚିତୁମ୍, ଅର୍ହସି ।।୨୬।।

| | | | |
|---|---|---|---|
| ଅଥ, ଚ | = ପକ୍ଷାନ୍ତରେ ଯଦି | ମନ୍ୟସେ | = ମନେ କରୁଥାଅ, |
| ତ୍ୱମ୍ | = ତୁମେ | ତଥାପି | = ତଥାପି |
| ଏନମ୍ | = ଏହି ଆତ୍ମାକୁ | ମହାବାହୋ | = ହେ ମହାବାହୁ! (ତୁମେ) |
| ନିତ୍ୟଜାତମ୍ | = ସଦା ଜନ୍ମୁଥିବା | ଏବମ୍ | = ଏପରି |
| ବା | = ତଥା | ଶୋଚିତୁମ୍ | = ଶୋକ କରିବା |
| ନିତ୍ୟମ୍ | = ସଦା | ନ, ଅର୍ହସି | = ଉଚିତ ନୁହେଁ। |
| ମୃତମ୍ | = ମରୁଥିବା | | |

**ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।**
**ତସ୍ମାଦପରିହାର୍ଯ୍ୟେଽର୍ଥେ ନ ତ୍ୱଂ ଶୋଚିତୁମର୍ହସି ॥ ୨୭ ॥**

ଜାତସ୍ୟ, ହି, ଧ୍ରୁବଃ, ମୃତ୍ୟୁଃ, ଧ୍ରୁବମ୍, ଜନ୍ମ, ମୃତସ୍ୟ, ଚ,
ତସ୍ମାତ୍, ଅପରିହାର୍ଯ୍ୟେ, ଅର୍ଥେ, ନ, ତ୍ୱମ୍, ଶୋଚିତୁମ୍, ଅର୍ହସି ।।୨୭।।

| | | | |
|---|---|---|---|
| ହି | = କାରଣ (ଏହି ମାନ୍ୟତା ଅନୁସାରେ) | ଜାତସ୍ୟ | = ଜନ୍ମ ହୋଇଥିବା ଲୋକର |
| | | ମୃତ୍ୟୁଃ | = ମୃତ୍ୟୁ |

| | | | |
|---|---|---|---|
| ଧ୍ରୁବଃ | = ନିଶ୍ଚିତ | ଅପରିହାର୍ଯ୍ୟେ | = ଯାହା ଅନିବାର୍ଯ୍ୟ |
| ଚ | = ଏବଂ | ଅର୍ଥେ | = (ସେହି) ବିଷୟରେ |
| ମୃତସ୍ୟ | = ମରିଥିବା ଲୋକର | ତ୍ୱମ୍ | = ତୁମେ |
| ଜନ୍ମ | = ଜନ୍ମ | ଶୋଚିତୁମ୍ | = ଶୋକ କରିବା |
| ଧ୍ରୁବମ୍ | = ନିଶ୍ଚିତ ଅଟେ । | ନ, ଅର୍ହସି | = ଉଚିତ ନୁହେଁ । |
| ତସ୍ମାତ୍ | = ତେଣୁ (ମଧ୍ୟ) | | |

**ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତମଧ୍ୟାନି ଭାରତ ।**
**ଅବ୍ୟକ୍ତନିଧନାନ୍ୟେବ ତତ୍ର କା ପରିଦେବନା ॥ ୨୮ ॥**

ଅବ୍ୟକ୍ତାଦୀନି, ଭୂତାନି, ବ୍ୟକ୍ତମଧ୍ୟାନି, ଭାରତ,
ଅବ୍ୟକ୍ତନିଧନାନି, ଏବ, ତତ୍ର, କା, ପରିଦେବନା ।।୨୮ ।।

**ଏବଂ, ଏହି ଭୀଷ୍ମାଦିଙ୍କର ଶରୀର ମାୟାମୟ ହୋଇଥିବା ହେତୁ ଅନିତ୍ୟ ଅଟେ । ତେଣୁ ଶରୀରମାନଙ୍କ ପାଇଁ ମଧ୍ୟ ଶୋକ କରିବା ଉଚିତ ନୁହେଁ—**

| | | | |
|---|---|---|---|
| ଭାରତ | = ହେ ଭରତବଂଶଜ ଅର୍ଜୁନ ! | ବ୍ୟକ୍ତମଧ୍ୟାନି | = (କେବଳ) ମଧ୍ୟରେ ହିଁ ପ୍ରକଟ ହୁଅନ୍ତି; |
| ଭୂତାନି | = ପ୍ରାଣୀମାନେ | ତତ୍ର | = ସେପରି ସ୍ଥିତିରେ |
| ଅବ୍ୟକ୍ତାଦୀନି | = ଜନ୍ମ ହେବା ପୂର୍ବରୁ ଅପ୍ରକଟ ଥାନ୍ତି (ଏବଂ) | କା,ପରିଦେବନା | = ଶୋକ କରିବାର କଣ ଅଛି ? |
| ଅବ୍ୟକ୍ତନିଧନାନି, ଏବ | = ମରିବା ପରେ ମଧ୍ୟ ଅପ୍ରକଟ ହୋଇଯାନ୍ତି, | | |

ଆତ୍ମତତ୍ତ୍ୱର ଦ୍ରଷ୍ଟା, ବକ୍ତା ଏବଂ ଶ୍ରୋତାର ଦୁର୍ଲଭତାର ପ୍ରତିପାଦନ ।

ଆଶ୍ଚର୍ଯ୍ୟବତ୍‌ପଶ୍ୟତି କଶ୍ଚିଦେନ-
ମାଶ୍ଚର୍ଯ୍ୟବଦ୍‌ବଦତି ତଥୈବ ଚାନ୍ୟଃ ।
ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି
ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍ ॥ ୨୯ ॥

ଆଶ୍ଚର୍ଯ୍ୟବତ୍, ପଶ୍ୟତି, କଶ୍ଚିତ୍, ଏନମ୍,
ଆଶ୍ଚର୍ଯ୍ୟବତ୍, ବଦତି, ତଥା,ଏବ, ଚ, ଅନ୍ୟଃ,
ଆଶ୍ଚର୍ଯ୍ୟବତ୍, ଚ, ଏନମ୍, ଅନ୍ୟଃ, ଶୃଣୋତି,
ଶ୍ରୁତ୍ୱା, ଅପି, ଏନମ୍, ବେଦ, ନ, ଚ, ଏବ, କଶ୍ଚିତ୍ ।।୨୯।।

**ଏବଂ ହେ ଅର୍ଜୁନ! ଏହି ଆତ୍ମତତ୍ତ୍ୱ ବହୁତ ଗହନ ଅଟେ, ତେଣୁ—**

| | | | |
|---|---|---|---|
| କଶ୍ଚିତ୍ | = କେହିଜଣେ ମହାପୁରୁଷ ହିଁ | ଅନ୍ୟଃ | = ଅନ୍ୟ କେହି (ଅଧିକାରୀ ପୁରୁଷ ହିଁ) |
| ଏନମ୍ | = ଏହି ଆତ୍ମାକୁ | ଏନମ୍ | = ଏହି ଆତ୍ମାକୁ |
| ଆଶ୍ଚର୍ଯ୍ୟବତ୍ | = ଆଶ୍ଚର୍ଯ୍ୟ ପରି | ଆଶ୍ଚର୍ଯ୍ୟବତ୍ | = ଆଶ୍ଚର୍ଯ୍ୟପରି |
| ପଶ୍ୟତି | = ଦେଖନ୍ତି | ଶୃଣୋତି | = ଶୁଣନ୍ତି |
| ଚ | = ଏବଂ | ଚ | = ଏବଂ |
| ତଥା, ଏବ | = ସେହିପରି | କଶ୍ଚିତ୍ | = କେହି କେହି (ତ) |
| ଅନ୍ୟଃ | = ଅନ୍ୟକେହି ମହାପୁରୁଷ ହିଁ (ଏହାର ତତ୍ତ୍ୱକୁ) | ଶ୍ରୁତ୍ୱା | = ଶୁଣି |
| | | ଅପି | = ମଧ୍ୟ |
| ଆଶ୍ଚର୍ଯ୍ୟବତ୍ | = ଆଶ୍ଚର୍ଯ୍ୟ ପରି | ଏନମ୍ | = ଏହାକୁ |
| ବଦତି | = ବର୍ଣ୍ଣନା କରନ୍ତି | ନ, ଏବ, ବେଦ | = ଜାଣିପାରନ୍ତି ନାହିଁ । |
| ଚ | = ତଥା | | |

ଆତ୍ମତତ୍ତ୍ୱ ସର୍ବଥା ଅବଧ୍ୟ ହୋଇଥିବା କାରଣରୁ କୌଣସି ପ୍ରାଣୀକୁ ବି ଶୋକ କରିବା ଅନୁଚିତ ।

**ଦେହୀ ନିତ୍ୟମବଧ୍ୟୋଽୟଂ ଦେହେ ସର୍ବସ୍ୟ ଭାରତ ।**
**ତସ୍ମାତ୍ସର୍ବାଣି ଭୂତାନି ନ ତ୍ୱଂ ଶୋଚିତୁମର୍ହସି ॥ ୩୦ ॥**

ଦେହୀ, ନିତ୍ୟମ୍, ଅବଧ୍ୟଃ, ଅୟମ୍, ଦେହେ, ସର୍ବସ୍ୟ, ଭାରତ,
ତସ୍ମାତ୍, ସର୍ବାଣି, ଭୂତାନି, ନ, ତ୍ୱମ୍, ଶୋଚିତୁମ୍, ଅର୍ହସି ।।୩୦ ।।

| | | | |
|---|---|---|---|
| ଭାରତ | = ହେ ଭରତବଂଶଜ ଅର୍ଜୁନ ! | ଅବଧ୍ୟଃ | = ଅବଧ ଅର୍ଥାତ୍ ଯାହାକୁ ବଧ କରାଯାଇ ପାରେ ନାହିଁ |
| ଅୟମ୍ | = ଏହି | ତସ୍ମାତ୍ | = ତେଣୁ |
| ଦେହୀ | = ଆତ୍ମା | ସର୍ବାଣି | = ସକଳ |
| ସର୍ବସ୍ୟ | = ସମସ୍ତଙ୍କର | ଭୂତାନି | = ପ୍ରାଣୀମାନଙ୍କ ପାଇଁ |
| ଦେହେ | = ଶରୀରରେ | ତ୍ୱମ୍ | = ତୁମେ |
| | | ଶୋଚିତୁମ୍ | = ଶୋକ କରିବା |
| ନିତ୍ୟମ୍ | = ସର୍ବଦା | ନ, ଅର୍ହସି | = ଉଚିତ ନୁହେଁ । |

କ୍ଷାତ୍ରଧର୍ମ ଦୃଷ୍ଟିରୁ ଯୁଦ୍ଧ ଅର୍ଜୁନଙ୍କ ସ୍ୱଧର୍ମ ବୋଲି ବୁଝାଇବା ଏବଂ ସ୍ୱଧର୍ମର ତ୍ୟାଗ ସବୁ ଦୃଷ୍ଟିରୁ ଅନୁଚିତ ।

**ସ୍ୱଧର୍ମମପି ଚାବେକ୍ଷ୍ୟ ନ ବିକମ୍ପିତୁମର୍ହସି ।**
**ଧର୍ମ୍ୟାଦ୍ଧି ଯୁଦ୍ଧାଚ୍ଛ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନ ବିଦ୍ୟତେ ॥ ୩୧ ॥**

ସ୍ୱଧର୍ମମ୍, ଅପି, ଚ, ଅବେକ୍ଷ୍ୟ, ନ, ବିକମ୍ପିତୁମ୍, ଅର୍ହସି,
ଧର୍ମ୍ୟାତ୍, ହି, ଯୁଦ୍ଧାତ୍, ଶ୍ରେୟଃ, ଅନ୍ୟତ୍, କ୍ଷତ୍ରିୟସ୍ୟ, ନ, ବିଦ୍ୟତେ ।।୩୧ ।।

| | | | |
|---|---|---|---|
| ଚ | = ତଥା | ନ, ଅର୍ହସି | = ଉଚିତ ନୁହେଁ (ଅର୍ଥାତ୍ ଭୟ କରିବା ଅନୁଚିତ) |
| ସ୍ୱଧର୍ମମ୍ | = ନିଜର ଧର୍ମକୁ | | |
| ଅବେକ୍ଷ୍ୟ | = ଦେଖି | | |
| ଅପି | = ମଧ୍ୟ (ତୁମେ) | ହି | = କାରଣ |
| ବିକମ୍ପିତୁମ୍ | = କର୍ତ୍ତବ୍ୟ କର୍ମରୁ ବିଚଳିତ ହେବା | କ୍ଷତ୍ରିୟସ୍ୟ | = କ୍ଷତ୍ରିୟ ପାଇଁ |
| | | ଧର୍ମ୍ୟାତ୍ | = ଧର୍ମଯୁକ୍ତ |

| | | | |
|---|---|---|---|
| ଯୁଦ୍ଧାତ୍ | = ଯୁଦ୍ଧରୁ (ବଳି) | ଶ୍ରେୟଃ | = କଲ୍ୟାଣକର କର୍ତ୍ତବ୍ୟ |
| ଅନ୍ୟତ୍ | = ଅନ୍ୟ (କିଛି) | ନ, ବିଦ୍ୟତେ | = ନାହିଁ । |

**ଯଦୃଚ୍ଛୟା ଚୋପପନ୍ନଂ ସ୍ୱର୍ଗଦ୍ୱାରମପାବୃତମ୍ ।**
**ସୁଖିନଃ କ୍ଷତ୍ରିୟାଃ ପାର୍ଥ ଲଭନ୍ତେ ଯୁଦ୍ଧମୀଦୃଶମ୍ ॥ ୩୨ ॥**

ଯଦୃଚ୍ଛୟା, ଚ, ଉପପନ୍ନମ୍, ସ୍ୱର୍ଗଦ୍ୱାରମ୍, ଅପାବୃତମ୍, ସୁଖିନଃ, କ୍ଷତ୍ରିୟାଃ, ପାର୍ଥ, ଲଭନ୍ତେ, ଯୁଦ୍ଧମ୍, ଈଦୃଶମ୍ ।।୩୨।।

ଏବଂ—

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ସ୍ୱର୍ଗଦ୍ୱାରମ୍ | = ସ୍ୱର୍ଗଦ୍ୱାରରୂପକ |
| ଯଦୃଚ୍ଛୟା | = ସ୍ୱତଃ (ବିନା ଇଚ୍ଛାରେ) | ଈଦୃଶମ୍ | = ଏହିପରି |
| | | ଯୁଦ୍ଧମ୍ | = ଯୁଦ୍ଧକୁ |
| ଉପପନ୍ନମ୍ | = ପ୍ରାପ୍ତ ହୋଇଥିବା | ସୁଖିନଃ | = ଭାଗ୍ୟବାନ୍ |
| ଚ | = ଏବଂ | କ୍ଷତ୍ରିୟାଃ | = କ୍ଷତ୍ରିୟମାନେ (ହିଁ) |
| ଅପାବୃତମ୍ | = ଉନ୍ମୁକ୍ତ | ଲଭନ୍ତେ | = ଲାଭ କରନ୍ତି । |

**ଅଥ ଚେତ୍ତ୍ୱମିମଂ ଧର୍ମ୍ୟଂ ସଙ୍ଗ୍ରାମଂ ନ କରିଷ୍ୟସି ।**
**ତତଃ ସ୍ୱଧର୍ମଂ କୀର୍ତ୍ତିଂ ଚ ହିତ୍ୱା ପାପମବାପ୍ସ୍ୟସି ॥ ୩୩ ॥**

ଅଥ, ଚେତ୍, ତ୍ୱମ୍, ଇମମ୍, ଧର୍ମ୍ୟମ୍, ସଂଗ୍ରାମମ୍, ନ, କରିଷ୍ୟସି, ତତଃ, ସ୍ୱଧର୍ମମ୍, କୀର୍ତିମ୍, ଚ, ହିତ୍ୱା, ପାପମ୍, ଅବାପ୍ସ୍ୟସି ।।୩୩।।

| | | | |
|---|---|---|---|
| ଅଥ | = କିନ୍ତୁ | ଧର୍ମ୍ୟମ୍ | = ଧର୍ମଯୁକ୍ତ |
| ଚେତ୍ | = ଯଦି | ସଙ୍ଗ୍ରାମମ୍ | = ଯୁଦ୍ଧକୁ |
| ତ୍ୱମ୍ | = ତୁମେ | ନ, କରିଷ୍ୟସି | = କରିବ ନାହିଁ |
| ଇମମ୍ | = ଏହି | ତତଃ | = ତେବେ |

| | | | |
|---|---|---|---|
| ସ୍ୱଧର୍ମମ୍ | = ସ୍ୱଧର୍ମକୁ | ହିତ୍ୱା | = ଛାଡ଼ି (ହରାଇ) |
| ଚ | = ଏବଂ | ପାପମ୍ | = ପାପକୁ |
| କୀର୍ତ୍ତିମ୍ | = କୀର୍ତ୍ତିକୁ | ଅବାପ୍ସ୍ୟସି | = ପ୍ରାପ୍ତ ହେବ । |

**ଅକୀର୍ତ୍ତିଂ ଚ୍ାପି ଭୂତାନି କଥୟିଷ୍ୟନ୍ତି ତେଽବ୍ୟୟାମ୍ ।**
**ସମ୍ଭାବିତସ୍ୟ ଚ୍ାକୀର୍ତ୍ତିର୍ମରଣାଦତିରିଚ୍ୟତେ ॥ ୩୪ ॥**

ଅକୀର୍ତ୍ତିମ୍, ଚ, ଅପି, ଭୂତାନି, କଥୟିଷ୍ୟନ୍ତି, ତେ, ଅବ୍ୟୟାମ୍,
ସମ୍ଭାବିତସ୍ୟ, ଚ, ଅକୀର୍ତିଃ, ମରଣାତ୍, ଅତିରିଚ୍ୟତେ ।।୩୪ ।।

| | | | |
|---|---|---|---|
| ଚ | = ତଥା | ଚ | = ଏବଂ |
| ଭୂତାନି | = ଲୋକମାନେ | ସମ୍ଭାବିତସ୍ୟ | = ମାନନୀୟ ପୁରୁଷପାଇଁ |
| ତେ | = ତୁମର | ଅକୀର୍ତ୍ତିଃ | = ଅପକୀର୍ତ୍ତି |
| ଅବ୍ୟୟାମ୍ | = ଦୀର୍ଘକାଳ ରହୁଥିବା | ମରଣାତ୍ | = ମୃତ୍ୟୁଠାରୁ (ମଧ୍ୟ) |
| ଅକୀର୍ତ୍ତିମ୍ | = ଅପକୀର୍ତ୍ତିକୁ | ଅତିରିଚ୍ୟତେ | = ଅଧିକ ଦୁଃଖଦାୟୀ ହୋଇଥାଏ । |
| ଅପି | = ମଧ୍ୟ | | |
| କଥୟିଷ୍ୟନ୍ତି | = କହିବେ | | |

**ଭୟାଦ୍ରଣାଦୁପରତଂ ମଂସ୍ୟନ୍ତେ ତ୍ୱାଂ ମହାରଥାଃ ।**
**ଯେଷାଂ ଚ ତ୍ୱଂ ବହୁମତୋ ଭୂତ୍ୱା ଯାସ୍ୟସି ଲାଘବମ୍ ॥ ୩୫ ॥**

ଭୟାତ୍, ରଣାତ୍, ଉପରତମ୍, ମଂସ୍ୟନ୍ତେ, ତ୍ୱାମ୍, ମହାରଥାଃ,
ଯେଷାମ୍, ଚ, ତ୍ୱମ୍, ବହୁମତଃ, ଭୂତ୍ୱା, ଯାସ୍ୟସି, ଲାଘବମ୍ ।।୩୫ ।।

| | | | |
|---|---|---|---|
| ଚ | = ଏବଂ | ବହୁମତଃ | = ବହୁତ ସମ୍ମାନିତ |
| ଯେଷାମ୍ | = ଯେଉଁମାନଙ୍କ (ଦୃଷ୍ଟିରେ) | ଭୂତ୍ୱା | = ହୋଇସାରି |
| ତ୍ୱମ୍ | = ତୁମେ (ପ୍ରଥମେ) | ଲାଘବମ୍ | = (ବର୍ତ୍ତମାନ) ଲଘୁତାକୁ |

| | | | |
|---|---|---|---|
| ଯାସ୍ୟସି | = ପ୍ରାପ୍ତହେବ | ରଣାତ୍ | = ଯୁଦ୍ଧରୁ |
| ମହାରଥାଃ | = (ସେହି) ମହାରଥୀମାନେ | ଉପରତମ୍ | = ଓହରିଗଲ |
| ତ୍ୱାମ୍ | = ତୁମେ | ମଂସ୍ୟନ୍ତେ | = ବୋଲି ମନେକରିବେ । |
| ଭୟାତ୍ | = ଭୟହେତୁ | | |

**ଅବାଚ୍ୟବାଦାଂଶ୍ଚ ବହୂନ୍ ବଦିଷ୍ୟନ୍ତି ତବାହିତାଃ ।**
**ନିନ୍ଦନ୍ତସ୍ତବ ସାମର୍ଥ୍ୟଂ ତତୋ ଦୁଃଖତରଂ ନୁ କିମ୍ ॥ ୩୬ ॥**

ଅବାଚ୍ୟବାଦାନ୍, ଚ, ବହୂନ୍, ବଦିଷ୍ୟନ୍ତି, ତବ, ଅହିତାଃ,
ନିନ୍ଦନ୍ତଃ, ତବ, ସାମର୍ଥ୍ୟମ୍, ତତଃ, ଦୁଃଖତରମ୍, ନୁ, କିମ୍, ।।୩୬।।

| | | | |
|---|---|---|---|
| ତବ | = ତୁମର | ଅବାଚ୍ୟବାଦାନ୍ | = ଅକଥ୍ୟ ବଚନମାନ |
| ଅହିତାଃ | = ଶତ୍ରୁମାନେ | ଚ | = ମଧ୍ୟ |
| ତବ | = ତୁମର | ବଦିଷ୍ୟନ୍ତି | = କହିବେ; |
| ସାମର୍ଥ୍ୟମ୍ | = ସାମର୍ଥ୍ୟକୁ | ତତଃ | = ତାହାଠାରୁ |
| ନିନ୍ଦନ୍ତଃ | = ନିନ୍ଦାକରି (ତୁମକୁ) | ଦୁଃଖତରମ୍ | = ଅଧିକ ଦୁଃଖ |
| ବହୂନ୍ | = ବହୁତ | ନୁ, କିମ୍ | = ଆଉ କଣ ହେବ ? |

ଇହଲୋକ ତଥା ପରଲୋକରେ ଲାଭପ୍ରଦ ବୋଲି ବୁଝାଇ ଅର୍ଜୁନଙ୍କୁ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବା ପାଇଁ ଆଜ୍ଞା ।

**ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍ ।**
**ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତନିଶ୍ଚୟଃ ॥ ୩୭ ॥**

ହତଃ, ବା, ପ୍ରାପ୍ସ୍ୟସି, ସ୍ୱର୍ଗମ୍, ଜିତ୍ୱା, ବା, ଭୋକ୍ଷ୍ୟସେ, ମହୀମ୍,
ତସ୍ମାତ୍, ଉତ୍ତିଷ୍ଠ, କୌନ୍ତେୟ, ଯୁଦ୍ଧାୟ, କୃତନିଶ୍ଚୟଃ ।।୩୭।।

| | | | |
|---|---|---|---|
| ବା | = ଯଦି (ଯୁଦ୍ଧରେ) | ଜିତ୍ୱା | = ଜିତିଯିବ (ତେବେ) |
| ହତଃ | = ନିହତ ହେବ | | |
| ସ୍ୱର୍ଗମ୍ | = (ତୁମକୁ) ସ୍ୱର୍ଗ | ମହୀମ୍ | = ପୃଥିବୀର ରାଜ୍ୟ |
| ପ୍ରାପ୍ସ୍ୟସି | = ପ୍ରାପ୍ତହେବ (ଆଉ) | ଭୋକ୍ଷ୍ୟସେ | = ଭୋଗ କରିବ । |
| ବା | = ଯଦି (ଯୁଦ୍ଧରେ) | ତସ୍ମାତ୍ | = ତେଣୁ |

| | | | |
|---|---|---|---|
| କୌନ୍ତେୟ | = ହେ କୁନ୍ତିନନ୍ଦନ ଅର୍ଜୁନ ! (ତୁମେ) | ଯୁଦ୍ଧାୟ | = ଯୁଦ୍ଧପାଇଁ |
| | | କୃତନିଶ୍ଚୟଃ | = ସଂକଳ୍ପବଦ୍ଧ ହୋଇ |
| | | ଉତ୍ତିଷ୍ଠ | = ଠିଆ ହୁଅ । |

ଯୁଦ୍ଧାଦି ସମସ୍ତ ଶାସ୍ତ୍ରବିହିତ କର୍ମ ଉତ୍ତମରୂପେ କରି ମଧ୍ୟ ପାପରେ ନିର୍ଲିପ୍ତ ରହିବାର ଉପାୟ -ସମତ୍ୱ ।

**ସୁଖଦୁଃଖେ ସମେ କୃତ୍ୱା ଲାଭାଲାଭୌ ଜୟାଜୟୌ ।**
**ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ ନୈବଂ ପାପମବାପ୍ସ୍ୟସି ॥ ୩୮ ॥**

ସୁଖଦୁଃଖେ, ସମେ, କୃତ୍ୱା, ଲାଭାଲାଭୌ, ଜୟାଜୟୌ,
ତତଃ, ଯୁଦ୍ଧାୟ, ଯୁଜ୍ୟସ୍ୱ, ନ, ଏବମ୍, ପାପମ୍, ଅବାପ୍ସ୍ୟସି ।।୩୮ ।।

**ଯଦି ତୁମର ସ୍ୱର୍ଗ ତଥା ରାଜ୍ୟର ଇଚ୍ଛାନଥାଏ ତେବେ ବି—**

| | | | |
|---|---|---|---|
| ଜୟାଜୟୌ | = ଜୟ-ପରାଜୟକୁ, | ଯୁଜ୍ୟସ୍ୱ | = ପ୍ରସ୍ତୁତ ହୋଇଯାଅ । |
| ଲାଭାଲାଭୌ | = ଲାଭ-କ୍ଷତିକୁ (ଓ) | ଏବମ୍ | = ଏହିପରି (ଯୁଦ୍ଧକଲେ ତୁମେ) |
| ସୁଖଦୁଃଖେ | = ସୁଖ-ଦୁଃଖକୁ | ପାପମ୍ | = ପାପକୁ |
| ସମେ | = ସମାନ | ନ,ଅବାପ୍ସ୍ୟସି | = ପ୍ରାପ୍ତ ହେବନାହିଁ । |
| କୃତ୍ୱା | = କରି (ବୁଝି) | | |
| ତତଃ | = ତାହାପରେ | | |
| ଯୁଦ୍ଧାୟ | = ଯୁଦ୍ଧପାଇଁ | | |

କର୍ମବନ୍ଧନରୁ ମୁକ୍ତିପାଇବା ପାଇଁ କର୍ମଯୋଗ ବିଷୟକ ବୁଦ୍ଧିର ବର୍ଣ୍ଣନା ।

**ଏଷା ତେଽଭିହିତା ସାଙ୍ଖ୍ୟେ ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ ।**
**ବୁଦ୍ଧ୍ୟା ଯୁକ୍ତୋ ଯୟା ପାର୍ଥ କର୍ମବନ୍ଧଂ ପ୍ରହାସ୍ୟସି ॥ ୩୯ ॥**

ଏଷା, ତେ, ଅଭିହିତା, ସାଂଖ୍ୟେ, ବୁଦ୍ଧିଃ, ଯୋଗେ, ତୁ, ଇମାମ୍, ଶୃଣୁ,
ବୁଦ୍ଧ୍ୟା, ଯୁକ୍ତଃ, ଯୟା, ପାର୍ଥ, କର୍ମବନ୍ଧମ୍, ପ୍ରହାସ୍ୟସି ।।୩୯ ।।

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ବୁଦ୍ଧିଃ | = ବୁଦ୍ଧି |
| ଏଷା | = ଏହି | ତେ | = ତୁମକୁ |

| | |
|---|---|
| ସାଂଖ୍ୟେ | = ଜ୍ଞାନଯୋଗ ଦୃଷ୍ଟିରୁ * |
| ଅଭିହିତା | = କୁହାଗଲା |
| ତୁ | = ଓ (ବର୍ତ୍ତମାନ ତୁମେ) |
| ଇମାମ୍ | = ଏହାକୁ |
| ଯୋଗେ | = କର୍ମଯୋଗଦୃଷ୍ଟିରୁ |
| ଶୃଣୁ | = ଶୁଣ ; |
| ଯୟା | = ଯେଉଁ |
| ବୁଦ୍ଧ୍ୟା | = ବୁଦ୍ଧିଦ୍ୱାରା |
| ଯୁକ୍ତଃ | = ଯୁକ୍ତହୋଇ (ତୁମେ) |
| କର୍ମବନ୍ଧମ୍ | = କର୍ମର ବନ୍ଧନକୁ |
| ପ୍ରହାସ୍ୟସି | = ଭଲରୂପେ ତ୍ୟାଗ କରିଦେବ ବା ସର୍ବଥା ମୁକ୍ତ ହୋଇଯିବ । |

କର୍ମଯୋଗର ମହିମା ବର୍ଣ୍ଣନ ।

**ନେହାଭିକ୍ରମନାଶୋଽସ୍ତି ପ୍ରତ୍ୟବାୟୋ ନ ବିଦ୍ୟତେ ।**
**ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍ ॥ ୪୦ ॥**

ନ, ଇହ, ଅଭିକ୍ରମନାଶଃ, ଅସ୍ତି, ପ୍ରତ୍ୟବାୟଃ, ନ, ବିଦ୍ୟତେ, ସ୍ୱଳ୍ପମ୍, ଅପି, ଅସ୍ୟ, ଧର୍ମସ୍ୟ, ତ୍ରାୟତେ, ମହତଃ, ଭୟାତ୍ ।।୪୦।।

ଏବଂ-

| | |
|---|---|
| ଇହ | = ଏହି କର୍ମଯୋଗରେ |
| ଅଭିକ୍ରମନାଶଃ | = ଆରମ୍ଭର ଅର୍ଥାତ୍ ବୀଜର ନାଶ |
| ନ, ଅସ୍ତି | = ହୁଏନାହିଁ (ଏବଂ) |
| ପ୍ରତ୍ୟବାୟଃ | = ଓଲଟା ଫଳ ରୂପକ ଦୋଷ (ମଧ୍ୟ) |
| ନ, ବିଦ୍ୟତେ | = ହୁଏନାହିଁ (ବରଂ) |
| ଅସ୍ୟ | = ଏହି କର୍ମଯୋଗ ରୂପକ |
| ଧର୍ମସ୍ୟ | = ଧର୍ମର |
| ସ୍ୱଳ୍ପମ୍ | = ସାମାନ୍ୟମାତ୍ର (ସାଧନା) |
| ଅପି | = ମଧ୍ୟ |
| ମହତଃ, ଭୟାତ୍ | = ଜନ୍ମ-ମୃତ୍ୟୁ ରୂପକ ବିରାଟ ଭୟରୁ |
| ତ୍ରାୟତେ | = ରକ୍ଷା କରିଦିଏ । |

* ଅଧ୍ୟାୟ ୩ ଶ୍ଳୋକ ୩ର ଟିପ୍ପଣୀ ଦ୍ରଷ୍ଟବ୍ୟ ।

ନିଶ୍ଚୟାତ୍ମିକା ବୁଦ୍ଧି ଓ ଅବ୍ୟବସାୟୀ ସକାମ ପୁରୁଷର ବୁଦ୍ଧି ଭିତରେ ଥିବା ପ୍ରଭେଦର ନିରୂପଣ ।

ବ୍ୟବସାୟାତ୍ମିକା ବୁଦ୍ଧିରେକେହ କୁରୁନନ୍ଦନ ।
ବହୁଶାଖା ହ୍ୟନନ୍ତାଶ୍ଚ ବୁଦ୍ଧୟୋଽବ୍ୟବସାୟିନାମ୍ ॥ ୪୧ ॥

ବ୍ୟବସାୟାତ୍ମିକା, ବୁଦ୍ଧିଃ, ଏକା, ଇହ, କୁରୁନନ୍ଦନ, ବହୁଶାଖାଃ, ହି, ଅନନ୍ତାଃ, ଚ, ବୁଦ୍ଧୟଃ, ଅବ୍ୟବସାୟିନାମ୍ ।।୪୧ ।।

ଏବଂ—

| | | | |
|---|---|---|---|
| କୁରୁନନ୍ଦନ | = ହେ ଅର୍ଜୁନ ! | | ବିଚାରଯୁକ୍ତ |
| ଇହ | = ଏହି | | ବିବେକହୀନ |
| | କର୍ମଯୋଗରେ | | ସକାମ |
| ବ୍ୟବସାୟାତ୍ମିକା | = ନିଶ୍ଚୟାତ୍ମିକା | | ମନୁଷ୍ୟମାନଙ୍କର |
| ବୁଦ୍ଧିଃ | = ବୁଦ୍ଧି | ବୁଦ୍ଧୟଃ | = ବୁଦ୍ଧିଗୁଡ଼ିକ |
| ଏକା | = ଗୋଟିଏ | ହି | = ହିଁ |
| | ମାତ୍ର | ବହୁଶାଖାଃ | = ବହୁପ୍ରକାର |
| (ଭବତି) | = ହୁଏ; (କିନ୍ତୁ) | ଚ | = ଏବଂ |
| ଅବ୍ୟବସାୟିନାମ୍ | = ଅସ୍ଥିର | ଅନନ୍ତାଃ | = ଅସଂଖ୍ୟ (ହୁଏ) । |

ସ୍ୱର୍ଗ ପରାୟଣ ସକାମ ମନୁଷ୍ୟମାନଙ୍କ ସ୍ୱଭାବର ବର୍ଣ୍ଣନ ।

ଯାମିମାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତ୍ୟବିପଶ୍ଚିତଃ ।
ବେଦବାଦରତାଃ ପାର୍ଥ ନାନ୍ୟଦସ୍ତୀତି ବାଦିନଃ ॥ ୪୨ ॥

କାମାତ୍ମାନଃ ସ୍ୱର୍ଗପରା ଜନ୍ମକର୍ମଫଳପ୍ରଦାମ୍ ।
କ୍ରିୟାବିଶେଷବହୁଳାଂ ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି ॥ ୪୩ ॥

ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ ତୟାପହୃତଚେତସାମ୍ ।
ବ୍ୟବସାୟାତ୍ମିକା ବୁଦ୍ଧିଃ ସମାଧୌ ନ ବିଧୀୟତେ ॥ ୪୪ ॥

ଯାମ୍, ଇମାମ୍, ପୁଷ୍ପିତାମ୍, ବାଚମ୍, ପ୍ରବଦନ୍ତି, ଅବିପଶ୍ଚିତଃ, ବେଦବାଦରତାଃ, ପାର୍ଥ, ନ, ଅନ୍ୟତ୍, ଅସ୍ତି, ଇତି, ବାଦିନଃ ।।୪୨ ।।

କାମାତ୍ମାନଃ, ସ୍ୱର୍ଗପରାଃ, ଜନ୍ମକର୍ମଫଳପ୍ରଦାମ୍,
କ୍ରିୟାବିଶେଷବହୁଳାମ୍, ଭୋଗୈଶ୍ୱର୍ଯ୍ୟଗତିମ୍, ପ୍ରତି ।।୪୩।।

ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାମ୍, ତୟା, ଅପହୃତଚେତସାମ୍,
ବ୍ୟବସାୟାତ୍ମିକା, ବୁଦ୍ଧିଃ, ସମାଧୌ, ନ, ବିଧୀୟତେ ।।୪୪।।

ଏବଂ—

ପାର୍ଥ = ହେ ଅର୍ଜୁନ !
କାମାତ୍ମାନଃ = ଯେଉଁମାନେ ଭୋଗରେ ତନ୍ମୟ ହୋଇ ରହିଛନ୍ତି,
ବେଦବାଦରତାଃ = ଯେଉଁମାନେ କର୍ମ ଫଳର ପ୍ରଶଂସକ ଏବଂ ବେଦବାକ୍ୟରେ ପ୍ରୀତି ରଖନ୍ତି,
ସ୍ୱର୍ଗପରାଃ = ଯାହାଙ୍କ ବୁଦ୍ଧିରେ ସ୍ୱର୍ଗ ହିଁ ପରମ ପ୍ରାପ୍ୟ ବସ୍ତୁ (ଏବଂ ଯେ ସ୍ୱର୍ଗରୁ ବଳି )
ଅନ୍ୟତ୍ = ଅନ୍ୟ (କୌଣସି ବସ୍ତୁ)
ନ, ଅସ୍ତି = ନାହିଁ
ଇତି = ବୋଲି
ବାଦିନଃ = କହନ୍ତି (ସେହି),
ଅବିପଶ୍ଚିତଃ = ଅବିବେକୀମାନେ
ଇମାମ୍ = ଏହିପରି
ଯାମ୍ = ଯେଉଁ
ପୁଷ୍ପିତାମ୍ = ପୁଷ୍ପିତ ବା ଶୁଣିବାକୁ ମଧୁର-ସୁନ୍ଦର ଲାଗୁଥିବା
ବାଚମ୍ = ବାଣୀକୁ
ପ୍ରବଦନ୍ତି = କହନ୍ତି (ଯାହାକି)
ଜନ୍ମକର୍ମ-ଫଳପ୍ରଦାମ୍ = ଜନ୍ମରୂପକ କର୍ମଫଳ ଦିଏ (ଏବଂ),
ଭୋଗୈଶ୍ୱର୍ଯ୍ୟ-ଗତିମ୍, ପ୍ରତି = ଭୋଗ ତଥା ଐଶ୍ୱର୍ଯ୍ୟ ପ୍ରାପ୍ତିପାଇଁ
କ୍ରିୟାବିଶେଷ-ବହୁଳାମ୍ = ନାନାପ୍ରକାର କ୍ରିୟାର ବର୍ଣ୍ଣନା କରେ (ଏବଂ)
ତୟା = ସେହି ବାଣୀଦ୍ୱାରା
ଅପହୃତ-ଚେତସାମ୍ = ଯେଉଁମାନଙ୍କର ଚିତ୍ତ ଅପହୃତ ହୋଇଯାଇଛି;

ଭୋଗୈଶ୍ୱର୍ଯ୍ୟ-ପ୍ରସକ୍ତାନାମ୍ = ଯେଉଁମାନେ ଭୋଗ ଓ ଐଶ୍ୱର୍ଯ୍ୟରେ ଅତ୍ୟନ୍ତ ଆସକ୍ତ, (ସେହି ପୁରୁଷଙ୍କ)

ସମାଧୌ = ପରମାତ୍ମାଙ୍କ ଠାରେ

ବ୍ୟବସାୟାତ୍ମିକା = ନିଶ୍ଚୟାତ୍ମିକା

ବୁଦ୍ଧିଃ = ବୁଦ୍ଧି

ନ, ବିଧୀୟତେ = ହୁଏ ନାହିଁ ।

ଅର୍ଜୁନଙ୍କୁ ନିଷ୍କାମୀ ଏବଂ ଆତ୍ମସଂଯମୀ ହେବାପାଇଁ ଆଜ୍ଞା ।

**ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ ।**
**ନିର୍ଦ୍ୱନ୍ଦ୍ୱୋ ନିତ୍ୟସତ୍ତ୍ୱସ୍ଥୋ ନିର୍ଯୋଗକ୍ଷେମ ଆତ୍ମବାନ୍ ॥ ୪୫ ॥**

ତ୍ରୈଗୁଣ୍ୟବିଷୟାଃ, ବେଦାଃ, ନିସ୍ତ୍ରୈଗୁଣ୍ୟଃ, ଭବ, ଅର୍ଜୁନ,
ନିର୍ଦ୍ୱନ୍ଦ୍ୱଃ, ନିତ୍ୟସତ୍ତ୍ୱସ୍ଥଃ, ନିର୍ଯୋଗକ୍ଷେମଃ, ଆତ୍ମବାନ୍ ।।୪୫।।

ଏବଂ—

ଅର୍ଜୁନ = ହେ ଅର୍ଜୁନ !

ବେଦାଃ = ବେଦମାନେ (ଉପରୋକ୍ତ ପ୍ରକାରେ)

ତ୍ରୈଗୁଣ୍ୟବିଷୟାଃ = ତିନିଗୁଣର କାର୍ଯ୍ୟରୂପ ସମସ୍ତ ଭୋଗ ଏବଂ ସେସବୁର ସାଧନ ମାନଙ୍କର ପ୍ରତିପାଦନ କରନ୍ତି; (ସେଥିପାଇଁ ତୁମେ)

ନିସ୍ତ୍ରୈଗୁଣ୍ୟଃ = ସେହିସବୁ ଭୋଗ ଏବଂ ତାହାର ସାଧନ ମାନଙ୍କରେ ଆସକ୍ତିରହିତ ଅର୍ଥାତ୍ ତ୍ରିଗୁଣାତୀତ ହୋଇଯାଅ,

ନିର୍ଦ୍ୱନ୍ଦ୍ୱଃ = ହର୍ଷ-ଶୋକାଦି ଦ୍ୱନ୍ଦ୍ୱରୁ ରହିତ ହୋଇ

ନିତ୍ୟସତ୍ତ୍ୱସ୍ଥଃ = ନିତ୍ୟବସ୍ତୁ ପରମାତ୍ମାରେ ସ୍ଥିତ ହୋଇଯାଅ (ଏବଂ)

ନିର୍ଯୋଗକ୍ଷେମଃ = ଯୋଗ ଓ କ୍ଷେମ* କୁ ନଚାହୁଁଥିବା

ଆତ୍ମବାନ୍, ଭବ = ସ୍ୱାଧୀନ ଅନ୍ତଃକରଣଯୁକ୍ତ ହୋଇଯାଅ ।

* ଅପ୍ରାପ୍ତିର ପ୍ରାପ୍ତିକୁ 'ଯୋଗ' ଏବଂ ପ୍ରାପ୍ତ ବସ୍ତୁର ରକ୍ଷାର ନାମ 'କ୍ଷେମ' ଅଟେ ।

ବ୍ରହ୍ମଜ୍ଞ ବ୍ରାହ୍ମଣଙ୍କ ପାଇଁ ବେଦୋକ୍ତ କର୍ମଫଳରୂପ ସୁଖଭୋଗ ଅପ୍ରୟୋଜନ ବୋଲି ଉକ୍ତି ।

**ଯାବାନର୍ଥ ଉଦପାନେ ସର୍ବତଃ ସଂପ୍ଲୁତୋଦକେ ।**
**ତାବାନ୍ ସର୍ବେଷୁ ବେଦେଷୁ ବ୍ରାହ୍ମଣସ୍ୟ ବିଜାନତଃ ॥ ୪୬ ॥**

ଯାବାନ୍, ଅର୍ଥଃ, ଉଦପାନେ, ସର୍ବତଃ, ସଂପ୍ଲୁତୋଦକେ, ତାବାନ୍, ସର୍ବେଷୁ, ବେଦେଷୁ, ବ୍ରାହ୍ମଣସ୍ୟ, ବିଜାନତଃ ।।୪୬।।

**କାରଣ—**

ସର୍ବତଃ = ସବୁଦିଗରୁ
ସଂପ୍ଲୁତୋଦକେ = ପରିପୂର୍ଣ୍ଣ ଜଳାଶୟ
(ପ୍ରାପ୍ତେ ସତି) = ପ୍ରାପ୍ତ ହୋଇଗଲେ
ଉଦପାନେ = ଛୋଟ ଜଳାଶୟରେ (ମନୁଷ୍ୟର)
ଯାବାନ୍ = ଯେତିକି
ଅର୍ଥଃ = ପ୍ରୟୋଜନ
(ଅସ୍ତି) = ରହେ

ବିଜାନତଃ = ବ୍ରହ୍ମର ତତ୍ତ୍ୱକୁ ଜାଣୁଥିବା
ବ୍ରାହ୍ମଣସ୍ୟ = ବ୍ରାହ୍ମଣଙ୍କର
ସର୍ବେଷୁ = ସମସ୍ତ
ବେଦେଷୁ = ବେଦରେ
ତାବାନ୍ = ସେତିକି ପ୍ରୟୋଜନ ରହିଯାଏ (ଅର୍ଥାତ୍ କୌଣସି ପ୍ରୟୋଜନ ରହେ ନାହିଁ) ।

ସୂତ୍ର ରୂପରେ କର୍ମଯୋଗର ସ୍ୱରୂପ ବର୍ଣ୍ଣନ ।

**କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।**
**ମା କର୍ମଫଳହେତୁର୍ଭୂର୍ମା ତେ ସଙ୍ଗୋଽସ୍ତ୍ୱକର୍ମଣି ॥ ୪୭ ॥**

କର୍ମଣି, ଏବ, ଅଧିକାରଃ, ତେ, ମା, ଫଳେଷୁ, କଦାଚନ, ମା, କର୍ମଫଳହେତୁଃ, ଭୂଃ, ମା, ତେ, ସଙ୍ଗଃ, ଅସ୍ତୁ, ଅକର୍ମଣି ।।୪୭।।

**ଏହି କାରଣରୁ—**

ତେ = ତୁମର
କର୍ମଣି = କର୍ମ କରିବାରେ
ଏବ = ହିଁ

ଅଧିକାରଃ = ଅଧିକାର ଅଛି (ତାହାର)
ଫଳେଷୁ = ଫଳମାନଙ୍କରେ

| | | | |
|---|---|---|---|
| କଦାଚନ | = କଦାପି | ତେ | = ତୁମର |
| ମା | = ନାହିଁ । | ଅକର୍ମଣି | = କର୍ମ ନ କରିବାରେ (ମଧ୍ୟ) |
| କର୍ମଫଳହେତୁଃ | = (ତେଣୁ ତୁମେ) କର୍ମଫଳର ହେତୁ | ସଙ୍ଗଃ | = ଆସକ୍ତି |
| ମା, ଭୂଃ | = ହୁଅନାହିଁ (ତଥା) | ମା, ଅସ୍ତୁ | = ନ ହେଉ । |

ଯୋଗର ପରିଭାଷା ରୂପେ ସମତ୍ୱର କଥନ ।

**ଯୋଗସ୍ଥଃ କୁରୁ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା ଧନଞ୍ଜୟ ।**
**ସିଦ୍ଧ୍ୟସିଦ୍ଧ୍ୟୋଃ ସମୋ ଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ ॥ ୪୮ ॥**

ଯୋଗସ୍ଥଃ, କୁରୁ, କର୍ମାଣି, ସଙ୍ଗମ୍, ତ୍ୟକ୍ତ୍ୱା, ଧନଞ୍ଜୟ,
ସିଦ୍ଧ୍ୟସିଦ୍ଧ୍ୟୋଃ, ସମଃ, ଭୂତ୍ୱା, ସମତ୍ୱମ୍, ଯୋଗଃ, ଉଚ୍ୟତେ ।୪୮ ।।

| | | | |
|---|---|---|---|
| ଧନଞ୍ଜୟ | = ହେ ଧନଞ୍ଜୟ ! | ଯୋଗସ୍ଥଃ | = ଯୋଗରେ ସ୍ଥିତ ରହି |
| ସଙ୍ଗମ୍ | =(ତୁମେ) ଆସକ୍ତିକୁ | କର୍ମାଣି | = କର୍ତ୍ତବ୍ୟ କର୍ମଗୁଡ଼ିକୁ |
| ତ୍ୟକ୍ତ୍ୱା | = ତ୍ୟାଗକରି | କୁରୁ | = କର; |
| ସିଦ୍ଧ୍ୟସିଦ୍ଧ୍ୟୋଃ | = ସିଦ୍ଧି ଏବଂ ଅସିଦ୍ଧିରେ | ସମତ୍ୱମ୍ (ଏବ) | = ସମତ୍ୱକୁ ହିଁ * |
| ସମଃ | = ସମାନ ବୁଦ୍ଧିଯୁକ୍ତ | ଯୋଗଃ | = ଯୋଗ |
| ଭୂତ୍ୱା | = ହୋଇ | ଉଚ୍ୟତେ | = କୁହାଯାଏ । |

ସମତ୍ୱ ବୁଦ୍ଧି ଅପେକ୍ଷା ସକାମ କର୍ମକୁ ଅତ୍ୟନ୍ତ ତୁଚ୍ଛ ତଥା କର୍ମଫଳ ଚାହୁଁଥିବା ପୁରୁଷ ଅତ୍ୟନ୍ତ ଦୀନ ବୋଲି ଉକ୍ତି ।

**ଦୂରେଣ ହ୍ୟବରଂ କର୍ମ ବୁଦ୍ଧିଯୋଗାଦ୍ଧନଞ୍ଜୟ ।**
**ବୁଦ୍ଧୌ ଶରଣମନ୍ୱିଚ୍ଛ କୃପଣାଃ ଫଳହେତବଃ ॥ ୪୯ ॥**

ଦୂରେଣ, ହି, ଅବରମ୍, କର୍ମ, ବୁଦ୍ଧିଯୋଗାତ୍, ଧନଞ୍ଜୟ,
ବୁଦ୍ଧୌ, ଶରଣମ୍, ଅନ୍ୱିଚ୍ଛ, କୃପଣାଃ, ଫଳହେତବଃ ।।୪୯ ।।

* କୌଣସି କର୍ମରେ ତାହାର ପୂର୍ଣ୍ଣ ହେବା ବା ନହେବା ତଥା ଫଳରେ ସମଭାବ ରଖିବାର ନାମ 'ସମତ୍ୱ' ଅଟେ ।

## ଏହି ସମତ୍ୱ ରୂପ—

| | | | |
|---|---|---|---|
| ବୁଦ୍ଧିଯୋଗାତ୍ | = ବୁଦ୍ଧିଯୋଗଠାରୁ | ଅନ୍ୱିଚ୍ଛ | = ଖୋଜ, ଅର୍ଥାତ୍ ବୁଦ୍ଧିଯୋଗର ହିଁ ଆଶ୍ରୟ ଗ୍ରହଣ କର; |
| କର୍ମ | = ସକାମ କର୍ମ | ହି | = କାରଣ |
| ଦୂରେଣ | = ଅତ୍ୟନ୍ତ (ହିଁ) | ଫଳହେତବଃ | = ଫଳର କାରଣ ହେଉଥିବା ଲୋକମାନେ |
| ଅବରମ୍ | = ନିକୃଷ୍ଟ ଅଟେ । | କୃପଣାଃ | = ଅତ୍ୟନ୍ତ ଦୀନ ଅଟନ୍ତି । |
| (ଅତଃ) | = ଏଣୁ | | |
| ଧନଞ୍ଜୟ | = ହେ ଧନଞ୍ଜୟ ! | | |
| ବୁଦ୍ଧୌ | = (ତୁମେ) ସମବୁଦ୍ଧିରେ (ହିଁ) | | |
| ଶରଣମ୍ | = ରକ୍ଷାର ଉପାୟ | | |

ସମତ୍ୱ ବୁଦ୍ଧିଯୁକ୍ତ ପୁରୁଷଙ୍କ ପ୍ରଶଂସା, କର୍ମଯୋଗ ଅନୁଷ୍ଠାନ ପାଇଁ ଆଜ୍ଞା, ସମଭାବର ଫଳ ଅନାମୟପଦର ପ୍ରାପ୍ତି ବୋଲି ଉକ୍ତି ।

**ବୁଦ୍ଧିଯୁକ୍ତୋ ଜହାତୀହ ଉଭେ ସୁକୃତଦୁଷ୍କୃତେ ।**
**ତସ୍ମାଦ୍‌ଯୋଗାୟ ଯୁଜ୍ୟସ୍ୱ ଯୋଗଃ କର୍ମସୁ କୌଶଳମ୍ ॥ ୫୦ ॥**

ବୁଦ୍ଧିଯୁକ୍ତଃ, ଜହାତି, ଇହ, ଉଭେ, ସୁକୃତଦୁଷ୍କୃତେ,
ତସ୍ମାତ୍, ଯୋଗାୟ, ଯୁଜ୍ୟସ୍ୱ, ଯୋଗଃ, କର୍ମସୁ, କୌଶଳମ୍ ॥୫୦॥

## ଏବଂ—

| | | | |
|---|---|---|---|
| ବୁଦ୍ଧିଯୁକ୍ତଃ | = ସମବୁଦ୍ଧିଯୁକ୍ତ(ପୁରୁଷ) | ଯୋଗାୟ | = ସମତ୍ୱରୂପକ ଯୋଗରେ |
| ସୁକୃତଦୁଷ୍କୃତେ | = ପୁଣ୍ୟ ଏବଂ ପାପ | ଯୁଜ୍ୟସ୍ୱ | = ଲାଗିଯାଅ (ଏହି) |
| ଉଭେ | = ଉଭୟକୁ | ଯୋଗଃ | = ସମତ୍ୱରୂପକ ଯୋଗ (ହିଁ) |
| ଇହ | = ଇହଲୋକରେ | କର୍ମସୁ | = କର୍ମମାନଙ୍କରେ |
| ଜହାତି | = ତ୍ୟାଗ କରିଦିଅନ୍ତି ଅର୍ଥାତ୍ ସେଥିରୁ ମୁକ୍ତ ହୋଇଯାଆନ୍ତି । | କୌଶଳମ୍ | = କୁଶଳତା ଅର୍ଥାତ୍ କର୍ମବନ୍ଧନରୁ ମୁକ୍ତି ପାଇବାର ଉପାୟ । |
| ତସ୍ମାତ୍ | = ତେଣୁ (ତୁମେ) | | |

**କର୍ମଜଂ ବୁଦ୍ଧିଯୁକ୍ତା ହି ଫଳଂ ତ୍ୟକ୍ତ୍ୱା ମନୀଷିଣଃ ।**
**ଜନ୍ମବନ୍ଧବିନିର୍ମୁକ୍ତାଃ ପଦଂ ଗଚ୍ଛନ୍ତ୍ୟନାମୟମ୍ ॥ ୫୧ ॥**

କର୍ମଜମ୍, ବୁଦ୍ଧିଯୁକ୍ତାଃ, ହି, ଫଳମ୍, ତ୍ୟକ୍ତ୍ୱା, ମନୀଷିଣଃ,
ଜନ୍ମବନ୍ଧବିନିର୍ମୁକ୍ତାଃ, ପଦମ୍, ଗଚ୍ଛନ୍ତି, ଅନାମୟମ୍ ।।୫୧ ।।

| | | | |
|---|---|---|---|
| ହି | = କାରଣ | ଜନ୍ମବନ୍ଧ-ବିନିର୍ମୁକ୍ତାଃ | = ଜନ୍ମରୂପକ ବନ୍ଧନରୁ ମୁକ୍ତ ହୋଇ |
| ବୁଦ୍ଧିଯୁକ୍ତାଃ | = ସମବୁଦ୍ଧିରେ ଯୁକ୍ତ | ଅନାମୟମ୍ | = ଆମୟରହିତ ଅର୍ଥାତ୍ ନିର୍ବିକାର |
| ମନୀଷିଣଃ | = ଜ୍ଞାନୀଜନ ମାନେ | ପଦମ୍ | = ପରମପଦକୁ |
| କର୍ମଜମ୍ | = କର୍ମରୁ ଜାତ | ଗଚ୍ଛନ୍ତି | = ପ୍ରାପ୍ତ ହୁଅନ୍ତି । |
| ଫଳମ୍ | = ଫଳକୁ | | |
| ତ୍ୟକ୍ତ୍ୱା | = ତ୍ୟାଗକରି, | | |

ବୈରାଗ୍ୟଦ୍ୱାରା ବୁଦ୍ଧି ଶୁଦ୍ଧ, ସ୍ଥିର ଏବଂ ନିଶ୍ଚଳ ହେବାପରେ ପରମାତ୍ମ ପ୍ରାପ୍ତି ବୋଲି କହନ୍ତି ।

**ଯଦା ତେ ମୋହକଲିଲଂ ବୁଦ୍ଧିର୍ବ୍ୟତିତରିଷ୍ୟତି ।**
**ତଦା ଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ ॥ ୫୨ ॥**

ଯଦା, ତେ, ମୋହକଲିଲମ୍, ବୁଦ୍ଧିଃ, ବ୍ୟତିତରିଷ୍ୟତି,
ତଦା, ଗନ୍ତାସି, ନିର୍ବେଦମ୍, ଶ୍ରୋତବ୍ୟସ୍ୟ, ଶ୍ରୁତସ୍ୟ, ଚ ।।୫୨ ।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଯଦା | = ଯେତେବେଳେ | | (ତୁମେ) |
| ତେ | = ତୁମର | ଶ୍ରୁତସ୍ୟ | = ଶୁଣିଥିବା |
| ବୁଦ୍ଧିଃ | = ବୁଦ୍ଧି | ଚ | = ଏବଂ |
| ମୋହକଲିଲମ୍ | = ମୋହରୂପକ ପଙ୍କକୁ | ଶ୍ରୋତବ୍ୟସ୍ୟ | = ଶୁଣିବାକୁ ଆସୁଥିବା (ଐହିକ ଓ ପାରତ୍ରିକ ସମସ୍ତ ଭୋଗରେ) |
| ବ୍ୟତିତରିଷ୍ୟତି | = ଭଲରୂପେ ଅତିକ୍ରମ କରିଯିବ | ନିର୍ବେଦମ୍ | = ବୈରାଗ୍ୟକୁ |
| ତଦା | = ସେତେବେଳେ | ଗନ୍ତା, ଅସି | = ପ୍ରାପ୍ତହେବ । |

ଶ୍ରୁତିବିପ୍ରତିପନ୍ନା ତେ ଯଦା ସ୍ଥାସ୍ୟତି ନିଶ୍ଚଳା ।
ସମାଧାବଚଳା ବୁଦ୍ଧିସ୍ତଦା ଯୋଗମବାପ୍ସ୍ୟସି ॥ ୫୩ ॥

ଶ୍ରୁତିବିପ୍ରତିପନ୍ନା, ତେ, ଯଦା, ସ୍ଥାସ୍ୟତି, ନିଶ୍ଚଳା,
ସମାଧୌ, ଅଚଳା, ବୁଦ୍ଧିଃ, ତଦା, ଯୋଗମ୍, ଅବାପ୍ସ୍ୟସି ।।୫୩।।

ଏବଂ—

| | | | |
|---|---|---|---|
| ଶ୍ରୁତିବିପ୍ରତିପନ୍ନା | = ବିଭିନ୍ନପ୍ରକାର କଥା ଶୁଣିବାଦ୍ୱାରା ବିଚଳିତ ହୋଇଯାଇଥିବା | ସ୍ଥାସ୍ୟତି | = ହୋଇ ରହିଯିବ, |
| ତେ | = ତୁମର | ତଦା | = ସେତେବେଳେ (ତୁମେ) |
| ବୁଦ୍ଧିଃ | = ବୁଦ୍ଧି | ଯୋଗମ୍ | = ଯୋଗକୁ |
| ଯଦା | = ଯେତେବେଳେ | ଅବାପ୍ସ୍ୟସି | = ପ୍ରାପ୍ତହେବ ଅର୍ଥାତ୍ ତୁମର ପରମାତ୍ମାଙ୍କ ଠାରେ ନିତ୍ୟ ସଂଯୋଗ ହୋଇଯିବ । |
| ସମାଧୌ | = ପରମାତ୍ମାଙ୍କ ଠାରେ | | |
| ନିଶ୍ଚଳା | = ଅଚଳ (ଏବଂ) | | |
| ଅଚଳା | = ସ୍ଥିର | | |

*ଅର୍ଜୁନ ଉବାଚ*

ସ୍ଥିରବୁଦ୍ଧି ପୁରୁଷଙ୍କ ବିଷୟରେ ଅର୍ଜୁନଙ୍କ ଚାରୋଟି ପ୍ରଶ୍ନ ।

ସ୍ଥିତପ୍ରଜ୍ଞସ୍ୟ କା ଭାଷା ସମାଧିସ୍ଥସ୍ୟ କେଶବ ।
ସ୍ଥିତଧୀଃ କିଂ ପ୍ରଭାଷେତ କିମାସୀତ ବ୍ରଜେତ କିମ୍ ॥ ୫୪ ॥

ସ୍ଥିତପ୍ରଜ୍ଞସ୍ୟ, କା, ଭାଷା, ସମାଧିସ୍ଥସ୍ୟ, କେଶବ,
ସ୍ଥିତଧୀଃ, କିମ୍, ପ୍ରଭାଷେତ, କିମ୍, ଆସୀତ, ବ୍ରଜେତ, କିମ୍।।୫୪।।

**ଏହି ପ୍ରକାରେ ଭଗବାନଙ୍କ ବଚନକୁ ଶୁଣି ଅର୍ଜୁନ ପଚାରିଲେ—**

କେଶବ = ହେ କେଶବ !
ସମାଧିସ୍ଥସ୍ୟ = ସମାଧିରେ ସ୍ଥିତ
ସ୍ଥିତପ୍ରଜ୍ଞସ୍ୟ = (ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା) ସ୍ଥିରବୁଦ୍ଧି ପୁରୁଷଙ୍କର
କା, ଭାଷା = ଲକ୍ଷଣ କଣ ?(ସେହି)
ସ୍ଥିତଧୀଃ = ସ୍ଥିରବୁଦ୍ଧି ପୁରୁଷ
କିମ୍, ପ୍ରଭାଷେତ= କିପରି ବଚନ କହନ୍ତି,
କିମ୍, ଆସୀତ = କିପରି ବସନ୍ତି(ଓ)
କିମ୍, ବ୍ରଜେତ = କିପରି ଚାଲନ୍ତି ଅର୍ଥାତ୍ ବ୍ୟବହାର କରନ୍ତି ?

## ଶ୍ରୀଭଗବାନ ଉବାଚ

ପ୍ରଥମ ପ୍ରଶ୍ନର ଉତ୍ତର ଦେଇ, ସ୍ଥିରବୁଦ୍ଧି ପୁରୁଷ ସମସ୍ତ କାମନାରୁ ରହିତ ତଥା ଆତ୍ମାରେ ହିଁ ସନ୍ତୁଷ୍ଟ ରହନ୍ତି ବୋଲି ଭନ୍ତି ।

**ପ୍ରଜହାତି ଯଦା କାମାନ୍ ସର୍ବାନ୍ ପାର୍ଥ ମନୋଗତାନ୍ ।**
**ଆତ୍ମନ୍ୟେବାତ୍ମନା ତୁଷ୍ଟଃ ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ ॥ ୫୫ ॥**

ପ୍ରଜହାତି, ଯଦା, କାମାନ୍, ସର୍ବାନ୍, ପାର୍ଥ, ମନୋଗତାନ୍,
ଆତ୍ମନି, ଏବ, ଆତ୍ମନା, ତୁଷ୍ଟଃ, ସ୍ଥିତପ୍ରଜ୍ଞଃ, ତଦା, ଉଚ୍ୟତେ ।।୫୫।।

## ଏହାପରେ ଶ୍ରୀଭଗବାନ କହିଲେ—

ପାର୍ଥ = ହେ ଅର୍ଜୁନ !
ଯଦା = ଯେତେବେଳେ (ଏହି ପୁରୁଷ)
ମନୋଗତାନ୍ = ମନରେ ଥିବା
ସର୍ବାନ୍ = ସମସ୍ତ
କାମାନ୍ = କାମନାମାନଙ୍କୁ
ପ୍ରଜହାତି = ଭଲଭାବରେ ତ୍ୟାଗ କରିଦିଅନ୍ତି
(ଏବଂ)
ଆତ୍ମନା = ଆତ୍ମାଦ୍ୱାରା
ଆତ୍ମନି = ଆତ୍ମାରେ
ଏବ = ହିଁ
ତୁଷ୍ଟଃ = ସନ୍ତୁଷ୍ଟ ରହନ୍ତି
ତଦା = ସେହି ସମୟରେ (ତାଙ୍କୁ)
ସ୍ଥିତପ୍ରଜ୍ଞଃ= ସ୍ଥିତପ୍ରଜ୍ଞ
ଉଚ୍ୟତେ= (ବୋଲି) କୁହାଯାଏ ।

ସ୍ଥିରବୁଦ୍ଧି ପୁରୁଷ ଦୁଃଖରେ ଉଦ୍‌ବିଗ୍ନ ହୁଅନ୍ତି ନାହିଁ, ସୁଖରେ ନିଃସ୍ପୃହ ରହନ୍ତି ତଥା ଶୁଭାଶୁଭ ପ୍ରାପ୍ତିରେ ହର୍ଷ-ଶୋକାଦି ଦ୍ୱନ୍ଦ୍ୱରୁ ରହିତ ବୋଲି ଦ୍ୱିତୀୟ ପ୍ରଶ୍ନର ଉତ୍ତର ।

**ଦୁଃଖେଷ୍ୱନୁଦ୍‌ବିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ ।**
**ବୀତରାଗଭୟକ୍ରୋଧଃ ସ୍ଥିତଧୀର୍ମୁନିରୁଚ୍ୟତେ ॥ ୫୬ ॥**

ଦୁଃଖେଷୁ, ଅନୁଦ୍‌ବିଗ୍ନମନାଃ, ସୁଖେଷୁ, ବିଗତସ୍ପୃହଃ,
ବୀତରାଗଭୟକ୍ରୋଧଃ, ସ୍ଥିତଧୀଃ, ମୁନିଃ, ଉଚ୍ୟତେ ।।୫୬।।

**ତଥା—**

| | | | |
|---|---|---|---|
| ଦୁଃଖେଷୁ | = ଦୁଃଖମାନଙ୍କ ପ୍ରାପ୍ତିରେ | ବୀତରାଗ-ଭୟକ୍ରୋଧଃ | = ଯାହାଙ୍କର ରାଗ, ଭୟ ଓ କ୍ରୋଧ ନଷ୍ଟ ହୋଇଯାଇଛି (ସେପରି) |
| ଅନୁଦ୍‌ବିଗ୍ନମନାଃ | = ଯାହାଙ୍କ ମନ ଉଦ୍‌ବିଗ୍ନ ହୁଏ ନାହିଁ, | ମୁନିଃ | = ମୁନି |
| ସୁଖେଷୁ | = ସୁଖମାନଙ୍କ ପ୍ରାପ୍ତିରେ | ସ୍ଥିତଧୀଃ | = ସ୍ଥିରବୁଦ୍ଧି (ବୋଲି) |
| ବିଗତସ୍ପୃହଃ | = ଯେ ସର୍ବଥା ନିଃସ୍ପୃହ ରହନ୍ତି (ତଥା) | ଉଚ୍ୟତେ | = କୁହାଯାଆନ୍ତି । |

**ଯଃ ସର୍ବତ୍ରାନଭିସ୍ନେହସ୍ତତ୍ତତ୍ ପ୍ରାପ୍ୟ ଶୁଭାଶୁଭମ୍ ।**
**ନାଭିନନ୍ଦତି ନ ଦ୍ୱେଷ୍ଟି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥ ୫୭ ॥**

ଯଃ, ସର୍ବତ୍ର, ଅନଭିସ୍ନେହଃ, ତତ୍, ତତ୍, ପ୍ରାପ୍ୟ, ଶୁଭାଶୁଭମ୍
ନ, ଅଭିନନ୍ଦତି, ନ, ଦ୍ୱେଷ୍ଟି, ତସ୍ୟ, ପ୍ରଜ୍ଞା, ପ୍ରତିଷ୍ଠିତା ।।୫୭।।

**ଏବଂ—**

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | ପ୍ରାପ୍ୟ | = ପ୍ରାପ୍ତ ହୋଇ |
| ସର୍ବତ୍ର | = ସବୁଠାରେ | ନ, ଅଭିନନ୍ଦତି | = ପ୍ରସନ୍ନ ହୁଏ ନାହିଁ |
| ଅନଭିସ୍ନେହଃ | = ସ୍ନେହରହିତ ହୋଇ | ନ, ଦ୍ୱେଷ୍ଟି | = (କି) ଦ୍ୱେଷ କରେ ନାହିଁ, |
| ତତ୍, ତତ୍ | = ସେହି ସେହି | ତସ୍ୟ | = ତାହାଙ୍କର |
| ଶୁଭାଶୁଭମ୍ | = ଶୁଭ ବା ଅଶୁଭ (ବସ୍ତୁ)କୁ | ପ୍ରଜ୍ଞା | = ବୁଦ୍ଧି |
| | | ପ୍ରତିଷ୍ଠିତା | = ସ୍ଥିର ଅଟେ । |

ତୃତୀୟ ପ୍ରଶ୍ନର ଉତ୍ତରରେ ଭଗବାନ୍ କଇଁଛର ଉଦାହରଣ ଦେଇ ଇନ୍ଦ୍ରିୟନିଗ୍ରହର କଥା କହୁଛନ୍ତି ।

**ଯଦା ସଂହରତେ ଚାୟଂ କୂର୍ମୋଽଙ୍ଗାନୀବ ସର୍ବଶଃ ।**
**ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥ ୫୮ ॥**

ଯଦା, ସଂହରତେ, ଚ, ଅୟମ୍, କୂର୍ମଃ, ଅଙ୍ଗାନି, ଇବ, ସର୍ବଶଃ,
ଇନ୍ଦ୍ରିୟାଣି, ଇନ୍ଦ୍ରିୟାର୍ଥେଭ୍ୟଃ, ତସ୍ୟ, ପ୍ରଜ୍ଞା, ପ୍ରତିଷ୍ଠିତା ।।୫୮।।

ଚ = ଏବଂ
କୂର୍ମଃ = କଇଁଛ
ସର୍ବଶଃ = ସବୁଦିଗରୁ (ନିଜର)
ଅଙ୍ଗାନି = ଅଙ୍ଗପ୍ରତ୍ୟଙ୍ଗ ଗୁଡ଼ିକୁ
ଇବ = (ଯେପରି ସଙ୍କୁଚିତ କରିନିଏ, ସେପରି ହିଁ)
ଯଦା = ଯେତେବେଳେ
ଅୟମ୍ = ଏହି ପୁରୁଷ
ଇନ୍ଦ୍ରିୟାର୍ଥେଭ୍ୟଃ = ଇନ୍ଦ୍ରିୟସମୂହର ବିଷୟମାନଙ୍କରୁ
ଇନ୍ଦ୍ରିୟାଣି = ଇନ୍ଦ୍ରିୟମାନଙ୍କୁ
ସଂହରତେ = ସକଳ ପ୍ରକାରେ ହଟାଇ ଆଣେ, (ସେତେବେଳେ)
ତସ୍ୟ = ତାଙ୍କର
ପ୍ରଜ୍ଞା = ବୁଦ୍ଧି
ପ୍ରତିଷ୍ଠିତା = ସ୍ଥିର ଅଟେ (ବୋଲି ଜାଣିବା ଉଚିତ) ।

ଇନ୍ଦ୍ରିୟମାନଙ୍କ ଦ୍ୱାରା ହଠପୂର୍ବକ ବିଷୟମାନଙ୍କ ଠାରୁ ନିବୃତ୍ତ କରାଗଲେ ବି ଆସକ୍ତିର ନିବୃତ୍ତି ହୁଏ ନାହିଁ, ଯାହା ପରମାତ୍ମାଙ୍କ ଦର୍ଶନରେ ହୋଇଥାଏ ।

**ବିଷୟା ବିନିବର୍ତ୍ତନ୍ତେ ନିରାହାରସ୍ୟ ଦେହିନଃ ।**
**ରସବର୍ଜ୍ଜଂ ରସୋଽପ୍ୟସ୍ୟ ପରଂ ଦୃଷ୍ଟ୍ୱା ନିବର୍ତ୍ତତେ ॥ ୫୯ ॥**

ବିଷୟାଃ, ବିନିବର୍ତ୍ତନ୍ତେ, ନିରାହାରସ୍ୟ, ଦେହିନଃ,
ରସବର୍ଜ୍ଜମ୍, ରସଃ, ଅପି, ଅସ୍ୟ, ପରମ୍, ଦୃଷ୍ଟ୍ୱା, ନିବର୍ତ୍ତତେ ।।୫୯ ।।

**ଯଦ୍ୟପି—**

ନିରାହାରସ୍ୟ = (ଇନ୍ଦ୍ରିୟମାନଙ୍କ ଦ୍ୱାରା) ବିଷୟମାନଙ୍କୁ ଗ୍ରହଣ କରୁ ନ ଥିବା
ଦେହିନଃ = ପୁରୁଷର
ବିଷୟାଃ = (କେବଳ) ବିଷୟମାନେ ହିଁ
ବିନିବର୍ତ୍ତନ୍ତେ = ନିବୃତ୍ତ ହୋଇଯାଆନ୍ତି, ପରନ୍ତୁ ସେମାନଙ୍କ ଠାରେ ରହୁଥିବା
ରସବର୍ଜ୍ଜମ୍ = ଆସକ୍ତି ନିବୃତ୍ତ ହୁଏ ନାହିଁ ।
ଅସ୍ୟ = (କିନ୍ତୁ) ଏହି ସ୍ଥିତପ୍ରଜ୍ଞ ପୁରୁଷଙ୍କର
ରସଃ = ଆସକ୍ତି
ଅପି = ମଧ୍ୟ
ପରମ୍ = ପରମାତ୍ମାଙ୍କୁ
ଦୃଷ୍ଟ୍ୱା = ସାକ୍ଷାତ୍‌କାର କରି
ନିବର୍ତ୍ତତେ = ନିବୃତ୍ତ ହୋଇଯାଏ ।

ଇନ୍ଦ୍ରିୟମାନଙ୍କ ପ୍ରବଳତାର ନିରୂପଣ ।

**ଯତତୋ ହ୍ୟପି କୌନ୍ତେୟ ପୁରୁଷସ୍ୟ ବିପଶ୍ଚିତଃ ।**
**ଇନ୍ଦ୍ରିୟାଣି ପ୍ରମାଥୀନି ହରନ୍ତି ପ୍ରସଭଂ ମନଃ ॥ ୬୦ ॥**

ଯତତଃ, ହି, ଅପି, କୌନ୍ତେୟ, ପୁରୁଷସ୍ୟ, ବିପଶ୍ଚିତଃ,
ଇନ୍ଦ୍ରିୟାଣି, ପ୍ରମାଥୀନି, ହରନ୍ତି, ପ୍ରସଭମ୍, ମନଃ ।।୬୦।।

**ଏବଂ—**

| | | | |
|---|---|---|---|
| କୌନ୍ତେୟ | = ହେ ଅର୍ଜୁନ ! | ବିପଶ୍ଚିତଃ | = ବୁଦ୍ଧିମାନ୍ |
| ହି | = ଆସକ୍ତି ନାଶ ନ ହୋଇଥିବାରୁ | ପୁରୁଷସ୍ୟ | = ପୁରୁଷଙ୍କର |
| | | ମନଃ | = ମନକୁ |
| ପ୍ରମାଥୀନି | = ଏହି ପ୍ରମଥନ-ସ୍ୱଭାବଯୁକ୍ତ | ଅପି | = ମଧ୍ୟ |
| | | ପ୍ରସଭମ୍ | = ବଳପୂର୍ବକ |
| ଇନ୍ଦ୍ରିୟାଣି | = ଇନ୍ଦ୍ରିୟମାନେ | ହରନ୍ତି | = ହରଣ କରିନିଅନ୍ତି । |
| ଯତତଃ | = ଯତ୍ନଶୀଳ | | |

ମନ ଏବଂ ଇନ୍ଦ୍ରିୟମାନଙ୍କୁ ସଂଯମ-ପୂର୍ବକ ଭଗବତ୍ ପରାୟଣ କରିବା ପାଇଁ ପ୍ରେରଣା ତଥା ଇନ୍ଦ୍ରିୟ-ବିଜୟୀ ପୁରୁଷଙ୍କ ପ୍ରଶଂସା ।

**ତାନି ସର୍ବାଣି ସଂଯମ୍ୟ ଯୁକ୍ତ ଆସୀତ ମତ୍ପରଃ ।**
**ବଶେ ହି ଯସ୍ୟେନ୍ଦ୍ରିୟାଣି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥ ୬୧ ॥**

ତାନି, ସର୍ବାଣି, ସଂଯମ୍ୟ, ଯୁକ୍ତଃ, ଆସୀତ, ମତ୍ପରଃ,
ବଶେ, ହି, ଯସ୍ୟ, ଇନ୍ଦ୍ରିୟାଣି, ତସ୍ୟ, ପ୍ରଜ୍ଞା, ପ୍ରତିଷ୍ଠିତା ।।୬୧।।

**ଏଥିପାଇଁ ସାଧକ ମାନଙ୍କର ଉଚିତ**
**ଯେ ସେମାନେ—**

| | | | |
|---|---|---|---|
| ତାନି | = ସେହି | ମତ୍ପରଃ | = ମୋର ପରାୟଣ ହୋଇ |
| ସର୍ବାଣି | = ସମସ୍ତ ଇନ୍ଦ୍ରିୟ ମାନଙ୍କୁ | ଆସୀତ | = ଧ୍ୟାନରେ ବସିବା ଉଚିତ; |
| ସଂଯମ୍ୟ | = ସଂଯତ କରି, | | |
| ଯୁକ୍ତଃ | = ସମାହିତଚିତ୍ତ ହୋଇ, | ହି | = କାରଣ |

| | | | |
|---|---|---|---|
| ଯସ୍ୟ | = ଯେଉଁ ପୁରୁଷଙ୍କର | ତସ୍ୟ | = ତାହାଙ୍କର |
| ଇନ୍ଦ୍ରିୟାଣି | = ଇନ୍ଦ୍ରିୟ ମାନେ | ପ୍ରଜ୍ଞା | = ବୁଦ୍ଧି |
| ବଶେ | = ବଶରେ ରହିଥାନ୍ତି, | ପ୍ରତିଷ୍ଠିତା | = ସ୍ଥିର ହୋଇଯାଏ । |

ବିଷୟ ମାନଙ୍କ ଚିନ୍ତନ ଦ୍ୱାରା ଆସକ୍ତି ଆଦି ଅବଗୁଣମାନଙ୍କର ଉତ୍ପତ୍ତି ଏବଂ ଅଧଃପତନର କଥନ ।

ଧ୍ୟାୟତୋ ବିଷୟାନ୍ ପୁଂସଃ ସଙ୍ଗସ୍ତେଷୂପଜାୟତେ ।
ସଙ୍ଗାତ୍ସଞ୍ଜାୟତେ କାମଃ କାମାତ୍ କ୍ରୋଧୋଽଭିଜାୟତେ ॥ ୬୨ ।

ଧ୍ୟାୟତଃ, ବିଷୟାନ୍, ପୁଂସଃ, ସଙ୍ଗଃ, ତେଷୁ, ଉପଜାୟତେ, ସଙ୍ଗାତ୍, ସଞ୍ଜାୟତେ, କାମଃ, କାମାତ୍, କ୍ରୋଧଃ, ଅଭିଜାୟତେ ।।୬୨ ।।

**ଏବଂ, ହେ ଅର୍ଜୁନ! ମନ ସହିତ ଇନ୍ଦ୍ରିୟମାନଙ୍କୁ ବଶ କରି ମୋର ପରାୟଣ ନହେଲେ, ମନ ଦ୍ୱାରା ବିଷୟମାନଙ୍କ ଚିନ୍ତନ ହୁଏ, ଏବଂ —**

| | | | |
|---|---|---|---|
| ବିଷୟାନ୍ | = ବିଷୟମାନଙ୍କୁ | କାମଃ | = ସେହି ବିଷୟ ମାନଙ୍କର କାମନା |
| ଧ୍ୟାୟତଃ | = ଚିନ୍ତନ କରୁଥିବା | ସଞ୍ଜାୟତେ | = ଉତ୍ପନ୍ନ ହୁଏ (ଏବଂ) |
| ପୁଂସଃ | = ପୁରୁଷର | କାମାତ୍ | = କାମନାରେ ବିଘ୍ନ ପଡ଼ିଲେ |
| ତେଷୁ | = ସେହି ବିଷୟ ମାନଙ୍କରେ | କ୍ରୋଧଃ | = କ୍ରୋଧ |
| ସଙ୍ଗଃ | = ଆସକ୍ତି | ଅଭିଜାୟତେ | = ଉତ୍ପନ୍ନ ହୁଏ । |
| ଉପଜାୟତେ | = ହୋଇଯାଏ; | | |
| ସଙ୍ଗାତ୍ | = ଆସକ୍ତିରୁ | | |

କ୍ରୋଧାଦ୍ଭବତି ସମ୍ମୋହଃ ସମ୍ମୋହାତ୍ ସ୍ମୃତିବିଭ୍ରମଃ ।
ସ୍ମୃତିଭ୍ରଂଶାଦ୍ବୁଦ୍ଧିନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି ॥ ୬୩ ॥

କ୍ରୋଧାତ୍, ଭବତି, ସମ୍ମୋହଃ, ସମ୍ମୋହାତ୍, ସ୍ମୃତିବିଭ୍ରମଃ, ସ୍ମୃତିଭ୍ରଂଶାତ୍, ବୁଦ୍ଧିନାଶଃ, ବୁଦ୍ଧିନାଶାତ୍, ପ୍ରଣଶ୍ୟତି ।।୬୩ ।।

ଏବଂ—

 କ୍ରୋଧାତ୍ = କ୍ରୋଧରୁ
ସମ୍ମୋହଃ = ଅତ୍ୟନ୍ତ ମୂଢ଼ଭାବ
ଭବତି = ଉତ୍ପନ୍ନ ହୋଇଯାଏ;
ସମ୍ମୋହାତ୍ = ମୂଢ଼ଭାବରୁ
ସ୍ମୃତିବିଭ୍ରମଃ = ସ୍ମୃତିଭ୍ରମ ହୋଇଯାଏ;
ସ୍ମୃତିଭ୍ରଂଶାତ୍ = ସ୍ମୃତିଭ୍ରମ ହୋଇଯିବାରୁ
ବୁଦ୍ଧିନାଶଃ = ବୁଦ୍ଧି ଅର୍ଥାତ୍ ଜ୍ଞାନ ଶକ୍ତିର ନାଶ ହୋଇଯାଏ (ଏବଂ)
ବୁଦ୍ଧିନାଶାତ୍ = ବୁଦ୍ଧିନାଶ ହୋଇଯିବାରୁ ସେହି ପୁରୁଷ
ପ୍ରଣଶ୍ୟତି = ନିଜ ସ୍ଥିତିରୁ ଖସିପଡ଼େ ।

ରାଗ-ଦ୍ୱେଷରୁ ରହିତ ହୋଇ କର୍ମ କରିବା ଲୋକଙ୍କୁ ଅନ୍ତଃ-କରଣର ପ୍ରସନ୍ନତା ପ୍ରାପ୍ତ ହୁଏ, ଦୁଃଖର ନାଶ ହୁଏ ତଥା ବୁଦ୍ଧି ସ୍ଥିର ହୁଏ ।

**ରାଗଦ୍ୱେଷବିୟୁକ୍ତୈସ୍ତୁ ବିଷୟାନିନ୍ଦ୍ରିୟୈଶ୍ଚରନ୍ ।**
**ଆତ୍ମବଶ୍ୟୈର୍ବିଧେୟାତ୍ମା ପ୍ରସାଦମଧିଗଚ୍ଛତି ॥ ୬୪ ॥**

ରାଗଦ୍ୱେଷବିୟୁକ୍ତୈଃ, ତୁ, ବିଷୟାନ୍, ଇନ୍ଦ୍ରିୟୈଃ, ଚରନ୍, ଆତ୍ମବଶ୍ୟୈଃ, ବିଧେୟାତ୍ମା, ପ୍ରସାଦମ୍, ଅଧିଗଚ୍ଛତି ।।୬୪।।

ତୁ = କିନ୍ତୁ
ବିଧେୟାତ୍ମା = ଅନ୍ତଃକରଣକୁ ବଶ କରିଥିବା ସାଧକ
ଆତ୍ମବଶ୍ୟୈଃ = ନିଜର ବଶ କରାଯାଇଥିବା
ରାଗଦ୍ୱେଷ- = ରାଗ-ଦ୍ୱେଷ
ବିୟୁକ୍ତୈଃ ରହିତ
ଇନ୍ଦ୍ରିୟୈଃ = ଇନ୍ଦ୍ରିୟମାନଙ୍କ ଦ୍ୱାରା
ବିଷୟାନ୍ = ବିଷୟମାନଙ୍କରେ
ଚରନ୍ = ବିଚରଣ କରି ମଧ୍ୟ
ପ୍ରସାଦମ୍ = ଅନ୍ତଃକରଣର ପ୍ରସନ୍ନତାକୁ
ଅଧିଗଚ୍ଛତି = ପ୍ରାପ୍ତ ହୁଏ ।

**ପ୍ରସାଦେ ସର୍ବଦୁଃଖାନାଂ ହାନିରସ୍ୟୋପଜାୟତେ ।**
**ପ୍ରସନ୍ନଚେତସୋ ହ୍ୟାଶୁ ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ ॥ ୬୫ ॥**

ପ୍ରସାଦେ, ସର୍ବଦୁଃଖାନାମ୍, ହାନିଃ, ଅସ୍ୟ, ଉପଜାୟତେ, ପ୍ରସନ୍ନଚେତସଃ, ହି, ଆଶୁ, ବୁଦ୍ଧିଃ, ପର୍ଯ୍ୟବତିଷ୍ଠତେ ।।୬୫।।

ଏବଂ—

| | | | |
|---|---|---|---|
| ପ୍ରସାଦେ | = ଅନ୍ତଃକରଣର ପ୍ରସନ୍ନତାରେ | ପ୍ରସନ୍ନଚେତସଃ | = ପ୍ରସନ୍ନଚିତ୍ତ ଯୁକ୍ତ କର୍ମଯୋଗୀଙ୍କର |
| ଅସ୍ୟ | = ଏହାଙ୍କର | ବୁଦ୍ଧିଃ | = ବୁଦ୍ଧି |
| | | ଆଶୁ, ହି | = ଶୀଘ୍ର ହିଁ |
| ସର୍ବଦୁଃଖାନାମ୍ | = ସବୁ ଦୁଃଖମାନଙ୍କର | ପର୍ଯ୍ୟବତିଷ୍ଠତେ | = ସବୁଆଡୁ ଅପସରି ଆସି ଏକ ପରମାତ୍ମାଙ୍କଠାରେ ଭଲଭାବରେ ସ୍ଥିର ହୋଇଯାଏ । |
| ହାନିଃ | = ଅଭାବ | | |
| ଉପଜାୟତେ | = ହୋଇଯାଏ (ଏବଂ ସେହି) | | |

ଅଯୁକ୍ତ ପୁରୁଷଙ୍କର ଶ୍ରେଷ୍ଠ ବୁଦ୍ଧି, ଭଗବତ୍ ଚିନ୍ତନ, ଶାନ୍ତି ତଥା ସୁଖର ଅଭାବର କଥନ ।

**ନାସ୍ତି ବୁଦ୍ଧିରଯୁକ୍ତସ୍ୟ ନ ଚାଯୁକ୍ତସ୍ୟ ଭାବନା ।**
**ନ ଚାଭାବୟତଃ ଶାନ୍ତିରଶାନ୍ତସ୍ୟ କୁତଃ ସୁଖମ୍ ॥ ୬୬ ॥**

ନ, ଅସ୍ତି, ବୁଦ୍ଧିଃ, ଅଯୁକ୍ତସ୍ୟ, ନ, ଚ, ଅଯୁକ୍ତସ୍ୟ, ଭାବନା,
ନ, ଚ, ଅଭାବୟତଃ, ଶାନ୍ତିଃ, ଅଶାନ୍ତସ୍ୟ, କୁତଃ, ସୁଖମ୍ ।।୬୬।।

ଏବଂ ହେ ଅର୍ଜୁନ !—

| | | | |
|---|---|---|---|
| ଅଯୁକ୍ତସ୍ୟ | = ମନ ଓ ଇନ୍ଦ୍ରିୟମାନଙ୍କୁ ଜୟ କରି ନ ଥିବା ମନୁଷ୍ୟର | ନ | = (ହୁଏ) ନାହିଁ |
| | | ଚ | = ତଥା |
| | | ଅଭାବୟତଃ | = ଭାବନାହୀନ ମନୁଷ୍ୟକୁ |
| ବୁଦ୍ଧିଃ | = ନିଶ୍ଚୟାତ୍ମିକା ବୁଦ୍ଧି | ଶାନ୍ତିଃ | = ଶାନ୍ତି |
| ନ, ଅସ୍ତି | = ହୁଏ ନାହିଁ | ନ | = (ମିଳେ) ନାହିଁ (ଏବଂ) |
| ଚ | = ଏବଂ | | |
| ଅଯୁକ୍ତସ୍ୟ | = ଅଯୁକ୍ତ ମନୁଷ୍ୟର (ଅନ୍ତଃକରଣରେ) | ଅଶାନ୍ତସ୍ୟ | = ଶାନ୍ତିରହିତ ମନୁଷ୍ୟକୁ |
| ଭାବନା | = ଆସ୍ତିକ ଭାବନା ମଧ୍ୟ | ସୁଖମ୍, କୁତଃ | = ସୁଖ କିପରି ମିଳିପାରିବ ? |

ବାୟୁ ଓ ନୌକାର ଉଦାହରଣ ଦେଇ ମନର ସହାୟତାରେ ଇନ୍ଦ୍ରିୟମାନେ ବୁଦ୍ଧିକୁ ହରଣ କରନ୍ତି ।

**ଇନ୍ଦ୍ରିୟାଣାଂ ହି ଚରତାଂ ଯନ୍ମନୋଽନୁ ବିଧୀୟତେ ।**
**ତଦସ୍ୟ ହରତି ପ୍ରଜ୍ଞାଂ ବାୟୁର୍ନାବମିବାମ୍ଭସି ॥ ୬୭ ॥**

ଇନ୍ଦ୍ରିୟାଣାମ୍, ହି, ଚରତାମ୍, ଯତ୍, ମନଃ, ଅନୁ, ବିଧୀୟତେ,
ତତ୍, ଅସ୍ୟ, ହରତି, ପ୍ରଜ୍ଞାମ୍, ବାୟୁଃ, ନାବମ୍, ଇବ, ଅମ୍ଭସି ।।୬୭ ।।

| | | |
|---|---|---|
| ହି | = | କାରଣ |
| ଇବ | = | ଯେପରି |
| ଅମ୍ଭସି | = | ଜଳରେ (ଚାଲୁଥିବା) |
| ନାବମ୍ | = | ନାବକୁ |
| ବାୟୁଃ | = | ବାୟୁ |
| ହରତି | = | ହରଣ କରି ନିଏ (ସେପରି ହିଁ) |
| ଚରତାମ୍ | = | ବିଷୟମାନଙ୍କରେ ବିଚରଣ କରୁଥିବା |
| ଇନ୍ଦ୍ରିୟାଣାମ୍ | = | ଇନ୍ଦ୍ରିୟମାନଙ୍କ ମଧ୍ୟରୁ |
| ମନଃ | = | ମନ |
| ଯତ୍ | = | ଯେଉଁ (ଇନ୍ଦ୍ରିୟ) |
| ଅନୁ | = | ସହିତ |
| ବିଧୀୟତେ | = | ରହେ, |
| ତତ୍ | = | ସେହି (ଗୋଟିଏ ଇନ୍ଦ୍ରିୟ ବି) |
| ଅସ୍ୟ | = | ଏହାର(ଏହି ଅଯୁକ୍ତ ପୁରୁଷର) |
| ପ୍ରଜ୍ଞାମ୍ | = | ବୁଦ୍ଧିକୁ (ହରଣ କରିନିଏ) । |

ସ୍ଥିରବୁଦ୍ଧି ପୁରୁଷଙ୍କ ଲକ୍ଷଣମାନଙ୍କ ମଧ୍ୟରେ ଇନ୍ଦ୍ରିୟନିଗ୍ରହକୁ ପ୍ରଧାନ ବୋଲି ଭଣନ୍ତି ।

**ତସ୍ମାଦ୍‌ଯସ୍ୟ ମହାବାହୋ ନିଗୃହୀତାନି ସର୍ବଶଃ ।**
**ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ॥ ୬୮ ॥**

ତସ୍ମାତ୍, ଯସ୍ୟ, ମହାବାହୋ, ନିଗୃହୀତାନି, ସର୍ବଶଃ,
ଇନ୍ଦ୍ରିୟାଣି, ଇନ୍ଦ୍ରିୟାର୍ଥେଭ୍ୟଃ, ତସ୍ୟ, ପ୍ରଜ୍ଞା, ପ୍ରତିଷ୍ଠିତା ।।୬୮ ।।

| | | |
|---|---|---|
| ତସ୍ମାତ୍ | = | ତେଣୁ |
| ମହାବାହୋ | = | ହେ ମହାବାହୁ ! |
| ଯସ୍ୟ | = | ଯେଉଁ ପୁରୁଷଙ୍କର |
| ଇନ୍ଦ୍ରିୟାଣି | = | ଇନ୍ଦ୍ରିୟମାନେ |
| ଇନ୍ଦ୍ରିୟାର୍ଥେଭ୍ୟଃ | = | ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କରୁ |
| ସର୍ବଶଃ | = | ସକଳପ୍ରକାରେ |
| ନିଗୃହୀତାନି | = | ନିଗୃହୀତ ହୋଇଛନ୍ତି, |
| ତସ୍ୟ | = | ତାହାଙ୍କର |
| ପ୍ରଜ୍ଞା | = | ବୁଦ୍ଧି |
| ପ୍ରତିଷ୍ଠିତା | = | ସ୍ଥିର ଅଟେ । |

ବିଷୟ ସୁଖ ସାଧାରଣ ମନୁଷ୍ୟଙ୍କ ପାଇଁ ବ୍ରହ୍ମାନନ୍ଦ ଏବଂ ତତ୍ତ୍ୱବେତ୍ତା ପୁରୁଷଙ୍କ ପାଇଁ ରାତ୍ରିର ସମାନ ବୋଲି ଭଳି ।

**ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ ।**
**ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ ॥ ୬୯ ॥**

ଯା, ନିଶା, ସର୍ବଭୂତାନାମ୍, ତସ୍ୟାମ୍, ଜାଗର୍ତି, ସଂଯମୀ,
ଯସ୍ୟାମ୍, ଜାଗ୍ରତି, ଭୂତାନି, ସା, ନିଶା, ପଶ୍ୟତଃ, ମୁନେଃ ।।୬୯ ।।

**ଏବଂ ହେ ଅର୍ଜୁନ !—**

ସର୍ବଭୂତାନାମ୍ = ସକଳ ପ୍ରାଣୀମାନଙ୍କ ନିମନ୍ତେ
ଯା = ଯାହା
ନିଶା = ରାତ୍ରି (ପରମାତ୍ମାଙ୍କ ପ୍ରତି ବିମୁଖତା)
ତସ୍ୟାମ୍ = ସେଥିରେ ନିତ୍ୟଜ୍ଞାନ - ସ୍ୱରୂପ ପରମାନନ୍ଦପ୍ରାପ୍ତ
ସଂଯମୀ = ସ୍ଥିତପ୍ରଜ୍ଞ ଯୋଗୀ
ଜାଗର୍ତି = ଜାଗ୍ରତ ରହନ୍ତି;
ଯସ୍ୟାମ୍ = ଯେଉଁ ନାଶବାନ୍ ସାଂସାରିକ ସୁଖପ୍ରାପ୍ତିରେ
ଭୂତାନି = ପ୍ରାଣୀମାନେ
ଜାଗ୍ରତି = ଜାଗ୍ରତ ରହନ୍ତି, (ଭୋଗସଂଗ୍ରହରେ ମାତି ଥାଆନ୍ତି)
ପଶ୍ୟତଃ = ପରମାତ୍ମତତ୍ତ୍ୱ ଜାଣୁଥିବା
ମୁନେଃ = ମୁନିଙ୍କ ପାଇଁ
ସା = ତାହା
ନିଶା = ରାତ୍ରି ସମାନ ।

ସମୁଦ୍ରର ଦୃଷ୍ଟାନ୍ତ ଦେଇ ଜ୍ଞାନୀ-ମହାପୁରୁଷମାନଙ୍କ ମହିମାର କଥନ ।

**ଆପୂର୍ଯ୍ୟମାଣମଚଳପ୍ରତିଷ୍ଠଂ**
**ସମୁଦ୍ରମାପଃ ପ୍ରବିଶନ୍ତି ଯଦ୍‌ବତ୍ ।**
**ତଦ୍‌ବତ୍କାମା ଯଂ ପ୍ରବିଶନ୍ତି ସର୍ବେ**
**ସ ଶାନ୍ତିମାପ୍ନୋତି ନ କାମକାମୀ ॥ ୭୦ ॥**

ଆପୂର୍ଯ୍ୟମାଣମ୍, ଅଚଳପ୍ରତିଷ୍ଠମ୍,
ସମୁଦ୍ରମ୍, ଆପଃ, ପ୍ରବିଶନ୍ତି, ଯଦ୍‌ବତ୍,
ତଦ୍‌ବତ୍, କାମାଃ, ଯମ୍, ପ୍ରବିଶନ୍ତି, ସର୍ବେ,
ସଃ, ଶାନ୍ତିମ୍, ଆପ୍ନୋତି, ନ, କାମକାମୀ ।।୭୦ ।।

**ଏବଂ—**

| | | | |
|---|---|---|---|
| ଯଦ୍‌ବତ୍ | = ଯେପରି | ଯମ୍ | = ଯେଉଁ ସ୍ଥିତପ୍ରଜ୍ଞ ପୁରୁଷଙ୍କଠାରେ (କୌଣସିପ୍ରକାର ବିକାର ଉତ୍ପନ୍ନ ନ କରି ହିଁ) |
| ଆପଃ | = ନାନା ନଦୀର ଜଳ | ପ୍ରବିଶନ୍ତି | = ପ୍ରବେଶ କରନ୍ତି |
| ଆପୂର୍ଯ୍ୟମାଣମ୍ | = ସବୁ ଦିଗରୁ ପରିପୂର୍ଣ୍ଣ ହୋଇଥିବା | ସଃ | = ସେହି ପୁରୁଷ |
| ଅଚଳପ୍ରତିଷ୍ଠମ୍ | = ଅଚଳପ୍ରତିଷ୍ଠା ଯୁକ୍ତ | ଶାନ୍ତିମ୍ | = ପରମଶାନ୍ତି (କୁ) |
| ସମୁଦ୍ରମ୍ | = ସମୁଦ୍ରରେ(ତାହାକୁ ବିଚଳିତ ନ କରି ହିଁ) | ଆପ୍ନୋତି | = ପାପ୍ତ ହୁଅନ୍ତି (କିନ୍ତୁ) |
| ପ୍ରବିଶନ୍ତି | = ପ୍ରବେଶ କରନ୍ତି, | କାମକାମୀ, ନ | = ଭୋଗ ଚାହୁଁଥିବା ଲୋକ ତାହା ପାଏ ନାହିଁ । |
| ତଦ୍‌ବତ୍ | = ସେହିପରି | | |
| ସର୍ବେ | = ସମସ୍ତ | | |
| କାମାଃ | = ଭୋଗମାନେ | | |

କାମନା, ସ୍ପୃହା, ମମତା ତଥା ଅହଙ୍କାର ରହିତ ହୋଇ ବିଚରଣ କରୁଥିବା ପୁରୁଷଙ୍କୁ ପରମଶାନ୍ତି ପ୍ରାପ୍ତି ହୁଏ ।

**ବିହାୟ କାମାନ୍ ଯଃ ସର୍ବାନ୍ ପୁମାଂଶ୍ଚରତି ନିଃସ୍ପୃହଃ ।**
**ନିର୍ମମୋ ନିରହଙ୍କାରଃ ସ ଶାନ୍ତିମଧିଗଚ୍ଛତି ॥ ୭୧ ॥**

ବିହାୟ, କାମାନ୍, ଯଃ, ସର୍ବାନ୍, ପୁମାନ୍, ଚରତି, ନିଃସ୍ପୃହଃ,
ନିର୍ମମଃ, ନିରହଙ୍କାରଃ, ସଃ, ଶାନ୍ତିମ୍, ଅଧିଗଚ୍ଛତି ।।୭୧ ।।

**କାହିଁକି ନା—**

| | | | |
|---|---|---|---|
| ଯଃ | = ଯେଉଁ | ନିରହଙ୍କାରଃ | = ଅହଙ୍କାର ରହିତ (ଏବଂ) |
| ପୁମାନ୍ | = ପୁରୁଷ | ନିଃସ୍ପୃହଃ | = ସ୍ପୃହା ରହିତ ହୋଇ |
| ସର୍ବାନ୍ | = ସମସ୍ତ | ଚରତି | = ବିଚରଣ କରେ, |
| କାମାନ୍ | = କାମନା ମାନଙ୍କୁ | ସଃ | = ସେ |
| ବିହାୟ | = ତ୍ୟାଗ କରି | ଶାନ୍ତିମ୍ | = ଶାନ୍ତିକୁ |
| ନିର୍ମମଃ | = ମମତା ରହିତ, | ଅଧିଗଚ୍ଛତି | = ପ୍ରାପ୍ତ ହୁଏ । |

ବ୍ରାହ୍ମୀସ୍ଥିତିର ମାହାତ୍ମ୍ୟକୁ ବର୍ଣ୍ଣନା କରି ଅଧ୍ୟାୟର ଉପସଂହାର ।

**ଏଷା ବ୍ରାହ୍ମୀ ସ୍ଥିତିଃ ପାର୍ଥ ନୈନାଂ ପ୍ରାପ୍ୟ ବିମୁହ୍ୟତି ।**
**ସ୍ଥିତ୍ୱାସ୍ୟାମନ୍ତକାଲେଽପି ବ୍ରହ୍ମନିର୍ବାଣମୃଚ୍ଛତି ॥ ୭୨ ॥**

ଏଷା, ବ୍ରାହ୍ମୀ, ସ୍ଥିତିଃ, ପାର୍ଥ, ନ, ଏନାମ୍, ପ୍ରାପ୍ୟ, ବିମୁହ୍ୟତି, ସ୍ଥିତ୍ୱା, ଅସ୍ୟାମ୍, ଅନ୍ତକାଳେ, ଅପି, ବ୍ରହ୍ମନିର୍ବାଣମ୍, ଋଚ୍ଛତି ।।୭୨ ।।

| | | | |
|---|---|---|---|
| ପାର୍ଥ | = ହେ ଅର୍ଜୁନ ! | ନ, ବିମୁହ୍ୟତି | = ମୋହିତ ହୁଅନ୍ତି ନାହିଁ (ଏବଂ) |
| ଏଷା | = ଏହା | ଅନ୍ତକାଳେ | = ଅନ୍ତକାଳରେ |
| ବ୍ରାହ୍ମୀ | = ବ୍ରହ୍ମ ପ୍ରାପ୍ତ ପୁରୁଷଙ୍କ | ଅପି | = ମଧ୍ୟ |
| ସ୍ଥିତିଃ | = ସ୍ଥିତି ଅଟେ; | ଅସ୍ୟାମ୍ | = ଏହି ବ୍ରାହ୍ମୀସ୍ଥିତିରେ |
| ଏନାମ୍ | = ଏହାକୁ | ସ୍ଥିତ୍ୱା | = ସ୍ଥିତ ହୋଇ |
| ପ୍ରାପ୍ୟ | = ପ୍ରାପ୍ତ ହୋଇ (ଯୋଗୀ କେବେ ହେଲେ) | ବ୍ରହ୍ମନିର୍ବାଣମ୍ | = ବ୍ରହ୍ମାନନ୍ଦକୁ |
| | | ଋଚ୍ଛତି | = ପ୍ରାପ୍ତ ହୁଅନ୍ତି । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ସାଙ୍ଖ୍ୟଯୋଗୋ ନାମ ଦ୍ୱିତୀୟୋଽଧ୍ୟାୟଃ ॥ ୨ ॥*

୦୦୦

**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ସାଂଖ୍ୟଯୋଗ' ନାମକ ଦ୍ୱିତୀୟ ଅଧ୍ୟାୟ ପୂର୍ଣ୍ଣ ହେଲା ।।୨ ।।**

**ହରିଃ ଓଁ ତତ୍ସତ୍ ହରିଃ ଓଁ ତତ୍ସତ୍ ହରିଃ ଓଁ ତତ୍ସତ୍**

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ତୃତୀୟ ଅଧ୍ୟାୟ

## କର୍ମଯୋଗ

**ପ୍ରଧାନ ବିଷୟ**

| | |
|---|---|
| ୧ ରୁ ୮ | ଜ୍ଞାନଯୋଗ ଏବଂ ନିଷ୍କାମ କର୍ମଯୋଗ ଅନୁସାରେ ଅନାସକ୍ତଭାବେ ନିୟତ କର୍ମ କରିବାର ଶ୍ରେଷ୍ଠତା ନିରୂପଣ, |
| ୯ ରୁ ୧୬ | ଯଜ୍ଞାଦି କରିବାର ଆବଶ୍ୟକତା ନିରୂପଣ, |
| ୧୭ ରୁ ୨୪ | ଜ୍ଞାନବାନ୍ ତଥା ଭଗବାନଙ୍କ ପାଇଁ ବି ଲୋକସଂଗ୍ରହାର୍ଥ କର୍ମ କରିବାର ଆବଶ୍ୟକତା ନିରୂପଣ |
| ୨୫ ରୁ ୩୫ | ଅଜ୍ଞାନୀ ଓ ଜ୍ଞାନବାନ୍ଙ୍କ ଲକ୍ଷଣ ତଥା ରାଗ-ଦ୍ୱେଷରୁ ରହିତ ହୋଇ କର୍ମ କରିବା ପାଇଁ ପ୍ରେରଣା, |
| ୩୬ ରୁ ୪୩ | ପାପର କାରଣଭୂତ 'କାମ'କୁ ବିନାଶ କରିବା ପାଇଁ ପ୍ରେରଣା । |

*ଅର୍ଜୁନ ଉବାଚ*

ଜ୍ଞାନ ଓ କର୍ମର ଶ୍ରେଷ୍ଠତା ବିଷୟରେ ଅର୍ଜୁନଙ୍କ ଶଙ୍କା ଏବଂ ନିଜର ଐକାନ୍ତିକ ଶ୍ରେୟ ସାଧନ କହିବା ପାଇଁ ଭଗବାନଙ୍କୁ ପ୍ରାର୍ଥନା ।

**ଜ୍ୟାୟସୀ ଚେତ୍ କର୍ମଣସ୍ତେ ମତା ବୁଦ୍ଧିର୍ଜନାର୍ଦ୍ଦନ ।**
**ତତ୍ କିଂ କର୍ମଣି ଘୋରେ ମାଂ ନିୟୋଜୟସି କେଶବ ॥ ୧ ॥**

ଜ୍ୟାୟସୀ, ଚେତ୍, କର୍ମଣଃ, ତେ, ମତା, ବୁଦ୍ଧିଃ, ଜନାର୍ଦ୍ଦନ,
ତତ୍, କିମ୍, କର୍ମଣି, ଘୋରେ, ମାମ୍, ନିୟୋଜୟସି, କେଶବ ।।୧ ।।

**ଏହା ଉପରେ ଅର୍ଜୁନ ପ୍ରଶ୍ନ କଲେ କି—**

| | | | |
|---|---|---|---|
| ଜନାର୍ଦ୍ଦନ | = ହେ ଜନାର୍ଦ୍ଦନ ! | ଜ୍ୟାୟସୀ | = ଶ୍ରେଷ୍ଠ ବୋଲି |
| ଚେତ୍ | = ଯଦି | ମତା | = ମାନ୍ୟ ଅଟେ |
| ତେ | = ଆପଣଙ୍କୁ | ତତ୍ | = ତେବେ |
| କର୍ମଣଃ | = କର୍ମ ଅପେକ୍ଷା | କେଶବ | = ହେ କେଶବ ! |
| ବୁଦ୍ଧିଃ | = ଜ୍ଞାନ | ମାମ୍ | = ମୋତେ (ଏହି) |

| | | | |
|---|---|---|---|
| ଘୋରେ | = ଭୟଙ୍କର | କିମ୍ | = କାହିଁକି |
| କର୍ମଣି | = କର୍ମରେ | ନିୟୋଜୟସି | = ଲଗାଉଛନ୍ତି ? |

**ବ୍ୟାମିଶ୍ରେଣେବ ବାକ୍ୟେନ ବୁଦ୍ଧିଂ ମୋହୟସୀବ ମେ ।**
**ତଦେକଂ ବଦ ନିଶ୍ଚିତ୍ୟ ଯେନ ଶ୍ରେୟୋଽହମାପ୍ନୁୟାମ୍ ॥ ୨ ॥**

ବ୍ୟାମିଶ୍ରେଣ, ଇବ, ବାକ୍ୟେନ, ବୁଦ୍ଧିମ୍, ମୋହୟସି, ଇବ, ମେ,
ତତ୍, ଏକମ୍, ବଦ, ନିଶ୍ଚିତ୍ୟ, ଯେନ, ଶ୍ରେୟଃ, ଅହମ୍, ଆପ୍ନୁୟାମ୍ । ।୨ । ।

**ତଥା, ଆପଣ—**

| | | | |
|---|---|---|---|
| ବ୍ୟାମିଶ୍ରେଣ, | = ଗୋଳିଆ-ମିଶା | ତତ୍ | = ସେହି |
| ଇବ | ପରି | ଏକମ୍ | = ଗୋଟିଏ କଥା |
| ବାକ୍ୟେନ | = କଥାଦ୍ୱାରା | ନିଶ୍ଚିତ୍ୟ | = ନିଶ୍ଚୟ କରି |
| ମେ | = ମୋର | ବଦ | = କୁହନ୍ତୁ |
| ବୁଦ୍ଧିମ୍ | = ବୁଦ୍ଧିକୁ | ଯେନ | = ଯାହାଦ୍ୱାରା କି |
| ମୋହୟସି, | = ମୋହିତପ୍ରାୟ | ଅହମ୍ | = ମୁଁ |
| ଇବ | କରିଦେଉଛନ୍ତି | ଶ୍ରେୟଃ | = କଲ୍ୟାଣକୁ |
| | (ତେଣୁ) ଆପଣ | ଆପ୍ନୁୟାମ୍ | = ପ୍ରାପ୍ତ ହେବି । |

*ଶ୍ରୀଭଗବାନ ଉବାଚ*

ଅଧିକାରୀ-ଭେଦରେ ଦୁଇଟି ନିଷ୍ଠାର ବର୍ଣ୍ଣନ ।

**ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା ପୁରା ପ୍ରୋକ୍ତା ମୟାନଘ ।**
**ଜ୍ଞାନଯୋଗେନ ସାଙ୍ଖ୍ୟାନାଂ କର୍ମଯୋଗେନ ଯୋଗିନାମ୍ ॥ ୩ ॥**

ଲୋକେ, ଅସ୍ମିନ୍, ଦ୍ୱିବିଧା, ନିଷ୍ଠା, ପୁରା, ପ୍ରୋକ୍ତା, ମୟା, ଅନଘ,
ଜ୍ଞାନଯୋଗେନ, ସାଂଖ୍ୟାନାମ୍, କର୍ମଯୋଗେନ, ଯୋଗିନାମ୍ । ।୩ । ।

**ଏହି ପ୍ରକାର ଅର୍ଜୁନଙ୍କ ପଚାରିବାରେ, ଭଗବାନ୍ ଶ୍ରୀକୃଷ୍ଣ କହିଲେ—**

| | | | |
|---|---|---|---|
| ଅନଘ | = ହେ ନିଷ୍ପାପ ! | ନିଷ୍ଠା | = ନିଷ୍ଠା |
| ଅସ୍ମିନ୍, ଲୋକେ | = ଏହି ଲୋକରେ | ମୟା | = ମୋ ଦ୍ୱାରା |
| ଦ୍ୱିବିଧା | = ଦୁଇ ପ୍ରକାର | ପୁରା | = ଆଗରୁ |

ପ୍ରୋକ୍ତା = କୁହାଯାଇଛି (ତନ୍ମଧ୍ୟରୁ)
ସାଂଖ୍ୟାନାମ୍ = ସାଂଖ୍ୟଯୋଗୀ ମାନଙ୍କର (ନିଷ୍ଠା ତ)
ଜ୍ଞାନଯୋଗେନ = ଜ୍ଞାନଯୋଗ ଦ୍ୱାରା (ଓ) [୧]
ଯୋଗିନାମ୍ = ଯୋଗିମାନଙ୍କର (ନିଷ୍ଠା) [୨]
କର୍ମଯୋଗେନ = କର୍ମଯୋଗ ଦ୍ୱାରା ସାଧିତ ହୁଏ । [୩]

କୌଣସି ବି ନିଷ୍ଠାର ସିଦ୍ଧି ପାଇଁ କର୍ମକୁ ସ୍ୱରୂପତଃ ତ୍ୟାଗ କରିବା ନିଷେଧ ।

**ନ କର୍ମଣାମନାରମ୍ଭାନ୍ନୈଷ୍କର୍ମ୍ୟଂ ପୁରୁଷୋଽଶ୍ନୁତେ ।**
**ନ ଚ ସନ୍ନ୍ୟସନାଦେବ ସିଦ୍ଧିଂ ସମଧିଗଚ୍ଛତି ॥ ୪ ॥**

ନ, କର୍ମଣାମ୍, ଅନାରମ୍ଭାତ୍, ନୈଷ୍କର୍ମ୍ୟମ୍, ପୁରୁଷଃ, ଅଶ୍ନୁତେ,
ନ, ଚ, ସନ୍ନ୍ୟସନାତ୍, ଏବ, ସିଦ୍ଧିମ୍, ସମଧିଗଚ୍ଛତି ।।୪।।

**ପରନ୍ତୁ କୌଣସି ବି ମାର୍ଗକୁ ଅନୁସରଣ କଲେ ବି କର୍ମକୁ ସ୍ୱରୂପତଃ ତ୍ୟାଗ କରିବା ଅନାବଶ୍ୟକ, କାହିଁକି ନା—**

ପୁରୁଷଃ = ମନୁଷ୍ୟ
କର୍ମଣାମ୍ = କର୍ମମାନଙ୍କର
ଅନାରମ୍ଭାତ୍ = ଆଚରଣ ନ କରି
ନୈଷ୍କର୍ମ୍ୟମ୍ = ନିଷ୍କର୍ମତାକୁ ବା ଯୋଗନିଷ୍ଠାକୁ [୪]

---

୧- ମାୟାରୁ ଉତ୍ପନ୍ନ ହୋଇଥିବା ଗୁଣ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଅନ୍ତି, ଏପରି ଜାଣି ତଥା ମନ, ଇନ୍ଦ୍ରିୟ ଏବଂ ଶରୀର ଦ୍ୱାରା ହେଉଥିବା ସକଳ କର୍ମରେ କର୍ତ୍ତାପଣରୁ ରହିତ ହୋଇ ସର୍ବବ୍ୟାପୀ ସଚ୍ଚିଦାନନ୍ଦଘନ ପରମାତ୍ମାରେ ଏକୀଭାବରେ ସ୍ଥିତ ରହିବାର ନାମ 'ଜ୍ଞାନଯୋଗ' ଅଟେ । ଏହାକୁ 'ସନ୍ନ୍ୟାସ', 'ସାଂଖ୍ୟଯୋଗ' ଇତ୍ୟାଦି ନାମରେ ବି କୁହାଯାଇଛି ।

୨- ସାଧନର ପରିପକ୍ୱ ଅବସ୍ଥା ଅର୍ଥାତ୍ ପରାକାଷ୍ଠାର ନାମ 'ନିଷ୍ଠା' ଅଟେ ।

୩- ଫଳ ଏବଂ ଆସକ୍ତିକୁ ତ୍ୟାଗ କରି ଭଗବତ୍ ଆଜ୍ଞାନୁସାରେ କେବଳ ଭଗବଦର୍ଥ ସମବୁଦ୍ଧି ସହ କର୍ମ କରିବାର ନାମ 'ନିଷ୍କାମ କର୍ମଯୋଗ' ଅଟେ । ଏହାକୁ 'ସମତ୍ୱ ଯୋଗ', 'ବୁଦ୍ଧିଯୋଗ', 'କର୍ମଯୋଗ', 'ତଦର୍ଥ କର୍ମ', 'ମଦର୍ଥ କର୍ମ' ଇତ୍ୟାଦି ନାମରେ ମଧ୍ୟ କୁହାଯାଇଛି ।

୪- ଯେଉଁ ଅବସ୍ଥାକୁ ପ୍ରାପ୍ତ ହେଲେ ମନୁଷ୍ୟର ସମସ୍ତ କର୍ମ ଅକର୍ମ ହୋଇଯାଏ ଅର୍ଥାତ୍ କର୍ମଫଳ ଉତ୍ପନ୍ନ ହୋଇପାରେନି, ସେହି ଅବସ୍ଥାକୁ 'ନିଷ୍କର୍ମତା' କୁହାଯାଏ ।

| | | | |
|---|---|---|---|
| ନ, ଅଶ୍ନୁତେ | = ପ୍ରାପ୍ତ ହୁଏ ନାହିଁ (କି) | ଏବ | ତ୍ୟାଗ କରିଦେଲେ |
| ଚ | = ଏବଂ | ସିଦ୍ଧିମ୍ | = ସିଦ୍ଧି ଅର୍ଥାତ୍ ସାଂଖ୍ୟନିଷ୍ଠାକୁ |
| ସନ୍ନ୍ୟସନାତ୍, | = କେବଳ କର୍ମ | ନ, ସମଧିଗଚ୍ଛତି | = ପ୍ରାପ୍ତ ହୁଏ ନାହିଁ । |

କ୍ଷଣମାତ୍ର ପାଇଁ ମଧ୍ୟ କର୍ମକୁ ସର୍ବଥା ତ୍ୟାଗ କରିବା ଅସମ୍ଭବ ବୋଲି ବୁଝାଇବା ।

**ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍ ।**
**କାର୍ଯ୍ୟତେ ହ୍ୟବଶଃ କର୍ମ ସର୍ବଃ ପ୍ରକୃତିଜୈର୍ଗୁଣୈଃ ॥ ୫ ॥**

ନ, ହି, କଶ୍ଚିତ୍, କ୍ଷଣମ୍, ଅପି, ଜାତୁ, ତିଷ୍ଠତି, ଅକର୍ମକୃତ୍,
କାର୍ଯ୍ୟତେ, ହି, ଅବଶଃ, କର୍ମ, ସର୍ବଃ, ପ୍ରକୃତିଜୈଃ, ଗୁଣୈଃ ।।୫ ।।

**ତଥା ସର୍ବଥା କର୍ମକୁ ସ୍ୱରୂପତଃ ତ୍ୟାଗ କରାଯାଇ ପାରିବ ନାହିଁ—**

| | | | |
|---|---|---|---|
| ହି | = ନିଃସନ୍ଦେହ | | ନାହିଁ; |
| କଶ୍ଚିତ୍ | = କୌଣସି ବି (ମନୁଷ୍ୟ) | ହି | = କାରଣ |
| ଜାତୁ | = କୌଣସି ବି କାଳରେ | ସର୍ବଃ | = ସମସ୍ତ ପ୍ରାଣୀ |
| କ୍ଷଣମ୍ | = କ୍ଷଣେମାତ୍ର | ପ୍ରକୃତିଜୈଃ | = ପ୍ରକୃତିଜନିତ |
| ଅପି | = ମଧ୍ୟ | ଗୁଣୈଃ | = ଗୁଣମାନଙ୍କ ଦ୍ୱାରା |
| ଅକର୍ମକୃତ୍ | = କର୍ମ ନ କରି | ଅବଶଃ | = ପରବଶ ହୋଇ |
| ନ, ତିଷ୍ଠତି | = ରହିପାରେ | କର୍ମ | = କର୍ମ କରିବାପାଇଁ |
| | | କାର୍ଯ୍ୟତେ | = ବାଧ୍ୟ ହୁଅନ୍ତି । |

କେବଳ ଉପରେ ଉପରେ ଅର୍ଥାତ୍ ଜିଦ୍ କରି ଇନ୍ଦ୍ରିୟମାନଙ୍କ ଦ୍ୱାରା କ୍ରିୟା କରୁନଥିବା ବିଷୟ-ଚିନ୍ତକ ମନୁଷ୍ୟମାନଙ୍କୁ ମିଥ୍ୟାଚାରୀ ବୋଲି କହିବା ।

**କର୍ମେନ୍ଦ୍ରିୟାଣି ସଂଯମ୍ୟ ଯ ଆସ୍ତେ ମନସା ସ୍ମରନ୍ ।**
**ଇନ୍ଦ୍ରିୟାର୍ଥାନ୍ ବିମୂଢାତ୍ମା ମିଥ୍ୟାଚାରଃ ସ ଉଚ୍ୟତେ ॥ ୬ ॥**

କର୍ମେନ୍ଦ୍ରିୟାଣି, ସଂଯମ୍ୟ, ଯଃ, ଆସ୍ତେ, ମନସା, ସ୍ମରନ୍,
ଇନ୍ଦ୍ରିୟାର୍ଥାନ୍, ବିମୂଢାତ୍ମା, ମିଥ୍ୟାଚାରଃ, ସଃ, ଉଚ୍ୟତେ ।।୬ ।।

**ଏଥିପାଇଁ—**

| | |
|---|---|
| ଯଃ | = ଯେଉଁ |
| ବିମୂଢ଼ାତ୍ମା | = ମୂଢ଼ବୁଦ୍ଧି ମନୁଷ୍ୟ |
| କର୍ମେନ୍ଦ୍ରିୟାଣି | = ସମସ୍ତ ଇନ୍ଦ୍ରିୟମାନଙ୍କୁ |
| ସଂଯମ୍ୟ | = ବଳପୂର୍ବକ ଉପରୁ ଉପରୁ ରୋଧ କରି |
| ମନସା | = ମନଦ୍ୱାରା |
| ଇନ୍ଦ୍ରିୟାର୍ଥାନ୍ | = ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କୁ |
| ସ୍ମରନ୍ | = ଚିନ୍ତନ କରି କରି |
| ଆସ୍ତେ | = ରହେ |
| ସଃ | = ସେ |
| ମିଥ୍ୟାଚାରଃ | = ମିଥ୍ୟାଚାରୀ ଅର୍ଥାତ୍ ଦମ୍ଭୀ |
| ଉଚ୍ୟତେ | = (ବୋଲି) କଥିତ ହୁଏ । |

ମନ ଦ୍ୱାରା ଇନ୍ଦ୍ରିୟମାନଙ୍କୁ ସଂଯମ କରି ଅନାସକ୍ତ ଭାବେ କର୍ମ କରିବା ମନୁଷ୍ୟଙ୍କ ପ୍ରଶଂସା ।

**ଯସ୍ତ୍ୱିନ୍ଦ୍ରିୟାଣି ମନସା ନିୟମ୍ୟାରଭତେଽର୍ଜୁନ ।**
**କର୍ମେନ୍ଦ୍ରିୟୈଃ କର୍ମଯୋଗମସକ୍ତଃ ସ ବିଶିଷ୍ୟତେ ॥ ୭ ॥**

ଯଃ, ତୁ, ଇନ୍ଦ୍ରିୟାଣି, ମନସା, ନିୟମ୍ୟ, ଆରଭତେ, ଅର୍ଜୁନ,
କର୍ମେନ୍ଦ୍ରିୟୈଃ, କର୍ମଯୋଗମ୍, ଅସକ୍ତଃ, ସଃ, ବିଶିଷ୍ୟତେ ।।୭।।

| | |
|---|---|
| ତୁ | = କିନ୍ତୁ |
| ଅର୍ଜୁନ | = ହେ ଅର୍ଜୁନ ! |
| ଯଃ | = ଯେଉଁ ପୁରୁଷ |
| ମନସା | = ମନଦ୍ୱାରା |
| ଇନ୍ଦ୍ରିୟାଣି | = ଇନ୍ଦ୍ରିୟମାନଙ୍କୁ |
| ନିୟମ୍ୟ | = ବଶ କରି |
| ଅସକ୍ତଃ | = ଅନାସକ୍ତ ହୋଇ |
| କର୍ମେନ୍ଦ୍ରିୟୈଃ | = ସମସ୍ତ ଇନ୍ଦ୍ରିୟଦ୍ୱାରା |
| କର୍ମଯୋଗମ୍ | = କର୍ମଯୋଗକୁ |
| ଆରଭତେ | = ଆଚରଣ କରନ୍ତି, |
| ସଃ | = ସେ |
| ବିଶିଷ୍ୟତେ | = ଶ୍ରେଷ୍ଠ ଅଟନ୍ତି । |

କର୍ମ ନ କରିବା ଅପେକ୍ଷା କର୍ମ କରିବା ଶ୍ରେଷ୍ଠ । ବିନା କର୍ମ କରି ଶରୀର ନିର୍ବାହ କରିବା ଅସମ୍ଭବ । ଅନାସକ୍ତ ଭାବେ କର୍ମ କରିବା ପାଇଁ ଆଜ୍ଞା ।

**ନିୟତଂ କୁରୁ କର୍ମ ତ୍ୱଂ କର୍ମ ଜ୍ୟାୟୋ ହ୍ୟକର୍ମଣଃ ।**
**ଶରୀରଯାତ୍ରାପି ଚ ତେ ନ ପ୍ରସିଦ୍ଧ୍ୟେଦକର୍ମଣଃ ॥ ୮ ॥**

ନିୟତମ୍, କୁରୁ, କର୍ମ, ତ୍ୱମ୍, କର୍ମ, ଜ୍ୟାୟଃ, ହି, ଅକର୍ମଣଃ,
ଶରୀରଯାତ୍ରା, ଅପି, ଚ, ତେ, ନ, ପ୍ରସିଦ୍ଧ୍ୟେତ୍, ଅକର୍ମଣଃ ।।୮।।

**ଏଥିପାଇଁ—**

| | | | |
|---|---|---|---|
| ତ୍ୱମ୍ | = ତୁମେ | ଜ୍ୟାୟଃ | = ଶ୍ରେଷ୍ଠ |
| ନିୟତମ୍ | = ଶାସ୍ତ୍ରବିହିତ | ଚ | = ତଥା |
| କର୍ମ | = କର୍ତ୍ତବ୍ୟ କର୍ମ | ଅକର୍ମଣଃ | = କର୍ମ ନ କଲେ |
| କୁରୁ | = କର; | ତେ | = ତୁମର |
| ହି | = କାରଣ | ଶରୀରଯାତ୍ରା | = ଶରୀରନିର୍ବାହ |
| ଅକର୍ମଣଃ | = କର୍ମ ନ କରିବାଠାରୁ | ଅପି | = ମଧ୍ୟ |
| କର୍ମ | = କର୍ମ କରିବା | ନ, ପ୍ରସିଦ୍ଧ୍ୟେତ୍ | = ସିଦ୍ଧ ହେବ ନାହିଁ । |

**ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ ।**
**ତଦର୍ଥଂ କର୍ମ କୌନ୍ତେୟ ମୁକ୍ତସଙ୍ଗଃ ସମାଚର ॥ ୯ ॥**

ଯଜ୍ଞାର୍ଥାତ୍, କର୍ମଣଃ, ଅନ୍ୟତ୍ର, ଲୋକଃ, ଅୟମ୍, କର୍ମବନ୍ଧନଃ,
ତଦର୍ଥମ୍, କର୍ମ, କୌନ୍ତେୟ, ମୁକ୍ତସଙ୍ଗଃ, ସମାଚର ।।୯ ।।

**ଏବଂ, ହେ ଅର୍ଜୁନ ! ବନ୍ଧନର ଭୟରେ କର୍ମକୁ ତ୍ୟାଗ କରିବା ଉଚିତ ନୁହେଁ, କାରଣ—**

| | | | |
|---|---|---|---|
| ଯଜ୍ଞାର୍ଥାତ୍ | = ଯଜ୍ଞନିମିତ୍ତ କରାଯାଉଥିବା | ଲୋକଃ | = ମନୁଷ୍ୟ-ସମୁଦାୟ |
| କର୍ମଣଃ | = କର୍ମରୁ (ଅତିରିକ୍ତ) | କର୍ମବନ୍ଧନଃ | = କର୍ମଦ୍ୱାରା ବାନ୍ଧି ହୁଅନ୍ତି । (ତେଣୁ) |
| ଅନ୍ୟତ୍ର | = ଅନ୍ୟ କର୍ମରେ (ଲାଗି ରହିବା ଫଳରେ ହିଁ) | କୌନ୍ତେୟ | = ହେ ଅର୍ଜୁନ ! (ତୁମେ) |
| ଅୟମ୍ | = ଏହି | ମୁକ୍ତସଙ୍ଗଃ | = ଆସକ୍ତିରହିତ ହୋଇ |

| | | | |
|---|---|---|---|
| ତଦର୍ଥମ୍ | = ସେହି ଯଜ୍ଞନିମିତ୍ତ | ସମାଚର | = ଭଲଭାବରେ ଆଚରଣ କର । |
| କର୍ମ | = କର୍ତ୍ତବ୍ୟକର୍ମ | | |

ପ୍ରଜାପତିଙ୍କ ଆଜ୍ଞାନୁଯାୟୀ ଯଜ୍ଞ ଓ ସୃଷ୍ଟି ଚକ୍ରର ପରମ୍ପରା ସୁରକ୍ଷିତ ରଖିବା ପାଇଁ କର୍ତ୍ତବ୍ୟକର୍ମ କରିବାର ଆବଶ୍ୟକତା ନିରୂପଣ ।

**ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ପୁରୋବାଚ ପ୍ରଜାପତିଃ ।**
**ଅନେନ ପ୍ରସବିଷ୍ୟଧ୍ୱମେଷ ବୋଽସ୍ତ୍ୱିଷ୍ଟକାମଧୁକ୍ ॥ ୧୦ ॥**

ସହଯଜ୍ଞାଃ, ପ୍ରଜାଃ, ସୃଷ୍ଟ୍ୱା, ପୁରା, ଉବାଚ, ପ୍ରଜାପତିଃ,
ଅନେନ, ପ୍ରସବିଷ୍ୟଧ୍ୱମ୍, ଏଷଃ, ବଃ, ଅସ୍ତୁ, ଇଷ୍ଟକାମଧୁକ୍ ।।୧୦।।

**ତଥା କର୍ମ ନ କଲେ ତୁମେ ପାପକୁ ହିଁ ପ୍ରାପ୍ତ ହେବ, କାହିଁକି ନା—**

| | | | |
|---|---|---|---|
| ପ୍ରଜାପତିଃ | = ପ୍ରଜାପତି ବ୍ରହ୍ମା | ଅନେନ | = ଏହି ଯଜ୍ଞଦ୍ୱାରା |
| ପୁରା | = କଳ୍ପର ପ୍ରାରମ୍ଭରେ | ପ୍ରସବିଷ୍ୟଧ୍ୱମ୍ | = ବୃଦ୍ଧିପ୍ରାପ୍ତ ହୁଅ (ଏବଂ) |
| ସହଯଜ୍ଞାଃ | = ଯଜ୍ଞସହିତ (କର୍ତ୍ତବ୍ୟକର୍ମର ବିଧାନ ସହ) | ଏଷଃ | = ଏହି କର୍ତ୍ତବ୍ୟକର୍ମ ରୂପକ ଯଜ୍ଞ |
| ପ୍ରଜାଃ | = ପ୍ରଜାମାନଙ୍କୁ | | |
| ସୃଷ୍ଟ୍ୱା | = ରଚନା କରି (ସେମାନଙ୍କୁ) | ବଃ | = ତୁମ୍ଭମାନଙ୍କର |
| | | ଇଷ୍ଟକାମଧୁକ୍ | = ବାଞ୍ଛିତ ଭୋଗ ପ୍ରଦାୟକ |
| ଉବାଚ | = କହିଲେ (କି) | | |
| (ଯୂୟମ୍) | = ତୁମ୍ଭେମାନେ | ଅସ୍ତୁ | = ହେଉ । |

**ଦେବାନ୍ ଭାବୟତାନେନ ତେ ଦେବା ଭାବୟନ୍ତୁ ବଃ ।**
**ପରସ୍ପରଂ ଭାବୟନ୍ତଃ ଶ୍ରେୟଃ ପରମବାପ୍ସ୍ୟଥ ॥ ୧୧ ॥**

ଦେବାନ୍, ଭାବୟତ, ଅନେନ, ତେ, ଦେବାଃ, ଭାବୟନ୍ତୁ, ବଃ,
ପରସ୍ପରମ୍, ଭାବୟନ୍ତଃ, ଶ୍ରେୟଃ, ପରମ୍, ଅବାପ୍ସ୍ୟଥ ।।୧୧।।

**ତଥା, ତୁମ୍ଭେମାନେ—**

| | | | |
|---|---|---|---|
| ଅନେନ | = ଏହି ଯଜ୍ଞଦ୍ୱାରା | (ଏବମ୍) | = ଏହିପ୍ରକାରେ (ନିଃସ୍ୱାର୍ଥଭାବରେ) |
| ଦେବାନ୍ | = ଦେବତାମାନଙ୍କୁ | ପରସ୍ପରମ୍ | = ଏକ ଅନ୍ୟକୁ |
| ଭାବୟତ | = ଉନ୍ନତ କର (ଏବଂ) | ଭାବୟନ୍ତଃ | = ଉନ୍ନତ କରି |
| ତେ | = ସେହି | (ଯୂୟମ୍) | = ତୁମ୍ଭେମାନେ |
| ଦେବାଃ | = ଦେବତାମାନେ | ପରମ୍ | = ପରମ |
| ବଃ | = ତୁମ୍ଭମାନଙ୍କୁ | ଶ୍ରେୟଃ | = କଲ୍ୟାଣକୁ |
| ଭାବୟନ୍ତୁ | = ଉନ୍ନତ କରନ୍ତୁ । | ଅବାପ୍ସ୍ୟଥ | = ପ୍ରାପ୍ତ ହୋଇଯିବ । |

**ଇଷ୍ଟାନ୍ ଭୋଗାନ୍ ହି ବୋ ଦେବା ଦାସ୍ୟନ୍ତେ ଯଜ୍ଞଭାବିତାଃ ।**
**ତୈର୍ଦତ୍ତାନପ୍ରଦାୟୈଭ୍ୟୋ ଯୋ ଭୁଙ୍‌କ୍ତେ ସ୍ତେନ ଏବ ସଃ ॥ ୧୨ ॥**

ଇଷ୍ଟାନ୍, ଭୋଗାନ୍, ହି, ବଃ, ଦେବାଃ, ଦାସ୍ୟନ୍ତେ, ଯଜ୍ଞଭାବିତାଃ,
ତୈଃ, ଦତ୍ତାନ୍, ଅପ୍ରଦାୟ, ଏଭ୍ୟଃ, ଯଃ, ଭୁଙ୍‌କ୍ତେ, ସ୍ତେନଃ, ଏବ, ସଃ ।।୧୨ ।।

**ତଥା—**

| | | | |
|---|---|---|---|
| ଯଜ୍ଞଭାବିତାଃ | = ଯଜ୍ଞଦ୍ୱାରା ସଂବର୍ଦ୍ଧିତ | | ଦେବତାମାନଙ୍କ ଦ୍ୱାରା |
| ଦେବାଃ | = ଦେବତାମାନେ | ଦତ୍ତାନ୍ | = ଦିଆଯାଇଥିବା ଭୋଗଗୁଡ଼ିକୁ |
| ବଃ | = ତୁମ୍ଭମାନଙ୍କୁ (ବିନା ପ୍ରାର୍ଥନାରେ ହିଁ) | ଯଃ | = ଯେଉଁ ମନୁଷ୍ୟ |
| ଇଷ୍ଟାନ୍ | = ବାଞ୍ଛିତ | ଏଭ୍ୟଃ | = ଏମାନଙ୍କୁ |
| ଭୋଗାନ୍ | = ଭୋଗଗୁଡ଼ିକ | ଅପ୍ରଦାୟ | = ନ ଦେଇ (ସ୍ୱୟମ୍) |
| ହି | = ନିଶ୍ଚିତଭାବେ | ଭୁଙ୍‌କ୍ତେ | = ଭୋଗ କରେ, |
| ଦାସ୍ୟନ୍ତେ | = ପ୍ରଦାନ କରୁଥିବେ । (ଏପରି) | ସଃ | = ସେ |
| | | ସ୍ତେନଃ | = ଚୋର |
| ତୈଃ | = ସେହି | ଏବ | = ହିଁ ଅଟେ । |

ଯଜ୍ଞଶିଷ୍ଟ-ଅନ୍ନ ସେବନରେ ସବୁ ପାପର ନାଶ ଏବଂ ଯେଉଁମାନେ ଯଜ୍ଞ କରନ୍ତି ନାହିଁ ସେମାନଙ୍କୁ ପାପୀ ବୋଲି ଅଭିହିତ କରିବା ।

ଯଜ୍ଞଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକିଲ୍‌ବିଷୈଃ ।
ଭୁଞ୍ଜତେ ତେ ତ୍ୱଘଂ ପାପା ଯେ ପଚନ୍ତ୍ୟାତ୍ମକାରଣାତ୍ ॥ ୧୩ ॥

ଯଜ୍ଞଶିଷ୍ଟାଶିନଃ, ସନ୍ତଃ, ମୁଚ୍ୟନ୍ତେ, ସର୍ବକିଲ୍‌ବିଷୈଃ,
ଭୁଞ୍ଜତେ, ତେ, ତୁ, ଅଘମ୍, ପାପାଃ, ଯେ, ପଚନ୍ତି, ଆତ୍ମକାରଣାତ୍ ।।୧୩।।

**କାରଣ ଏହି କି—**

| | | | |
|---|---|---|---|
| ଯଜ୍ଞଶିଷ୍ଟାଶିନଃ | = ଯଜ୍ଞରୁ ବଳିଥିବା ଅନ୍ନକୁ ଖାଉଥିବା | ଆତ୍ମକାରଣାତ୍ | = ଆପଣା ଶରୀର ପୋଷଣପାଇଁ ହିଁ |
| ସନ୍ତଃ | = ଶ୍ରେଷ୍ଠ ପୁରୁଷ | ପଚନ୍ତି | = (ଅନ୍ନ) ରନ୍ଧନ କରନ୍ତି |
| ସର୍ବକିଲ୍‌ବିଷୈଃ | = ସବୁ ପାପରୁ | | |
| ମୁଚ୍ୟନ୍ତେ | = ମୁକ୍ତ ହୋଇଯାଆନ୍ତି (ଏବଂ) | ତେ | = ସେମାନେ |
| | | ତୁ | = ତ |
| ଯେ | = ଯେଉଁ | ଅଘମ୍ | = ପାପକୁ (ହିଁ) |
| ପାପାଃ | = ପାପୀଲୋକମାନେ | ଭୁଞ୍ଜତେ | = ଭୋଜନ କରନ୍ତି । |

ସୃଷ୍ଟି ଚକ୍ରର ବର୍ଣ୍ଣନା କରି ସର୍ବବ୍ୟାପୀ ପରମେଶ୍ୱରଙ୍କୁ ଯଜ୍ଞରୂପକ ସାଧନାରେ ନିତ୍ୟ ପ୍ରତିଷ୍ଠିତ ବୋଲି ବୁଝାଇବା ।

ଅନ୍ନାଭବନ୍ତି ଭୂତାନି ପର୍ଜନ୍ୟାଦନ୍ନସମ୍ଭବଃ ।
ଯଜ୍ଞାଭବତି ପର୍ଜନ୍ୟୋ ଯଜ୍ଞଃ କର୍ମସମୁଦ୍ଭବଃ ॥ ୧୪ ॥

କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି ବ୍ରହ୍ମାକ୍ଷରସମୁଦ୍ଭବମ୍ ।
ତସ୍ମାତ୍ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍ ॥ ୧୫ ॥

ଅନ୍ନାତ୍, ଭବନ୍ତି, ଭୂତାନି, ପର୍ଜନ୍ୟାତ୍, ଅନ୍ନସମ୍ଭବଃ,
ଯଜ୍ଞାତ୍, ଭବତି, ପର୍ଜନ୍ୟଃ, ଯଜ୍ଞଃ, କର୍ମସମୁଦ୍ଭବଃ।।୧୪।।

କର୍ମ, ବ୍ରହ୍ମୋଦ୍ଭବମ୍, ବିଦ୍ଧି, ବ୍ରହ୍ମ, ଅକ୍ଷରସମୁଦ୍ଭବମ୍,
ତସ୍ମାତ୍, ସର୍ବଗତମ୍, ବ୍ରହ୍ମ, ନିତ୍ୟମ୍, ଯଜ୍ଞେ, ପ୍ରତିଷ୍ଠିତମ୍।।୧୫।।

**କାହିଁକି ନା—**

| | |
|---|---|
| ଭୂତାନି | = ସମସ୍ତ ପ୍ରାଣୀ |
| ଅନ୍ନାତ୍ | = ଅନ୍ନରୁ |
| ଭବନ୍ତି | = ଉତ୍ପନ୍ନ ହୁଅନ୍ତି, |
| ଅନ୍ନସମ୍ଭବଃ | = ଅନ୍ନର ଉତ୍ପତ୍ତି |
| ପର୍ଜନ୍ୟାତ୍ | = ବୃଷ୍ଟିରୁ (ହୁଏ), |
| ପର୍ଜନ୍ୟଃ | = ବୃଷ୍ଟି |
| ଯଜ୍ଞାତ୍ | = ଯଜ୍ଞରୁ |
| ଭବତି | = ହୁଏ (ଏବଂ) |
| ଯଜ୍ଞଃ | = ଯଜ୍ଞ |
| କର୍ମସମୁଦ୍ଭବଃ | = ବିହିତ କର୍ମରୁ ଉତ୍ପନ୍ନ ହୁଏ; |
| କର୍ମ | = କର୍ମସମୁଦାୟକୁ |
| ବ୍ରହ୍ମୋଦ୍ଭବମ୍ | = ବେଦରୁ ଉତ୍ପନ୍ନ (ଏବଂ) |
| ବ୍ରହ୍ମ | = ବେଦକୁ |
| ଅକ୍ଷର-ସମୁଦ୍ଭବମ୍ | = ଅବିନାଶୀ ପରମାତ୍ମାଙ୍କ ଠାରୁ ଉତ୍ପନ୍ନ |
| ବିଦ୍ଧି | = (ବୋଲି) ଜାଣ । |
| ତସ୍ମାତ୍ | = ତେଣୁ (ସିଦ୍ଧ ହେଲା ଯେ) |
| ସର୍ବଗତମ୍ | = ସର୍ବବ୍ୟାପୀ |
| ବ୍ରହ୍ମ | = ପରମ ଅକ୍ଷର ପରମାତ୍ମା |
| ନିତ୍ୟମ୍ | = ସର୍ବଦା |
| ଯଜ୍ଞେ | = ଯଜ୍ଞରେ (କର୍ତ୍ତବ୍ୟକର୍ମରେ) |
| ପ୍ରତିଷ୍ଠିତମ୍ | = ପ୍ରତିଷ୍ଠିତ । |

ସୃଷ୍ଟି ଚକ୍ର ଅନୁସରଣ କରୁ ନ ଥିବା ମନୁଷ୍ୟମାନଙ୍କୁ ନିନ୍ଦା ।

**ଏବଂ ପ୍ରବର୍ତ୍ତିତଂ ଚକ୍ରଂ ନାନୁବର୍ତ୍ତୟତୀହ ଯଃ ।**
**ଅଘାୟୁରିନ୍ଦ୍ରିୟାରାମୋ ମୋଘଂ ପାର୍ଥ ସ ଜୀବତି ॥ ୧୬ ॥**

ଏବମ୍, ପ୍ରବର୍ତ୍ତିତମ୍, ଚକ୍ରମ୍, ନ, ଅନୁବର୍ତ୍ତୟତି, ଇହ, ଯଃ, ଅଘାୟୁଃ, ଇନ୍ଦ୍ରିୟାରାମଃ, ମୋଘମ୍, ପାର୍ଥ, ସଃ, ଜୀବତି ।।୧୬।।

| | |
|---|---|
| ପାର୍ଥ | = ହେ ପାର୍ଥ ! |
| ଯଃ | = ଯେଉଁ ପୁରୁଷ |
| ଇହ | = ଏହି ଲୋକରେ |
| ଏବମ୍ | = ଏହି ପ୍ରକାରେ |
| ପ୍ରବର୍ତ୍ତିତମ୍ | = ପରମ୍ପରାକ୍ରମେ ପ୍ରଚଳିତ |
| ଚକ୍ରମ୍ | = ସୃଷ୍ଟିଚକ୍ରକୁ |
| ନ, ଅନୁବର୍ତ୍ତୟତି | = ଅନୁସରଣ କରେ ନାହିଁ ଅର୍ଥାତ୍ ନିଜର କର୍ତ୍ତବ୍ୟ ପାଳନ କରେ ନାହିଁ, |
| ସଃ | = ସେ |

| | | | |
|---|---|---|---|
| ଇନ୍ଦ୍ରିୟାରାମଃ | = ଇନ୍ଦ୍ରିୟମାନଙ୍କ ଦ୍ୱାରା ଭୋଗରେ ରମଣ କରୁଥିବା | ଅଘାୟୁଃ | = ପାପାୟୁ (ପୁରୁଷ) |
| | | ମୋଘମ୍ | = ବୃଥାରେ (ହିଁ) |
| | | ଜୀବତି | = ଜୀବନ ଧାରଣ କରେ । |

ଆତ୍ମଜ୍ଞାନୀ ପାଇଁ କର୍ତ୍ତବ୍ୟର ଅଭାବ ବୋଲି ଉକ୍ତି ।

ଯସ୍ତ୍ୱାତ୍ମରତିରେବ ସ୍ୟାଦାତ୍ମତୃପ୍ତଶ୍ଚ ମାନବଃ ।
ଆତ୍ମନ୍ୟେବ ଚ ସନ୍ତୁଷ୍ଟସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ ॥ ୧୭ ॥

ଯଃ, ତୁ, ଆତ୍ମରତିଃ, ଏବ, ସ୍ୟାତ୍, ଆତ୍ମତୃପ୍ତଃ, ଚ, ମାନବଃ,
ଆତ୍ମନି, ଏବ, ଚ, ସନ୍ତୁଷ୍ଟଃ, ତସ୍ୟ, କାର୍ଯ୍ୟମ୍, ନ, ବିଦ୍ୟତେ ।।୧୭।।

| | | | |
|---|---|---|---|
| ତୁ | = ପରନ୍ତୁ | ଚ | = ତଥା |
| ଯଃ | = ଯେଉଁ | ଆତ୍ମନି, ଏବ | = ଆତ୍ମାରେ ହିଁ |
| ମାନବଃ | = ମନୁଷ୍ୟ | ସନ୍ତୁଷ୍ଟଃ | = ସନ୍ତୁଷ୍ଟ |
| ଆତ୍ମରତିଃ, ଏବ | = ଆତ୍ମାରେ ହିଁ ରମଣ କରୁଥିବା ଲୋକ | ସ୍ୟାତ୍ | = ହୋଇଥାନ୍ତି, |
| | | ତସ୍ୟ | = ତାହାଙ୍କ ପାଇଁ |
| | | କାର୍ଯ୍ୟମ୍ | = କୌଣସି କର୍ତ୍ତବ୍ୟ |
| ଚ | = ଏବଂ | | |
| ଆତ୍ମତୃପ୍ତଃ | = ଆତ୍ମାରେ ହିଁ ତୃପ୍ତ | ନ, ବିଦ୍ୟତେ | = ରହେ ନାହିଁ । |

କର୍ମ କରିବା ଏବଂ କର୍ମ ନକରିବାରେ ଜ୍ଞାନୀଙ୍କ ପ୍ରୟୋଜନର ଅଭାବ ବୋଲି ଉକ୍ତି ।

ନୈବ ତସ୍ୟ କୃତେନାର୍ଥୋ ନାକୃତେନେହ କଶ୍ଚନ ।
ନ ଚାସ୍ୟ ସର୍ବଭୂତେଷୁ କଶ୍ଚିଦର୍ଥବ୍ୟପାଶ୍ରୟଃ ॥ ୧୮ ॥

ନ, ଏବ, ତସ୍ୟ, କୃତେନ, ଅର୍ଥଃ, ନ, ଅକୃତେନ, ଇହ, କଶ୍ଚନ,
ନ, ଚ, ଅସ୍ୟ, ସର୍ବଭୂତେଷୁ, କଶ୍ଚିତ୍, ଅର୍ଥବ୍ୟପାଶ୍ରୟଃ ।।୧୮।।

## କାହିଁକି ନା

| | | | |
|---|---|---|---|
| ତସ୍ୟ | = ସେହି ମହାପୁରୁଷଙ୍କର | ଇହ | = ଏହି ବିଶ୍ୱରେ |

କୃତେନ = କର୍ମ କରିବାରେ
କଶ୍ଚନ = କୌଣସି
ଅର୍ଥଃ, ନ = ପ୍ରୟୋଜନ ରହେ ନାହିଁ (ଏବଂ)
ଅକୃତେନ, ଏବ= କର୍ମ ନ କରିବାରେ ମଧ୍ୟ
ନ = (କୌଣସି ପ୍ରୟୋଜନ ରହେ) ନାହିଁ
ଚ = ତଥା
ସର୍ବଭୂତେଷୁ = ସକଳପ୍ରାଣୀଙ୍କ ସହିତ ମଧ୍ୟ
ଅସ୍ୟ = ଏହାଙ୍କର
କଶ୍ଚିତ୍ = କିଛି ବି
ଅର୍ଥବ୍ୟପାଶ୍ରୟଃ = ସ୍ୱାର୍ଥସମ୍ବନ୍ଧ
ନ = (ରହେ) ନାହିଁ ।

ନିଷ୍କାମକର୍ମର ଫଳ ପରମାତ୍ମପ୍ରାପ୍ତି ଏବଂ ଅନାସକ୍ତଭାବେ କର୍ମ କରିବାକୁ ଆଜ୍ଞା ।

**ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚର ।**
**ଅସକ୍ତୋ ହ୍ୟାଚରନ୍ କର୍ମ ପରମାପ୍ନୋତି ପୂରୁଷଃ ॥ ୧୯ ॥**

ତସ୍ମାତ୍, ଅସକ୍ତଃ, ସତତମ୍, କାର୍ଯ୍ୟମ୍, କର୍ମ, ସମାଚର,
ଅସକ୍ତଃ, ହି, ଆଚରନ୍, କର୍ମ, ପରମ୍, ଆପ୍ନୋତି, ପୂରୁଷଃ ।।୧୯ ।।

ତସ୍ମାତ୍ = ତେଣୁ (ତୁମେ)
ସତତମ୍ = ନିରନ୍ତର
ଅସକ୍ତଃ = ଆସକ୍ତିରହିତ ହୋଇ (ସର୍ବଦା)
କାର୍ଯ୍ୟମ୍, କର୍ମ = କର୍ତ୍ତବ୍ୟକର୍ମକୁ
ସମାଚର = ଭଲଭାବରେ କର ।
ହି = କାରଣ
ଅସକ୍ତଃ = ଆସକ୍ତିରୁ ରହିତ ହୋଇ
କର୍ମ = କର୍ମ
ଆଚରନ୍ = ଆଚରଣ କରୁ କରୁ
ପୂରୁଷଃ = ମନୁଷ୍ୟ
ପରମ୍ = ପରମାତ୍ମାଙ୍କୁ
ଆପ୍ନୋତି = ପ୍ରାପ୍ତ ହୋଇଯାଏ ।

ଜନକାଦି ମହର୍ଷିଙ୍କ ଦୃଷ୍ଟାନ୍ତ ଦେଇ କର୍ମ କରିବା ପାଇଁ ପ୍ରେରଣା ।

**କର୍ମଣୈବ ହି ସଂସିଦ୍ଧିମାସ୍ଥିତା ଜନକାଦୟଃ ।**
**ଲୋକସଙ୍ଗ୍ରହମେବାପି ସମ୍ପଶ୍ୟନ୍ କର୍ତ୍ତୁମର୍ହସି ॥ ୨୦ ॥**

କର୍ମଣା, ଏବ, ହି, ସଂସିଦ୍ଧିମ୍, ଆସ୍ଥିତାଃ, ଜନକାଦୟଃ,
ଲୋକସଂଗ୍ରହମ୍, ଏବ, ଅପି, ସଂପଶ୍ୟନ୍, କର୍ତ୍ତୁମ୍, ଅର୍ହସି ।।୨୦ ।।

## ଏହି ପ୍ରକାରେ—

ଜନକାଦୟଃ = ଜନକ ଆଦି ଜ୍ଞାନୀମାନେ (ମଧ୍ୟ)
କର୍ମଣା = (ଆସକ୍ତି ରହିତ) କର୍ମଦ୍ୱାରା
ଏବ = ହିଁ
ସଂସିଦ୍ଧିମ୍ = ପରମସିଦ୍ଧିକୁ
ଆସ୍ଥିତାଃ = ପ୍ରାପ୍ତ ହୋଇଥିଲେ ।
ହି = ତେଣୁ (ତଥା)
ଲୋକସଂଗ୍ରହମ୍ = ଲୋକ କଲ୍ୟାଣକୁ
ସଂପଶ୍ୟନ୍ = ଦେଖି ଦେଖି
ଅପି = ମଧ୍ୟ (ତୁମେ)
କର୍ତ୍ତୁମ୍ = କର୍ମ କରିବାପାଇଁ
ଏବ = ହିଁ
ଅର୍ହସି = ଯୋଗ୍ୟ ଅଟ ଅର୍ଥାତ୍ ତୁମର କର୍ମ କରିବା ହିଁ ଉଚିତ ।

ଶ୍ରେଷ୍ଠ ପୁରୁଷଙ୍କ ଆଚରଣକୁ ପ୍ରମାଣ ସ୍ୱରୂପ ମାନିବା ପାଇଁ ଉକ୍ତି ।

**ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ ।**
**ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ॥ ୨୧ ॥**

ଯତ୍, ଯତ୍, ଆଚରତି, ଶ୍ରେଷ୍ଠଃ, ତତ୍, ତତ୍, ଏବ, ଇତରଃ, ଜନଃ, ସଃ, ଯତ୍, ପ୍ରମାଣମ୍, କୁରୁତେ, ଲୋକଃ, ତତ୍, ଅନୁବର୍ତ୍ତତେ ।।୨୧ ।।

## କାରଣ—

ଶ୍ରେଷ୍ଠଃ = ଶ୍ରେଷ୍ଠ ପୁରୁଷ
ଯତ୍, ଯତ୍ = ଯେଉଁ ଯେଉଁ
ଆଚରତି = ଆଚରଣ କରେ
ଇତରଃ = ଅନ୍ୟ
ଜନଃ = ପୁରୁଷ (ମଧ୍ୟ)
ତତ୍, ତତ୍ = ସେହି ସେହି
ଏବ = ହିଁ (ଆଚରଣ କରନ୍ତି) ।
ସଃ = ସେ
ଯତ୍ = ଯାହାକିଛି
ପ୍ରମାଣମ୍ = ପ୍ରମାଣ
କୁରୁତେ = କରିଦିଅନ୍ତି,
ଲୋକଃ = ଅନ୍ୟମାନେ
ତତ୍ = ତଦନୁସାରେ
ଅନୁବର୍ତ୍ତତେ = ଆଚରଣ କରନ୍ତି ।

ଭଗବାନ୍ ସ୍ୱୟଂ ନିଜର ଦୃଷ୍ଟାନ୍ତ ଦେଇ କର୍ମ କରିବାରେ ଲାଭ ଏବଂ କର୍ମ ନ କରିବାରେ ହାନି ବୋଲି କହିବା ।

**ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁ ଲୋକେଷୁ କିଞ୍ଚନ ।**
**ନାନବାପ୍ତମବାପ୍ତବ୍ୟଂ ବର୍ତ୍ତ ଏବ ଚ କର୍ମଣି ॥ ୨୨ ॥**

ନ, ମେ, ପାର୍ଥ, ଅସ୍ତି, କର୍ତବ୍ୟମ୍, ତ୍ରିଷୁ, ଲୋକେଷୁ, କିଞ୍ଚନ,
ନ, ଅନବାପ୍ତମ୍, ଅବାପ୍ତବ୍ୟମ୍, ବର୍ତେ, ଏବ, ଚ, କର୍ମଣି ।।୨୨।।

**ଏଥିପାଇଁ—**

| | | | |
|---|---|---|---|
| ପାର୍ଥ | = ହେ ଅର୍ଜୁନ ! | ଅବାପ୍ତବ୍ୟମ୍ | = ପ୍ରାପ୍ତ କରିବା ଯୋଗ୍ୟ ବସ୍ତୁ |
| ମେ | = ମୋର | | |
| ତ୍ରିଷୁ,ଲୋକେଷୁ | = ତିନିଲୋକରେ | ଅନବାପ୍ତମ୍ | = ଅପ୍ରାପ୍ତ |
| କିଞ୍ଚନ | = କୌଣସି | ନ | = ନାହିଁ, (ତଥାପି ମୁଁ) |
| କର୍ତ୍ତବ୍ୟମ୍ | = କର୍ତ୍ତବ୍ୟ | କର୍ମଣି | = କର୍ମରେ |
| ନ, ଅସ୍ତି | = ନାହିଁ | ଏବ | = ହିଁ |
| ଚ | = ଏବଂ (କୌଣସି) | ବର୍ତ୍ତେ | = ଲାଗିରହିଛି । |

**ଯଦି ହ୍ୟହଂ ନ ବର୍ତ୍ତେୟଂ ଜାତୁ କର୍ମଣ୍ୟତନ୍ଦ୍ରିତଃ ।**
**ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ॥ ୨୩ ॥**

ଯଦି, ହି, ଅହମ୍, ନ, ବର୍ତ୍ତେୟମ୍, ଜାତୁ, କର୍ମଣି, ଅତନ୍ଦ୍ରିତଃ,
ମମ, ବର୍ତ୍ମ, ଅନୁବର୍ତ୍ତନ୍ତେ, ମନୁଷ୍ୟାଃ, ପାର୍ଥ, ସର୍ବଶଃ ।।୨୩।।

| | | | |
|---|---|---|---|
| ହି | = କାରଣ | କର୍ମଣି | = କର୍ମରେ |
| ପାର୍ଥ | = ହେ ପାର୍ଥ ! | ନ, ବର୍ତ୍ତେୟମ୍ | = ଲାଗି ନ ରହେ (ତେବେ ବଡ଼ କ୍ଷତି ହୋଇଯିବ କାରଣ); |
| ଯଦି | = ଯଦି | | |
| ଜାତୁ | = କଦାଚିତ୍ | | |
| ଅହମ୍ | = ମୁଁ | | |
| ଅତନ୍ଦ୍ରିତଃ | = ସାବଧାନ ହୋଇ | ମନୁଷ୍ୟାଃ | = ମନୁଷ୍ୟମାନେ |

| | | | |
|---|---|---|---|
| ସର୍ବଶଃ | = ସବୁଦିଗରୁ | ବର୍ତ୍ମ | = ମାର୍ଗକୁ |
| ମମ | = ମୋର (ହିଁ) | ଅନୁବର୍ତ୍ତନ୍ତେ | = ଅନୁସରଣ କରନ୍ତି । |

**ଉତ୍ସୀଦେୟୁରିମେ ଲୋକା ନ କୁର୍ଯ୍ୟାଂ କର୍ମ ଚେଦହମ୍ ।**
**ସଙ୍କରସ୍ୟ ଚ କର୍ତ୍ତା ସ୍ୟାମୁପହନ୍ୟାମିମାଃ ପ୍ରଜାଃ ॥ ୨୪ ॥**

ଉତ୍ସୀଦେୟୁଃ, ଇମେ, ଲୋକାଃ, ନ, କୁର୍ଯ୍ୟାମ୍, କର୍ମ, ଚେତ୍, ଅହମ୍,
ସଙ୍କରସ୍ୟ, ଚ, କର୍ତ୍ତା, ସ୍ୟାମ୍, ଉପହନ୍ୟାମ୍, ଇମାଃ, ପ୍ରଜାଃ ।।୨୪।।

**ଏଥିପାଇଁ—**

| | | | |
|---|---|---|---|
| ଚେତ୍ | = ଯଦି | ଚ | = ଏବଂ (ମୁଁ) |
| ଅହମ୍ | = ମୁଁ | ସଙ୍କରସ୍ୟ | = ସଙ୍କରତାର |
| କର୍ମ | = କର୍ମ | କର୍ତ୍ତା | = କର୍ତ୍ତା |
| ନ | = ନ | ସ୍ୟାମ୍ | = ହୋଇଯିବି, |
| କୁର୍ଯ୍ୟାମ୍ | = କରିବି | | (ତଥା) |
| | (ତେବେ) | ଇମାଃ | = ଏହି |
| ଇମେ | = ଏହି | ପ୍ରଜାଃ | = ସମସ୍ତ ପ୍ରଜାଙ୍କୁ |
| ଲୋକାଃ | = ସମସ୍ତ ମନୁଷ୍ୟ | ଉପହନ୍ୟାମ୍ | = ନଷ୍ଟ କରିବାର |
| ଉତ୍ସୀଦେୟୁଃ | = ନଷ୍ଟ-ଭ୍ରଷ୍ଟ | | କାରଣ |
| | ହୋଇଯିବେ | | ହୋଇଯିବି । |

ଜ୍ଞାନୀଙ୍କ ପାଇଁ ବି ଲୋକସଂଗ୍ରହାର୍ଥ କର୍ମ କରିବା ଏବଂ ଅନ୍ୟ ଲୋକଙ୍କ ଦ୍ୱାରା କରାଇବାର ବିଧାନ ।

**ସକ୍ତାଃ କର୍ମଣ୍ୟବିଦ୍ୱାଂସୋ ଯଥା କୁର୍ବନ୍ତି ଭାରତ ।**
**କୁର୍ଯ୍ୟାଦ୍ୱିଦ୍ୱାଂସ୍ତଥାସକ୍ତଶ୍ଚିକୀର୍ଷୁର୍ଲୋକସଙ୍ଗ୍ରହମ୍ ॥ ୨୫ ॥**

ସକ୍ତାଃ, କର୍ମଣି, ଅବିଦ୍ୱାଂସଃ, ଯଥା, କୁର୍ବନ୍ତି, ଭାରତ,
କୁର୍ଯ୍ୟାତ୍, ବିଦ୍ୱାନ୍, ତଥା, ଅସକ୍ତଃ, ଚିକୀର୍ଷୁଃ, ଲୋକସଂଗ୍ରହମ୍ ।।୨୫।।

**ଏଥିପାଇଁ—**

ଭାରତ = ହେ ଭାରତ !
କର୍ମଣି = କର୍ମରେ
ସକ୍ତାଃ = ଆସକ୍ତ ହୋଇ
ଅବିଦ୍ୱାଂସଃ = ଅଜ୍ଞାନୀମାନେ
ଯଥା = ଯେଉଁପରି
କୁର୍ବନ୍ତି = କର୍ମ କରନ୍ତି,
ଅସକ୍ତଃ = ଆସକ୍ତି ରହିତ
ବିଦ୍ୱାନ୍ = ବିଦ୍ୱାନ୍ (ମଧ୍ୟ)
ଲୋକସଂଗ୍ରହମ୍ = ଲୋକମଙ୍ଗଳ
ଚିକୀର୍ଷୁଃ = କରିବାକୁ ଇଚ୍ଛୁକ ହୋଇ
ତଥା = ସେହିପରି (କର୍ମ)
କୁର୍ଯ୍ୟାତ୍ = କରିବା ଉଚିତ ।

ନ ବୁଦ୍ଧିଭେଦଂ ଜନୟେଦଜ୍ଞାନାଂ କର୍ମସଙ୍ଗିନାମ୍ ।
ଜୋଷୟେତ୍ ସର୍ବକର୍ମାଣି ବିଦ୍ୱାନ୍ ଯୁକ୍ତଃ ସମାଚରନ୍ ॥ ୨୬ ॥

ନ, ବୁଦ୍ଧିଭେଦମ୍, ଜନୟେତ୍, ଅଜ୍ଞାନାମ୍, କର୍ମସଙ୍ଗିନାମ୍,
ଜୋଷୟେତ୍, ସର୍ବକର୍ମାଣି, ବିଦ୍ୱାନ୍, ଯୁକ୍ତଃ, ସମାଚରନ୍ ।।୨୬।।

ତଥା—

ଯୁକ୍ତଃ = ପରମାତ୍ମାଙ୍କ ସ୍ୱରୂପରେ ଅଟଳଭାବରେ ସ୍ଥିତ
ବିଦ୍ୱାନ୍ = ଜ୍ଞାନୀ (ତଥା)
କର୍ମସଙ୍ଗିନାମ୍ = ଶାସ୍ତ୍ର ବିହିତ କର୍ମରେ ଆସକ୍ତି ଯୁକ୍ତ ପୁରୁଷ,
ଅଜ୍ଞାନାମ୍ = ଅଜ୍ଞାନୀମାନଙ୍କ
ବୁଦ୍ଧିଭେଦମ୍ = ବୁଦ୍ଧିରେ ଭ୍ରମ ଅର୍ଥାତ୍ କର୍ମରେ ଅଶ୍ରଦ୍ଧା
ନ, ଜନୟେତ୍ = ଉତ୍ପନ୍ନ କରିବା ଉଚିତ ନୁହେଁ, (ବରଂ ନିଜେ)
ସର୍ବକର୍ମାଣି = ଶାସ୍ତ୍ର ବିହିତ ସମସ୍ତ କର୍ମ
ସମାଚରନ୍ = ଭଲଭାବରେ କରିବା ସଙ୍ଗେ ସଙ୍ଗେ
ଜୋଷୟେତ୍ = (ଅନ୍ୟମାନଙ୍କ ଦ୍ୱାରା ମଧ୍ୟ ସେହିପରି) କରାଇବା ଉଚିତ ।

**ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ ।**
**ଅହଙ୍କାରବିମୂଢାତ୍ମା କର୍ତ୍ତାହମିତି ମନ୍ୟତେ ॥ ୨୭ ॥**

ପ୍ରକୃତେଃ, କ୍ରିୟମାଣାନି, ଗୁଣୈଃ, କର୍ମାଣି, ସର୍ବଶଃ,
ଅହଙ୍କାରବିମୂଢାତ୍ମା, କର୍ତ୍ତା, ଅହମ୍, ଇତି, ମନ୍ୟତେ ।।୨୭।।

**ଏବଂ ହେ ଅର୍ଜୁନ ! ବାସ୍ତବରେ—**

| | | |
|---|---|---|
| କର୍ମାଣି | = | ସମସ୍ତ କର୍ମ |
| ସର୍ବଶଃ | = | ସବୁ ପ୍ରକାରେ |
| ପ୍ରକୃତେଃ | = | ପ୍ରକୃତିର |
| ଗୁଣୈଃ | = | ଗୁଣମାନଙ୍କ ଦ୍ୱାରା |
| କ୍ରିୟମାଣାନି | = | କରାଯାଉଥାଏ (ତଥାପି) |
| ଅହଙ୍କାର- | = | ଯାହାର ଅନ୍ତଃକରଣ |
| ବିମୂଢାତ୍ମା | | ଅହଙ୍କାର ଦ୍ୱାରା ମୋହିତ ସେହିପରି ଅଜ୍ଞାନୀ ପୁରୁଷ ନିଜକୁ |
| ଅହମ୍, କର୍ତ୍ତା | = | 'ମୁଁ କର୍ତ୍ତା ଅଟେ' |
| ଇତି | = | ଏପରି (ବୋଲି) |
| ମନ୍ୟତେ | = | ମନେ କରେ । |

କର୍ମାସକ୍ତ ଜନସମୁଦାୟଙ୍କ ଅପେକ୍ଷା ସାଙ୍ଖ୍ୟ ଯୋଗୀଙ୍କ ବିଲକ୍ଷଣତାର ପ୍ରତିପାଦନ ।

**ତତ୍ତ୍ୱବିତ୍ତୁ ମହାବାହୋ ଗୁଣକର୍ମବିଭାଗୟୋଃ ।**
**ଗୁଣା ଗୁଣେଷୁ ବର୍ତ୍ତନ୍ତ ଇତି ମତ୍ୱା ନ ସଜ୍ଜତେ ॥ ୨୮ ॥**

ତତ୍ତ୍ୱବିତ୍, ତୁ, ମହାବାହୋ, ଗୁଣକର୍ମବିଭାଗୟୋଃ,
ଗୁଣାଃ, ଗୁଣେଷୁ, ବର୍ତ୍ତନ୍ତେ, ଇତି, ମତ୍ୱା, ନ, ସଜ୍ଜତେ ।।୨୮।।

| | | |
|---|---|---|
| ତୁ | = | ପରନ୍ତୁ |
| ମହାବାହୋ | = | ହେ ମହାବାହୁ ! |
| ଗୁଣକର୍ମ- | = | ଗୁଣବିଭାଗର ଓ |
| ବିଭାଗୟୋଃ | | କର୍ମବିଭାଗର [1] |
| ତତ୍ତ୍ୱବିତ୍ | = | ତତ୍ତ୍ୱକୁ ଜାଣିଥିବା[2] ଜ୍ଞାନଯୋଗୀ |

୧. ତ୍ରିଗୁଣାତ୍ମକ ମାୟାର କାର୍ଯ୍ୟରୂପ ପଞ୍ଚ ମହାଭୂତ ଓ ମନ, ବୁଦ୍ଧି, ଅହଙ୍କାର ତଥା ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଏବଂ ଶବ୍ଦାଦି ପଞ୍ଚ ବିଷୟ—ଏହି ସମସ୍ତ ବିଷୟର ନାମକୁ 'ଗୁଣ ବିଭାଗ' କୁହାଯାଏ ଏବଂ ଏହି ସମସ୍ତଙ୍କର ପରସ୍ପର ମଧ୍ୟରେ ଚେଷ୍ଟାକୁ 'କର୍ମ ବିଭାଗ' କୁହାଯାଏ ।

୨. ଉପର୍ଯ୍ୟୁକ୍ତ 'ଗୁଣ ବିଭାଗ' ଏବଂ 'କର୍ମ ବିଭାଗ' ରୁ ଆତ୍ମାକୁ ପୃଥକ ଅର୍ଥାତ୍ ନିର୍ଲିପ୍ତ ବୋଲି ଜାଣିବା ହିଁ ପ୍ରକୃତଭାବେ ତତ୍ତ୍ୱକୁ ଜାଣିବା ଅଟେ ।

| | | | |
|---|---|---|---|
| ଗୁଣାଃ | = ସମ୍ପୂର୍ଣ୍ଣ ଗୁଣମାନେ ହିଁ | | କରୁଛନ୍ତି) |
| ଗୁଣେଷୁ | = ଗୁଣମାନଙ୍କରେ | ଇତି | = ବୋଲି |
| ବର୍ତ୍ତନ୍ତେ | = ପ୍ରବୃତ୍ତ ହୁଅନ୍ତି (ସବୁ କାର୍ଯ୍ୟ | ମତ୍ୱା | = ବୁଝି (ସେଥିରେ) |
| | | ନ, ସଜ୍ଜତେ | = ଆସକ୍ତ ହୁଅନ୍ତି ନାହିଁ । |

ଜ୍ଞାନୀମାନଙ୍କର ସାଧାରଣ ମନୁଷ୍ୟଙ୍କୁ ତାର କର୍ମରୁ ବିଚଳିତ ନ କରିବା ପାଇଁ ଆଜ୍ଞା ।

**ପ୍ରକୃତେର୍ଗୁଣସମ୍ମୂଢାଃ ସଜ୍ଜନ୍ତେ ଗୁଣକର୍ମସୁ ।**
**ତାନକୃତ୍ସ୍ନବିଦୋ ମନ୍ଦାନ୍ କୃତ୍ସ୍ନବିନ୍ନ ବିଚାଳୟେତ୍ ॥ ୨୯ ॥**

ପ୍ରକୃତେଃ, ଗୁଣସମ୍ମୂଢାଃ, ସଜ୍ଜନ୍ତେ, ଗୁଣକର୍ମସୁ,
ତାନ୍, ଅକୃତ୍ସ୍ନବିଦଃ, ମନ୍ଦାନ୍, କୃତ୍ସ୍ନବିତ୍, ନ, ବିଚାଳୟେତ୍ ।।୨୯।।

ଏବଂ—

| | | | |
|---|---|---|---|
| ପ୍ରକୃତେଃ | = ପ୍ରକୃତିର | ତାନ୍ | = ସେହି |
| ଗୁଣସମ୍ମୂଢାଃ | = ଗୁଣମାନଙ୍କ ଦ୍ୱାରା ଅତ୍ୟନ୍ତ ମୋହିତ ହୋଇଥିବା ମନୁଷ୍ୟ | ଅକୃତ୍ସ୍ନବିଦଃ | = ପୂର୍ଣ୍ଣଭାବରେ ବୁଝୁ ନଥିବା |
| | | ମନ୍ଦାନ୍ | = ମନ୍ଦବୁଦ୍ଧି ଅଜ୍ଞାନୀମାନଙ୍କୁ |
| | | କୃତ୍ସ୍ନବିତ୍ | = ପୂର୍ଣ୍ଣଭାବେ ଜାଣିଥିବା ଜ୍ଞାନୀ |
| ଗୁଣକର୍ମସୁ | = ଗୁଣମାନଙ୍କରେ ଓ କର୍ମମାନଙ୍କରେ | ନ, ବିଚାଳୟେତ୍ | = ବିଚଳିତ କରିବା ଉଚିତ ନୁହେଁ । |
| ସଜ୍ଜନ୍ତେ | = ଆସକ୍ତ ରହନ୍ତି; | | |

ଆଶା, ମମତା ଆଦିକୁ ସର୍ବଥା ତ୍ୟାଗ କରି ଭଗବଦ୍ ଅର୍ପଣ ବୁଦ୍ଧିରେ ଯୁଦ୍ଧ କରିବା ପାଇଁ ଆଜ୍ଞା ।

**ମୟି ସର୍ବାଣି କର୍ମାଣି ସନ୍ନ୍ୟସ୍ୟାଧ୍ୟାତ୍ମଚେତସା ।**
**ନିରାଶୀର୍ନିର୍ମମୋ ଭୂତ୍ୱା ଯୁଧ୍ୟସ୍ୱ ବିଗତଜ୍ୱରଃ ॥ ୩୦ ॥**

ମୟି, ସର୍ବାଣି, କର୍ମାଣି, ସନ୍ନ୍ୟସ୍ୟ, ଅଧ୍ୟାତ୍ମଚେତସା,
ନିରାଶୀଃ, ନିର୍ମମଃ, ଭୂତ୍ୱା, ଯୁଧ୍ୟସ୍ୱ, ବିଗତଜ୍ୱରଃ ।।୩୦।।

## ଏଥିପାଇଁ ହେ ଅର୍ଜୁନ! ତୁମେ—

| | | | |
|---|---|---|---|
| ଅଧ୍ୟାତ୍ମଚେତସା | = ଅନ୍ତର୍ଯାମୀ ପରମାତ୍ମାଙ୍କ ଠାରେ ଲାଗିଥିବା ଚିତ୍ତଦ୍ୱାରା | ସନ୍ନ୍ୟସ୍ୟ | = ଅର୍ପଣ କରି |
| ସର୍ବାଣି | = ସକଳ | ନିରାଶୀଃ | = ଆଶାରହିତ, |
| କର୍ମାଣି | = କର୍ମମାନଙ୍କୁ | ନିର୍ମମଃ | = ମମତାରହିତ (ଏବଂ) |
| ମୟି | = ମୋଠାରେ | ବିଗତଜ୍ୱରଃ | = ସନ୍ତାପରହିତ |
| | | ଭୂତ୍ୱା | = ହୋଇ |
| | | ଯୁଧ୍ୟସ୍ୱ | = ଯୁଦ୍ଧ କର । |

ଭଗବତ୍-ସିଦ୍ଧାନ୍ତର ଅନୁକୂଳ ପ୍ରବୃତ୍ତିରେ ହିଁ ମୁକ୍ତି ବୋଲି ଭଗବାନଙ୍କ ଉକ୍ତି ।

**ଯେ ମେ ମତମିଦଂ ନିତ୍ୟମନୁତିଷ୍ଠନ୍ତି ମାନବାଃ ।**
**ଶ୍ରଦ୍ଧାବନ୍ତୋଽନସୂୟନ୍ତୋ ମୁଚ୍ୟନ୍ତେ ତେଽପି କର୍ମଭିଃ ॥ ୩୧ ॥**

ଯେ, ମେ, ମତମ୍, ଇଦମ୍, ନିତ୍ୟମ୍, ଅନୁତିଷ୍ଠନ୍ତି, ମାନବାଃ,
ଶ୍ରଦ୍ଧାବନ୍ତଃ, ଅନସୂୟନ୍ତଃ, ମୁଚ୍ୟନ୍ତେ, ତେ, ଅପି, କର୍ମଭିଃ ।।୩୧ ।।

## ଏବଂ ହେ ଅର୍ଜୁନ!—

| | | | |
|---|---|---|---|
| ଯେ, ମାନବାଃ | = ଯେଉଁ ମନୁଷ୍ୟମାନେ | ମତମ୍ | = ମତକୁ |
| ଅନସୂୟନ୍ତଃ | = ଦୋଷ ଦୃଷ୍ଟିରୁ ରହିତ ହୋଇ (ଏବଂ) | ନିତ୍ୟମ୍ | = ସର୍ବଦା |
| ଶ୍ରଦ୍ଧାବନ୍ତଃ | = ଶ୍ରଦ୍ଧାଯୁକ୍ତ ହୋଇ | ଅନୁତିଷ୍ଠନ୍ତି | = ଅନୁସରଣ କରନ୍ତି, |
| ମେ | = ମୋର | ତେ | = ସେମାନେ |
| ଇଦମ୍ | = ଏହି | ଅପି | = ମଧ୍ୟ |
| | | କର୍ମଭିଃ | = ସମସ୍ତ କର୍ମବନ୍ଧନରୁ |
| | | ମୁଚ୍ୟନ୍ତେ | = ମୁକ୍ତ ହୋଇଯାଆନ୍ତି । |

ଭଗବତ୍ ସିଦ୍ଧାନ୍ତ ଅନୁଯାୟୀ ପ୍ରବୃତ୍ତ ନ ହେଲେ ପତନ ।

**ଯେ ତ୍ୱେତଦଭ୍ୟସୂୟନ୍ତୋ ନାନୁତିଷ୍ଠନ୍ତି ମେ ମତମ୍ ।**
**ସର୍ବଜ୍ଞାନବିମୂଢାଂସ୍ତାନ୍ ବିଦ୍ଧି ନଷ୍ଟାନଚେତସଃ ॥ ୩୨ ॥**

ଯେ, ତୁ, ଏତତ୍, ଅଭ୍ୟସୂୟନ୍ତଃ, ନ, ଅନୁତିଷ୍ଠନ୍ତି, ମେ, ମତମ୍,
ସର୍ବଜ୍ଞାନବିମୂଢ଼ାନ୍, ତାନ୍, ବିଦ୍ଧି, ନଷ୍ଟାନ୍, ଅଚେତସଃ ।।୩୨ ।।

| | | | |
|---|---|---|---|
| ତୁ | = କିନ୍ତୁ | | ନାହିଁ ଅର୍ଥାତ୍ ତଦନୁସାରେ ଚଳନ୍ତି ନାହିଁ, |
| ଯେ | = ଯେଉଁ ମନୁଷ୍ୟମାନେ (ମୋ ଠାରେ) | ତାନ୍ | = ସେହି |
| ଅଭ୍ୟସୂୟନ୍ତଃ | = ଦୋଷାରୋପଣ କରି କରି | ଅଚେତସଃ | = ମୂର୍ଖମାନଙ୍କୁ (ତୁମେ) |
| ମେ | = ମୋର | ସର୍ବଜ୍ଞାନ-ବିମୂଢ଼ାନ୍ | = ସମସ୍ତ ଜ୍ଞାନରେ ମୂଢ଼ (ଏବଂ) |
| ଏତତ୍ | = ଏହି | | |
| ମତମ୍ | = ମତକୁ | ନଷ୍ଟାନ୍ | = ନଷ୍ଟ (ହୋଇଛନ୍ତି) |
| ନ, ଅନୁତିଷ୍ଠନ୍ତି | = ପାଳନ କରନ୍ତି | ବିଦ୍ଧି | = ବୋଲି ଜାଣ । |

ସ୍ୱାଭାବିକ କର୍ମର ଚେଷ୍ଟାରେ ପ୍ରକୃତିର ପ୍ରବଳତାର କଥନ ।

**ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ ପ୍ରକୃତେର୍ଜ୍ଞାନବାନପି ।**
**ପ୍ରକୃତିଂ ଯାନ୍ତି ଭୂତାନି ନିଗ୍ରହଃ କିଂ କରିଷ୍ୟତି ॥ ୩୩ ॥**

ସଦୃଶମ୍, ଚେଷ୍ଟତେ, ସ୍ୱସ୍ୟାଃ, ପ୍ରକୃତେଃ, ଜ୍ଞାନବାନ୍, ଅପି,
ପ୍ରକୃତିମ୍, ଯାନ୍ତି, ଭୂତାନି, ନିଗ୍ରହଃ, କିମ୍, କରିଷ୍ୟତି ।।୩୩ ।।

## କାହିଁକି ନା—

| | | | |
|---|---|---|---|
| ଭୂତାନି | = ସମସ୍ତ ପ୍ରାଣୀ | ଅପି | = ମଧ୍ୟ |
| ପ୍ରକୃତିମ୍ | = ପ୍ରକୃତିକୁ | ସ୍ୱସ୍ୟାଃ | = ନିଜର |
| ଯାନ୍ତି | = ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ନିଜ ସ୍ୱଭାବର ପରବଶ ହୋଇ କର୍ମ କରନ୍ତି । | ପ୍ରକୃତେଃ | = ପ୍ରକୃତି |
| | | ସଦୃଶମ୍ | = ଅନୁସାରେ |
| | | ଚେଷ୍ଟତେ | = ଚେଷ୍ଟା କରନ୍ତି । (ତେଣୁ ଏଥିରେ କାହାର) |
| ଜ୍ଞାନବାନ୍ | = ଜ୍ଞାନବାନ୍ | | |

| | | | |
|---|---|---|---|
| ନିଗ୍ରହଃ | = ହଠ, ଜିଦ୍ | କରିଷ୍ୟତି | = କାମ କରିବ ? |
| କିମ୍ | = କ'ଣ | | |

ରାଗ-ଦ୍ୱେଷର ବଶୀଭୂତ ନ ହେବା ପାଇଁ ପ୍ରେରଣା ।

**ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ ରାଗଦ୍ୱେଷୌ ବ୍ୟବସ୍ଥିତୌ ।**
**ତୟୋର୍ନ ବଶମାଗଚ୍ଛେତ୍ତୌ ହ୍ୟସ୍ୟ ପରିପନ୍ଥିନୌ ॥ ୩୪ ॥**

ଇନ୍ଦ୍ରିୟସ୍ୟ, ଇନ୍ଦ୍ରିୟସ୍ୟ, ଅର୍ଥେ, ରାଗଦ୍ୱେଷୌ, ବ୍ୟବସ୍ଥିତୌ,
ତୟୋଃ, ନ, ବଶମ୍, ଆଗଚ୍ଛେତ୍, ତୌ, ହି, ଅସ୍ୟ, ପରିପନ୍ଥିନୌ ।।୩୪ ।।

**ଏଥିପାଇଁ ମନୁଷ୍ୟ ଏହା ଦେଖିବା ଉଚିତ ଯେ—**

| | | | |
|---|---|---|---|
| ଇନ୍ଦ୍ରିୟସ୍ୟ, ଇନ୍ଦ୍ରିୟସ୍ୟ | = ଇନ୍ଦ୍ରିୟ-ଇନ୍ଦ୍ରିୟର | ତୟୋଃ | = (ମନୁଷ୍ୟ) ଏହି ଦୁହିଁଙ୍କର |
| ଅର୍ଥେ | = ଅର୍ଥରେ ଅର୍ଥାତ୍ ପ୍ରତ୍ୟେକ ଇନ୍ଦ୍ରିୟର ନିଜ ନିଜ ବିଷୟରେ | ବଶମ୍ | = ବଶକୁ |
| | | ନ, ଆଗଚ୍ଛେତ୍ | = ଆସିବା ଉଚିତ ନୁହେଁ; |
| | | ହି | = କାରଣ |
| | | ତୌ | = ଏ ଦୁହେଁ (ହିଁ) |
| ରାଗଦ୍ୱେଷୌ | = (ମନୁଷ୍ୟର) ରାଗ ଏବଂ ଦ୍ୱେଷ | ଅସ୍ୟ | = ଏହାର (କଲ୍ୟାଣ ମାର୍ଗରେ) |
| ବ୍ୟବସ୍ଥିତୌ | = ବ୍ୟବସ୍ଥା ଅନୁସାରେ ଅନୁକୂଳ ଓ ପ୍ରତିକୂଳତାକୁ ନେଇ ଅବସ୍ଥିତ । | ପରିପନ୍ଥିନୌ | = ବିଘ୍ନ ସୃଷ୍ଟି କରୁଥିବା ଦୁଇ ମହାନ୍ ଶତ୍ରୁ ଅଟନ୍ତି । |

ସ୍ୱଧର୍ମ ପାଳନରେ କଲ୍ୟାଣ ଏବଂ ପରଧର୍ମରେ ହାନି ।

**ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।**
**ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ ॥ ୩୫ ॥**

ଶ୍ରେୟାନ୍, ସ୍ୱଧର୍ମଃ, ବିଗୁଣଃ, ପରଧର୍ମାତ୍, ସ୍ୱନୁଷ୍ଠିତାତ୍,
ସ୍ୱଧର୍ମେ, ନିଧନମ୍, ଶ୍ରେୟଃ, ପରଧର୍ମଃ, ଭୟାବହଃ ।।୩୫ ।।

**ଏଥିପାଇଁ ଏହି ଦୁହିଁଙ୍କୁ ଜିତି ତଥା ସାବଧାନ ହୋଇ ସ୍ୱଧର୍ମର ଆଚରଣ କରିବା ଉଚିତ, କାହିଁକିନା—**

| | | | |
|---|---|---|---|
| ସ୍ୱନୁଷ୍ଠିତାତ୍ | = ଉତ୍ତମ ଆଚରଣ ସହିତ ପାଳିତ ହେଉଥିବା | ଶ୍ରେୟାନ୍ | = ଅତି ଉତ୍ତମ ଅଟେ । |
| ପରଧର୍ମାତ୍ | = ଅନ୍ୟର ଧର୍ମଠାରୁ | ସ୍ୱଧର୍ମେ | = ନିଜର ଧର୍ମରେ (ତ) |
| ବିଗୁଣଃ | = ଗୁଣରହିତ (ହେଲେ ମଧ୍ୟ) | ନିଧନମ୍ | = ମରିବା (ମଧ୍ୟ) |
| ସ୍ୱଧର୍ମଃ | = ସ୍ୱଧର୍ମ | ଶ୍ରେୟଃ | = କଲ୍ୟାଣକର (କିନ୍ତୁ) |
| | | ପରଧର୍ମଃ | = ଅନ୍ୟର ଧର୍ମ |
| | | ଭୟାବହଃ | = ଭୟାବହ । |

*ଅର୍ଜୁନ ଉବାଚ*

ବଳପୂର୍ବକ ମନୁଷ୍ୟଙ୍କୁ ପାପରେ କିଏ ପ୍ରବୃତ୍ତ କରାଏ ? ଏହି ବିଷୟରେ ଅର୍ଜୁନଙ୍କ ପ୍ରଶ୍ନ ।

**ଅଥ କେନ ପ୍ରଯୁକ୍ତୋଽୟଂ ପାପଂ ଚରତି ପୂରୁଷଃ ।**
**ଅନିଚ୍ଛନ୍ନପି ବାର୍ଷ୍ଣେୟ ବଳାଦିବ ନିୟୋଜିତଃ ॥ ୩୬ ॥**

ଅଥ, କେନ, ପ୍ରଯୁକ୍ତଃ, ଅୟମ୍, ପାପମ୍, ଚରତି, ପୂରୁଷଃ, ଅନିଚ୍ଛନ୍, ଅପି, ବାର୍ଷ୍ଣେୟ, ବଳାତ୍, ଇବ, ନିୟୋଜିତଃ ।।୩୬।।

**ଏହି କଥାକୁ ନେଇ ଅର୍ଜୁନ ପଚାରିଲେ କି—**

| | | | |
|---|---|---|---|
| ବାର୍ଷ୍ଣେୟ | = ହେ କୃଷ୍ଣ ! | ନିୟୋଜିତଃ | = ନିୟୋଜିତ ହେବା |
| ଅଥ | = ପୁଣି | ଇବ | = ପରି |
| ଅୟମ୍ | = ଏହି | କେନ | = କାହାଦ୍ୱାରା |
| ପୂରୁଷଃ | = ମନୁଷ୍ୟ (ସ୍ୱୟଂ) | ପ୍ରଯୁକ୍ତଃ | = ପ୍ରେରିତ ହୋଇ |
| ଅନିଚ୍ଛନ୍ | = ଇଚ୍ଛା ନ କଲେ | ପାପମ୍ | = ପାପ |
| ଅପି | = ମଧ୍ୟ | ଚରତି | = ଆଚରଣ କରେ ? |
| ବଳାତ୍ | = ବଳପୂର୍ବକ | | |

ଶ୍ରୀଭଗବାନ ଉବାଚ

ବଳପୂର୍ବକ ପାପ କରିବାରେ 'କାମ' ହିଁ ହେତୁ ବୋଲି ଭଗବାନଙ୍କ ଉକ୍ତି ।

**କାମ ଏଷ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ ।**
**ମହାଶନୋ ମହାପାପ୍ମା ବିଦ୍ଧ୍ୟେନମିହ ବୈରିଣମ୍ ॥ ୩୭ ॥**

କାମଃ, ଏଷଃ, କ୍ରୋଧଃ, ଏଷଃ, ରଜୋଗୁଣସମୁଦ୍ଭବଃ,
ମହାଶନଃ, ମହାପାପ୍ମା, ବିଦ୍ଧି, ଏନମ୍, ଇହ, ବୈରିଣମ୍ ।।୩୭ ।।

**ଏହି ପ୍ରକାର ଅର୍ଜୁନଙ୍କ ପ୍ରଶ୍ନର ଉତ୍ତରରେ ଶ୍ରୀକୃଷ୍ଣ ଭଗବାନ୍ କହିଲେ, ହେ ଅର୍ଜୁନ !—**

| | |
|---|---|
| ରଜୋଗୁଣ-ସମୁଦ୍ଭବଃ | = ରଜୋଗୁଣରୁ ଉତ୍ପନ୍ନ |
| ଏଷଃ | = ଏହି |
| କାମଃ | = କାମ ଅର୍ଥାତ୍ କାମନା ହିଁ (ପାପର କାରଣ) |
| ଏଷଃ | = ଏହି କାମନା |
| କ୍ରୋଧଃ | = କ୍ରୋଧରେ ପରିଣତ ହୋଇଯାଏ । |
| ମହାଶନଃ | = ଏହା ବଡ଼ ଭୋଜନପ୍ରିୟ ଅର୍ଥାତ୍ ଭୋଗରେ କେବେହେଲେ ତୃପ୍ତ ହୁଏନାହିଁ (ଓ) |
| ମହାପାପ୍ମା | = ମହାପାପୀ ଅଟେ, |
| ଇହ | = ଏହି ବିଷୟରେ |
| ଏନମ୍ | = ଏହାକୁ (ହିଁ) ତୁମେ |
| ବୈରିଣମ୍ | = ଶତ୍ରୁ (ବୋଲି) |
| ବିଦ୍ଧି | = ଜାଣ । |

କାମରୂପକ ବୈରୀ ଦ୍ୱାରା ଜ୍ଞାନ ଆଚ୍ଛାଦିତ ହୋଇରହିଛି— ଏହି ବିଷୟକୁ ଦୃଷ୍ଟାନ୍ତ ସହିତ ବର୍ଣ୍ଣନା କରିବା ।

**ଧୂମେନାବ୍ରିୟତେ ବହ୍ନିର୍ଯଥାଦର୍ଶୋ ମଳେନ ଚ ।**
**ଯଥୋଲ୍ବେନାବୃତୋ ଗର୍ଭସ୍ତଥା ତେନେଦମାବୃତମ୍ ॥ ୩୮ ॥**

ଧୂମେନ, ଆବ୍ରିୟତେ, ବହ୍ନିଃ, ଯଥା, ଆଦର୍ଶଃ, ମଳେନ, ଚ,
ଯଥା, ଉଲ୍ବେନ, ଆବୃତଃ, ଗର୍ଭଃ, ତଥା, ତେନ, ଇଦମ୍, ଆବୃତମ୍ ।।୩୮ ।।

| | |
|---|---|
| ଯଥା | = ଯେପରି |
| ଧୂମେନ | = ଧୂଆଁଦ୍ୱାରା |
| ବହ୍ନିଃ | = ଅଗ୍ନି |
| ଚ | = ଏବଂ |
| ମଲେନ | = ମଳିଦ୍ୱାରା |
| ଆଦର୍ଶଃ | = ଦର୍ପଣ |
| ଆବ୍ରିୟତେ | = ଆବୃତ ହୋଇଥାଏ (ଏବଂ) |
| ଯଥା | = ଯେପରି |
| ଉଲ୍‌ବେନ | = ଜରାୟୁଦ୍ୱାରା |
| ଗର୍ଭଃ | = ଗର୍ଭ |
| ଆବୃତଃ | = ଆବୃତ ହୋଇଥାଏ, |
| ତଥା | = ସେପରି |
| ତେନ | = ସେହି କାମନାଦ୍ୱାରା |
| ଇଦମ୍ | = ଏହି ଜ୍ଞାନ (ଅର୍ଥାତ୍ ବିବେକ) |
| ଆବୃତମ୍ | = ଆବୃତ ହୋଇ ରହିଥାଏ । |

**ଆବୃତଂ ଜ୍ଞାନମେତେନ ଜ୍ଞାନିନୋ ନିତ୍ୟବୈରିଣା ।**
**କାମରୂପେଣ କୌନ୍ତେୟ ଦୁଷ୍ପୂରେଣାନଲେନ ଚ ॥ ୩୯ ॥**

ଆବୃତମ୍, ଜ୍ଞାନମ୍, ଏତେନ, ଜ୍ଞାନିନଃ, ନିତ୍ୟବୈରିଣା,
କାମରୂପେଣ, କୌନ୍ତେୟ, ଦୁଷ୍ପୂରେଣ, ଅନଲେନ, ଚ ।।୩୯ ।।

| | |
|---|---|
| ଚ | = ଏବଂ |
| କୌନ୍ତେୟ | = ହେ କୁନ୍ତିପୁତ୍ର ଅର୍ଜୁନ ! |
| ଏତେନ | = ଏହି |
| ଅନଲେନ | = ଅଗ୍ନିପରି |
| ଦୁଷ୍ପୂରେଣ | = କେବେ ତୃପ୍ତ ହେଉନଥିବା |
| କାମରୂପେଣ | = କାମନାରୂପକ |
| ନିତ୍ୟବୈରିଣା | = ନିତ୍ୟ ଶତ୍ରୁ ଦ୍ୱାରା |
| ଜ୍ଞାନିନଃ | = ଜ୍ଞାନୀମାନଙ୍କର |
| ଜ୍ଞାନମ୍ | = ଜ୍ଞାନ |
| ଆବୃତମ୍ | = ଆବୃତ ହୋଇଛି । |

**ଇନ୍ଦ୍ରିୟାଣି ମନୋ ବୁଦ୍ଧିରସ୍ୟାଧିଷ୍ଠାନମୁଚ୍ୟତେ ।**
କାମର ନିବାସ-ସ୍ଥାନର କଥନ । **ଏତୈର୍ବିମୋହୟତ୍ୟେଷ ଜ୍ଞାନମାବୃତ୍ୟ ଦେହିନମ୍ ॥ ୪୦ ॥**

ଇନ୍ଦ୍ରିୟାଣି, ମନଃ, ବୁଦ୍ଧିଃ, ଅସ୍ୟ, ଅଧିଷ୍ଠାନମ୍, ଉଚ୍ୟତେ,
ଏତୈଃ, ବିମୋହୟତି, ଏଷଃ, ଜ୍ଞାନମ୍, ଆବୃତ୍ୟ, ଦେହିନମ୍ ।।୪୦ ।।

## ତଥା—

| | | | |
|---|---|---|---|
| ଇନ୍ଦ୍ରିୟାଣି | = ଇନ୍ଦ୍ରିୟମାନେ | ଏତୈଃ | = ମନ, ବୁଦ୍ଧି ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ହିଁ |
| ମନଃ | = ମନ (ଓ) | | |
| ବୁଦ୍ଧିଃ | = ବୁଦ୍ଧି (ଏହିସବୁକୁ) | | |
| ଅସ୍ୟ | = ଏହାର (କାମନାର) | ଜ୍ଞାନମ୍ | = ଜ୍ଞାନକୁ |
| ଅଧିଷ୍ଠାନମ୍ | = ବାସସ୍ଥାନ (ବୋଲି) | ଆବୃତ୍ୟ | = ଆଚ୍ଛାଦିତ କରି |
| ଉଚ୍ୟତେ | = କୁହାଯାଇଛି । | ଦେହିନମ୍ | = ଜୀବାତ୍ମାକୁ |
| ଏଷଃ | = ଏହି କାମନା | ବିମୋହୟତି | = ବିମୋହିତ କରେ । |

ଇନ୍ଦ୍ରିୟ-ସଂଯମ କରି କାମନାକୁ ମାରିବା ପାଇଁ ଆଜ୍ଞା ।

**ତସ୍ମାତ୍ତ୍ୱମିନ୍ଦ୍ରିୟାଣ୍ୟାଦୌ ନିୟମ୍ୟ ଭରତର୍ଷଭ ।**
**ପାପ୍ମାନଂ ପ୍ରଜହି ହ୍ୟେନଂ ଜ୍ଞାନବିଜ୍ଞାନନାଶନମ୍ ॥ ୪୧ ॥**

ତସ୍ମାତ୍, ତ୍ୱମ୍, ଇନ୍ଦ୍ରିୟାଣି, ଆଦୌ, ନିୟମ୍ୟ, ଭରତର୍ଷଭ,
ପାପ୍ମାନମ୍, ପ୍ରଜହି, ହି, ଏନମ୍, ଜ୍ଞାନବିଜ୍ଞାନନାଶନମ୍ ॥୪୧॥

| | | | |
|---|---|---|---|
| ତସ୍ମାତ୍ | = ତେଣୁ | ଜ୍ଞାନବିଜ୍ଞାନ-ନାଶନମ୍ | = ଜ୍ଞାନ ଏବଂ ବିଜ୍ଞାନର ନାଶକାରୀ |
| ଭରତର୍ଷଭ | = ହେ ଭରତବଂଶର ଶ୍ରେଷ୍ଠ ଅର୍ଜୁନ ! | | |
| ତ୍ୱମ୍ | = ତୁମେ | ପାପ୍ମାନମ୍ | = ମହାପାପୀ (କାମକୁ) |
| ଆଦୌ | = ପ୍ରଥମେ | | |
| ଇନ୍ଦ୍ରିୟାଣି | = ଇନ୍ଦ୍ରିୟମାନଙ୍କୁ | ହି | = ଅବଶ୍ୟ ହିଁ |
| ନିୟମ୍ୟ | = ବଶ କରି | ପ୍ରଜହି | = ବଳପୂର୍ବକ ମାରିଦିଅ । |
| ଏନମ୍ | = ଏହି | | |

ଇନ୍ଦ୍ରିୟ, ମନ ଓ ବୁଦ୍ଧିଠାରୁ ମଧ୍ୟ ଆତ୍ମା ଅତି ଶ୍ରେଷ୍ଠ ବୋଲି କଥନ ।

**ଇନ୍ଦ୍ରିୟାଣି ପରାଣ୍ୟାହୁରିନ୍ଦ୍ରିୟେଭ୍ୟଃ ପରଂ ମନଃ ।**
**ମନସସ୍ତୁ ପରା ବୁଦ୍ଧିର୍ଯୋ ବୁଦ୍ଧେଃ ପରତସ୍ତୁ ସଃ ॥ ୪୨ ॥**

ଇନ୍ଦ୍ରିୟାଣି, ପରାଣି, ଆହୁଃ, ଇନ୍ଦ୍ରିୟେଭ୍ୟଃ, ପରମ୍, ମନଃ,
ମନସଃ, ତୁ, ପରା, ବୁଦ୍ଧିଃ, ଯଃ, ବୁଦ୍ଧେଃ, ପରତଃ, ତୁ, ସଃ ॥୪୨॥

**ଏବଂ ଯଦି ତୁମେ ଏପରି ବୁଝିଥାଅକି ଯେ ଇନ୍ଦ୍ରିୟମାନଙ୍କୁ ବଶ କରି କାମରୂପ ଶତ୍ରୁକୁ ମାରିବା ପାଇଁ ମୋର ଶକ୍ତି ନାହିଁ, ତାହା ହେଲେ ତୁମର ଭୁଲ ହେବ, କାହିଁକି ନା—**

| | | | |
|---|---|---|---|
| ଇନ୍ଦ୍ରିୟାଣି | = ଇନ୍ଦ୍ରିୟମାନଙ୍କୁ (ସ୍ଥୂଳ) ଶରୀରଠାରୁ) | ମନସଃ | = ମନଠାରୁ |
| ପରାଣି | = ଶ୍ରେଷ୍ଠ, ବଳବାନ୍ ଏବଂ ସୂକ୍ଷ୍ମ | ତୁ | = ମଧ୍ୟ |
| ଆହୁଃ | = (ବୋଲି) କହନ୍ତି; | ବୁଦ୍ଧିଃ, ପରା | = ବୁଦ୍ଧି ଶ୍ରେଷ୍ଠ |
| ଇନ୍ଦ୍ରିୟେଭ୍ୟଃ | = ଇନ୍ଦ୍ରିୟମାନଙ୍କ ଠାରୁ | ତୁ | = ଏବଂ |
| ମନଃ, ପରମ୍ | = ମନ ଶ୍ରେଷ୍ଠ ଅଟେ, | ଯଃ | = ଯେ |
| | | ବୁଦ୍ଧେଃ | = ବୁଦ୍ଧିଠାରୁ (ମଧ୍ୟ) |
| | | ପରତଃ | = ଅତ୍ୟନ୍ତ ଶ୍ରେଷ୍ଠ |
| | | ସଃ | = ତାହା (ଆତ୍ମା) ଅଟେ । |

ବୁଦ୍ଧିଠାରୁ ଆତ୍ମା ଶ୍ରେଷ୍ଠ ବୋଲି ଜାଣି, ବୁଦ୍ଧିଦ୍ୱାରା ମନକୁ ସଂଯମ କରି କାମନାକୁ ମାରିବା ପାଇଁ ଆଜ୍ଞା ଦେଇ ଅଧ୍ୟାୟର ସମାପ୍ତି ।

**ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୱା ସଂସ୍ତଭ୍ୟାତ୍ମାନମାତ୍ମନା ।**
**ଜହି ଶତ୍ରୁଂ ମହାବାହୋ କାମରୂପଂ ଦୁରାସଦମ୍ ॥ ୪୩ ॥**

ଏବମ୍, ବୁଦ୍ଧେଃ, ପରମ୍, ବୁଦ୍ଧ୍ୱା, ସଂସ୍ତଭ୍ୟ, ଆତ୍ମାନମ୍, ଆତ୍ମନା,
ଜହି, ଶତ୍ରୁମ୍, ମହାବାହୋ, କାମରୂପମ୍, ଦୁରାସଦମ୍ ।।୪୩।।

| | | | |
|---|---|---|---|
| ଏବମ୍ | = ଏପରିଭାବରେ | | ଶ୍ରେଷ୍ଠ ଆତ୍ମାକୁ |
| ବୁଦ୍ଧେଃ | = ବୁଦ୍ଧିଠାରୁ | ବୁଦ୍ଧ୍ୱା | = ଜାଣି (ଏବଂ) |
| ପରମ୍ | = ମହତ୍ ଅର୍ଥାତ୍ ସୂକ୍ଷ୍ମ, ବଳବାନ୍ ଏବଂ ଅତ୍ୟନ୍ତ | ଆତ୍ମନା | = ବୁଦ୍ଧି ଦ୍ୱାରା |
| | | ଆତ୍ମାନମ୍ | = ମନକୁ |

| | | | |
|---|---|---|---|
| ସଂସ୍ତଭ୍ୟ | = ବଶ କରି | କାମରୂପମ୍ | = କାମରୂପକ |
| ମହାବାହୋ | = ହେ ମହାବାହୁ ! (ତୁମେ, ଏହି) | ଦୁରାସଦମ୍ | = ଦୁର୍ଜ୍ଜୟ |
| | | ଶତ୍ରୁମ୍ | = ଶତ୍ରୁକୁ |
| | | ଜହି | = ମାରିଦିଅ । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ*
*ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ କର୍ମଯୋଗୋ*
*ନାମ ତୃତୀୟୋଽଧ୍ୟାୟଃ ॥ ୩ ॥*

ঙঙঙ

**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜ୍ଜୁନ ସଂବାଦରେ 'କର୍ମଯୋଗ' ନାମକ ତୃତୀୟ ଅଧ୍ୟାୟ ପୂର୍ଣ୍ଣ ହେଲା । ।୩। ।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଚତୁର୍ଥ ଅଧ୍ୟାୟ

## ଜ୍ଞାନକର୍ମସଂନ୍ୟାସଯୋଗ

**ପ୍ରଧାନ ବିଷୟ**

୧ ରୁ ୧୮ ସଗୁଣ ଭଗବାନଙ୍କ ପ୍ରଭାବ ଏବଂ ନିଷ୍କାମ କର୍ମଯୋଗର ବିଷୟ,
୧୯ ରୁ ୨୩ ଯୋଗୀ ମହାତ୍ମା ପୁରୁଷଙ୍କ ଆଚରଣ ଏବଂ ତାଙ୍କର ମହିମା,
୨୪ ରୁ ୩୨ ଫଳ ସହିତ ପୃଥକ୍ ପୃଥକ୍ ଯଜ୍ଞର କଥନ,
୩୩ ରୁ ୪୨ ଜ୍ଞାନର ମହିମା ।

*ଶ୍ରୀଭଗବାନ ଉବାଚ*

କର୍ମଯୋଗର ପରମ୍ପରା ଏବଂ ବହୁତ କାଳରୁ ଏହା ଲୁପ୍ତପ୍ରାୟ ହୋଇଯାଇଥିବା ବିଷୟର କଥନ ।

ଇମଂ ବିବସ୍ୱତେ ଯୋଗଂ ପ୍ରୋକ୍ତବାନହମବ୍ୟୟମ୍ ।
ବିବସ୍ୱାନ୍ ମନବେ ପ୍ରାହ ମନୁରିକ୍ଷ୍ୱାକବେଽବ୍ରବୀତ୍ ॥ ୧ ॥

ଇମମ୍, ବିବସ୍ୱତେ, ଯୋଗମ୍, ପ୍ରୋକ୍ତବାନ୍, ଅହମ୍, ଅବ୍ୟୟମ୍,
ବିବସ୍ୱାନ୍, ମନବେ, ପ୍ରାହ, ମନୁଃ, ଇକ୍ଷ୍ୱାକବେ, ଅବ୍ରବୀତ୍ ।।୧ ।।

**ଏହାପରେ ଭଗବାନ କହିଲେ, ହେ ଅର୍ଜୁନ !—**

| | | | |
|---|---|---|---|
| ଅହମ୍ | = ମୁଁ | ମନବେ | = (ନିଜର ପୁତ୍ର ବୈବସ୍ୱତ) ମନୁଙ୍କୁ |
| ଇମମ୍ | = ଏହି | | |
| ଅବ୍ୟୟମ୍ | = ଅବିନାଶୀ | | |
| ଯୋଗମ୍ | = ଯୋଗକୁ | ପ୍ରାହ | = (ତାହା) କହିଥିଲେ (ଏବଂ) |
| ବିବସ୍ୱତେ | = ସୂର୍ଯ୍ୟଙ୍କୁ | | |
| ପ୍ରୋକ୍ତବାନ୍ | = କହିଥିଲି, | | |
| ବିବସ୍ୱାନ୍ | = ସୂର୍ଯ୍ୟ | ମନୁଃ | = ମନୁ |

| | | | |
|---|---|---|---|
| ଇକ୍ଷ୍ୱାକବେ | = (ନିଜର ପୁତ୍ର) ରାଜା ଇକ୍ଷ୍ୱାକୁଙ୍କୁ | ଅବ୍ରବୀତ୍ | = (ତାହା) କହିଥିଲେ । |

ଏବଂ ପରମ୍ପରାପ୍ରାପ୍ତମିମଂ ରାଜର୍ଷୟୋ ବିଦୁଃ ।
ସ କାଳେନେହ ମହତା ଯୋଗୋ ନଷ୍ଟଃ ପରନ୍ତପ ॥ ୨ ॥

ଏବମ୍, ପରମ୍ପରାପ୍ରାପ୍ତମ୍, ଇମମ୍, ରାଜର୍ଷୟଃ, ବିଦୁଃ,
ସଃ, କାଳେନ, ଇହ, ମହତା, ଯୋଗଃ, ନଷ୍ଟଃ, ପରନ୍ତପ।।୨।।

| | | | |
|---|---|---|---|
| ପରନ୍ତପ | = ହେ ଶତ୍ରୁପୀଡ଼କ ଅର୍ଜୁନ ! | ସଃ | = ସେହି |
| | | ଯୋଗଃ | = ଯୋଗ |
| ଏବମ୍ | = ଏପରି ଭାବରେ | ମହତା | = ବହୁତ |
| ପରମ୍ପରା- ପ୍ରାପ୍ତମ୍ | = ପରମ୍ପରାରୁ ପ୍ରାପ୍ତ | କାଳେନ | = କାଳରୁ |
| | | ଇହ | = ଏହି ପୃଥିବୀ ଲୋକରେ |
| ଇମମ୍ | = ଏହି (ଯୋଗକୁ) | | |
| ରାଜର୍ଷୟଃ | = ରାଜର୍ଷିମାନେ | | |
| ବିଦୁଃ | = ଜାଣିଥିଲେ (କିନ୍ତୁ ଏହାପରେ) | ନଷ୍ଟଃ | = ଲୁପ୍ତପ୍ରାୟ ହୋଇଗଲା । |

ପୁରାତନ ଯୋଗର ପ୍ରଶଂସା ।

ସ ଏବାୟଂ ମୟା ତେଽଦ୍ୟ ଯୋଗଃ ପ୍ରୋକ୍ତଃ ପୁରାତନଃ ।
ଭକ୍ତୋଽସି ମେ ସଖା ଚେତି ରହସ୍ୟଂ ହ୍ୟେତଦୁତ୍ତମମ୍ ॥ ୩ ॥

ସଃ, ଏବ, ଅୟମ୍, ମୟା, ତେ, ଅଦ୍ୟ, ଯୋଗଃ, ପ୍ରୋକ୍ତଃ, ପୁରାତନଃ,
ଭକ୍ତଃ, ଅସି, ମେ, ସଖା, ଚ, ଇତି, ରହସ୍ୟମ୍, ହି, ଏତତ୍, ଉତ୍ତମମ୍।।୩।।

| | | | |
|---|---|---|---|
| (ତ୍ୱମ୍) | = ତୁମେ | ଚ | = ଏବଂ |
| ମେ | = ମୋର | ସଖା | = ପ୍ରିୟସଖା |
| ଭକ୍ତଃ | = ଭକ୍ତ | ଅସି | = ଅଟ, |

| | | | |
|---|---|---|---|
| ଇତି | = ଏଣୁ | ପ୍ରୋକ୍ତଃ | = କୁହାହେଲା; |
| ସଃ, ଏବ | = ସେହି | ହି | = କାରଣ |
| ଅୟମ୍ | = ଏହି | ଏତତ୍ | = ଏହା |
| ପୁରାତନଃ | = ପୁରାତନ | ଉତ୍ତମମ୍ | = ଅତି ଉତ୍ତମ |
| ଯୋଗଃ | = ଯୋଗ (ହିଁ) | ରହସ୍ୟମ୍ | = ରହସ୍ୟ, ଅର୍ଥାତ୍ ଗୁପ୍ତ ରଖିବାର ଯୋଗ୍ୟ ବିଷୟ । |
| ଅଦ୍ୟ | = ଆଜି | | |
| ମୟା | = ମୋ' ଦ୍ୱାରା | | |
| ତେ | = ତୁମକୁ | | |

### ଅର୍ଜୁନ ଉବାଚ

ଶ୍ରୀକୃଷ୍ଣଭଗବାନଙ୍କ ଜନ୍ମ ଆଧୁନିକ କାଳରେ ଭାବି ଭଗବାନଙ୍କୁ ଅର୍ଜୁନଙ୍କ ପ୍ରଶ୍ନ ।

**ଅପରଂ ଭବତୋ ଜନ୍ମ ପରଂ ଜନ୍ମ ବିବସ୍ୱତଃ ।**
**କଥମେତଦ୍‌ବିଜାନୀୟାଂ ତ୍ୱମାଦୌ ପ୍ରୋକ୍ତବାନିତି ॥ ୪ ॥**

ଅପରମ୍, ଭବତଃ, ଜନ୍ମ, ପରମ୍, ଜନ୍ମ, ବିବସ୍ୱତଃ, କଥମ୍, ଏତତ୍, ବିଜାନୀୟାମ୍, ତ୍ୱମ୍, ଆଦୌ, ପ୍ରୋକ୍ତବାନ୍, ଇତି ।।୪ ।।

**ଏହିପରି ଭଗବାନଙ୍କ ବଚନକୁ ଶୁଣି ଅର୍ଜୁନ କହିଲେ, ହେ ଭଗବାନ୍ !—**

| | | | |
|---|---|---|---|
| ଭବତଃ | = ଆପଣଙ୍କର | | ପ୍ରାରମ୍ଭରେ ହୋଇସାରିଥିଲା (ତେଣୁ, ମୁଁ) |
| ଜନ୍ମ | = ଜନ୍ମ (ତ) | ଇତି, କଥମ୍ | = ଏହା କିପରି |
| ଅପରମ୍ | = ଅର୍ବାଚୀନ୍ ଅର୍ଥାତ୍ ଏବେ ଏବେ ହୋଇଛି (ଏବଂ) | ବିଜାନୀୟାମ୍ | = ବୁଝିପାରିବି (ଯେ) |
| | | ତ୍ୱମ୍ | = ଆପଣ |
| ବିବସ୍ୱତଃ | = ସୂର୍ଯ୍ୟଙ୍କର | ଆଦୌ | = କଳ୍ପର ପ୍ରାରମ୍ଭରେ (ସୂର୍ଯ୍ୟଙ୍କୁ) |
| ଜନ୍ମ | = ଜନ୍ମ | | |
| ପରମ୍ | = ବହୁତ ପୁରାତନ ଅର୍ଥାତ୍ କଳ୍ପର | ଏତତ୍ | = ଏହି ଯୋଗ |
| | | ପ୍ରୋକ୍ତବାନ୍ | = କହିଥିଲେ ? |

### ଶ୍ରୀଭଗବାନ ଉବାଚ

ଶ୍ରୀଭଗବାନଙ୍କ ଦ୍ୱାରା ନିଜର ତଥା ଅର୍ଜୁନଙ୍କର ବହୁତ ଜନ୍ମ ବ୍ୟତୀତ ହୋଇଥିବା କଥନ ।

**ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ ।**
**ତାନ୍ୟହଂ ବେଦ ସର୍ବାଣି ନ ତ୍ୱଂ ବେତ୍ଥ ପରନ୍ତପ ॥ ୫ ॥**

ବହୂନି, ମେ, ବ୍ୟତୀତାନି, ଜନ୍ମାନି, ତବ, ଚ, ଅର୍ଜୁନ,
ତାନି, ଅହମ୍, ବେଦ, ସର୍ବାଣି, ନ, ତ୍ୱମ୍, ବେତ୍ଥ, ପରନ୍ତପ ।।୫ ।।

**ଏହି ବିଷୟରେ ଭଗବାନ କହିଲେ—**

| | | | |
|---|---|---|---|
| ପରନ୍ତପ | = ହେ ଶତ୍ରୁପୀଡ଼କ | ତାନି | = ସେହି |
| ଅର୍ଜୁନ | = ଅର୍ଜୁନ ! | ସର୍ବାଣି | = ସବୁକୁ |
| ମେ | = ମୋର | ତ୍ୱମ୍ | = ତୁମେ |
| ଚ | = ଏବଂ | ନ, ବେତ୍ଥ | = ଜାଣ ନାହିଁ ; (କିନ୍ତୁ) |
| ତବ | = ତୁମର | | |
| ବହୂନି, ଜନ୍ମାନି | = ଅନେକ ଜନ୍ମ | | |
| ବ୍ୟତୀତାନି | = ଅତିବାହିତ ହୋଇସାରିଛି । | ଅହମ୍ | = ମୁଁ |
| | | ବେଦ | = ଜାଣେ । |

ଶ୍ରୀଭଗବାନଙ୍କ ଜନ୍ମର ଅଲୌକିକତା ।

**ଅଜୋଽପି ସନ୍ନବ୍ୟୟାତ୍ମା ଭୂତାନାମୀଶ୍ୱରୋଽପି ସନ୍ ।**
**ପ୍ରକୃତିଂ ସ୍ୱାମଧିଷ୍ଠାୟ ସମ୍ଭବାମ୍ୟାତ୍ମମାୟୟା ॥ ୬ ॥**

ଅଜଃ, ଅପି, ସନ୍, ଅବ୍ୟୟାତ୍ମା, ଭୂତାନାମ୍, ଈଶ୍ୱରଃ, ଅପି, ସନ୍,
ପ୍ରକୃତିମ୍, ସ୍ୱାମ୍, ଅଧିଷ୍ଠାୟ, ସମ୍ଭବାମି, ଆତ୍ମମାୟୟା ।।୬ ।।

**ତଥା ମୋର ଜନ୍ମ ପ୍ରାକୃତ ମନୁଷ୍ୟଙ୍କ ସଦୃଶ ନୁହେଁ —**

| | | | |
|---|---|---|---|
| (ଅହମ୍) | = ମୁଁ | ଅବ୍ୟୟାତ୍ମା | = ଅବିନାଶୀ ସ୍ୱରୂପ |
| ଅଜଃ | = ଅଜନ୍ମା (ଏବଂ) | ସନ୍ | = ହେଲେ |

| | | | |
|---|---|---|---|
| ଅପି | = ମଧ୍ୟ (ଏବଂ) | ପ୍ରକୃତିମ୍ | = ପ୍ରକୃତିକୁ |
| ଭୂତାନାମ୍ | = ସମସ୍ତ ପ୍ରାଣୀଙ୍କର | ଅଧିଷ୍ଠାୟ | = ଅଧୀନ କରି |
| ଈଶ୍ୱରଃ | = ଈଶ୍ୱର | ଆତ୍ମମାୟୟା | = ନିଜର ଯୋଗମାୟା ଦ୍ୱାରା |
| ସନ୍ | = ହୋଇଥିଲେ | | |
| ଅପି | = ମଧ୍ୟ | | |
| ସ୍ୱାମ୍ | = ନିଜର | ସମ୍ଭବାମି | = ପ୍ରକଟ ହୁଏ । |

ଶ୍ରୀଭଗବାନଙ୍କ ଅବତାର ନେବାର ସମୟ, କାରଣ ଓ ଉଦ୍ଦେଶ୍ୟର କଥନ ।

**ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।**
**ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ॥ ୭ ॥**

ଯଦା, ଯଦା, ହି, ଧର୍ମସ୍ୟ, ଗ୍ଲାନିଃ, ଭବତି, ଭାରତ,
ଅଭ୍ୟୁତ୍ଥାନମ୍, ଅଧର୍ମସ୍ୟ, ତଦା, ଆତ୍ମାନମ୍, ସୃଜାମି, ଅହମ୍ ।।୭ ।।

| | | | |
|---|---|---|---|
| ଭାରତ | = ହେ ଭାରତ ! | ହି | = ହିଁ |
| ଯଦା, ଯଦା | = ଯେଉଁ ଯେଉଁ ସମୟରେ | ଅହମ୍ | = ମୁଁ |
| ଧର୍ମସ୍ୟ | = ଧର୍ମର | ଆତ୍ମାନମ୍ | = ନିଜ ସ୍ୱରୂପକୁ |
| ଗ୍ଲାନିଃ | = ଅବକ୍ଷୟ (ଏବଂ) | ସୃଜାମି | = ସୃଷ୍ଟି କରେ ଅର୍ଥାତ୍ ସାକାର ରୂପରେ ଲୋକଙ୍କ ସମ୍ମୁଖରେ ପ୍ରକଟ ହୁଏ । |
| ଅଧର୍ମସ୍ୟ | = ଅଧର୍ମର | | |
| ଅଭ୍ୟୁତ୍ଥାନମ୍ | = ବୃଦ୍ଧି | | |
| ଭବତି | = ହୁଏ, | | |
| ତଦା | = ସେହି ସେହି ସମୟରେ | | |

ଶ୍ରୀଭଗବାନଙ୍କ ଅବତାର ନେବାର କାରଣର କଥନ ।

**ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍ ।**
**ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ॥ ୮ ॥**

ପରିତ୍ରାଣାୟ, ସାଧୂନାମ୍, ବିନାଶାୟ, ଚ, ଦୁଷ୍କୃତାମ୍,
ଧର୍ମସଂସ୍ଥାପନାର୍ଥାୟ, ସମ୍ଭବାମି, ଯୁଗେ, ଯୁଗେ ।।୮ ।।

## କାରଣ—

| | | | |
|---|---|---|---|
| ସାଧୂନାମ୍ | = ସାଧୁପୁରୁଷମାନଙ୍କୁ | ଧର୍ମସଂସ୍ଥା- | = ଉତ୍ତମ ରୂପେ |
| ପରିତ୍ରାଣାୟ | = ଉଦ୍ଧାର କରିବା ପାଇଁ, | ପନାର୍ଥାୟ | ଧର୍ମସ୍ଥାପନା କରିବା ନିମିତ୍ତ(ମୁଁ) |
| ଦୁଷ୍କୃତାମ୍ | = ପାପୀମାନଙ୍କୁ | | |
| ବିନାଶାୟ | = ବିନାଶ କରିବା ନିମିତ୍ତ | ଯୁଗେ, ଯୁଗେ | = ଯୁଗେ ଯୁଗେ |
| | | ସମ୍ଭବାମି | = ପ୍ରକଟ ହେଉଥାଏ । |
| ଚ | = ଏବଂ | | |

ଶ୍ରୀଭଗବାନଙ୍କ ଜନ୍ମ ତଥା କର୍ମକୁ ଦିବ୍ୟ ବୋଲି ଜାଣିବାର ଫଳ ।

**ଜନ୍ମ କର୍ମ ଚ ମେ ଦିବ୍ୟମେବଂ ଯୋ ବେତ୍ତି ତତ୍ତ୍ୱତଃ ।**
**ତ୍ୟକ୍ତ୍ୱା ଦେହଂ ପୁନର୍ଜନ୍ମ ନୈତି ମାମେତି ସୋଽର୍ଜୁନ ॥ ୯ ॥**

ଜନ୍ମ, କର୍ମ, ଚ, ମେ, ଦିବ୍ୟମ୍, ଏବମ୍, ଯଃ, ବେତ୍ତି, ତତ୍ତ୍ୱତଃ, ତ୍ୟକ୍ତ୍ୱା, ଦେହମ୍, ପୁନଃ, ଜନ୍ମ, ନ, ଏତି, ମାମ୍, ଏତି, ସଃ, ଅର୍ଜୁନ ।।୯ ।।

## ଏଥିପାଇଁ—

| | | | |
|---|---|---|---|
| ଅର୍ଜୁନ | = ହେ ଅର୍ଜୁନ ! | | ନିର୍ମଳ ଓ ଅଲୌକିକ ଅଟେ- |
| ମେ | = ମୋର | | |
| ଜନ୍ମ | = ଜନ୍ମ | ଏବମ୍ | = ଏହି ପ୍ରକାରେ |
| ଚ | = ଏବଂ | ଯଃ | = ଯେଉଁ ମନୁଷ୍ୟ |
| କର୍ମ | = କର୍ମ | ତତ୍ତ୍ୱତଃ | = ତତ୍ତ୍ୱତଃ* |
| ଦିବ୍ୟମ୍ | = ଦିବ୍ୟ ଅର୍ଥାତ୍ | ବେତ୍ତି | = ଜାଣିଯାଏ, |

* ସର୍ବଶକ୍ତିମାନ୍ ସଚ୍ଚିଦାନନ୍ଦଘନ ପରମାତ୍ମା ଅଜନ୍ମା, ଅବିନାଶୀ ଏବଂ ସମସ୍ତ ପ୍ରାଣୀଙ୍କ ପରମଗତି ତଥା ପରମ ଆଶ୍ରୟ ଅଟନ୍ତି । ସେ କେବଳ ଧର୍ମର ସ୍ଥାପନ କରିବା ଏବଂ ସଂସାରର ଉଦ୍ଧାର କରିବା ପାଇଁ ହିଁ ନିଜର ଯୋଗମାୟା ଦ୍ୱାରା ସଗୁଣରୂପ ହୋଇ ପ୍ରକଟ ହୁଅନ୍ତି । ତେଣୁ ପରମେଶ୍ୱରଙ୍କ ସମାନ ସୁହୃଦ୍, ପ୍ରେମୀ ଏବଂ ପତିତପାବନ ଆଉ ଦ୍ୱିତୀୟ ନାହାନ୍ତି । ଏହା ଜାଣି ଯେଉଁ ପୁରୁଷ ପରମେଶ୍ୱରଙ୍କୁ ଅନନ୍ୟ ପ୍ରେମଭକ୍ତି ସହିତ ନିରନ୍ତର ଚିନ୍ତନ କରିବା ସହିତ ଆସକ୍ତି ରହିତ ହୋଇ ସଂସାରରେ ପ୍ରବୃତ୍ତ ହେବା ହିଁ 'ଭଗବାନଙ୍କୁ ତତ୍ତ୍ୱର ସହିତ' ଜାଣିବା ।

| | | | |
|---|---|---|---|
| ସଃ | = ସେ | ନ, ଏତି | = ପ୍ରାପ୍ତ ହୁଏ ନାହିଁ ; (ବରଂ ସେ) |
| ଦେହମ୍ | = ଶରୀରକୁ | ମାମ୍ | = ମୋତେ (ହିଁ) |
| ତ୍ୟକ୍ତ୍ୱା | = ତ୍ୟାଗ କରି | ଏତି | = ପ୍ରାପ୍ତ ହୁଏ । |
| ପୁନଃ | = ପୁନର୍ବାର | | |
| ଜନ୍ମ | = ଜନ୍ମକୁ | | |

ଶ୍ରୀଭଗବାନଙ୍କ ଆଶ୍ରିତ ହେବାର ଫଳ ଭଗବତ୍ପ୍ରାପ୍ତି ।

**ବୀତରାଗଭୟକ୍ରୋଧା ମନ୍ମୟା ମାମୁପାଶ୍ରିତାଃ ।**
**ବହବୋ ଜ୍ଞାନତପସା ପୂତା ମଦ୍ଭାବମାଗତାଃ ॥ ୧୦ ॥**

ବୀତରାଗଭୟକ୍ରୋଧାଃ, ମନ୍ମୟାଃ, ମାମ୍, ଉପାଶ୍ରିତାଃ,
ବହବଃ, ଜ୍ଞାନତପସା, ପୂତାଃ, ମଦ୍ଭାବମ୍, ଆଗତାଃ ।।୧୦।।

**ଏବଂ ହେ ଅର୍ଜୁନ! ବହୁ ଆଗରୁ ମଧ୍ୟ—**

| | | | |
|---|---|---|---|
| ବୀତରାଗ-ଭୟକ୍ରୋଧାଃ | = ଯେଉଁମାନଙ୍କର ରାଗ (ଆସକ୍ତି), ଭୟ ଏବଂ କ୍ରୋଧ ସର୍ବଥା ନଷ୍ଟ ହୋଇ-ଯାଇଥିଲା ଏବଂ, | | (ସେପରି) |
| ମନ୍ମୟାଃ | = ଯେଉଁମାନେ ମୋ'ଠାରେ ଅନନ୍ୟ ପ୍ରେମପୂର୍ବକ ତନ୍ମୟ ହୋଇରହିଥିଲେ, | ମାମ୍ | = ମୋତେ |
| | | ଉପାଶ୍ରିତାଃ | = ଆଶ୍ରୟ କରି ରହିଥିବା |
| | | ବହବଃ | = ବହୁଭକ୍ତ |
| | | ଜ୍ଞାନତପସା | = ଜ୍ଞାନରୂପକ ତପଦ୍ୱାରା |
| | | ପୂତାଃ | = ପବିତ୍ର ହୋଇ |
| | | ମଦ୍ଭାବମ୍ | = ମୋର ସ୍ୱରୂପକୁ |
| | | ଆଗତାଃ | = ପ୍ରାପ୍ତ ହୋଇସାରିଛନ୍ତି । |

ଶ୍ରୀଭଗବାନଙ୍କୁ ଭଜନ କରୁଥିବା ଭକ୍ତଙ୍କୁ ଭଗବାନ୍

**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।**
**ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ॥ ୧୧ ॥**

ଠିକ୍ ସେହିଭଳି ଭଜନ କରନ୍ତି ବୋଲି ଉକ୍ତି ।

ଯେ, ଯଥା, ମାମ୍, ପ୍ରପଦ୍ୟନ୍ତେ, ତାନ୍, ତଥା, ଏବ, ଭଜାମି, ଅହମ୍,
ମମ, ବର୍ତ୍ମ, ଅନୁବର୍ତ୍ତନ୍ତେ, ମନୁଷ୍ୟାଃ, ପାର୍ଥ, ସର୍ବଶଃ ।।୧୧।।

**କାହିଁକି ନା—**

| | | | |
|---|---|---|---|
| ପାର୍ଥ | = ହେ ଅର୍ଜୁନ ! | ଭଜାମି | = ଭଜନ କରେ, (କାରଣ) |
| ଯେ | = ଯେଉଁ ଭକ୍ତମାନେ | ମନୁଷ୍ୟାଃ | = ମନୁଷ୍ୟମାନେ |
| ମାମ୍ | = ମୋତେ | ସର୍ବଶଃ | = ସବୁ ପ୍ରକାରେ |
| ଯଥା | = ଯେଉଁପରି | ମମ | = ମୋର (ହିଁ) |
| ପ୍ରପଦ୍ୟନ୍ତେ | = ଭଜନ କରନ୍ତି | ବର୍ତ୍ମ | = ମାର୍ଗକୁ |
| ଅହମ୍ | = ମୁଁ | ଅନୁବର୍ତ୍ତନ୍ତେ | = ଅନୁସରଣ କରନ୍ତି । |
| ତାନ୍ | = ସେମାନଙ୍କୁ | | |
| ତଥା, ଏବ | = ସେହିପରି | | |

ଦେବତାମାନଙ୍କୁ ଉପାସନା କରୁଥିବା ମନୁଷ୍ୟମାନଙ୍କୁ ଲୌକିକ ଫଳ ଶୀଘ୍ର ପ୍ରାପ୍ତ ହୁଏ ବୋଲି କଥନ ।

**କାଙ୍କ୍ଷନ୍ତଃ କର୍ମଣାଂ ସିଦ୍ଧିଂ ଯଜନ୍ତ ଇହ ଦେବତାଃ ।**
**କ୍ଷିପ୍ରଂ ହି ମାନୁଷେ ଲୋକେ ସିଦ୍ଧିର୍ଭବତି କର୍ମଜା ॥ ୧୨ ॥**

କାଙ୍କ୍ଷନ୍ତଃ, କର୍ମଣାମ୍, ସିଦ୍ଧିମ୍, ଯଜନ୍ତେ, ଇହ, ଦେବତାଃ,
କ୍ଷିପ୍ରମ୍, ହି, ମାନୁଷେ, ଲୋକେ, ସିଦ୍ଧିଃ, ଭବତି, କର୍ମଜା ।।୧୨।।

**ଯେଉଁ ମନୁଷ୍ୟ ମୋତେ ତତ୍ତ୍ୱତଃ ଜାଣନ୍ତି ନାହିଁ, ସେମାନେ—**

| | | | |
|---|---|---|---|
| ଇହ | = ଏହି | ଯଜନ୍ତେ | = ପୂଜା କରନ୍ତି, |
| ମାନୁଷେ | = ମନୁଷ୍ୟ | ହି | = କାରଣ (ସେମାନଙ୍କୁ) |
| ଲୋକେ | = ଲୋକରେ | କର୍ମଜା | = କର୍ମରୁ ଉତ୍ପନ୍ନ ହେଉଥିବା |
| କର୍ମଣାମ୍ | = କର୍ମମାନଙ୍କର | ସିଦ୍ଧିଃ | = ସିଦ୍ଧି |
| ସିଦ୍ଧିମ୍ | = ଫଳକୁ | କ୍ଷିପ୍ରମ୍ | = ଶୀଘ୍ର |
| କାଙ୍କ୍ଷନ୍ତଃ | = ଆକାଙ୍କ୍ଷା କରୁଥିବା (ଲୋକେ) | ଭବତି | = ମିଳିଯାଏ । |
| ଦେବତାଃ | = ଦେବତାମାନଙ୍କୁ | | |

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର ଏହି ଚାରି ବର୍ଣ୍ଣକୁ ସୃଷ୍ଟି କରିବାରେ ଭଗବାନଙ୍କ ଅକର୍ତ୍ତାପଣର କଥନ ।

**ଚାତୁର୍ବର୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ ।**
**ତସ୍ୟ କର୍ତ୍ତାରମପି ମାଂ ବିଦ୍ଧ୍ୟକର୍ତ୍ତାରମବ୍ୟୟମ୍ ॥ ୧୩ ॥**

ଚାତୁର୍ବର୍ଣ୍ୟମ୍, ମୟା, ସୃଷ୍ଟମ୍, ଗୁଣକର୍ମବିଭାଗଶଃ, ତସ୍ୟ, କର୍ତ୍ତାରମ୍, ଅପି, ମାମ୍, ବିଦ୍ଧି, ଅକର୍ତ୍ତାରମ୍, ଅବ୍ୟୟମ୍ ।।୧୩।।

**ତଥା ହେ ଅର୍ଜୁନ !—**

| | | | |
|---|---|---|---|
| ଚାତୁର୍ବର୍ଣ୍ୟମ୍ | = ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଏବଂ ଶୂଦ୍ର—ଏହି ଚାରି ବର୍ଣ୍ଣର ସମୂହ, | କର୍ତ୍ତାରମ୍, ଅପି | = କର୍ତ୍ତା ହେଲେ ମଧ୍ୟ |
| ଗୁଣକର୍ମ-ବିଭାଗଶଃ | = ଗୁଣ ଓ କର୍ମର ବିଭାଗ ପୂର୍ବକ | ମାମ୍ | = ମୋତେ (ଅର୍ଥାତ୍) |
| ମୟା | = ମୋ ଦ୍ୱାରା | ଅବ୍ୟୟମ୍ | = ଅବିନାଶୀ ପରମେଶ୍ୱରଙ୍କୁ (ତୁମେ ବାସ୍ତବରେ) |
| ସୃଷ୍ଟମ୍ | = ରଚିତ ହୋଇଛି । (ଏହି ପ୍ରକାରେ) | ଅକର୍ତ୍ତାରମ୍ | = ଅକର୍ତ୍ତା (ବୋଲି ହିଁ) |
| ତସ୍ୟ | = ତାହାର (ସୃଷ୍ଟି ରଚନାଦି କର୍ମର) | ବିଦ୍ଧି | = ଜାଣ । |

ଶ୍ରୀଭଗବାନଙ୍କ କର୍ମର ବିଦ୍ୟାତା ଏବଂ ତାହା ଜାଣିବାର ଫଳ ।

**ନ ମାଂ କର୍ମାଣି ଲିମ୍ପନ୍ତି ନ ମେ କର୍ମଫଳେ ସ୍ପୃହା ।**
**ଇତି ମାଂ ଯୋଽଭିଜାନାତି କର୍ମଭିର୍ନ ସ ବଧ୍ୟତେ ॥ ୧୪ ॥**

ନ, ମାମ୍, କର୍ମାଣି, ଲିମ୍ପନ୍ତି, ନ, ମେ, କର୍ମଫଳେ, ସ୍ପୃହା, ଇତି, ମାମ୍, ଯଃ, ଅଭିଜାନାତି, କର୍ମଭିଃ, ନ, ସଃ, ବଧ୍ୟତେ ।।୧୪।।

**କାରଣ—**

| | | | |
|---|---|---|---|
| କର୍ମଫଳେ | = କର୍ମଫଳରେ | ସ୍ପୃହା | = ସ୍ପୃହା |
| ମେ | = ମୋର | ନ | = ନାହିଁ, (ତେଣୁ) |

| | | | |
|---|---|---|---|
| ମାମ୍ | = ମୋତେ | ମାମ୍ | = ମୋତେ |
| କର୍ମାଣି | = କର୍ମମାନେ | ଅଭିଜାନାତି | = ତତ୍ତ୍ୱତଃ ଜାଣିଯାଏ, |
| ନ, ଲିମ୍ପନ୍ତି | = ଲିପ୍ତ କରିପାରନ୍ତି ନାହିଁ - | ସଃ | = ସେ (ମଧ୍ୟ) |
| | | କର୍ମଭିଃ | = କର୍ମମାନଙ୍କ ଦ୍ୱାରା |
| ଇତି | = ଏପରି (ବୋଲି) | | |
| ଯଃ | = ଯିଏ | ନ, ବଧ୍ୟତେ | = ବାନ୍ଧି ହୁଏ ନାହିଁ । |

ପୂର୍ବଜ ମୁମୁକ୍ଷୁ ମାନଙ୍କ ପରି ନିଷ୍କାମ କର୍ମ କରିବା ପାଇଁ ପ୍ରେରଣା ।

**ଏବଂ ଜ୍ଞାତ୍ୱା କୃତଂ କର୍ମ ପୂର୍ବୈରପି ମୁମୁକ୍ଷୁଭିଃ ।**
**କୁରୁ କର୍ମୈବ ତସ୍ମାତ୍ତ୍ୱଂ ପୂର୍ବୈଃ ପୂର୍ବତରଂ କୃତମ୍ ॥ ୧୫ ॥**

ଏବମ୍, ଜ୍ଞାତ୍ୱା, କୃତମ୍, କର୍ମ, ପୂର୍ବୈଃ, ଅପି, ମୁମୁକ୍ଷୁଭିଃ,
କୁରୁ, କର୍ମ, ଏବ, ତସ୍ମାତ୍, ତ୍ୱମ୍, ପୂର୍ବୈଃ, ପୂର୍ବତରମ୍, କୃତମ୍ ॥୧୫॥

**ତଥା—**

| | | | |
|---|---|---|---|
| ପୂର୍ବୈଃ | = ପୂର୍ବକାଳୀନ | ତ୍ୱମ୍ | = ତୁମେ (ମଧ୍ୟ) |
| ମୁମୁକ୍ଷୁଭିଃ | = ମୁମୁକ୍ଷୁମାନେ | ପୂର୍ବୈଃ | = ପୂର୍ବଜମାନଙ୍କ ଦ୍ୱାରା |
| ଅପି | = ମଧ୍ୟ | | |
| ଏବମ୍ | = ଏପରି | ପୂର୍ବତରମ୍, | = ଆଦିକାଳରୁ |
| ଜ୍ଞାତ୍ୱା | = ଜାଣି | କୃତମ୍ | କରାଯାଇଥିବା |
| କର୍ମ | = କର୍ମ | କର୍ମ, ଏବ | = କର୍ମଗୁଡ଼ିକୁ ହିଁ (ସେମାନଙ୍କ ପରି) |
| କୃତମ୍ | = କରିଯାଇଛନ୍ତି; | | |
| ତସ୍ମାତ୍ | = ତେଣୁ | କୁରୁ | = କର । |

କର୍ମ ଏବଂ ଅକର୍ମକୁ ତତ୍ତ୍ୱତଃ ଜାଣିବାର ଫଳ ।

**କିଂ କର୍ମ କିମକର୍ମେତି କବୟୋଽପ୍ୟତ୍ର ମୋହିତାଃ ।**
**ତତ୍ତେ କର୍ମ ପ୍ରବକ୍ଷ୍ୟାମି ଯଜ୍ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ ॥ ୧୬ ॥**

କିମ୍, କର୍ମ, କିମ୍, ଅକର୍ମ, ଇତି, କବୟଃ, ଅପି, ଅତ୍ର, ମୋହିତାଃ,
ତତ୍, ତେ, କର୍ମ, ପ୍ରବକ୍ଷ୍ୟାମି, ଯତ୍, ଜ୍ଞାତ୍ୱା, ମୋକ୍ଷ୍ୟସେ, ଅଶୁଭାତ୍ ॥୧୬॥

**ପରନ୍ତୁ—**

କର୍ମ = କର୍ମ
କିମ୍ = କ'ଣ ? (ଏବଂ)
ଅକର୍ମ = ଅକର୍ମ
କିମ୍ = କ'ଣ ? -
ଇତି = ଏପରି
ଅତ୍ର = ଏହା ନିର୍ଣ୍ଣୟ କରିବାରେ
କବୟଃ = ବୁଦ୍ଧିମାନ୍ ପୁରୁଷମାନେ
ଅପି = ମଧ୍ୟ
ମୋହିତାଃ = ଭ୍ରମରେ ପଡ଼ିଯାଆନ୍ତି ।

(ତେଣୁ)
ତତ୍ = ସେହି
କର୍ମ = କର୍ମତତ୍ତ୍ୱକୁ (ମୁଁ)
ତେ = ତୁମକୁ
ପ୍ରବକ୍ଷ୍ୟାମି = ଭଲଭାବରେ ବୁଝାଇ କହିଦେବି,
ଯତ୍ = ଯାହା
ଜ୍ଞାତ୍ୱା = ଜାଣିଲେ (ତୁମେ)
ଅଶୁଭାତ୍ = ଅଶୁଭରୁ ଅର୍ଥାତ୍ କର୍ମବନ୍ଧନରୁ
ମୋକ୍ଷ୍ୟସେ = ମୁକ୍ତ ହୋଇଯିବ ।

କର୍ମ, ଅକର୍ମ ଓ ବିକର୍ମକୁ ସ୍ୱରୂପତଃ ଜାଣିବାପାଇଁ ପ୍ରେରଣା ।

**କର୍ମଣୋ ହ୍ୟପି ବୋଦ୍ଧବ୍ୟଂ ବୋଦ୍ଧବ୍ୟଂ ଚ ବିକର୍ମଣଃ ।**
**ଅକର୍ମଣଶ୍ଚ ବୋଦ୍ଧବ୍ୟଂ ଗହନା କର୍ମଣୋ ଗତିଃ ॥ ୧୭ ॥**

କର୍ମଣଃ, ହି, ଅପି, ବୋଦ୍ଧବ୍ୟମ୍, ବୋଦ୍ଧବ୍ୟମ୍, ଚ, ବିକର୍ମଣଃ, ଅକର୍ମଣଃ, ଚ, ବୋଦ୍ଧବ୍ୟମ୍, ଗହନା, କର୍ମଣଃ, ଗତିଃ ।।୧୭।।

କର୍ମଣଃ = କର୍ମର (ସ୍ୱରୂପ)
ଅପି = ମଧ୍ୟ
ବୋଦ୍ଧବ୍ୟମ୍ = ଜାଣିବା ଉଚିତ
ଚ = ଏବଂ
ଅକର୍ମଣଃ = ଅକର୍ମର (ସ୍ୱରୂପ ବି)
ବୋଦ୍ଧବ୍ୟମ୍ = ଜାଣିବା ଉଚିତ;
ଚ = ତଥା

ବିକର୍ମଣଃ = ବିକର୍ମର (ସ୍ୱରୂପ ମଧ୍ୟ)
ବୋଦ୍ଧବ୍ୟମ୍ = ଜାଣିବା ଉଚିତ;
ହି = କାରଣ
କର୍ମଣଃ = କର୍ମର
ଗତିଃ = ଗତି
ଗହନା = ଅତି ଗହନ ଅର୍ଥାତ୍ ବୁଝିବା ଦୁଷ୍କର ।

କର୍ମରେ ଅକର୍ମ ତଥା ଅକର୍ମରେ କର୍ମକୁ ତତ୍ତ୍ୱତଃ ଜାଣିବାର ଫଳ ।

**କର୍ମଣ୍ୟକର୍ମ ଯଃ ପଶ୍ୟେଦକର୍ମଣି ଚ କର୍ମ ଯଃ ।**
**ସ ବୁଦ୍ଧିମାନ୍ମନୁଷ୍ୟେଷୁ ସ ଯୁକ୍ତଃ କୃତ୍ସ୍ନକର୍ମକୃତ୍ ॥ ୧୮ ॥**

କର୍ମଣି, ଅକର୍ମ, ଯଃ, ପଶ୍ୟେତ୍, ଅକର୍ମଣି, ଚ, କର୍ମ, ଯଃ,
ସଃ, ବୁଦ୍ଧିମାନ୍, ମନୁଷ୍ୟେଷୁ, ସଃ, ଯୁକ୍ତଃ, କୃତ୍ସ୍ନକର୍ମକୃତ୍ ।।୧୮।।

| | | | |
|---|---|---|---|
| ଯଃ | = ଯେଉଁ ମନୁଷ୍ୟ | ମନୁଷ୍ୟେଷୁ | = ମନୁଷ୍ୟମାନଙ୍କ ମଧ୍ୟରେ |
| କର୍ମଣି | = କର୍ମରେ | ବୁଦ୍ଧିମାନ୍ | = ବୁଦ୍ଧିମାନ୍ (ଏବଂ) |
| ଅକର୍ମ | = ଅକର୍ମ | ସଃ | = ସେ |
| ପଶ୍ୟେତ୍ | = ଦେଖେ | ଯୁକ୍ତଃ | = ଯୋଗୀ (ଏବଂ) ସେ |
| ଚ | = ଏବଂ | କୃତ୍ସ୍ନକର୍ମକୃତ୍ | = ସମସ୍ତ କର୍ମ କରିଥାଆନ୍ତି । |
| ଯଃ | = ଯେ | | |
| ଅକର୍ମଣି | = ଅକର୍ମରେ | | |
| କର୍ମ | = କର୍ମ (ଦେଖେ), | | |
| ସଃ | = ସେ | | |

କାମନା ଏବଂ ସଂକଳ୍ପ ରହିତ ଆଚରଣ କରୁଥିବା ଜ୍ଞାନୀଙ୍କୁ ପ୍ରଶଂସା ।

**ଯସ୍ୟ ସର୍ବେ ସମାରମ୍ଭାଃ କାମସଙ୍କଳ୍ପବର୍ଜିତାଃ ।**
**ଜ୍ଞାନାଗ୍ନିଦଗ୍ଧକର୍ମାଣଂ ତମାହୁଃ ପଣ୍ଡିତଂ ବୁଧାଃ ॥ ୧୯ ॥**

ଯସ୍ୟ, ସର୍ବେ ସମାରମ୍ଭାଃ, କାମସଙ୍କଳ୍ପବର୍ଜିତାଃ,
ଜ୍ଞାନାଗ୍ନିଦଗ୍ଧକର୍ମାଣମ୍, ତମ୍, ଆହୁଃ, ପଣ୍ଡିତମ୍, ବୁଧାଃ ।।୧୯।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଯସ୍ୟ | = ଯାହାଙ୍କର | କାମସଂକଳ୍ପ-ବର୍ଜିତାଃ | = କାମନାଶୂନ୍ୟ ଓ ସଂକଳ୍ପଶୂନ୍ୟ ହୋଇଥାଏ, (ତଥା) |
| ସର୍ବେ | = ସମ୍ପୂର୍ଣ୍ଣ (ଶାସ୍ତ୍ରସମ୍ମତ) | | |
| ସମାରମ୍ଭାଃ | = କର୍ମମାନ | | |

| | | | |
|---|---|---|---|
| ଜ୍ଞାନାଗ୍ନିଦଗ୍ଧ-କର୍ମାଣମ୍ | = ଯାହାଙ୍କର ସମସ୍ତ କର୍ମ ଜ୍ଞାନରୂପକ ଅଗ୍ନି ଦ୍ୱାରା ଭସ୍ମ ହୋଇଯାଇଛି, | ବୁଧାଃ | = ଜ୍ଞାନୀଜନମାନେ (ମଧ୍ୟ) |
| ତମ୍ | = ସେହି ମହାପୁରୁଷଙ୍କୁ | ପଣ୍ଡିତମ୍ | = ପଣ୍ଡିତ (ବୋଲି) |
| | | ଆହୁଃ | = କହନ୍ତି । |

ଫଳାସକ୍ତିକୁ ତ୍ୟାଗ କରି କର୍ମ କରିବା ମନୁଷ୍ୟଙ୍କ ପ୍ରଶଂସା ।

**ତ୍ୟକ୍ତ୍ୱା କର୍ମଫଳାସଙ୍ଗଂ ନିତ୍ୟତୃପ୍ତୋ ନିରାଶ୍ରୟଃ ।**
**କର୍ମଣ୍ୟଭିପ୍ରବୃତ୍ତୋଽପି ନୈବ କିଞ୍ଚିତ୍‌କରୋତି ସଃ ॥ ୨୦ ॥**

ତ୍ୟକ୍ତ୍ୱା, କର୍ମଫଳାସଙ୍ଗମ୍, ନିତ୍ୟତୃପ୍ତଃ, ନିରାଶ୍ରୟଃ, କର୍ମଣି, ଅଭିପ୍ରବୃତ୍ତଃ, ଅପି, ନ, ଏବ, କିଞ୍ଚିତ୍, କରୋତି, ସଃ ।।୨୦।।

**ଏବଂ ଯେଉଁ ପୁରୁଷ—**

| | | | |
|---|---|---|---|
| କର୍ମଫଳା-ସଙ୍ଗମ୍ | = ସମସ୍ତ ପ୍ରକାର କର୍ମରେ ଏବଂ ତାହାର ଫଳରେ ଆସକ୍ତିକୁ | ନିତ୍ୟତୃପ୍ତଃ | = ପରମାତ୍ମାଙ୍କଠାରେ ନିତ୍ୟତୃପ୍ତ ହୋଇ ରହିଥିବା |
| ତ୍ୟକ୍ତ୍ୱା | = ସର୍ବଥା ତ୍ୟାଗ କରି | ସଃ | = ସେହି (ପୁରୁଷ) |
| ନିରାଶ୍ରୟଃ | = ସଂସାରର ଆଶ୍ରୟରୁ ରହିତ ହୋଇଥିବା (ଏବଂ) | କର୍ମଣି | = କର୍ମରେ |
| | | ଅଭିପ୍ରବୃତ୍ତଃ | = ଭଲ ଭାବରେ ପ୍ରବୃତ୍ତ ହୋଇ |
| | | ଅପି | = ମଧ୍ୟ (ବାସ୍ତବରେ) |
| | | ନ, ଏବ, କିଞ୍ଚିତ୍, କରୋତି | = କିଛି ହେଲେ ବି କରେ ନାହିଁ । |

କେବଳ ଶରୀର ସମ୍ବନ୍ଧୀୟ କର୍ମ କରିବାରେ ସନ୍ନ୍ୟାସୀଙ୍କର

**ନିରାଶୀର୍ଯତଚିତ୍ତାତ୍ମା ତ୍ୟକ୍ତସର୍ବପରିଗ୍ରହଃ ।**
**ଶାରୀରଂ କେବଳଂ କର୍ମ କୁର୍ବନ୍ନାପ୍ନୋତି କିଲ୍‌ବିଷମ୍ ॥ ୨୧ ॥**

କୌଣସି ପାପ ହୁଏ ନାହିଁ ।

ନିରାଶୀଃ, ଯତଚିତ୍ତାତ୍ମା, ତ୍ୟକ୍ତସର୍ବପରିଗ୍ରହଃ,
ଶାରୀରମ୍, କେବଲମ୍, କର୍ମ, କୁର୍ବନ୍, ନ, ଆପ୍ନୋତି, କିଲ୍‌ବିଷମ୍ ।।୨୧।।

ଏବଂ—

| | | | |
|---|---|---|---|
| ଯତଚିତ୍ତାତ୍ମା | = ଯେ ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ଜୟ କରି ନେଇଛନ୍ତି, | ନିରାଶୀଃ | = ଆଶା ରହିତ ପୁରୁଷ |
| ତ୍ୟକ୍ତସର୍ବ-ପରିଗ୍ରହଃ | = ଯେ ସମସ୍ତ ଭୋଗ ସାମଗ୍ରୀକୁ ପରିତ୍ୟାଗ କରିଦେଇଛନ୍ତି, (ସେହି) | କେବଲମ୍ | = କେବଳ |
| | | ଶାରୀରମ୍ | = ଶରୀର ସମ୍ବନ୍ଧୀୟ |
| | | କର୍ମ | = କର୍ମ |
| | | କୁର୍ବନ୍ | = କରୁଥିଲେ (ମଧ୍ୟ) |
| | | କିଲ୍‌ବିଷମ୍ | = ପାପକୁ |
| | | ନ, ଆପ୍ନୋତି | = ପ୍ରାପ୍ତ ହୁଅନ୍ତି ନାହିଁ । |

ନିଷ୍କାମ କର୍ମଯୋଗ ସାଧକଙ୍କ ଲକ୍ଷଣ ଏବଂ ସେ କର୍ମ କରି ମଧ୍ୟ କିପରି କର୍ମରେ ବାନ୍ଧି ହୁଅନ୍ତି ନାହିଁ, ତାହାର କଥନ ।

**ଯଦୃଚ୍ଛାଲାଭସନ୍ତୁଷ୍ଟୋ ଦ୍ୱନ୍ଦ୍ୱାତୀତୋ ବିମତ୍ସରଃ ।**
**ସମଃ ସିଦ୍ଧାବସିଦ୍ଧୌ ଚ କୃତ୍ୱାପି ନ ନିବଧ୍ୟତେ ॥ ୨୨ ॥**

ଯଦୃଚ୍ଛାଲାଭସନ୍ତୁଷ୍ଟଃ, ଦ୍ୱନ୍ଦ୍ୱାତୀତଃ, ବିମତ୍ସରଃ,
ସମଃ, ସିଦ୍ଧୌ, ଅସିଦ୍ଧୌ, ଚ, କୃତ୍ୱା, ଅପି, ନ, ନିବଧ୍ୟତେ ।।୨୨।।

ଏବଂ—

| | | | |
|---|---|---|---|
| ଯଦୃଚ୍ଛାଲାଭ-ସନ୍ତୁଷ୍ଟଃ | = ଯେ ବିନା ଇଚ୍ଛାରେ ସ୍ୱତଃ ମିଳୁଥିବା ପଦାର୍ଥରେ ସର୍ବଦା ସନ୍ତୁଷ୍ଟ ରହେ, | | (ସେପରି) |
| | | ସିଦ୍ଧୌ | = ସିଦ୍ଧିରେ |
| | | ଚ | = ଏବଂ |
| | | ଅସିଦ୍ଧୌ | = ଅସିଦ୍ଧିରେ |
| ବିମତ୍ସରଃ | = ଯେ ସର୍ବଥା ଈର୍ଷା ରହିତ, | ସମଃ | = ସମ ରହୁଥିବା କର୍ମଯୋଗୀ |
| ଦ୍ୱନ୍ଦ୍ୱାତୀତଃ | = ଯେ ହର୍ଷ-ଶୋକାଦି ଦ୍ୱନ୍ଦ୍ୱରୁ ସର୍ବଥା ଅତୀତ - | କୃତ୍ୱା, ଅପି | = (କର୍ମ) କରି ମଧ୍ୟ |
| | | ନ, ନିବଧ୍ୟତେ | = କର୍ମରେ ବାନ୍ଧି ହୁଏ ନାହିଁ । |

ଯଜ୍ଞାର୍ଥ କର୍ମ କରୁଥିବା ଜ୍ଞାନୀ ପୁରୁଷଙ୍କ ସମସ୍ତ କର୍ମ ନଷ୍ଟ ହୋଇଯାଏ ବୋଲି ଉକ୍ତି ।

ଗତସଙ୍ଗସ୍ୟ ମୁକ୍ତସ୍ୟ ଜ୍ଞାନାବସ୍ଥିତଚେତସଃ ।
ଯଜ୍ଞାୟାଚରତଃ କର୍ମ ସମଗ୍ରଂ ପ୍ରବିଲୀୟତେ ॥ ୨୩ ॥

ଗତସଙ୍ଗସ୍ୟ, ମୁକ୍ତସ୍ୟ, ଜ୍ଞାନାବସ୍ଥିତଚେତସଃ,
ଯଜ୍ଞାୟ, ଆଚରତଃ, କର୍ମ, ସମଗ୍ରମ୍, ପ୍ରବିଳୀୟତେ ।।୨୩।।

**କାରଣ—**

ଗତସଙ୍ଗସ୍ୟ = ଯାହାଙ୍କର ଆସକ୍ତି ସର୍ବଥା ନଷ୍ଟ ହୋଇଯାଇଛି,
ମୁକ୍ତସ୍ୟ = ଯେ ଦେହାଭିମାନ ଏବଂ ମମତ୍ୱରୁ ରହିତ ହୋଇଯାଇଛି,
ଜ୍ଞାନାବସ୍ଥିତ-ଚେତସଃ = ଯାହାଙ୍କର ଚିତ୍ତ ନିରନ୍ତର ପରମାତ୍ମାଙ୍କ ଜ୍ଞାନରେ ଲାଗି ରହିଥାଏ—ଏପରି

ଯଜ୍ଞାୟ = (କେବଳ) ଯଜ୍ଞ ସମ୍ପାଦନ ନିମିତ୍ତ
ଆଚରତଃ = (କର୍ମ ) କରୁଥିବା (ସେହି) ମନୁଷ୍ୟଙ୍କର
ସମଗ୍ରମ୍ = ସକଳ
କର୍ମ = କର୍ମ
ପ୍ରବିଲୀୟତେ = ଭଲଭାବରେ ବିଲୀନ ହୋଇଯାଏ ।

ବ୍ରହ୍ମ ଯଜ୍ଞର କଥନ ।

ବ୍ରହ୍ମାର୍ପଣଂ ବ୍ରହ୍ମ ହବିର୍ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତମ୍ ।
ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମକର୍ମସମାଧିନା ॥ ୨୪ ॥

ବ୍ରହ୍ମ, ଅର୍ପଣମ୍, ବ୍ରହ୍ମ, ହବିଃ, ବ୍ରହ୍ମାଗ୍ନୌ, ବ୍ରହ୍ମଣା, ହୁତମ୍,
ବ୍ରହ୍ମ, ଏବ, ତେନ, ଗନ୍ତବ୍ୟମ୍, ବ୍ରହ୍ମକର୍ମସମାଧିନା ।।୨୪।।

**ଏହି ଯଜ୍ଞକୁ ଆଚରଣ କରୁଥିବା ପୁରୁଷ ମାନଙ୍କ ମଧ୍ୟରେ କିଏ ବି ତ ଏହି ଭାବରେ ଯଜ୍ଞ କରୁଥିବେ କି—**

ଅର୍ପଣମ୍ = (ଯେଉଁ ଯଜ୍ଞରେ) ଅର୍ପଣ ଅର୍ଥାତ୍ ସ୍ରୁବ

ଆଦି ଉପକରଣ (ମଧ୍ୟ)

| | | | |
|---|---|---|---|
| ବ୍ରହ୍ମ | = ବ୍ରହ୍ମ (ଏବଂ) | ହୁତମ୍ | = ଆହୁତିଦେବାରୂପକ କ୍ରିୟା (ମଧ୍ୟ ବ୍ରହ୍ମ), |
| ହବିଃ | = ହବନ ଯୋଗ୍ୟ ଦ୍ରବ୍ୟ(ତିଳ, ଯବ, ଘିଅ ଇତ୍ୟାଦି) (ମଧ୍ୟ) | ତେନ | = ସେହି |
| ବ୍ରହ୍ମ | = ବ୍ରହ୍ମ (ଏବଂ) | ବ୍ରହ୍ମକର୍ମ-ସମାଧିନା | = ବ୍ରହ୍ମକର୍ମରେ ସ୍ଥିତ ରହୁଥିବା ଯୋଗୀଙ୍କ ଦ୍ୱାରା |
| ବ୍ରହ୍ମଣା | = ବ୍ରହ୍ମରୂପକ କର୍ତ୍ତାଙ୍କ ଦ୍ୱାରା | ଗନ୍ତବ୍ୟମ୍ | = ପାଇବା ଯୋଗ୍ୟ (ଫଳ ମଧ୍ୟ) |
| ବ୍ରହ୍ମାଗ୍ନୌ | = ବ୍ରହ୍ମରୂପକ ଅଗ୍ନିରେ | ବ୍ରହ୍ମ, ଏବ | = ବ୍ରହ୍ମ ହିଁ ଅଟେ । |

ଦେବଯଜ୍ଞ ଏବଂ ଜ୍ଞାନଯଜ୍ଞର କଥନ ।

**ଦୈବମେବାପରେ ଯଜ୍ଞଂ ଯୋଗିନଃ ପର୍ଯ୍ୟୁପାସତେ ।**
**ବ୍ରହ୍ମାଗ୍ନାବପରେ ଯଜ୍ଞଂ ଯଜ୍ଞେନୈବୋପଜୁହ୍ୱତି ॥ ୨୫ ॥**

ଦୈବମ୍, ଏବ, ଅପରେ, ଯଜ୍ଞମ୍, ଯୋଗିନଃ, ପର୍ଯ୍ୟୁପାସତେ, ବ୍ରହ୍ମାଗ୍ନୌ, ଅପରେ, ଯଜ୍ଞମ୍, ଯଜ୍ଞେନ, ଏବ, ଉପଜୁହ୍ୱତି ।।୨୫।।

**ଏବଂ—**

| | | | |
|---|---|---|---|
| ଅପରେ | = ଅନ୍ୟ | ବ୍ରହ୍ମାଗ୍ନୌ | = ପରବ୍ରହ୍ମ ପରମାତ୍ମାରୂପକ ଅଗ୍ନିରେ |
| ଯୋଗିନଃ | = ଯୋଗୀମାନେ | | |
| ଦୈବମ୍ | = ଦେବତାମାନଙ୍କ ପୂଜନ ରୂପକ | ଯଜ୍ଞେନ | = ଅଭେଦଦର୍ଶନ ରୂପକ ଯଜ୍ଞଦ୍ୱାରା |
| ଯଜ୍ଞମ୍ | = ଯଜ୍ଞକୁ | | |
| ଏବ | = ହିଁ | ଏବ | = ହିଁ |
| ପର୍ଯ୍ୟୁପାସତେ | = ଭଲଭାବରେ ଅନୁଷ୍ଠାନ କରନ୍ତି | ଯଜ୍ଞମ୍ | = (ଆତ୍ମରୂପ) ଯଜ୍ଞକୁ |
| ଅପରେ | = (ଏବଂ) ଅନ୍ୟ ଯୋଗୀ ମାନେ | ଉପଜୁହ୍ୱତି | = ହବନ* କରନ୍ତି । |

* ପରବ୍ରହ୍ମ ପରମାତ୍ମାରେ ଜ୍ଞାନଦ୍ୱାରା ଏକୀ ଭାବରେ ସ୍ଥିତ ହେବା ହିଁ ବ୍ରହ୍ମରୂପ ଅଗ୍ନିରେ ଯଜ୍ଞ ଦ୍ୱାରା 'ଯଜ୍ଞର ହବନ' କରିବା ଅଟେ ।

ଇନ୍ଦ୍ରିୟସଂଯମ ରୂପ ଯଜ୍ଞ ଏବଂ ବିଷୟହବନ ରୂପ ଯଜ୍ଞର କଥନ ।

**ଶ୍ରୋତ୍ରାଦୀନୀନ୍ଦ୍ରିୟାଣ୍ୟନ୍ୟେ ସଂଯମାଗ୍ନିଷୁ ଜୁହ୍ୱତି ।**
**ଶବ୍ଦାଦୀନ୍ ବିଷୟାନନ୍ୟ ଇନ୍ଦ୍ରିୟାଗ୍ନିଷୁ ଜୁହ୍ୱତି ॥ ୨୬ ॥**

ଶ୍ରୋତ୍ରାଦୀନି, ଇନ୍ଦ୍ରିୟାଣି, ଅନ୍ୟେ, ସଂଯମାଗ୍ନିଷୁ, ଜୁହ୍ୱତି,
ଶବ୍ଦାଦୀନ୍, ବିଷୟାନ୍, ଅନ୍ୟେ, ଇନ୍ଦ୍ରିୟାଗ୍ନିଷୁ, ଜୁହ୍ୱତି ।।୨୬।।

| | | | |
|---|---|---|---|
| ଅନ୍ୟେ | = ଅନ୍ୟ (କେତେକ ) ଯୋଗୀ | ଅନ୍ୟେ | = ଅନ୍ୟ ଯୋଗୀମାନେ |
| ଶ୍ରୋତ୍ରାଦୀନି | = ଶ୍ରୋତ୍ର ଆଦି | ଶବ୍ଦାଦୀନ୍ | = ଶବ୍ଦାଦି |
| ଇନ୍ଦ୍ରିୟାଣି | = ସମସ୍ତ ଇନ୍ଦ୍ରିୟମାନଙ୍କୁ | ବିଷୟାନ୍ | = ବିଷୟମାନଙ୍କୁ |
| ସଂଯମାଗ୍ନିଷୁ | = ସଂଯମରୂପକ ଅଗ୍ନିରେ | ଇନ୍ଦ୍ରିୟାଗ୍ନିଷୁ | = ଇନ୍ଦ୍ରିୟରୂପକ ଅଗ୍ନିମାନଙ୍କରେ |
| ଜୁହ୍ୱତି | = ହୋମ କରନ୍ତି(ଏବଂ) | ଜୁହ୍ୱତି | = ହୋମ କରନ୍ତି । |

ଅନ୍ତଃକରଣ-ସଂଯମରୂପକ ଯଜ୍ଞ ।

**ସର୍ବାଣୀନ୍ଦ୍ରିୟକର୍ମାଣି ପ୍ରାଣକର୍ମାଣି ଚାପରେ ।**
**ଆତ୍ମସଂଯମଯୋଗାଗ୍ନୌ ଜୁହ୍ୱତି ଜ୍ଞାନଦୀପିତେ ॥ ୨୭ ॥**

ସର୍ବାଣି, ଇନ୍ଦ୍ରିୟକର୍ମାଣି, ପ୍ରାଣକର୍ମାଣି, ଚ, ଅପରେ,
ଆତ୍ମସଂଯମଯୋଗାଗ୍ନୌ, ଜୁହ୍ୱତି, ଜ୍ଞାନଦୀପିତେ ।।୨୭।।

| | | | |
|---|---|---|---|
| ଅପରେ | = ଅନ୍ୟ ଯୋଗୀମାନେ | ଜ୍ଞାନଦୀପିତେ | = ଜ୍ଞାନଦ୍ୱାରା ପ୍ରକାଶିତ |
| ସର୍ବାଣି, ଇନ୍ଦ୍ରିୟକର୍ମାଣି | = ଇନ୍ଦ୍ରିୟମାନଙ୍କର ସକଳ କ୍ରିୟାକୁ | ଆତ୍ମସଂଯମ-ଯୋଗାଗ୍ନୌ | = ଆତ୍ମସଂଯମଯୋଗ ରୂପକ ଅଗ୍ନିରେ |
| ଚ | = ଏବଂ | ଜୁହ୍ୱତି | = ହୋମ କରନ୍ତି ।* |
| ପ୍ରାଣକର୍ମାଣି | = ପ୍ରାଣମାନଙ୍କର ସମସ୍ତ କ୍ରିୟା ମାନଙ୍କୁ | | |

* ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କାହାରି ବି ଚିନ୍ତନ ନ କରିବା ହିଁ ସେ ସବୁର 'ହୋମ କରିବା' ଅଟେ ।

ଦ୍ରବ୍ୟଯଜ୍ଞ, ତପଯଜ୍ଞ, ଯୋଗଯଜ୍ଞ ଏବଂ ସ୍ୱାଧ୍ୟାୟରୂପକ ଜ୍ଞାନଯଜ୍ଞର କଥନ ।

ଦ୍ରବ୍ୟଯଜ୍ଞାସ୍ତପୋଯଜ୍ଞା ଯୋଗଯଜ୍ଞାସ୍ତଥାପରେ ।
ସ୍ୱାଧ୍ୟାୟଜ୍ଞାନଯଜ୍ଞାଶ୍ଚ ଯତୟଃ ସଂଶିତବ୍ରତାଃ ॥ ୨୮ ॥

ଦ୍ରବ୍ୟଯଜ୍ଞାଃ, ତପୋଯଜ୍ଞାଃ, ଯୋଗଯଜ୍ଞାଃ, ତଥା, ଅପରେ,
ସ୍ୱାଧ୍ୟାୟଜ୍ଞାନଯଜ୍ଞାଃ, ଚ, ଯତୟଃ, ସଂଶିତବ୍ରତାଃ ।।୨୮।।

| | | | |
|---|---|---|---|
| ଅପରେ | = ଅନ୍ୟ କେତେକ | ଚ | = ଏବଂ (ଆଉ କେତେକ) |
| ଦ୍ରବ୍ୟଯଜ୍ଞାଃ | = ଦ୍ରବ୍ୟସମ୍ବନ୍ଧୀୟ ଯଜ୍ଞକାରୀ, | ସଂଶିତବ୍ରତାଃ | = ଅହିଂସାଦି ତୀକ୍ଷ୍ଣବ୍ରତଯୁକ୍ତ |
| ତପୋଯଜ୍ଞାଃ | = ତପସ୍ୟା ରୂପକ ଯଜ୍ଞକାରୀ, | ଯତୟଃ | = ପ୍ରଯତ୍ନଶୀଳ ପୁରୁଷମାନେ |
| ତଥା | = ତଥା (ଅନ୍ୟ କେତେକ) | ସ୍ୱାଧ୍ୟାୟ-ଜ୍ଞାନଯଜ୍ଞାଃ | = ସ୍ୱାଧ୍ୟାୟରୂପକ ଜ୍ଞାନଯଜ୍ଞକାରୀ (ଅଟନ୍ତି) । |
| ଯୋଗଯଜ୍ଞାଃ | = ଯୋଗ ରୂପକ ଯଜ୍ଞକାରୀ; | | |

ଯଜ୍ଞରୂପରେ ଚତୁର୍ବିଧ ପ୍ରାଣାୟାମର କଥନ ଏବଂ ସମସ୍ତ ପ୍ରକାର ଯଜ୍ଞ କରିବା ମନୁଷ୍ୟ ମାନଙ୍କର ପ୍ରଶଂସା ।

ଅପାନେ ଜୁହ୍ୱତି ପ୍ରାଣଂ ପ୍ରାଣେଽପାନଂ ତଥାପରେ ।
ପ୍ରାଣାପାନଗତୀ ରୁଦ୍ଧ୍ୱା ପ୍ରାଣାୟାମପରାୟଣାଃ ॥ ୨୯ ॥

ଅପରେ ନିୟତାହାରାଃ ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି ।
ସର୍ବେଽପ୍ୟେତେ ଯଜ୍ଞବିଦୋ ଯଜ୍ଞକ୍ଷପିତକଲ୍ମଷାଃ ॥ ୩୦ ॥

ଅପାନେ, ଜୁହ୍ୱତି, ପ୍ରାଣମ୍, ପ୍ରାଣେ, ଅପାନମ୍, ତଥା, ଅପରେ,
ପ୍ରାଣାପାନଗତୀ, ରୁଦ୍ଧ୍ୱା, ପ୍ରାଣାୟାମପରାୟଣାଃ ।।୨୯।।

ଅପରେ, ନିୟତାହାରାଃ, ପ୍ରାଣାନ୍, ପ୍ରାଣେଷୁ, ଜୁହ୍ୱତି,
ସର୍ବେ, ଅପି, ଏତେ, ଯଜ୍ଞବିଦଃ, ଯଜ୍ଞକ୍ଷପିତକଲ୍ମଷାଃ ।।୩୦।।

ଏବଂ—

| | | |
|---|---|---|
| ଅପରେ | = | ଅନ୍ୟ (କେତେକ ଯୋଗୀ) |
| ଅପାନେ | = | ଅପାନ ବାୟୁରେ |
| ପ୍ରାଣମ୍ | = | ପ୍ରାଣବାୟୁକୁ |
| ଜୁହ୍ବତି | = | ହବନ କରନ୍ତି । |
| ତଥା | = | ସେହିପରି (ଅନ୍ୟଯୋଗୀମାନେ) |
| ପ୍ରାଣେ | = | ପ୍ରାଣବାୟୁରେ |
| ଅପାନମ୍ | = | ଅପାନବାୟୁକୁ (ହବନ କରନ୍ତି ତଥା) |
| ଅପରେ | = | ଅନ୍ୟ କେତେକ |
| ନିୟତାହାରାଃ | = | ନିୟମିତ ଆହାର କରୁଥିବା* |
| ପ୍ରାଣାୟାମ-ପରାୟଣାଃ | = | ପ୍ରାଣାୟାମ ପରାୟଣ ପୁରୁଷ |
| ପ୍ରାଣାପାନଗତୀ | = | ପ୍ରାଣ ଓ ଅପାନର ଗତିକୁ |
| ରୁଦ୍ଧ୍ୱା | = | ରୋଧ କରି |
| ପ୍ରାଣାନ୍ | = | ପ୍ରାଣମାନଙ୍କୁ |
| ପ୍ରାଣେଷୁ | = | ପ୍ରାଣମାନଙ୍କରେ (ହିଁ) |
| ଜୁହ୍ବତି | = | ହବନ କରନ୍ତି । |
| ଏତେ | = | ଏମାନେ (ଏହି) |
| ସର୍ବେ, ଅପି | = | ସମସ୍ତ ସାଧକ ମଧ୍ୟ |
| ଯଜ୍ଞକ୍ଷପିତ-କଲ୍ମଷାଃ | = | ଯଜ୍ଞଦ୍ୱାରା ପାପକୁ ନାଶ କରାଇ ଦିଅନ୍ତି; |
| ଯଜ୍ଞବିଦଃ | = | (ଏମାନେ) ଯଜ୍ଞର ଜ୍ଞାତା ଅଟନ୍ତି । |

ଯଜ୍ଞ କରିବା ମନୁଷ୍ୟମାନଙ୍କର ସନାତନ ବ୍ରହ୍ମ ପ୍ରାପ୍ତି ଏବଂ ଯଜ୍ଞ ନ କରିବା ମନୁଷ୍ୟଙ୍କୁ ନିନ୍ଦା ।

**ଯଜ୍ଞଶିଷ୍ଟାମୃତଭୁଜୋ ଯାନ୍ତି ବ୍ରହ୍ମ ସନାତନମ୍ ।**
**ନାୟଂ ଲୋକୋଽସ୍ତ୍ୟଯଜ୍ଞସ୍ୟ କୁତୋଽନ୍ୟଃ କୁରୁସତ୍ତମ ॥ ୩୧ ॥**

**ଯଜ୍ଞଶିଷ୍ଟାମୃତଭୁଜଃ, ଯାନ୍ତି, ବ୍ରହ୍ମ, ସନାତନମ୍,**
**ନ, ଅୟମ୍, ଲୋକଃ, ଅସ୍ତି, ଅଯଜ୍ଞସ୍ୟ, କୁତଃ, ଅନ୍ୟଃ, କୁରୁସତ୍ତମ ।।୩୧ ।।**

**ଏବଂ—**

| | | |
|---|---|---|
| କୁରୁସତ୍ତମ | = | ହେ କୁରୁଶ୍ରେଷ୍ଠ ଅର୍ଜୁନ ! |
| ଯଜ୍ଞଶିଷ୍ଟା-ମୃତଭୁଜଃ | = | ଯଜ୍ଞରୁ ବଳିଥିବା ଅମୃତ ସେବନ କରୁଥିବା (ଯୋଗୀମାନେ) |
| ସନାତନମ୍ | = | ସନାତନ |
| ବ୍ରହ୍ମ | = | ପରବ୍ରହ୍ମ (ପରମାତ୍ମାଙ୍କୁ) |
| ଯାନ୍ତି | = | ପ୍ରାପ୍ତ ହୁଅନ୍ତି (ଏବଂ) |

* ଗୀତା ଅଧ୍ୟାୟ ୬ ଶ୍ଳୋକ ୧୭ ଦ୍ରଷ୍ଟବ୍ୟ ।

| | | | |
|---|---|---|---|
| ଅଯଜ୍ଞସ୍ୟ | = ଯଜ୍ଞ କରୁ ନ ଥିବା ପୁରୁଷଙ୍କ ପାଇଁ (ତ) | ନ, ଅସ୍ତି | = ମଧ୍ୟ ସୁଖଦାୟକ ନୁହେଁ; (ପୁଣି) |
| ଅୟମ୍ | = ଏହି | ଅନ୍ୟଃ | = ପରଲୋକ |
| ଲୋକଃ | = ମନୁଷ୍ୟ ଲୋକ | କୁତଃ | = କିପରି ସୁଖଦାୟକ ହୋଇପାରିବ ? |

ସମସ୍ତ ଯଜ୍ଞ କ୍ରିୟାଦ୍ୱାରା ସମ୍ପାଦିତ ହେବା ପାଇଁ ଯୋଗ୍ୟ ଅଟେ ।

**ଏବଂ ବହୁବିଧା ଯଜ୍ଞା ବିତତା ବ୍ରହ୍ମଣୋ ମୁଖେ ।**
**କର୍ମଜାନ୍ ବିଦ୍ଧି ତାନ୍ ସର୍ବାନେବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ ॥ ୩୨ ॥**

ଏବମ୍, ବହୁବିଧାଃ, ଯଜ୍ଞାଃ, ବିତତାଃ, ବ୍ରହ୍ମଣଃ, ମୁଖେ,
କର୍ମଜାନ୍, ବିଦ୍ଧି, ତାନ୍, ସର୍ବାନ୍, ଏବମ୍, ଜ୍ଞାତ୍ୱା, ବିମୋକ୍ଷ୍ୟସେ ।।୩୨ ।।

**ଏବଂ—**

| | | | |
|---|---|---|---|
| ଏବମ୍ | = ଏହିପରି (ଆହୁରି ମଧ୍ୟ) | କର୍ମଜାନ୍ | = ମନ, ଇନ୍ଦ୍ରିୟ ଏବଂ ଶରୀରର କ୍ରିୟାଦ୍ୱାରା ସମ୍ପନ୍ନ ହେଉଥିବା |
| ବହୁବିଧାଃ | = ବହୁତପ୍ରକାର | | |
| ଯଜ୍ଞାଃ | = ଯଜ୍ଞମାନ | ବିଦ୍ଧି | = ଜାଣ । |
| ବ୍ରହ୍ମଣଃ | = ବେଦର | ଏବମ୍ | = ଏହିପରି |
| ମୁଖେ | = ବାଣୀରେ | ଜ୍ଞାତ୍ୱା | = ତତ୍ତ୍ୱତଃ ଜାଣି (ତାହା ଅନୁଷ୍ଠାନ କଲେ ତୁମେ କର୍ମବନ୍ଧନରୁ ସର୍ବଥା) |
| ବିତତାଃ | = ବିସ୍ତାରପୂର୍ବକ କୁହାଯାଇଛି । | | |
| ତାନ୍ | = ସେହି | | |
| ସର୍ବାନ୍ | = ସବୁକୁ (ତୁମେ) | ବିମୋକ୍ଷ୍ୟସେ | = ମୁକ୍ତ ହୋଇଯିବ । |

ଦ୍ରବ୍ୟଯଜ୍ଞ ଅପେକ୍ଷା ଜ୍ଞାନଯଜ୍ଞର ଶ୍ରେଷ୍ଠତାର କଥନ ।

**ଶ୍ରେୟାନ୍ ଦ୍ରବ୍ୟମୟାଦ୍ୟଜ୍ଞାଜ୍ଜ୍ଞାନଯଜ୍ଞଃ ପରନ୍ତପ ।**
**ସର୍ବଂ କର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ ॥ ୩୩ ॥**

ଶ୍ରେୟାନ୍, ଦ୍ରବ୍ୟମୟାତ୍, ଯଜ୍ଞାତ୍, ଜ୍ଞାନଯଜ୍ଞଃ, ପରନ୍ତପ,
ସର୍ବମ୍, କର୍ମ, ଅଖିଳମ୍, ପାର୍ଥ, ଜ୍ଞାନେ, ପରିସମାପ୍ୟତେ ।।୩୩ ।।

ଏବଂ—

| | |
|---|---|
| ପରନ୍ତପ ପାର୍ଥ | =ହେ ପରନ୍ତପ ଅର୍ଜୁନ ! |
| ଦ୍ରବ୍ୟମୟାତ୍ | =ଦ୍ରବ୍ୟମୟ |
| ଯଜ୍ଞାତ୍ | =ଯଜ୍ଞ ଅପେକ୍ଷା |
| ଜ୍ଞାନଯଜ୍ଞଃ | =ଜ୍ଞାନଯଜ୍ଞ |
| ଶ୍ରେୟାନ୍ | =ଅତ୍ୟନ୍ତ ଶ୍ରେଷ୍ଠ; କାରଣ |
| ସର୍ବମ୍ | =ସକଳ ପ୍ରକାର |
| ଅଖିଳମ୍ | =ଯାବତୀୟ |
| କର୍ମ | =କର୍ମ |
| ଜ୍ଞାନେ | =ଜ୍ଞାନ (ତତ୍ତ୍ୱଜ୍ଞାନ)ରେ |
| ପରିସମାପ୍ୟତେ | =ପରିସମାପ୍ତ (ଲୀନ) ହୋଇଯାଏ । |

ତତ୍ତ୍ୱଜ୍ଞାନ ପ୍ରାପ୍ତି ପାଇଁ ଜ୍ଞାନୀଜନଙ୍କ ଶରଣ ଯିବା ଉଚିତ୍ ।

**ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା ।**
**ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନସ୍ତତ୍ତ୍ୱଦର୍ଶିନଃ ॥ ୩୪ ॥**

ତତ୍, ବିଦ୍ଧି, ପ୍ରଣିପାତେନ, ପରିପ୍ରଶ୍ନେନ, ସେବୟା,
ଉପଦେକ୍ଷ୍ୟନ୍ତି, ତେ, ଜ୍ଞାନମ୍, ଜ୍ଞାନିନଃ, ତତ୍ତ୍ୱଦର୍ଶିନଃ ।।୩୪ ।।

| | |
|---|---|
| ତତ୍ | = ସେହି ଜ୍ଞାନକୁ (ତୁମେ ତତ୍ତ୍ୱଦର୍ଶୀ ଜ୍ଞାନୀଙ୍କ ପାଖକୁ ଯାଇ) |
| ବିଦ୍ଧି | = ଜାଣ (ବୁଝ) । |
| ପ୍ରଣିପାତେନ | = (ତାଙ୍କୁ)ଭଲଭାବେ ଦଣ୍ଡବତ ପ୍ରଣାମ କଲେ, |
| ସେବୟା | = (ତାଙ୍କର) ସେବାକଲେ ଏବଂ |
| ପରିପ୍ରଶ୍ନେନ | = (କପଟ ତ୍ୟାଗ କରି)ସରଳତା ପୂର୍ବକ ପ୍ରଶ୍ନ କଲେ, |
| ତେ | = ସେହି |
| ତତ୍ତ୍ୱଦର୍ଶିନଃ | = ତତ୍ତ୍ୱଦର୍ଶୀ, ଅନୁଭବୀ ଓ ପରମାତ୍ମତତ୍ତ୍ୱ ଜାଣିଥିବା |
| ଜ୍ଞାନିନଃ | = ଜ୍ଞାନୀ (ଶାସ୍ତ୍ରଜ୍ଞ) ମହାପୁରୁଷ |
| ଜ୍ଞାନମ୍ | = (ତୁମକୁ ସେହି) ତତ୍ତ୍ୱଜ୍ଞାନର |
| ଉପଦେକ୍ଷ୍ୟନ୍ତି | = ଉପଦେଶ ଦେବେ... |

ତତ୍ତ୍ୱଜ୍ଞାନର ଫଳ ।

**ଯଜ୍‌ଜ୍ଞାତ୍ୱା ନ ପୁନର୍ମୋହମେବଂ ଯାସ୍ୟସି ପାଣ୍ଡବ ।**
**ଯେନ ଭୂତାନ୍ୟଶେଷେଣ ଦ୍ରକ୍ଷ୍ୟସ୍ୟାତ୍ମନ୍ୟଥୋ ମୟି ॥ ୩୫ ॥**

ଯତ୍, ଜ୍ଞାତ୍ୱା, ନ, ପୁନଃ, ମୋହମ୍, ଏବମ୍, ଯାସ୍ୟସି, ପାଣ୍ଡବ, ଯେନ, ଭୂତାନି, ଅଶେଷେଣ, ଦ୍ରକ୍ଷ୍ୟସି, ଆତ୍ମନି, ଅଥୋ, ମୟି ।।୩୫ ।।

**ଏଥିପାଇଁ କି—**

| | | | |
|---|---|---|---|
| ଯତ୍ | = ଯାହା | ଭୂତାନି | = ସକଳ ଭୂତଙ୍କୁ |
| ଜ୍ଞାତ୍ୱା | = ଜାଣି | ଅଶେଷେଣ | = ନିଃଶେଷ ଭାବରେ |
| ପୁନଃ | = (ତୁମେ) ଆଉ | ଆତ୍ମନି | = (ପ୍ରଥମେ) ନିଜଠାରେ [1] |
| ଏବମ୍ | = ଏହିପରି | | |
| ମୋହମ୍ | = ମୋହକୁ | ଅଥୋ | = (ଏବଂ) ପରେ |
| ନ, ଯାସ୍ୟସି | = ପ୍ରାପ୍ତ ହେବ ନାହିଁ; (ତଥା) | ମୟି | = ମୋ'ଠାରେ ଅର୍ଥାତ୍ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କଠାରେ |
| ପାଣ୍ଡବ | = ହେ ଅର୍ଜୁନ ! | | |
| ଯେନ | = ଯେଉଁ ଜ୍ଞାନ ଦ୍ୱାରା(ତୁମେ) | ଦ୍ରକ୍ଷ୍ୟସି | = ଦେଖିବ । [2] |

ଜ୍ଞାନରୂପ ନୌକା ଦ୍ୱାରା ଅତିଶୟ ପାପୀଙ୍କ ଉଦ୍ଧାର ।

**ଅପି ଚେଦସି ପାପେଭ୍ୟଃ ସର୍ବେଭ୍ୟଃ ପାପକୃତ୍ତମଃ ।**
**ସର୍ବଂ ଜ୍ଞାନପ୍ଲବେନୈବ ବୃଜିନଂ ସନ୍ତରିଷ୍ୟସି ॥ ୩୬ ॥**

ଅପି, ଚେତ୍, ଅସି, ପାପେଭ୍ୟଃ, ସର୍ବେଭ୍ୟଃ, ପାପକୃତ୍ତମଃ, ସର୍ବମ୍, ଜ୍ଞାନପ୍ଲବେନ, ଏବ, ବୃଜିନମ୍, ସନ୍ତରିଷ୍ୟସି ।।୩୬।।

| | | | |
|---|---|---|---|
| ଚେତ୍ | = ଯଦି (ତୁମେ) | ପାପେଭ୍ୟଃ | = ପାପୀମାନଙ୍କ ଠାରୁ |
| ସର୍ବେଭ୍ୟଃ | = (ଅନ୍ୟ) ସମସ୍ତ | | |

୧- ଗୀତା ଅଧ୍ୟାୟ ୬ ଶ୍ଳୋକ ୨୯ ଦେଖିବା ଉଚିତ।
୨- ଗୀତା ଅଧ୍ୟାୟ ୬ ଶ୍ଳୋକ ୩୦ ଦେଖିବା ଉଚିତ।

| | |
|---|---|
| ଅପି | = ମଧ୍ୟ |
| ପାପକୃତ୍ତମଃ | = ଅଧିକ ପାପ କରିଥିବା ଲୋକ |
| ଅସି | = ହୋଇଥାଅ, (ତେବେ ମଧ୍ୟ ତୁମେ) |
| ଜ୍ଞାନପ୍ଲବେନ | = ଜ୍ଞାନରୂପକ ନୌକା ଦ୍ୱାରା |
| ଏବ | = ନିଃସନ୍ଦେହ |
| ସର୍ବମ୍ | = ସମ୍ପୂର୍ଣ୍ଣ |
| ବୃଜିନମ୍ | = ପାପ ସମୁଦ୍ରକୁ |
| ସନ୍ତରିଷ୍ୟସି | = ଭଲଭାବରେ ପାର ହୋଇଯିବ । |

ଅଗ୍ନି ପରି ଜ୍ଞାନ ସମସ୍ତ କର୍ମକୁ ଧ୍ୱଂସ କରିଦିଏ ।

**ଯଥୈଧାଂସି ସମିଦ୍ଧୋଽଗ୍ନିର୍ଭସ୍ମସାତ୍ କୁରୁତେଽର୍ଜୁନ ।**
**ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେ ତଥା ॥ ୩୭ ॥**

ଯଥା, ଏଧାଂସି, ସମିଦ୍ଧଃ, ଅଗ୍ନିଃ, ଭସ୍ମସାତ୍, କୁରୁତେ, ଅର୍ଜୁନ,
ଜ୍ଞାନାଗ୍ନିଃ, ସର୍ବକର୍ମାଣି, ଭସ୍ମସାତ୍, କୁରୁତେ, ତଥା ।।୩୭।।

**କାହିଁକି ନା—**

| | |
|---|---|
| ଅର୍ଜୁନ | = ହେ ଅର୍ଜୁନ ! |
| ଯଥା | = ଯେପରି |
| ସମିଦ୍ଧଃ | = ପ୍ରଜ୍ୱଳିତ |
| ଅଗ୍ନିଃ | = ଅଗ୍ନି |
| ଏଧାଂସି | = ଇନ୍ଧନ ସବୁକୁ |
| ଭସ୍ମସାତ୍ | = ଭସ୍ମୀଭୂତ |
| କୁରୁତେ | = କରିଦିଏ, |
| ତଥା | = ସେହିପରି |
| ଜ୍ଞାନାଗ୍ନିଃ | = ଜ୍ଞାନରୂପକ ଅଗ୍ନି |
| ସର୍ବକର୍ମାଣି | = ସମସ୍ତ କର୍ମକୁ |
| ଭସ୍ମସାତ୍ | = ଭସ୍ମୀଭୂତ |
| କୁରୁତେ | = କରିଦିଏ । |

ଜ୍ଞାନର ଅତିଶୟ ପବିତ୍ରତା ଶୁଦ୍ଧାନ୍ତକରଣ କର୍ମଯୋଗୀକୁ ଆପେ ଆପେ ତତ୍ତ୍ୱଜ୍ଞାନ ପ୍ରାପ୍ତି କରାଏ ।

**ନ ହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ ।**
**ତତ୍ସ୍ୱୟଂ ଯୋଗସଂସିଦ୍ଧଃ କାଳେନାତ୍ମନି ବିନ୍ଦତି ॥ ୩୮ ॥**

ନ, ହି, ଜ୍ଞାନେନ, ସଦୃଶମ୍, ପବିତ୍ରମ୍, ଇହ, ବିଦ୍ୟତେ,
ତତ୍, ସ୍ୱୟମ୍, ଯୋଗସଂସିଦ୍ଧଃ, କାଳେନ, ଆତ୍ମନି, ବିନ୍ଦତି ।।୩୮।।

**ଏଥିପାଇଁ—**

| | | | |
|---|---|---|---|
| ଇହ | = ଏହି ସଂସାରରେ | ଯୋଗସଂସିଦ୍ଧଃ | = କର୍ମଯୋଗ ଦ୍ୱାରା ଶୁଦ୍ଧ ଅନ୍ତଃକରଣ ହୋଇଥିବା (କର୍ମଯୋଗୀ) |
| ଜ୍ଞାନେନ | = ଜ୍ଞାନର | ତତ୍ | = ସେହି ତତ୍ତ୍ୱଜ୍ଞାନକୁ |
| ସଦୃଶମ୍ | = ସମାନ | ସ୍ୱୟମ୍ | = ନିଜେ |
| ପବିତ୍ରମ୍ | = ପବିତ୍ରକାରକ ବସ୍ତୁ | ଆତ୍ମନି | = ନିଜ ଆତ୍ମାରେ |
| ହି | = ନିଃସନ୍ଦେହ | ବିନ୍ଦତି | = ପ୍ରାପ୍ତ କରନ୍ତି । |
| ନ, ବିଦ୍ୟତେ | = (ଆଉ କିଛି ବି) ନାହିଁ । | | |
| କାଳେନ | = ଦୀର୍ଘକାଳ ଧରି | | |

ଜ୍ଞାନର ଉପଲବ୍ଧି ପାଇଁ ପାତ୍ରତା ଏବଂ ଜ୍ଞାନଦ୍ୱାରା ପରମଶାନ୍ତିକୁ ପ୍ରାପ୍ତ କରିବା ।

**ଶ୍ରଦ୍ଧାବାଁଲ୍ଲଭତେ ଜ୍ଞାନଂ ତତ୍ପରଃ ସଂଯତେନ୍ଦ୍ରିୟଃ ।**
**ଜ୍ଞାନଂ ଲବ୍ଧ୍ୱା ପରାଂ ଶାନ୍ତିମଚିରେଣାଧିଗଚ୍ଛତି ॥ ୩୯ ॥**

ଶ୍ରଦ୍ଧାବାନ୍, ଲଭତେ, ଜ୍ଞାନମ୍, ତତ୍ପରଃ, ସଂଯତେନ୍ଦ୍ରିୟଃ, ଜ୍ଞାନମ୍, ଲବ୍ଧ୍ୱା, ପରାମ୍, ଶାନ୍ତିମ୍, ଅଚିରେଣ, ଅଧିଗଚ୍ଛତି ।।୩୯ ।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ସଂଯତେନ୍ଦ୍ରିୟଃ | = ଜିତେନ୍ଦ୍ରିୟ, | ଲବ୍ଧ୍ୱା | = ପ୍ରାପ୍ତ ହୋଇ (ସେ) |
| ତତ୍ପରଃ | = ସାଧନ ପରାୟଣ (ଏବଂ) | ଅଚିରେଣ | = ଅବିଲମ୍ବେ-ତତ୍କାଳ ହିଁ |
| ଶ୍ରଦ୍ଧାବାନ୍ | = ଶ୍ରଦ୍ଧାବାନ୍ ପୁରୁଷ | ପରାମ୍ | = (ଭଗବତ୍ପ୍ରାପ୍ତି ରୂପକ) ପରମ |
| ଜ୍ଞାନମ୍ | = ଜ୍ଞାନକୁ | ଶାନ୍ତିମ୍ | = ଶାନ୍ତିକୁ |
| ଲଭତେ | = ପ୍ରାପ୍ତ ହୁଏ । (ତଥା) | ଅଧିଗଚ୍ଛତି | = ପ୍ରାପ୍ତ ହୋଇଯାଏ । |
| ଜ୍ଞାନମ୍ | = ଜ୍ଞାନକୁ | | |

ଅଜ୍ଞ, ସଂଶୟାତ୍ମା ଏବଂ ଅଶ୍ରଦ୍ଧାଳୁ ପୁରୁଷଙ୍କୁ ନିନ୍ଦା ।

**ଅଜ୍ଞଶ୍ଚାଶ୍ରଦ୍ଦଧାନଶ୍ଚ ସଂଶୟାତ୍ମା ବିନଶ୍ୟତି ।**
**ନାୟଂ ଲୋକୋଽସ୍ତି ନ ପରୋ ନ ସୁଖଂ ସଂଶୟାତ୍ମନଃ ॥ ୪୦ ॥**

ଅଜ୍ଞଃ, ଚ, ଅଶ୍ରଦ୍ଦଧାନଃ, ଚ, ସଂଶୟାତ୍ମା, ବିନଶ୍ୟତି,
ନ, ଅୟମ୍, ଲୋକଃ, ଅସ୍ତି, ନ, ପରଃ, ନ, ସୁଖମ୍, ସଂଶୟାତ୍ମନଃ ।।୪୦।।

ଏବଂ ହେ ଅର୍ଜୁନ !—

| | | | |
|---|---|---|---|
| ଅଜ୍ଞଃ | = ବିବେକହୀନ | ନ | = ନା |
| ଚ | = ଏବଂ | ଅୟମ୍ | = ଏହି |
| ଅଶ୍ରଦ୍ଦଧାନଃ | = ଶ୍ରଦ୍ଧାରହିତ | ଲୋକଃ | = ଇହଲୋକ |
| ସଂଶୟାତ୍ମା | = ସଂଶୟଯୁକ୍ତ ମନୁଷ୍ୟ | ଅସ୍ତି | = ଅଛି, |
| ବିନଶ୍ୟତି | = ପରମାର୍ଥରୁ ଅବଶ୍ୟ ଭ୍ରଷ୍ଟ ହୋଇଯାଏ । | ନ | = ନା |
| | | ପରଃ | = ପରଲୋକ ଅଛି |
| ସଂଶୟାତ୍ମନଃ | = (ଏପରି) ସଂଶୟ ଯୁକ୍ତ ମନୁଷ୍ୟ ପାଇଁ | ଚ | = ଏବଂ |
| | | ନ, ସୁଖମ୍ | = ନା ସୁଖ (ମଧ୍ୟ ଅଛି) । |

ସଂଶୟ ରହିତ ନିଷ୍କାମ କର୍ମଯୋଗୀ କର୍ମବନ୍ଧନରୁ ମୁକ୍ତ ହୁଅନ୍ତି ।

**ଯୋଗସନ୍ନ୍ୟସ୍ତକର୍ମାଣଂ ଜ୍ଞାନସଞ୍ଛିନ୍ନସଂଶୟମ୍ ।**
**ଆତ୍ମବନ୍ତଂ ନ କର୍ମାଣି ନିବଧ୍ନନ୍ତି ଧନଞ୍ଜୟ ॥ ୪୧ ॥**

ଯୋଗସନ୍ନ୍ୟସ୍ତକର୍ମାଣମ୍, ଜ୍ଞାନସଂଛିନ୍ନସଂଶୟମ୍,
ଆତ୍ମବନ୍ତମ୍, ନ, କର୍ମାଣି, ନିବଧ୍ନନ୍ତି, ଧନଞ୍ଜୟ ।।୪୧।।

ଏବଂ—

| | | | |
|---|---|---|---|
| ଧନଞ୍ଜୟ | = ହେ ଧନଞ୍ଜୟ ! | ସଂଶୟମ୍ | ସମସ୍ତ ସଂଶୟ ନାଶ କରିଦେଇଛନ୍ତି, |
| ଯୋଗସନ୍ନ୍ୟସ୍ତ-କର୍ମାଣମ୍ | = ଯେ କର୍ମଯୋଗ ବିଧିରେ ସମସ୍ତ କର୍ମ ପରମାତ୍ମାଙ୍କ ଠାରେ ଅର୍ପଣ କରି ଦେଇଛନ୍ତି,(ଏବଂ) | ଆତ୍ମବନ୍ତମ୍ | = ଯାହାଙ୍କର ଅନ୍ତଃକରଣ ବଶୀକୃତ (ସେପରି ପୁରୁଷଙ୍କୁ) |
| | | କର୍ମାଣି | = କର୍ମମାନେ |
| ଜ୍ଞାନସଂଛିନ୍ନ- | = ଯେ ବିବେକ ଦ୍ୱାରା | ନ, ନିବଧ୍ନନ୍ତି | = ବାନ୍ଧି ପାରନ୍ତି ନାହିଁ । |

ନିଷ୍କାମ କର୍ମ ଯୋଗରେ ସ୍ଥିତ ହୋଇ ଯୁଦ୍ଧ କରିବା ପାଇଁ ଆଜ୍ଞା ।

ତସ୍ମାଦଜ୍ଞାନସମ୍ଭୂତଂ ହୃତ୍ସ୍ଥଂ ଜ୍ଞାନାସିନାତ୍ମନଃ ।
ଛିତ୍ତ୍ୱୈନଂ ସଂଶୟଂ ଯୋଗମାତିଷ୍ଠୋତ୍ତିଷ୍ଠ ଭାରତ ॥ ୪୨ ॥

ତସ୍ମାତ୍, ଅଜ୍ଞାନସମ୍ଭୂତମ୍, ହୃତ୍ସ୍ଥମ୍, ଜ୍ଞାନାସିନା, ଆତ୍ମନଃ,
ଛିତ୍ତ୍ୱା, ଏନମ୍, ସଂଶୟମ୍, ଯୋଗମ୍, ଆତିଷ୍ଠ, ଉତ୍ତିଷ୍ଠ, ଭାରତ ।।୪୨ ।।

| | | | |
|---|---|---|---|
| ତସ୍ମାତ୍ | = ତେଣୁ | ଜ୍ଞାନାସିନା | = ବିବେକ ଜ୍ଞାନ ରୂପକ ତରବାରି ଦ୍ୱାରା |
| ଭାରତ | = ହେ ଭରତ ବଂଶୀୟ ଅର୍ଜୁନ ! (ତୁମେ) | ଛିତ୍ତ୍ୱା | = ଛେଦନ କରି |
| ହୃତ୍ସ୍ଥମ୍ | = ହୃଦୟରେ ସ୍ଥିତ | ଯୋଗମ୍ | = ସମତ୍ୱରୂପକ କର୍ମଯୋଗରେ |
| ଏନମ୍ | = ଏହି | | |
| ଅଜ୍ଞାନସମ୍ଭୂତମ୍ | = ଅଜ୍ଞାନ ଜନିତ | ଆତିଷ୍ଠ | = ସ୍ଥିତ ହୋଇଯାଅ |
| ଆତ୍ମନଃ | = ନିଜର | ଉତ୍ତିଷ୍ଠ | = (ଓ ଯୁଦ୍ଧ ପାଇଁ) ଠିଆ ହୋଇଯାଅ । |
| ସଂଶୟମ୍ | = ସଂଶୟକୁ | | |

*ଓଁ ତତ୍ସଦିତି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ*
*ଶ୍ରୀକୃଷ୍ଣାର୍ଜୁନସଂବାଦେ ଜ୍ଞାନକର୍ମସନ୍ନ୍ୟାସଯୋଗୋ ନାମ*
*ଚତୁର୍ଥୋଽଧ୍ୟାୟଃ ॥ ୪ ॥*

ଓଓଓ

ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍ଭଗବଦ୍ଗୀତୋପନିଷଦ୍ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ ଜ୍ଞାନକର୍ମସନ୍ନ୍ୟାସଯୋଗ ନାମକ ଚତୁର୍ଥ ଅଧ୍ୟାୟ ପୂର୍ଣ୍ଣ ହେଲା ।।୪।।

**ହରିଃ ଓଁ ତତ୍ସତ୍ ହରିଃ ଓଁ ତତ୍ସତ୍ ହରିଃ ଓଁ ତତ୍ସତ୍**

ଓଁ ଶ୍ରୀପରମାତ୍ମନେ ନମଃ

# ପଞ୍ଚମ ଅଧ୍ୟାୟ

## କର୍ମସଂନ୍ୟାସଯୋଗ

**ପ୍ରଧାନ ବିଷୟ**

୧ ରୁ ୬ ସାଂଖ୍ୟଯୋଗ ଏବଂ ନିଷ୍କାମ କର୍ମଯୋଗର ନିର୍ଣ୍ଣୟ,
୭ ରୁ ୧୨ ସାଂଖ୍ୟଯୋଗୀ ଏବଂ ନିଷ୍କାମ କର୍ମଯୋଗୀଙ୍କ ଲକ୍ଷଣ ତଥା ସେମାନଙ୍କ ମହିମା,
୧୩ ରୁ ୨୬ ଜ୍ଞାନଯୋଗର ବିଷୟ,
୨୭ ରୁ ୨୯ ଭକ୍ତି ସହିତ ଧ୍ୟାନଯୋଗର ବର୍ଣ୍ଣନ ।

*ଅର୍ଜୁନ ଉବାଚ*

ସାଂଖ୍ୟଯୋଗୀ ତଥା କର୍ମଯୋଗୀଙ୍କ ଶ୍ରେଷ୍ଠତା ନେଇ ଅର୍ଜୁନଙ୍କ ପ୍ରଶ୍ନ ।

**ସଂନ୍ୟାସଂ କର୍ମଣାଂ କୃଷ୍ଣ ପୁନର୍ଯୋଗଂ ଚ ଶଂସସି ।**
**ଯଚ୍ଛ୍ରେୟ ଏତୟୋରେକଂ ତନ୍ମେ ବ୍ରୂହି ସୁନିଶ୍ଚିତମ୍ ॥ ୧ ॥**

ସନ୍ନ୍ୟାସମ୍, କର୍ମଣାମ୍, କୃଷ୍ଣ, ପୁନଃ, ଯୋଗମ୍, ଚ, ଶଂସସି,
ଯତ୍, ଶ୍ରେୟଃ, ଏତୟୋଃ, ଏକମ୍, ତତ୍, ମେ, ବ୍ରୂହି, ସୁନିଶ୍ଚିତମ୍ ।। ୧ ।।

**ତତ୍‌ପଶ୍ଚାତ୍ ଅର୍ଜୁନ କହିଲେ—**

| | | | | | |
|---|---|---|---|---|---|
| କୃଷ୍ଣ | = | ହେ କୃଷ୍ଣ ! (ଆପଣ) | ଶଂସସି | = | ପ୍ରଶଂସା କରୁଛନ୍ତି । |
| କର୍ମଣାମ୍ | = | କର୍ମମାନଙ୍କର | ଏତୟୋଃ | = | (ତେଣୁ) ଏହି ଦୁଇଟି ସାଧନା ମଧ୍ୟରୁ |
| ସନ୍ନ୍ୟାସମ୍ | = | ସ୍ୱରୂପତଃ ତ୍ୟାଗକୁ | | | |
| ଚ | = | ଏବଂ | | | |
| ପୁନଃ | = | ପୁଣି | ଏକମ୍ | = | ଗୋଟିକୁ |
| ଯୋଗମ୍ | = | କର୍ମଯୋଗକୁ | ଯତ୍ | = | ଯାହାକି |

| | | | |
|---|---|---|---|
| ମେ | = ମୋ ପାଇଁ | | ସାଧନା (ଅଟେ) |
| ସୁନିଶ୍ଚିତମ୍ | = ଭଲଭାବେ ନିଶ୍ଚିତ | ତତ୍ | = ତାହାକୁ |
| ଶ୍ରେୟଃ | = କଲ୍ୟାଣକାରୀ | ବ୍ରୂହି | = କହନ୍ତୁ । |

## ଶ୍ରୀଭଗବାନ ଉବାଚ

କର୍ମସନ୍ନ୍ୟାସ ଯୋଗ ଅପେକ୍ଷା ନିଷ୍କାମ କର୍ମ ଯୋଗର ଶ୍ରେଷ୍ଠତାର କଥନ ।

**ସଂନ୍ୟାସଃ କର୍ମଯୋଗଶ୍ଚ ନିଃଶ୍ରେୟସକରାବୁଭୌ ।**
**ତୟୋସ୍ତୁ କର୍ମସଂନ୍ୟାସାତ୍ କର୍ମଯୋଗୋ ବିଶିଷ୍ୟତେ ॥ ୨ ॥**

ସନ୍ନ୍ୟାସଃ, କର୍ମଯୋଗଃ, ଚ, ନିଃଶ୍ରେୟସକରୌ, ଉଭୌ,
ତୟୋଃ, ତୁ, କର୍ମସନ୍ନ୍ୟାସାତ୍, କର୍ମଯୋଗଃ, ବିଶିଷ୍ୟତେ ।।୨ ।।

| | | | |
|---|---|---|---|
| ସନ୍ନ୍ୟାସଃ | = କର୍ମସନ୍ନ୍ୟାସ[୧] | ତୟୋଃ | = ସେହି ଦୁଇଟି ମଧ୍ୟରୁ (ବି) |
| ଚ | = ଓ | କର୍ମସନ୍ନ୍ୟାସାତ୍ | = କର୍ମସନ୍ନ୍ୟାସ ଅପେକ୍ଷା |
| କର୍ମଯୋଗଃ | = କର୍ମଯୋଗ[୨] | କର୍ମଯୋଗଃ | = (ସାଧନାରେ ସୁଗମ ହୋଇଥିବାରୁ) କର୍ମଯୋଗ |
| ଉଭୌ | = ଉଭୟ (ହିଁ) | ବିଶିଷ୍ୟତେ | = ଶ୍ରେଷ୍ଠ ଅଟେ । |
| ନିଃଶ୍ରେୟସକରୌ | = ପରମ କଲ୍ୟାଣ କାରକ (ଅଟନ୍ତି), | | |
| ତୁ | = କିନ୍ତୁ | | |

କର୍ମଯୋଗର ମହତ୍ତ୍ୱ ।

**ଜ୍ଞେୟଃ ସ ନିତ୍ୟସଂନ୍ୟାସୀ ଯୋ ନ ଦ୍ୱେଷ୍ଟି ନ କାଙ୍କ୍ଷତି ।**
**ନିର୍ଦ୍ୱନ୍ଦ୍ୱୋ ହି ମହାବାହୋ ସୁଖଂ ବନ୍ଧାତ୍ ପ୍ରମୁଚ୍ୟତେ ॥ ୩ ॥**

ଜ୍ଞେୟଃ, ସଃ, ନିତ୍ୟସନ୍ନ୍ୟାସୀ, ଯଃ, ନ, ଦ୍ୱେଷ୍ଟି, ନ, କାଙ୍କ୍ଷତି,
ନିର୍ଦ୍ୱନ୍ଦ୍ୱଃ, ହି, ମହାବାହୋ, ସୁଖମ୍, ବନ୍ଧାତ୍, ପ୍ରମୁଚ୍ୟତେ ।।୩।।

---

୧- ଅର୍ଥାତ୍ ମନ, ଇନ୍ଦ୍ରିୟଗଣ ଓ ଶରୀର ଦ୍ୱାରା ହେଉଥିବା କର୍ମର କର୍ତ୍ତାପଣକୁ ତ୍ୟାଗ କରିବା।
୨- ଅର୍ଥାତ୍ ସମତ୍ୱ ବୁଦ୍ଧି ଯୁକ୍ତ ହୋଇ କର୍ମକୁ କରିବା।

**ଏହି କାରଣରୁ—**

| | |
|---|---|
| ମହାବାହୋ | = ହେ ଅର୍ଜୁନ ! |
| ଯଃ | = ଯେଉଁ ପୁରୁଷ |
| ନ, ଦ୍ୱେଷ୍ଟି | = କାହା ପ୍ରତି ଦ୍ୱେଷ କରେ ନାହିଁ, |
| ନ, କାଙ୍‌କ୍ଷତି | = (କି) ଆକାଙ୍‌କ୍ଷା କରେ ନାହିଁ, |
| ସଃ | = ସେହି (କର୍ମଯୋଗୀ) |
| ନିତ୍ୟସନ୍ନ୍ୟାସୀ | = ସଦା ସନ୍ନ୍ୟାସୀ |
| ଜ୍ଞେୟଃ | = ବୋଲାଯିବାର ଯୋଗ୍ୟ; |
| ହି | = କାରଣ |
| ନିର୍ଦ୍ୱନ୍ଦ୍ୱଃ | = ରାଗ-ଦ୍ୱେଷାଦି ଦ୍ୱନ୍ଦ୍ୱରୁ ରହିତ (ପୁରୁଷ) |
| ସୁଖମ୍ | = ସୁଖ ପୂର୍ବକ |
| ବନ୍ଧାତ୍ | = ସଂସାର ବନ୍ଧନରୁ |
| ପ୍ରମୁଚ୍ୟତେ | = ମୁକ୍ତ ହୋଇଯାଏ । |

ଫଳ ପ୍ରାପ୍ତିରେ ସାଂଖ୍ୟ ଯୋଗ ଏବଂ ନିଷ୍କାମ କର୍ମଯୋଗର ଏକତା ।

**ସାଙ୍ଖ୍ୟଯୋଗୌ ପୃଥଗ୍‌ବାଲାଃ ପ୍ରବଦନ୍ତି ନ ପଣ୍ଡିତାଃ ।**
**ଏକମପ୍ୟାସ୍ଥିତଃ ସମ୍ୟଗୁଭୟୋର୍ବିନ୍ଦତେ ଫଳମ୍ ॥ ୪ ॥**

ସାଂଖ୍ୟଯୋଗୌ, ପୃଥକ୍, ବାଲାଃ, ପ୍ରବଦନ୍ତି, ନ, ପଣ୍ଡିତାଃ, ଏକମ୍, ଅପି, ଆସ୍ଥିତଃ, ସମ୍ୟକ୍, ଉଭୟୋଃ, ବିନ୍ଦତେ, ଫଳମ୍ ।।୪ ।।

**ଏବଂ ହେ ଅର୍ଜୁନ ! ଉପରୋକ୍ତ—**

| | |
|---|---|
| ସାଂଖ୍ୟଯୋଗୌ | = ସନ୍ନ୍ୟାସ ଓ କର୍ମଯୋଗକୁ |
| ବାଳାଃ | = ମୂର୍ଖଲୋକେ |
| ପୃଥକ୍ | = ପୃଥକ୍ ପୃଥକ୍ (ଫଳପ୍ରଦ) |
| ପ୍ରବଦନ୍ତି | = (ବୋଲି) କହନ୍ତି (କିନ୍ତୁ) |
| ପଣ୍ଡିତାଃ, ନ | = ପଣ୍ଡିତମାନେ କହନ୍ତି ନାହିଁ, |
| (ହି) ଏକମ୍ | = (କାରଣ, ଏହି ଦୁଇଟି ମଧ୍ୟରୁ କୌଣସି) ଗୋଟିଏ ସାଧନାରେ |
| ଅପି | = ବି |
| ସମ୍ୟକ୍ | = ସମ୍ୟକ୍ ଭାବରେ |
| ଆସ୍ଥିତଃ | = ସ୍ଥିତ ହୋଇଥିବା (ପୁରୁଷ) |
| ଉଭୟୋଃ | = ଉଭୟର |
| ଫଳମ୍ | = ଫଳରୂପକ ପରମାତ୍ମାଙ୍କୁ |
| ବିନ୍ଦତେ | = ପାଇଯାଏ । |

**ଯତ୍ସାଂଖ୍ୟୈଃ ପ୍ରାପ୍ୟତେ ସ୍ଥାନଂ ତଦ୍ଯୋଗୈରପି ଗମ୍ୟତେ ।**
**ଏକଂ ସାଂଖ୍ୟଂ ଚ ଯୋଗଂ ଚ ଯଃ ପଶ୍ୟତି ସ ପଶ୍ୟତି ॥ ୫ ॥**

ଯତ୍, ସାଂଖ୍ୟୈଃ, ପ୍ରାପ୍ୟତେ, ସ୍ଥାନମ୍, ତତ୍, ଯୋଗୈଃ, ଅପି, ଗମ୍ୟତେ, ଏକମ୍, ସାଂଖ୍ୟମ୍, ଚ, ଯୋଗମ୍, ଚ, ଯଃ, ପଶ୍ୟତି, ସଃ, ପଶ୍ୟତି ।।୫।।

**ତଥା—**

| | |
|---|---|
| ସାଂଖ୍ୟୈଃ = ଜ୍ଞାନଯୋଗୀମାନଙ୍କ ଦ୍ୱାରା | ଯଃ = (ଏଣୁ) ଯେଉଁ ପୁରୁଷ |
| ଯତ୍ = ଯେଉଁ | ସାଂଖ୍ୟମ୍ = ଜ୍ଞାନଯୋଗକୁ |
| ସ୍ଥାନମ୍ = ପରମଧାମ | ଚ = ଏବଂ |
| ପ୍ରାପ୍ୟତେ = ପ୍ରାପ୍ତ କରାଯାଏ, | ଯୋଗମ୍ = କର୍ମଯୋଗକୁ |
| ଯୋଗୈଃ = କର୍ମଯୋଗୀଙ୍କ ଦ୍ୱାରା | ଏକମ୍ = (ଫଳରୂପରେ) ଏକ |
| ଅପି = ମଧ୍ୟ | ପଶ୍ୟତି = (ବୋଲି) ଦେଖେ, |
| ତତ୍ = ସେହି (ପରମଧାମ) | ସଃ = ସେ |
| ଗମ୍ୟତେ = ପ୍ରାପ୍ତ କରାଯାଏ । | ଚ = ହିଁ |
| | ପଶ୍ୟତି = (ଯଥାର୍ଥ) ଦେଖେ । |

କର୍ମଯୋଗବିନା ସାଂଖ୍ୟଯୋଗର ସାଧନାରେ କଠିନତାର କଥନ ।

**ସଂନ୍ୟାସସ୍ତୁ ମହାବାହୋ ଦୁଃଖମାପ୍ତୁମଯୋଗତଃ ।**
**ଯୋଗଯୁକ୍ତୋ ମୁନିର୍ବ୍ରହ୍ମ ନଚିରେଣାଧିଗଚ୍ଛତି ॥ ୬ ॥**

ସନ୍ନ୍ୟାସଃ, ତୁ, ମହାବାହୋ, ଦୁଃଖମ୍, ଆପ୍ତୁମ୍, ଅଯୋଗତଃ, ଯୋଗଯୁକ୍ତଃ, ମୁନିଃ, ବ୍ରହ୍ମ, ନଚିରେଣ, ଅଧିଗଚ୍ଛତି ।।୬।।

| | |
|---|---|
| ତୁ = ପରନ୍ତୁ | ଆପ୍ତୁମ୍ = ପ୍ରାପ୍ତ ହେବା |
| ମହାବାହୋ = ହେ ଅର୍ଜୁନ ! | ଦୁଃଖମ୍ = କଠିନ ଅଟେ (ଏବଂ) |
| ଅଯୋଗତଃ = କର୍ମଯୋଗ ବିନା | ମୁନିଃ = ଭଗବତ୍ ସ୍ୱରୂପକୁ ମନନ କରୁଥିବା |
| ସନ୍ନ୍ୟାସଃ = ସନ୍ନ୍ୟାସ ଅର୍ଥାତ୍ ମନ, ଇନ୍ଦ୍ରିୟ ଓ ଶରୀର ଦ୍ୱାରା ହେଉଥିବା ସକଳ କର୍ମରେ କର୍ତ୍ତାପଣର ତ୍ୟାଗ | ଯୋଗଯୁକ୍ତଃ = କର୍ମଯୋଗୀ |
| | ବ୍ରହ୍ମ = ପରବ୍ରହ୍ମ ପରମାତ୍ମାଙ୍କୁ |
| | ନଚିରେଣ = ଶୀଘ୍ର ହିଁ |
| | ଅଧିଗଚ୍ଛତି = ପ୍ରାପ୍ତ ହୋଇଯାଏ । |

କର୍ମଯୋଗୀଙ୍କ ନିର୍ଲିପ୍ତତାର ପ୍ରତିପାଦନ ।

**ଯୋଗଯୁକ୍ତୋ ବିଶୁଦ୍ଧାତ୍ମା ବିଜିତାତ୍ମା ଜିତେନ୍ଦ୍ରିୟଃ ।**
**ସର୍ବଭୂତାତ୍ମଭୂତାତ୍ମା କୁର୍ବନ୍ନପି ନ ଲିପ୍ୟତେ ॥ ୭ ॥**

ଯୋଗଯୁକ୍ତଃ, ବିଶୁଦ୍ଧାତ୍ମା, ବିଜିତାତ୍ମା, ଜିତେନ୍ଦ୍ରିୟଃ, ସର୍ବଭୂତାତ୍ମଭୂତାତ୍ମା, କୁର୍ବନ୍, ଅପି, ନ, ଲିପ୍ୟତେ ।।୭।।

**ତଥା—**

| | |
|---|---|
| ବିଜିତାତ୍ମା | = ଯାହାଙ୍କର ମନ ନିଜ ବଶରେ ଥାଏ, |
| ଜିତେନ୍ଦ୍ରିୟଃ | = ଯାହାଙ୍କର ଇନ୍ଦ୍ରିୟଗଣ ବଶୀଭୂତ (ଏବଂ) |
| ବିଶୁଦ୍ଧାତ୍ମା | = ଯାହାଙ୍କର ଅନ୍ତଃକରଣ ବିଶୁଦ୍ଧ |
| ସର୍ବଭୂତାତ୍ମ-ଭୂତାତ୍ମା | = (ଏବଂ) ସକଳ ପ୍ରାଣୀଙ୍କର ଆତ୍ମରୂପ ପରମାତ୍ମା ହିଁ ଯାହାଙ୍କର ଆତ୍ମା, |
| ଯୋଗଯୁକ୍ତଃ | = ସେହି କର୍ମଯୋଗୀ |
| କୁର୍ବନ୍, ଅପି | = କର୍ମ କରୁଥିଲେ ମଧ୍ୟ |
| ନ, ଲିପ୍ୟତେ | = ଲିପ୍ତ ହୁଅନ୍ତି ନାହିଁ । |

କର୍ମରେ ସାଂଖ୍ୟଯୋଗୀଙ୍କର ନିର୍ଲିପ୍ତତା ।

**ନୈବ କିଞ୍ଚିତ୍ କରୋମୀତି ଯୁକ୍ତୋ ମନ୍ୟେତ ତତ୍ତ୍ୱବିତ୍ ।**
**ପଶ୍ୟନ୍ ଶୃଣ୍ୱନ୍ ସ୍ପୃଶନ୍ ଜିଘ୍ରନ୍ ଅଶ୍ନନ୍ ଗଚ୍ଛନ୍ ସ୍ୱପନ୍ ଶ୍ୱସନ୍ ॥ ୮ ॥**
**ପ୍ରଲପନ୍ ବିସୃଜନ୍ ଗୃହ୍ଣନ୍ ଉନ୍ମିଷନ୍ ନିମିଷନ୍ନପି ।**
**ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତ ଇତି ଧାରୟନ୍ ॥ ୯ ॥**

ନ, ଏବ, କିଞ୍ଚିତ୍, କରୋମି, ଇତି, ଯୁକ୍ତଃ, ମନ୍ୟେତ, ତତ୍ତ୍ୱବିତ୍, ପଶ୍ୟନ୍, ଶୃଣ୍ୱନ୍, ସ୍ପୃଶନ୍, ଜିଘ୍ରନ୍, ଅଶ୍ନନ୍, ଗଚ୍ଛନ୍, ସ୍ୱପନ୍, ଶ୍ୱସନ୍, ପ୍ରଲପନ୍, ବିସୃଜନ୍, ଗୃହ୍ଣନ୍, ଉନ୍ମିଷନ୍, ନିମିଷନ୍, ଅପି, ଇନ୍ଦ୍ରିୟାଣି, ଇନ୍ଦ୍ରିୟାର୍ଥେଷୁ, ବର୍ତ୍ତନ୍ତେ, ଇତି, ଧାରୟନ୍ ।।୮-୯।।

**ଏବଂ ହେ ଅର୍ଜୁନ !—**

| | |
|---|---|
| ତତ୍ତ୍ୱବିତ୍ | = ତତ୍ତ୍ୱଜ୍ଞ |
| ଯୁକ୍ତଃ | = ସାଂଖ୍ୟଯୋଗୀ (ତ) |
| ପଶ୍ୟନ୍ | = ଦେଖୁଥିଲେ, |
| ଶୃଣ୍ୱନ୍ | = ଶୁଣୁଥିଲେ, |
| ସ୍ପୃଶନ୍ | = ଛୁଉଁଥିଲେ, |
| ଜିଘ୍ରନ୍ | = ଶୁଙ୍ଘୁଥିଲେ, |
| ଅଶ୍ନନ୍ | = ଖାଉଥିଲେ, |
| ଗଚ୍ଛନ୍ | = ଯାଉଥିଲେ, |

| | | | |
|---|---|---|---|
| ସ୍ୱପନ୍ | = ଶୋଉଥିଲେ, | ଇନ୍ଦ୍ରିୟାର୍ଥେଷୁ | = ନିଜ ନିଜ ଅର୍ଥରେ |
| ଶ୍ୱସନ୍ | = ଶ୍ୱାସକ୍ରିୟା କରୁଥିଲେ, | ବର୍ତ୍ତନ୍ତେ | = ପ୍ରବୃତ୍ତ ହେଉଛନ୍ତି |
| ପ୍ରଳପନ୍ | = କଥା କହୁଥିଲେ, | ଇତି | = ବୋଲି |
| ବିସୃଜନ୍ | = ତ୍ୟାଗ କରୁଥିଲେ, | ଧାରୟନ୍ | = ବୁଝି |
| ଗୃହ୍ଣନ୍ | = ଗ୍ରହଣ କରୁଥିଲେ, | ଇତି, ମନ୍ୟେତ | = ଏପରି ମାନିବା ଉଚିତ ଯେ |
| ଉନ୍ମିଷନ୍ | = ଆଖି ଖୋଲୁଥିଲେ, | ନ, ଏବ, | = (ମୁଁ ସ୍ୱୟଂ) କିଛି |
| ନିମିଷନ୍ | = ଆଖି ବୁଜୁଥିଲେ | କିଞ୍ଚିତ୍, | ହେଲେ ବି |
| ଅପି | = ମଧ୍ୟ | କରୋମି | କରୁ ନାହିଁ । |
| ଇନ୍ଦ୍ରିୟାଣି | = ଇନ୍ଦ୍ରିୟମାନେ | | |

ଭଗବତ୍ ଅର୍ପଣ ବୁଦ୍ଧିରେ କର୍ମ କରିବା ଲୋକଙ୍କୁ ଏବଂ କର୍ମପ୍ରଧାନ କର୍ମଯୋଗୀଙ୍କ କର୍ମକୁ ଆତ୍ମଶୁଦ୍ଧିରେ ହେତୁ ବୋଲି ଉକ୍ତି ।

**ବ୍ରହ୍ମଣ୍ୟାଧାୟ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା କରୋତି ଯଃ ।**
**ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସା ॥ ୧୦ ॥**

ବ୍ରହ୍ମଣି, ଆଧାୟ, କର୍ମାଣି, ସଙ୍ଗମ୍, ତ୍ୟକ୍ତ୍ୱା, କରୋତି, ଯଃ,
ଲିପ୍ୟତେ, ନ, ସଃ, ପାପେନ, ପଦ୍ମପତ୍ରମ୍, ଇବ, ଅମ୍ଭସା ।।୧୦।।

**କିନ୍ତୁ ହେ ଅର୍ଜୁନ! ଦେହାଭିମାନୀଙ୍କ ଦ୍ୱାରା ଏ ସାଧନ ହେବା କଠିନ ଅଟେ ଏବଂ ନିଷ୍କାମ କର୍ମଯୋଗ ସୁଲଭ ଅଟେ, କାରଣ—**

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | ସଃ | = ସେହି ପୁରୁଷ |
| କର୍ମାଣି | = ସମସ୍ତ କର୍ମମାନଙ୍କୁ | ଅମ୍ଭସା | = ଜଳଦ୍ୱାରା |
| | | ପଦ୍ମପତ୍ରମ୍ | = ପଦ୍ମପତ୍ର |
| ବ୍ରହ୍ମଣି | = ପରମାତ୍ମାଙ୍କଠାରେ | | |
| ଆଧାୟ | = ଅର୍ପଣ କରି | ଇବ | = ପରି |
| ସଙ୍ଗମ୍ | = (ଓ) ଆସକ୍ତିକୁ | ପାପେନ | = ପାପରେ |
| ତ୍ୟକ୍ତ୍ୱା | = ତ୍ୟାଗ କରି | ନ, ଲିପ୍ୟତେ | = ଲିପ୍ତ ହୁଏ ନାହିଁ । |
| କରୋତି | = କର୍ମ କରେ | | |

କାୟେନ ମନସା ବୁଦ୍ଧ୍ୟା କେବଲୈରିନ୍ଦ୍ରିୟୈରପି ।
ଯୋଗିନଃ କର୍ମ କୁର୍ବନ୍ତି ସଙ୍ଗଂ ତ୍ୟକ୍ତ୍ୱାତ୍ମଶୁଦ୍ଧୟେ ॥ ୧୧ ॥

କାୟେନ, ମନସା, ବୁଦ୍ଧ୍ୟା, କେବଲୈଃ, ଇନ୍ଦ୍ରିୟୈଃ, ଅପି,
ଯୋଗିନଃ, କର୍ମ, କୁର୍ବନ୍ତି, ସଙ୍ଗମ୍, ତ୍ୟକ୍ତ୍ୱା, ଆତ୍ମଶୁଦ୍ଧୟେ ।।୧୧ ।।

**ଏଥିପାଇଁ—**

| | |
|---|---|
| ଯୋଗିନଃ | =କର୍ମଯୋଗୀମାନେ (ମମତ୍ୱ - ବୁଦ୍ଧିରହିତ ହୋଇ) |
| କେବଲୈଃ | =କେବଳ |
| ଇନ୍ଦ୍ରିୟୈଃ | =ଇନ୍ଦ୍ରିୟ, |
| ମନସା | =ମନ, |
| ବୁଦ୍ଧ୍ୟା | =ବୁଦ୍ଧି |
| କାୟେନ | =(ଓ) ଶରୀର ଦ୍ୱାରା |
| ସଙ୍ଗମ୍ | =ଆସକ୍ତିକୁ |
| ତ୍ୟକ୍ତ୍ୱା | =ତ୍ୟାଗ କରି |
| ଆତ୍ମଶୁଦ୍ଧୟେ | =ଅନ୍ତଃକରଣର ଶୁଦ୍ଧିନିମନ୍ତେ |
| ଅପି | =ହିଁ |
| କର୍ମ | =କର୍ମ |
| କୁର୍ବନ୍ତି | =କରନ୍ତି । |

କର୍ମଫଳର ତ୍ୟାଗରେ ଶାନ୍ତି ଏବଂ କାମନାରେ ବନ୍ଧନ ବୋଲି ଉକ୍ତି ।

ଯୁକ୍ତଃ କର୍ମଫଳଂ ତ୍ୟକ୍ତ୍ୱା ଶାନ୍ତିମାପ୍ନୋତି ନୈଷ୍ଠିକୀମ୍ ।
ଅଯୁକ୍ତଃ କାମକାରେଣ ଫଳେ ସକ୍ତୋ ନିବଧ୍ୟତେ ॥ ୧୨ ॥

ଯୁକ୍ତଃ, କର୍ମଫଳମ୍, ତ୍ୟକ୍ତ୍ୱା, ଶାନ୍ତିମ୍, ଆପ୍ନୋତି, ନୈଷ୍ଠିକୀମ୍,
ଅଯୁକ୍ତଃ, କାମକାରେଣ, ଫଳେ, ସକ୍ତଃ, ନିବଧ୍ୟତେ ।।୧୨ ।।

**ଏଥିରୁ—**

| | |
|---|---|
| ଯୁକ୍ତଃ | = କର୍ମଯୋଗୀ |
| କର୍ମଫଳମ୍ | = କର୍ମଫଳକୁ |
| ତ୍ୟକ୍ତ୍ୱା | = ତ୍ୟାଗ କରି |
| ନୈଷ୍ଠିକୀମ୍ | = ଭଗବତ୍‌ପ୍ରାପ୍ତି ରୂପକ |
| ଶାନ୍ତିମ୍ | = ଶାନ୍ତିକୁ |
| ଆପ୍ନୋତି | = ପ୍ରାପ୍ତ ହୁଏ |
| ଅଯୁକ୍ତଃ | = (ଏବଂ) ସକାମ ପୁରୁଷ |
| କାମକାରେଣ | = କାମନା ଦ୍ୱାରା ପ୍ରେରିତ ହୋଇ |
| ଫଳେ | = ଫଳରେ |
| ସକ୍ତଃ | = ଆସକ୍ତ ହୋଇ |
| ନିବଧ୍ୟତେ | = ବନ୍ଧନରେ ପଡ଼େ । |

ସାଂଖ୍ୟଯୋଗୀଙ୍କ ସ୍ଥିତିର କଥନ ।

ସର୍ବକର୍ମାଣି ମନସା ସଂନ୍ୟସ୍ୟାସ୍ତେ ସୁଖଂ ବଶୀ ।
ନବଦ୍ୱାରେ ପୁରେ ଦେହୀ ନୈବ କୁର୍ବନ୍ନ କାରୟନ୍ ॥ ୧୩ ॥

ସର୍ବକର୍ମାଣି, ମନସା, ସନ୍ନ୍ୟସ୍ୟ, ଆସ୍ତେ, ସୁଖମ୍, ବଶୀ,
ନବଦ୍ୱାରେ, ପୁରେ, ଦେହୀ, ନ, ଏବ, କୁର୍ବନ୍, ନ, କାରୟନ୍ ।।୧୩।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ବଶୀ | = ବଶୀଭୂତ ଅନ୍ତଃକରଣ ଯୁକ୍ତ ସାଂଖ୍ୟଯୋଗୀ | | ପୁରରେ |
| ଦେହୀ | = ପୁରୁଷ | ସର୍ବକର୍ମାଣି | = ସକଳ କର୍ମକୁ |
| ନ, କୁର୍ବନ୍ | = କିଛି ନ କରି | ମନସା | = ମନଦ୍ୱାରା |
| ନ, କାରୟନ୍ | = (ଓ) ନ କରାଇ | ସନ୍ନ୍ୟସ୍ୟ | = ତ୍ୟାଗ କରି ଦେଇ |
| ଏବ | = ହିଁ | ସୁଖମ୍ | = ଆନନ୍ଦ ପୂର୍ବକ (ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ) |
| ନବଦ୍ୱାରେ | = ନବଦ୍ୱାର ବିଶିଷ୍ଟ | | |
| ପୁରେ | = ଶରୀର ରୂପକ | ଆସ୍ତେ | = ଅବସ୍ଥିତ ରହେ । |

ପରମାତ୍ମାଙ୍କ ଠାରେ କର୍ତ୍ତାପଣର ଅଭାବ ।

ନ କର୍ତ୍ତୃତ୍ୱଂ ନ କର୍ମାଣି ଲୋକସ୍ୟ ସୃଜତି ପ୍ରଭୁଃ ।
ନ କର୍ମଫଳସଂଯୋଗଂ ସ୍ୱଭାବସ୍ତୁ ପ୍ରବର୍ତ୍ତତେ ॥ ୧୪ ॥

ନ, କର୍ତ୍ତୃତ୍ୱମ୍, ନ, କର୍ମାଣି, ଲୋକସ୍ୟ, ସୃଜତି, ପ୍ରଭୁଃ,
ନ, କର୍ମଫଳସଂଯୋଗମ୍, ସ୍ୱଭାବଃ, ତୁ, ପ୍ରବର୍ତ୍ତତେ ।।୧୪।।

**ଏବଂ—**

| | | | |
|---|---|---|---|
| ପ୍ରଭୁଃ | = ପରମେଶ୍ୱର | ନ, କର୍ମାଣି, (ସୃଜତି) | = କର୍ମମାନଙ୍କୁ ରଚନ୍ତି ନାହିଁ (ଏବଂ) |
| ଲୋକସ୍ୟ | = ଲୋକମାନଙ୍କର | କର୍ମଫଳ-ସଂଯୋଗମ୍ | = କର୍ମଫଳର ସଂଯୋଗକୁ (ବି) |
| ନ, କର୍ତ୍ତୃତ୍ୱମ୍ (ସୃଜତି) | = କର୍ତ୍ତାପଣକୁ ରଚନା କରନ୍ତି ନାହିଁ, | ନ, ସୃଜତି | = ରଚନା କରନ୍ତି ନାହିଁ, |

| | | | |
|---|---|---|---|
| ତୁ | = କିନ୍ତୁ | | ପ୍ରକୃତି (ହିଁ) |
| ସ୍ୱଭାବଃ | = ସ୍ୱଭାବ ଅର୍ଥାତ୍ | ପ୍ରବର୍ତ୍ତତେ | = ପ୍ରବୃତ୍ତ ହୁଏ । |

ପରମାତ୍ମା କାହାର ପାପ-ପୁଣ୍ୟକୁ ଗ୍ରହଣ କରନ୍ତି ନାହିଁ ।

**ନାଦତ୍ତେ କସ୍ୟଚିତ୍ପାପଂ ନ ଚୈବ ସୁକୃତଂ ବିଭୁଃ ।**
**ଅଜ୍ଞାନେନାବୃତଂ ଜ୍ଞାନଂ ତେନ ମୁହ୍ୟନ୍ତି ଜନ୍ତବଃ ॥ ୧୫ ॥**

ନ, ଆଦତ୍ତେ, କସ୍ୟଚିତ୍, ପାପମ୍, ନ, ଚ, ଏବ, ସୁକୃତମ୍, ବିଭୁଃ,
ଅଜ୍ଞାନେନ, ଆବୃତମ୍, ଜ୍ଞାନମ୍, ତେନ, ମୁହ୍ୟନ୍ତି, ଜନ୍ତବଃ ।।୧୫।।

ଏବଂ—

| | | | |
|---|---|---|---|
| ବିଭୁଃ | = ସର୍ବବ୍ୟାପୀ ପରମେଶ୍ୱର | (ନ, ଆଦତ୍ତେ) | = ଗ୍ରହଣ କରନ୍ତି ନାହିଁ, |
| କସ୍ୟଚିତ୍ | = କାହାରି ହେଲେ | ଅଜ୍ଞାନେନ | = (କିନ୍ତୁ)ଅଜ୍ଞାନ ଦ୍ୱାରା |
| ପାପମ୍ | = ପାପ କର୍ମକୁ | ଜ୍ଞାନମ୍ | = ଜ୍ଞାନ |
| ନ, ଆଦତ୍ତେ | = ଗ୍ରହଣ କରନ୍ତି ନାହିଁ | ଆବୃତମ୍ | = ଢାଙ୍କି ହୋଇ ରହିଛି, |
| ଚ | = ଓ | ତେନ | = ତା' ଦ୍ୱାରା |
| ସୁକୃତମ୍ | = ଶୁଭକର୍ମକୁ | ଜନ୍ତବଃ | = ସକଳ ଅଜ୍ଞାନୀ ମନୁଷ୍ୟ |
| ଏବ | = ମଧ୍ୟ | ମୁହ୍ୟନ୍ତି | = ମୋହିତ ହେଉଛନ୍ତି । |

ସୂର୍ଯ୍ୟଙ୍କ ଦୃଷ୍ଟାନ୍ତ ଦେଇ ଜ୍ଞାନର ମହିମା କଥନ ।

**ଜ୍ଞାନେନ ତୁ ତଦଜ୍ଞାନଂ ଯେଷାଂ ନାଶିତମାତ୍ମନଃ ।**
**ତେଷାମାଦିତ୍ୟବଜ୍ଜ୍ଞାନଂ ପ୍ରକାଶୟତି ତତ୍ପରମ୍ ॥ ୧୬ ॥**

ଜ୍ଞାନେନ, ତୁ, ତତ୍, ଅଜ୍ଞାନମ୍, ଯେଷାମ୍, ନାଶିତମ୍, ଆତ୍ମନଃ,
ତେଷାମ୍, ଆଦିତ୍ୟବତ୍, ଜ୍ଞାନମ୍, ପ୍ରକାଶୟତି, ତତ୍ପରମ୍।।୧୬।।

| | | | |
|---|---|---|---|
| ତୁ | = କିନ୍ତୁ | ଆତ୍ମନଃ | = ପରମାତ୍ମାଙ୍କର |
| ଯେଷାମ୍ | = ଯେଉଁମାନଙ୍କର | ଜ୍ଞାନେନ | = ତତ୍ତ୍ୱଜ୍ଞାନ ଦ୍ୱାରା |
| ତତ୍ | = ସେହି | ନାଶିତମ୍ | = ନଷ୍ଟ କରାଯାଇଛି, |
| ଅଜ୍ଞାନମ୍ | = ଅଜ୍ଞାନ | ତେଷାମ୍ | = ସେମାନଙ୍କର (ସେହି) |

| | | | |
|---|---|---|---|
| ଜ୍ଞାନମ୍ | = ଜ୍ଞାନ | | ପରମାତ୍ମାଙ୍କୁ |
| ଆଦିତ୍ୟବତ୍ | = ସୂର୍ଯ୍ୟସଦୃଶ | ପ୍ରକାଶୟତି | = ପ୍ରକାଶିତ |
| ତତ୍ପରମ୍ | = ସେହି ସଚ୍ଚିଦାନନ୍ଦଘନ | | କରିଦିଏ* । |

ଜ୍ଞାନଯୋଗର ଏକାନ୍ତ ସାଧନାର କଥନ ।

**ତଦ୍‌ବୁଦ୍ଧୟସ୍ତଦାତ୍ମାନସ୍ତନ୍ନିଷ୍ଠାସ୍ତତ୍ପରାୟଣାଃ ।**
**ଗଚ୍ଛନ୍ତ୍ୟପୁନରାବୃତ୍ତିଂ ଜ୍ଞାନନିର୍ଧୂତକଳ୍ମଷାଃ ॥ ୧୭ ॥**

ତଦ୍‌ବୁଦ୍ଧୟଃ, ତଦାତ୍ମାନଃ, ତନ୍ନିଷ୍ଠାଃ, ତତ୍ପରାୟଣାଃ,
ଗଚ୍ଛନ୍ତି, ଅପୁନରାବୃତ୍ତିମ୍, ଜ୍ଞାନନିର୍ଧୂତକଳ୍ମଷାଃ ।।୧୭।।

| | | | |
|---|---|---|---|
| ତଦାତ୍ମାନଃ | = ଯେଉଁମାନଙ୍କର ମନ ତଦ୍ରୂପ ହୋଇଯାଇଛି | ତତ୍ପରାୟଣାଃ | = (ଏତାଦୃଶ)ପରମାତ୍ମ ପରାୟଣ ସାଧକ ଯେଉଁମାନେ |
| ତଦ୍‌ବୁଦ୍ଧୟଃ | = ଯେଉଁମାନଙ୍କର ବୁଦ୍ଧି ତଦ୍ରୂପ ହୋଇଯାଇଛି, | ଜ୍ଞାନନିର୍ଧୂତ-କଳ୍ମଷାଃ | = ଜ୍ଞାନଦ୍ୱାରା ପାପରହିତ ହୋଇଛନ୍ତି,ସେମାନେ |
| ତନ୍ନିଷ୍ଠାଃ | = (ଓ) ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ହିଁ ଯେଉଁମାନେ ନିରନ୍ତର ଏକୀ ଭାବରେ ସ୍ଥିତ ଅଟନ୍ତି, | ଅପୁନରାବୃତ୍ତିମ୍ | = ଅପୁନରାବୃତ୍ତିକୁ ଅର୍ଥାତ୍ ପରମଗତିକୁ |
| | | ଗଚ୍ଛନ୍ତି | = ପ୍ରାପ୍ତ ହୁଅନ୍ତି । |

ଜ୍ଞାନୀ ମହାପୁରୁଷଙ୍କ ସମଦୃଷ୍ଟିସମ୍ପନ୍ନ ସ୍ଥିତି ଏବଂ ସେମାନଙ୍କର ପରମଗତି ପ୍ରାପ୍ତ ହେବା ।

**ବିଦ୍ୟାବିନୟସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି ।**
**ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ॥ ୧୮ ॥**

ବିଦ୍ୟାବିନୟସମ୍ପନ୍ନେ, ବ୍ରାହ୍ମଣେ, ଗବି, ହସ୍ତିନି,
ଶୁନି, ଚ, ଏବ, ଶ୍ୱପାକେ, ଚ, ପଣ୍ଡିତାଃ, ସମଦର୍ଶିନଃ ।।୧୮।।

**ଏପରି ସେମାନେ—**

---

* ଅର୍ଥାତ୍ ପରମାତ୍ମାଙ୍କ ସ୍ୱରୂପକୁ ସାକ୍ଷାତ କରାଇ ଦିଏ ।

| | | | |
|---|---|---|---|
| ପଣ୍ଡିତାଃ | = (ସେହି) ଜ୍ଞାନୀମାନେ | ହସ୍ତିନି | = ହାତୀ ଠାରେ, |
| ବିଦ୍ୟାବିନୟ-ସମ୍ପନ୍ନେ | = ବିଦ୍ୟା ଓ ବିନୟଯୁକ୍ତ | ଶୁନି | = କୁକୁର ଠାରେ, |
| ବ୍ରାହ୍ମଣେ | = ବ୍ରାହ୍ମଣଙ୍କ ଠାରେ | ଶ୍ୱପାକେ | = ଚଣ୍ଡାଳ ଠାରେ |
| ଚ | = ତଥା | ଚ | = ବି |
| ଗବି | = ଗାଈ ଠାରେ, | ସମଦର୍ଶିନଃ | = ସମଦର୍ଶୀ [୧] |
| | | ଏବ | = ହିଁ (ହୋଇଥାନ୍ତି) । |

ଇହୈବ ତୈର୍ଜିତଃ ସର୍ଗୋ ଯେଷାଂ ସାମ୍ୟେ ସ୍ଥିତଂ ମନଃ ।
ନିର୍ଦୋଷଂ ହି ସମଂ ବ୍ରହ୍ମ ତସ୍ମାଦ୍ ବ୍ରହ୍ମଣି ତେ ସ୍ଥିତାଃ ॥ ୧୯ ॥

ଇହ, ଏବ, ତୈଃ, ଜିତଃ, ସର୍ଗଃ, ଯେଷାମ୍, ସାମ୍ୟେ, ସ୍ଥିତମ୍, ମନଃ,
ନିର୍ଦୋଷମ୍, ହି, ସମମ୍, ବ୍ରହ୍ମ, ତସ୍ମାତ୍, ବ୍ରହ୍ମଣି, ତେ, ସ୍ଥିତାଃ ।।୧୯ ।।

### ଏଥିପାଇଁ—

| | | | |
|---|---|---|---|
| ଯେଷାମ୍ | = ଯେଉଁମାନଙ୍କର | ହି | = କାହିଁକି ନା |
| ମନଃ | = ମନ | ବ୍ରହ୍ମ | = ସଚ୍ଚିଦାନନ୍ଦଘନ ପରମାତ୍ମା |
| ସାମ୍ୟେ | = ସମଭାବରେ | ନିର୍ଦୋଷମ୍ | = ନିର୍ଦୋଷ |
| ସ୍ଥିତମ୍ | = ଅବସ୍ଥିତ | ସମମ୍ | = (ଓ) ସମ, |
| ତୈଃ | = ସେମାନଙ୍କ ଦ୍ୱାରା | ତସ୍ମାତ୍ | = ତେଣୁ |
| ଇହ | = ଏହି ଜୀବିତ ଅବସ୍ଥାରେ | ତେ | = ସେମାନେ |
| ଏବ | = ହିଁ | ବ୍ରହ୍ମଣି | = ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ହିଁ |
| ସର୍ଗଃ | = ସମଗ୍ର ସଂସାର | ସ୍ଥିତାଃ | = ଅବସ୍ଥିତ । |
| ଜିତଃ | = ବିଜିତ ହୋଇଯାଏ, [୨] | | |

୧- ଏହା ବିସ୍ତାରଭାବେ ଗୀତା ଅଧ୍ୟାୟ ୬ ଶ୍ଲୋକ ୩୨ରେ ଦିଆଯାଇଛି ।
୨- ଅର୍ଥାତ୍ ସେମାନେ ଜୀବିତ ରହି ବି ସଂସାରରୁ ମୁକ୍ତ ।

**ନ ପ୍ରହୃଷ୍ୟେତ୍ ପ୍ରିୟଂ ପ୍ରାପ୍ୟ ନୋଦ୍‌ବିଜେତ୍ ପ୍ରାପ୍ୟ ଚାପ୍ରିୟମ୍ ।**
**ସ୍ଥିରବୁଦ୍ଧିରସମ୍ମୂଢୋ ବ୍ରହ୍ମବିଦ୍ ବ୍ରହ୍ମଣି ସ୍ଥିତଃ ॥ ୨୦ ॥**

ନ, ପ୍ରହୃଷ୍ୟେତ୍, ପ୍ରିୟମ୍, ପ୍ରାପ୍ୟ, ନ, ଉଦ୍‌ବିଜେତ୍, ପ୍ରାପ୍ୟ, ଚ, ଅପ୍ରିୟମ୍,
ସ୍ଥିରବୁଦ୍ଧିଃ, ଅସଂମୂଢ଼ଃ, ବ୍ରହ୍ମବିତ୍, ବ୍ରହ୍ମଣି, ସ୍ଥିତଃ ।।୨୦।।

**ଏବଂ ଯେଉଁ ପୁରୁଷ—**

| | | | |
|---|---|---|---|
| ପ୍ରିୟମ୍ | = ଯିଏ ପ୍ରିୟ ବସ୍ତୁକୁ | ସ୍ଥିରବୁଦ୍ଧିଃ | = (ସେହି)ସ୍ଥିରବୁଦ୍ଧି |
| ପ୍ରାପ୍ୟ | = ପ୍ରାପ୍ତ ହୋଇ | ଅସଂମୂଢ଼ଃ | = ସଂଶୟରହିତ |
| ନ, ପ୍ରହୃଷ୍ୟେତ୍ | = ହର୍ଷିତ ହୁଏ ନାହିଁ | ବ୍ରହ୍ମବିତ୍ | = ବ୍ରହ୍ମବେତ୍ତା ପୁରୁଷ |
| ଚ | = ଏବଂ | ବ୍ରହ୍ମଣି | = ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାରେ |
| ଅପ୍ରିୟମ୍ | = ଅପ୍ରିୟ ବସ୍ତୁକୁ | | |
| ପ୍ରାପ୍ୟ | = ପ୍ରାପ୍ତ ହୋଇ | | |
| ନ,ଉଦ୍‌ବିଜେତ୍ | = ଉଦ୍‌ବିଗ୍ନ ହୁଏ ନାହିଁ, | ସ୍ଥିତଃ | = ଏକୀଭାବରେ ନିତ୍ୟ ସ୍ଥିତ । |

ଅକ୍ଷୟ ଆନନ୍ଦ ପ୍ରାପ୍ତିର ସାଧନ ଏବଂ ତାହାର ପ୍ରାପ୍ତି ।

**ବାହ୍ୟସ୍ପର୍ଶେଷ୍ୱସକ୍ତାତ୍ମା ବିନ୍ଦତ୍ୟାତ୍ମନି ଯତ୍ ସୁଖମ୍ ।**
**ସ ବ୍ରହ୍ମଯୋଗଯୁକ୍ତାତ୍ମା ସୁଖମକ୍ଷୟମଶ୍ନୁତେ ॥ ୨୧ ॥**

ବାହ୍ୟସ୍ପର୍ଶେଷୁ, ଅସକ୍ତାତ୍ମା, ବିନ୍ଦତି, ଆତ୍ମନି, ଯତ୍, ସୁଖମ୍,
ସଃ, ବ୍ରହ୍ମଯୋଗଯୁକ୍ତାତ୍ମା, ସୁଖମ୍, ଅକ୍ଷୟମ୍, ଅଶ୍ନୁତେ ।।୨୧।।

**ଏବଂ—**

| | | | |
|---|---|---|---|
| ବାହ୍ୟସ୍ପର୍ଶେଷୁ | = ବାହ୍ୟ ବିଷୟ ମାନଙ୍କରେ | | ବିଶିଷ୍ଟ ସାଧକ |
| | | ଆତ୍ମନି | = ଆତ୍ମାରେ (ସ୍ଥିତ) |
| ଅସକ୍ତାତ୍ମା | = ଆସକ୍ତିଶୂନ୍ୟ ଅନ୍ତଃକରଣ | ଯତ୍ | = ଯେଉଁ (ଧ୍ୟାନ ଜନିତ ସାତ୍ତ୍ୱିକ) |

| | | | | |
|---|---|---|---|---|
| ସୁଖମ୍ | = ଆନନ୍ଦ (ରହିଛି) | | | ଧ୍ୟାନରୂପକ |
| (ତତ୍) ବିନ୍ଦତି | = ତାହା ପ୍ରାପ୍ତ ହୁଏ, (ତା' ପରେ) | | | ଯୋଗରେ ଅଭିନ୍ନଭାବରେ ସ୍ଥିତ |
| ସଃ | = ସେହି | | | ହୋଇଥିବା ପୁରୁଷ |
| ବ୍ରହ୍ମଯୋଗ- | = ସଚ୍ଚିଦାନନ୍ଦଘନ | | ଅକ୍ଷୟମ୍ | = ଅକ୍ଷୟ |
| ଯୁକ୍ତାତ୍ମା | ପରବ୍ରହ୍ମ | | ସୁଖମ୍ | = ଆନନ୍ଦକୁ |
| | ପରମାତ୍ମାଙ୍କର | | ଅଶ୍ନୁତେ | = ଅନୁଭବ କରେ । |

ବିଷୟ ଭୋଗର ନିନ୍ଦା ।

**ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖଯୋନୟ ଏବ ତେ ।**
**ଆଦ୍ୟନ୍ତବନ୍ତଃ କୌନ୍ତେୟ ନ ତେଷୁ ରମତେ ବୁଧଃ ॥ ୨୨ ॥**

**ଯେ, ହି, ସଂସ୍ପର୍ଶଜାଃ, ଭୋଗାଃ, ଦୁଃଖଯୋନୟଃ, ଏବ, ତେ,**
**ଆଦ୍ୟନ୍ତବନ୍ତଃ, କୌନ୍ତେୟ, ନ, ତେଷୁ, ରମତେ, ବୁଧଃ ।।୨୨।।**

**ଏବଂ—**

| | | | |
|---|---|---|---|
| ଯେ | = ଯେଉଁ | ଦୁଃଖଯୋନୟଃ, | = ଦୁଃଖର ହିଁ |
| ସଂସ୍ପର୍ଶଜାଃ | = ଇନ୍ଦ୍ରିୟ ତଥା ବିଷୟମାନଙ୍କ ସଂଯୋଗରୁ ଉତ୍ପନ୍ନ ହେଉଥିବା | ଏବ | କାରଣ ଅଟନ୍ତି ଏବଂ |
| | | ଆଦ୍ୟନ୍ତବନ୍ତଃ | = ଆଦି-ଅନ୍ତବିଶିଷ୍ଟ ଅର୍ଥାତ୍ ଅନିତ୍ୟ ଅଟନ୍ତି, (ଏଣୁ) |
| ଭୋଗାଃ | = ଭୋଗମାନ (ରହିଛି) | | |
| ତେ | = ସେଗୁଡ଼ିକ (ବିଷୟୀ ପୁରୁଷଙ୍କୁ ସୁଖରୂପ ପ୍ରତୀତ ହେଉଥିଲେ ବି) | କୌନ୍ତେୟ | = ହେ ଅର୍ଜୁନ ! |
| | | ବୁଧଃ | = ବୁଦ୍ଧିମାନ୍ ବିବେକୀ ପୁରୁଷ |
| | | ତେଷୁ | = ସେଗୁଡ଼ିକରେ |
| | | ନ, ରମତେ | = ରମଣ କରେ ନାହିଁ । |
| ହି | = ନିଃସନ୍ଦେହ | | |

କାମ-କ୍ରୋଧର ବେଗକୁ ସହି ପାରୁଥିବା ପୁରୁଷମାନଙ୍କୁ ଯୋଗୀ ଏବଂ ସୁଖୀ ବୋଲି ଉକ୍ତି ।

**ଶକ୍ନୋତୀହୈବ ଯଃ ସୋଢୁଂ ପ୍ରାକ୍‌ଶରୀରବିମୋକ୍ଷଣାତ୍ ।**
**କାମକ୍ରୋଧୋଦ୍ଭବଂ ବେଗଂ ସ ଯୁକ୍ତଃ ସ ସୁଖୀ ନରଃ ॥ ୨୩ ॥**

ଶକ୍ନୋତି, ଇହ, ଏବ, ଯଃ, ସୋଢୁମ୍, ପ୍ରାକ୍, ଶରୀରବିମୋକ୍ଷଣାତ୍, କାମକ୍ରୋଧୋଦ୍‌ଭବମ୍, ବେଗମ୍, ସଃ, ଯୁକ୍ତଃ, ସଃ, ସୁଖୀ, ନରଃ ।।୨୩।।

| | | | |
|---|---|---|---|
| ଯଃ | = ଯେଉଁ ସାଧକ | ବେଗମ୍ | = ବେଗକୁ |
| ଇହ | = ଏହି ମନୁଷ୍ୟଶରୀରରେ | ସୋଢୁମ୍ | = ସହିଯିବାକୁ |
| | | ଶକ୍ନୋତି | = ସମର୍ଥ ହୋଇଯାଏ |
| ପ୍ରାକ୍, ଶରୀର-ବିମୋକ୍ଷଣାତ୍ | = ଶରୀର ନାଶ ହୋଇଯିବା ପୂର୍ବରୁ | ସଃ | = ସେହି |
| | | ନରଃ | = ପୁରୁଷ |
| ଏବ | = ହିଁ | ଯୁକ୍ତଃ | = ଯୋଗୀ (ଓ) |
| କାମକ୍ରୋଧୋ-ଭବମ୍ | = କାମକ୍ରୋଧରୁ ଉତ୍ପନ୍ନ ହେଉଥିବା | ସଃ | = ସେ ହିଁ |
| | | ସୁଖୀ | = ସୁଖୀ ଅଟେ । |

ସାଂଖ୍ୟଯୋଗୀଙ୍କ ଅନ୍ତିମସ୍ଥିତି ଏବଂ ନିର୍ବାଣବ୍ରହ୍ମକୁ ପ୍ରାପ୍ତ ଜ୍ଞାନୀ ମହାପୁରୁଷଙ୍କ ଲକ୍ଷଣ ।

**ଯୋଽନ୍ତଃସୁଖୋଽନ୍ତରାରାମସ୍ତଥାନ୍ତର୍ଜ୍ୟୋତିରେବ ଯଃ ।**
**ସ ଯୋଗୀ ବ୍ରହ୍ମନିର୍ବାଣଂ ବ୍ରହ୍ମଭୂତୋଽଧିଗଚ୍ଛତି ॥ ୨୪ ॥**

ଯଃ, ଅନ୍ତଃସୁଖଃ, ଅନ୍ତରାରାମଃ, ତଥା, ଅନ୍ତର୍ଜ୍ୟୋତିଃ, ଏବ, ଯଃ, ସଃ, ଯୋଗୀ, ବ୍ରହ୍ମନିର୍ବାଣମ୍, ବ୍ରହ୍ମଭୂତଃ, ଅଧିଗଚ୍ଛତି ।।୨୪।।

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | | ଜ୍ଞାନଯୁକ୍ତ, |
| ଏବ | = ନିଶ୍ଚୟ କରି | ସଃ | = ସେହି |
| ଅନ୍ତଃସୁଖଃ | = ସମଷ୍ଟି ଅନ୍ତରାତ୍ମାରେ ହିଁ ସୁଖପାଏ, | ବ୍ରହ୍ମଭୂତଃ | = ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପରମାତ୍ମାଙ୍କ ସହିତ ଏକୀଭାବପ୍ରାପ୍ତ |
| ଅନ୍ତରାରାମଃ | = (କେବଳ) ଆତ୍ମାରେ ହିଁ ରମଣ କରେ | | |
| ତଥା | = ତଥା | ଯୋଗୀ | = ସାଂଖ୍ୟଯୋଗୀ |
| ଯଃ | = ଯେ | ବ୍ରହ୍ମନିର୍ବାଣମ୍ | = ନିର୍ବାଣ ବ୍ରହ୍ମଙ୍କୁ |
| ଅନ୍ତର୍ଜ୍ୟୋତିଃ | = ଆତ୍ମାରେ ହିଁ | ଅଧିଗଚ୍ଛତି | = ପ୍ରାପ୍ତ ହୁଏ । |

**ଲଭନ୍ତେ ବ୍ରହ୍ମନିର୍ବାଣମୃଷୟଃ କ୍ଷୀଣକଲ୍ମଷାଃ ।**
**ଛିନ୍ନଦ୍ୱୈଧା ଯତାତ୍ମାନଃ ସର୍ବଭୂତହିତେ ରତାଃ ॥ ୨୫ ॥**

ଲଭନ୍ତେ, ବ୍ରହ୍ମନିର୍ବାଣମ୍, ଋଷୟଃ, କ୍ଷୀଣକଲ୍ମଷାଃ,
ଛିନ୍ନଦ୍ୱୈଧାଃ, ଯତାତ୍ମାନଃ, ସର୍ବଭୂତହିତେ, ରତାଃ ।।୨୫।।

ଏବଂ—

କ୍ଷୀଣକଲ୍ମଷାଃ = ଯେଉଁମାନଙ୍କର ସକଳ ପାପ ନଷ୍ଟ ହୋଇଯାଇଛି,
ଛିନ୍ନଦ୍ୱୈଧାଃ = ଯେଉଁମାନଙ୍କର ସକଳ ସଂଶୟ ଜ୍ଞାନଦ୍ୱାରା ନିବୃତ୍ତ ହୋଇଯାଇଛି,
ସର୍ବଭୂତହିତେ,= ଯେଉଁମାନେ
ରତାଃ ସକଳ ପ୍ରାଣୀଙ୍କର ହିତରେ ରତ ଅଟନ୍ତି (ଏବଂ)
ଯତାତ୍ମାନଃ = ଯେଉଁମାନଙ୍କର ବିଜିତ ମନ ନିଶ୍ଚଳଭାବରେ ପରମାତ୍ମାଙ୍କ ଠାରେ ସ୍ଥିତ,
ଋଷୟଃ = (ସେହି) ବ୍ରହ୍ମବେତ୍ତା ପୁରୁଷମାନେ
ବ୍ରହ୍ମନିର୍ବାଣମ୍ = ଶାନ୍ତ ବ୍ରହ୍ମଙ୍କୁ
ଲଭନ୍ତେ = ପ୍ରାପ୍ତ ହୁଅନ୍ତି ।

**କାମକ୍ରୋଧବିଯୁକ୍ତାନାଂ ଯତୀନାଂ ଯତଚେତସାମ୍ ।**
**ଅଭିତୋ ବ୍ରହ୍ମନିର୍ବାଣଂ ବର୍ତ୍ତତେ ବିଦିତାତ୍ମନାମ୍ ॥ ୨୬ ॥**

କାମକ୍ରୋଧବିଯୁକ୍ତାନାମ୍, ଯତୀନାମ୍, ଯତଚେତସାମ୍,
ଅଭିତଃ, ବ୍ରହ୍ମନିର୍ବାଣମ୍, ବର୍ତ୍ତତେ, ବିଦିତାତ୍ମନାମ୍ ।।୨୬।।

ଏବଂ—

କାମକ୍ରୋଧ- ବିଯୁକ୍ତାନାମ୍ = କାମକ୍ରୋଧରୁ ସର୍ବଥା ରହିତ,
ଯତଚେତସାମ୍ = ବିଜିତଚିତ୍ତ ପୁରୁଷ (ଏବଂ)

| | | | |
|---|---|---|---|
| ବିଦିତାତ୍ମନାମ୍ | = ପରବ୍ରହ୍ମ ପରମାତ୍ମାଙ୍କର ସାକ୍ଷାତ୍କାର କରିଥିବା | | (ଜୀବିତ ଅବସ୍ଥା ବା ମୃତ୍ୟୁ ପରେ) |
| ଯତୀନାମ୍ | = ଜ୍ଞାନୀପୁରୁଷଙ୍କ ପାଇଁ | ବ୍ରହ୍ମନିର୍ବାଣମ୍ | = ଶାନ୍ତ ପରବ୍ରହ୍ମ ପରମାତ୍ମା ହିଁ |
| ଅଭିତଃ | = ସକଳ ଦିଗରୁ | ବର୍ତ୍ତତେ | = (ପରିପୂର୍ଣ୍ଣ) ହୋଇଥାନ୍ତି । |

ଫଳସହିତ ଧ୍ୟାନଯୋଗର ସଂକ୍ଷିପ୍ତ ବର୍ଣ୍ଣନ ।

**ସ୍ପର୍ଶାନ୍ କୃତ୍ୱା ବହିର୍ବାହ୍ୟାଂଶ୍ଚକ୍ଷୁଶ୍ଚୈବାନ୍ତରେ ଭ୍ରୁବୋଃ ।**
**ପ୍ରାଣାପାନୌ ସମୌ କୃତ୍ୱା ନାସାଭ୍ୟନ୍ତରଚାରିଣୌ ॥ ୨୭ ॥**

**ଯତେନ୍ଦ୍ରିୟମନୋବୁଦ୍ଧିର୍ମୁନିର୍ମୋକ୍ଷପରାୟଣଃ ।**
**ବିଗତେଚ୍ଛାଭୟକ୍ରୋଧୋ ଯଃ ସଦା ମୁକ୍ତ ଏବ ସଃ ॥ ୨୮ ॥**

ସ୍ପର୍ଶାନ୍, କୃତ୍ୱା, ବହିଃ, ବାହ୍ୟାନ୍, ଚକ୍ଷୁଃ, ଚ, ଏବ, ଅନ୍ତରେ, ଭ୍ରୁବୋଃ, ପ୍ରାଣାପାନୌ, ସମୌ, କୃତ୍ୱା, ନାସାଭ୍ୟନ୍ତରଚାରିଣୌ।।୨୭।।

ଯତେନ୍ଦ୍ରିୟମନୋବୁଦ୍ଧିଃ, ମୁନିଃ, ମୋକ୍ଷପରାୟଣଃ, ବିଗତେଚ୍ଛାଭୟକ୍ରୋଧଃ, ଯଃ, ସଦା, ମୁକ୍ତଃ, ଏବ, ସଃ।।୨୮।।

**ଏବଂ ହେ ଅର୍ଜୁନ!—**

| | | | |
|---|---|---|---|
| ବାହ୍ୟାନ୍ | = ବାହ୍ୟ | | ଚିନ୍ତନ ନ କରି, |
| ସ୍ପର୍ଶାନ୍ | = ବିଷୟ ଭୋଗମାନଙ୍କୁ | ଚ | = ଏବଂ |
| ବହିଃ | = ବାହାରେ | ଚକ୍ଷୁଃ | = ଦୃଷ୍ଟିକୁ |
| ଏବ | = ହିଁ | ଭ୍ରୁବୋଃ | = ଭ୍ରୂଦୁଇଟିର |
| କୃତ୍ୱା | = ତ୍ୟାଗ କରିଦେଇ ଅର୍ଥାତ୍ ସେମାନଙ୍କୁ | ଅନ୍ତରେ | = ମଧ୍ୟବର୍ତ୍ତୀ ସ୍ଥାନରେ (ସ୍ଥିତ କରି), |

| | | | | |
|---|---|---|---|---|
| ନାସାଭ୍ୟନ୍ତର- | = ନାସିକାର | | | କରିଥିବା |
| ଚାରିଣୌ | ଅଭ୍ୟନ୍ତରରେ | | ଯଃ | = ଯେଉଁ |
| | ବିଚରଣ | | ମୋକ୍ଷପରାୟଣଃ | = ମୋକ୍ଷପରାୟଣ |
| | କରୁଥିବା | | ମୁନିଃ | = ମୁନି * |
| ପ୍ରାଣାପାନୌ | = ପ୍ରାଣ ଓ ଅପାନ | | ବିଗତେଚ୍ଛା- | = ଇଚ୍ଛା, ଭୟ ଓ |
| | ବାୟୁକୁ | | ଭୟକ୍ରୋଧଃ | କ୍ରୋଧରୁ ରହିତ |
| ସମୌ | = ସମ | | | ହୋଇଯାଇଥାନ୍ତି, |
| କୃତ୍ୱା | = କରି , | | ସଃ | = ସେ |
| ଯତେନ୍ଦ୍ରିୟ- | = ମନ, ବୁଦ୍ଧି ଓ | | ସଦା | = ସର୍ବଦା |
| ମନୋବୁଦ୍ଧିଃ | ଇନ୍ଦ୍ରିୟମାନଙ୍କୁ | | ମୁକ୍ତଃ | = ମୁକ୍ତ |
| | ସଂଯତ | | ଏବ | = ହିଁ ଅଟନ୍ତି । |

ପ୍ରଭାବ ସହିତ ପରମେଶ୍ୱରଙ୍କୁ ଜାଣିଲେ, ଶାନ୍ତିର ପ୍ରାପ୍ତି ।

**ଭୋକ୍ତାରଂ ଯଜ୍ଞତପସାଂ ସର୍ବଲୋକମହେଶ୍ୱରମ୍ ।**
**ସୁହୃଦଂ ସର୍ବଭୂତାନାଂ ଜ୍ଞାତ୍ୱା ମାଂ ଶାନ୍ତିମୃଚ୍ଛତି ॥ ୨୯ ॥**

ଭୋକ୍ତାରମ୍, ଯଜ୍ଞତପସାମ୍, ସର୍ବଲୋକମହେଶ୍ୱରମ୍,
ସୁହୃଦମ୍, ସର୍ବଭୂତାନାମ୍, ଜ୍ଞାତ୍ୱା, ମାମ୍, ଶାନ୍ତିମ୍, ଋଚ୍ଛତି ।।୨୯ ।।

**ଏବଂ ହେ ଅର୍ଜୁନ! ମୋର ଭକ୍ତ—**

| | | | | |
|---|---|---|---|---|
| ମାମ୍ | = (ମୋର ଭକ୍ତ) | | ସର୍ବଲୋକ- | = ସମସ୍ତ ଲୋକର |
| | ମୋତେ | | ମହେଶ୍ୱରମ୍ | ଈଶ୍ୱରମାନଙ୍କର |
| ଯଜ୍ଞତପସାମ୍ | = ଯଜ୍ଞ ଓ | | | ବି ଈଶ୍ୱର (ତଥା) |
| | ତପମାନଙ୍କର | | ସର୍ବଭୂତାନାମ୍ | = ସକଳ |
| ଭୋକ୍ତାରମ୍ | = ଭୋକ୍ତା, | | | ପ୍ରାଣୀମାନଙ୍କର |

* ପରମେଶ୍ୱରଙ୍କ ସ୍ୱରୂପକୁ ନିରନ୍ତର ଚିନ୍ତନ କରୁଥିବା ମନୁଷ୍ୟ ।

| | | | |
|---|---|---|---|
| ସୁହୃଦମ୍ | = ସୁହୃଦ ଅର୍ଥାତ୍ ସ୍ୱାର୍ଥରହିତ ଦୟାଳୁ ଓ ପ୍ରେମୀ | ଜ୍ଞାତ୍ୱା | = (ବୋଲି) ତତ୍ତ୍ୱତଃ ଜାଣି |
| | | ଶାନ୍ତିମ୍ | = ଶାନ୍ତିକୁ |
| | | ଋଚ୍ଛତି | = ପ୍ରାପ୍ତ ହୁଅନ୍ତି । |

*ଓଁ ତତ୍ସଦିତି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ*
*ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ କର୍ମସଂନ୍ୟାସଯୋଗୋ*
*ନାମ ପଞ୍ଚମୋଽଧ୍ୟାୟଃ ॥ ୫ ॥*

ଢଢଢ

**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍ଭଗବଦ୍ଗୀତୋପନିଷଦ୍ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'କର୍ମସନ୍ନ୍ୟାସଯୋଗ' ନାମକ ପଞ୍ଚମ ଅଧ୍ୟାୟ ପୂର୍ଣ୍ଣ ହେଲା । ।୫ । ।**

**ହରିଃ ଓଁ ତତ୍‌ସତ୍     ହରିଃ ଓଁ ତତ୍‌ସତ୍     ହରିଃ ଓଁ ତତ୍‌ସତ୍**

ଓଁ ଶ୍ରୀପରମାତ୍ମନେ ନମଃ

# ଷଷ୍ଠ ଅଧ୍ୟାୟ

## ଆତ୍ମସଂଯମଯୋଗ

**ପ୍ରଧାନ ବିଷୟ**

| | |
|---|---|
| ୧ ରୁ ୪ | ନିଷ୍କାମ କର୍ମଯୋଗର ବିଷୟ ଏବଂ ଯୋଗାରୂଢ଼ ପୁରୁଷଙ୍କ ଲକ୍ଷଣ, |
| ୫ ରୁ ୧୦ | ଆତ୍ମୋଦ୍ଧାର ପାଇଁ ପ୍ରେରଣା ଏବଂ ଭଗବତ୍‌ପ୍ରାପ୍ତ ପୁରୁଷଙ୍କ ଲକ୍ଷଣ, |
| ୧୧ ରୁ ୩୨ | ବିସ୍ତାରସହ ଧ୍ୟାନଯୋଗର ବିଷୟ, |
| ୩୩ ରୁ ୩୬ | ମନକୁ ନିଗ୍ରହ କରିବା ବିଷୟ, |
| ୩୭ ରୁ ୪୭ | ଯୋଗଭ୍ରଷ୍ଟ ପୁରୁଷଙ୍କ ଗତିର ବିଷୟ ତଥା ଧ୍ୟାନଯୋଗୀଙ୍କ ମହିମା । |

*ଶ୍ରୀଭଗବାନ ଉବାଚ*

ନିଷ୍କାମ କର୍ମଯୋଗୀଙ୍କ ପ୍ରଶଂସା ।

**ଅନାଶ୍ରିତଃ କର୍ମଫଳଂ କାର୍ଯ୍ୟଂ କର୍ମ କରୋତି ଯଃ ।**
**ସ ସଂନ୍ୟାସୀ ଚ ଯୋଗୀ ଚ ନ ନିରଗ୍ନିର୍ନ ଚାକ୍ରିୟଃ ॥ ୧ ॥**

ଅନାଶ୍ରିତଃ, କର୍ମଫଳମ୍, କାର୍ଯ୍ୟମ୍, କର୍ମ, କରୋତି, ଯଃ,
ସଃ, ସନ୍ନ୍ୟାସୀ, ଚ, ଯୋଗୀ, ଚ, ନ, ନିରଗ୍ନିଃ, ନ, ଚ, ଅକ୍ରିୟଃ ।।୧ ।।

**ଏହାପରେ ଶ୍ରୀଭଗବାନ କହିଲେ, ହେ ଅର୍ଜୁନ !—**

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | କରୋତି | = କରେ, |
| କର୍ମଫଳମ୍ | = କର୍ମଫଳର | ସଃ | = ସେ ହିଁ |
| ଅନାଶ୍ରିତଃ | = ଆଶ୍ରୟ ନ ନେଇ | ସନ୍ନ୍ୟାସୀ | = ସନ୍ନ୍ୟାସୀ |
| କାର୍ଯ୍ୟମ୍ | = କରିବାଯୋଗ୍ୟ | ଚ | = ଓ |
| କର୍ମ | = କର୍ମ | ଯୋଗୀ | = ଯୋଗୀ ଅଟେ; |

| | | | |
|---|---|---|---|
| ଚ | = ତଥା | ଚ | = କି |
| ନିରଗ୍ନିଃ | = (କେବଳ) ଅଗ୍ନିକୁ ତ୍ୟାଗ କରିଥିବା ଲୋକ | ଅକ୍ରିୟଃ | = (କେବଳ) କ୍ରିୟା ତ୍ୟାଗ କରିଥିବା ପୁରୁଷ |
| ନ | = (ସନ୍ନ୍ୟାସୀ) ହୁଏ ନାହିଁ | ନ | = (ଯୋଗୀ) ହୁଏ ନାହିଁ । |

ସନ୍ନ୍ୟାସ ଏବଂ କର୍ମଯୋଗ ମଧ୍ୟରେ ଏକତାର ପ୍ରତିପାଦନ ।

**ଯଂ ସଂନ୍ୟାସମିତି ପ୍ରାହୁର୍ଯୋଗଂ ତଂ ବିଦ୍ଧି ପାଣ୍ଡବ ।**
**ନ ହ୍ୟସଂନ୍ୟସ୍ତସଙ୍କଳ୍ପୋ ଯୋଗୀ ଭବତି କଶ୍ଚନ ॥ ୨ ॥**

ଯମ୍, ସନ୍ନ୍ୟାସମ୍, ଇତି, ପ୍ରାହୁଃ, ଯୋଗମ୍, ତମ୍, ବିଦ୍ଧି, ପାଣ୍ଡବ,
ନ, ହି, ଅସନ୍ନ୍ୟସ୍ତସଙ୍କଳ୍ପଃ, ଯୋଗୀ, ଭବତି, କଶ୍ଚନ ।।୨।।

**ଏଥିପାଇଁ—**

| | | | |
|---|---|---|---|
| ପାଣ୍ଡବ | = ହେ ଅର୍ଜୁନ ! | ବିଦ୍ଧି | = ବୋଲି ଜାଣ । |
| ଯମ୍ | = ଯାହାକୁ | ହି | = କାରଣ |
| ସନ୍ନ୍ୟାସମ୍ | = ସନ୍ନ୍ୟାସ | ଅସନ୍ନ୍ୟସ୍ତ-ସଂକଳ୍ପଃ | = ସଂକଳ୍ପ ତ୍ୟାଗ କରି ନ ଥିବା |
| ଇତି | = ବୋଲି | କଶ୍ଚନ | = କୌଣସି ବି ପୁରୁଷ |
| ପ୍ରାହୁଃ | = କହନ୍ତି, | ଯୋଗୀ | = ଯୋଗୀ |
| ତମ୍ | = ତାହାକୁ (ତୁମେ) | ନ, ଭବତି | = ହୁଏ ନାହିଁ । |
| ଯୋଗମ୍ | = ଯୋଗ* | | |

କର୍ମଯୋଗ ସାଧନର ବର୍ଣ୍ଣନ ।

**ଆରୁରୁକ୍ଷୋର୍ମୁନେର୍ଯୋଗଂ କର୍ମ କାରଣମୁଚ୍ୟତେ ।**
**ଯୋଗାରୂଢସ୍ୟ ତସ୍ୟୈବ ଶମଃ କାରଣମୁଚ୍ୟତେ ॥ ୩ ॥**

ଆରୁରୁକ୍ଷୋଃ, ମୁନେଃ, ଯୋଗମ୍, କର୍ମ, କାରଣମ୍, ଉଚ୍ୟତେ,
ଯୋଗାରୂଢସ୍ୟ, ତସ୍ୟ, ଏବ, ଶମଃ, କାରଣମ୍, ଉଚ୍ୟତେ ।।୩।।

* ଗୀତା ଅଧ୍ୟାୟ ୩ ଶ୍ଳୋକ ୩ର ଟିପ୍ପଣୀରେ ଏହାର ଅର୍ଥ ଲେଖା ହୋଇଛି ।

ଏବଂ—

| | |
|---|---|
| ଯୋଗମ୍ | = ଯୋଗରେ |
| ଆରୁରୁକ୍ଷୋଃ | = ଆରୂଢ଼ ହେବାକୁ ଇଚ୍ଛୁକ |
| ମୁନେଃ | = ମନନଶୀଳ ପୁରୁଷଙ୍କ ନିମନ୍ତେ |
| କର୍ମ | = ନିଷ୍କାମ ଭାବରେ କର୍ମ କରିବା ହିଁ |
| କାରଣମ୍ | = ଯୋଗପ୍ରାପ୍ତିର ହେତୁ |
| ଉଚ୍ୟତେ | = ବୋଲି କୁହାଯାଏ |

| | |
|---|---|
| ତସ୍ୟ, ଯୋଗାରୂଢ଼ସ୍ୟ | = (ଏବଂ ଯୋଗାରୂଢ଼ ହୋଇଯିବା ପରେ) ସେହି ଯୋଗାରୂଢ଼ ପୁରୁଷଙ୍କର |
| ଶମଃ | = ସର୍ବସଂକଳ୍ପଶୂନ୍ୟତା |
| ଏବ | = ହିଁ |
| କାରଣମ୍ | = (ତାଙ୍କ କଲ୍ୟାଣର) ହେତୁ |
| ଉଚ୍ୟତେ | = ବୋଲି କୁହାଯାଏ । |

ଯୋଗାରୂଢ଼ ପୁରୁଷଙ୍କ ଲକ୍ଷଣ ।

**ଯଦା ହି ନେନ୍ଦ୍ରିୟାର୍ଥେଷୁ ନ କର୍ମସ୍ୱନୁଷଜ୍ଜତେ ।**
**ସର୍ବସଙ୍କଳ୍ପସଂନ୍ୟାସୀ ଯୋଗାରୂଢସ୍ତଦୋଚ୍ୟତେ ॥ ୪ ॥**

ଯଦା, ହି, ନ, ଇନ୍ଦ୍ରିୟାର୍ଥେଷୁ, ନ, କର୍ମସୁ, ଅନୁଷଜ୍ଜତେ, ସର୍ବସଂକଳ୍ପସନ୍ନ୍ୟାସୀ, ଯୋଗାରୂଢ଼ଃ, ତଦା, ଉଚ୍ୟତେ ।।୪।।

| | |
|---|---|
| ଯଦା | = ଯେତେବେଳେ (ପୁରୁଷ) |
| ନ,ଇନ୍ଦ୍ରିୟାର୍ଥେଷୁ (ଅନୁଷଜ୍ଜତେ) | = ଇନ୍ଦ୍ରିୟଭୋଗ ମାନଙ୍କରେ ଆସକ୍ତ ହୁଏ ନାହିଁ କି, |
| ନ, କର୍ମସୁ, ହି, ଅନୁଷଜ୍ଜତେ | = କର୍ମମାନଙ୍କରେ ମଧ୍ୟ ଆସକ୍ତ ହୁଏ ନାହିଁ, |

| | |
|---|---|
| ତଦା | = ସେତେବେଳେ |
| ସର୍ବସଂକଳ୍ପ-ସନ୍ନ୍ୟାସୀ | = ସକଳ ସଂକଳ୍ପ ତ୍ୟାଗ କରିଥିବା ପୁରୁଷ |
| ଯୋଗାରୂଢ଼ଃ | = ଯୋଗାରୂଢ଼ |
| ଉଚ୍ୟତେ | = (ବୋଲି) କଥିତ ହୁଏ । |

ମନୁଷ୍ୟମାନଙ୍କୁ ଯୋଗାରୂଢ଼ ଅବସ୍ଥା ପ୍ରାପ୍ତ କରାଇବା ପାଇଁ ଉତ୍ସାହିତ କରିବା ତଥା କର୍ତ୍ତବ୍ୟ ନିରୂପଣ ।

ଉଦ୍ଧରେଦାତ୍ମନାତ୍ମାନଂ ନାତ୍ମାନମବସାଦୟେତ୍ ।
ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ ॥ ୫ ॥

ଉଦ୍ଧରେତ୍, ଆତ୍ମନା, ଆତ୍ମାନମ୍, ନ, ଆତ୍ମାନମ୍, ଅବସାଦୟେତ୍,
ଆତ୍ମା, ଏବ, ହି, ଆତ୍ମନଃ, ବନ୍ଧୁଃ, ଆତ୍ମା, ଏବ, ରିପୁଃ, ଆତ୍ମନଃ ।।୫ ।।

**ଏବଂ ଏହି ଯୋଗାରୂଢ଼ ଅବସ୍ଥା କଲ୍ୟାଣର ହେତୁ ବୋଲି କୁହାଯାଇଛି, ତେଣୁ ମନୁଷ୍ୟର ଏହା ଚାହିଁବା ଉଚିତ୍ କି—**

| | | | |
|---|---|---|---|
| ଆତ୍ମନା | = ନିଜ ଦ୍ୱାରା | ହି | = କାରଣ |
| ଆତ୍ମାନମ୍ | = ନିଜକୁ | ଆତ୍ମା | = (ମନୁଷ୍ୟ) ନିଜେ |
| ଉଦ୍ଧରେତ୍ | = (ସଂସାର ସାଗରରୁ) ଉଦ୍ଧାର କରିବା ଉଚିତ୍ (ଏବଂ) | ଏବ | = ହିଁ |
| | | ଆତ୍ମନଃ | = ନିଜର |
| | | ବନ୍ଧୁଃ | = ମିତ୍ର (ଏବଂ) |
| ଆତ୍ମାନମ୍, | = ନିଜକୁ | ଆତ୍ମା | = ନିଜେ |
| ନ, | ଅଧୋଗତିରେ | ଏବ | = ହିଁ |
| ଅବସାଦୟେତ୍ | ପକାଇବା ଉଚିତ୍ | ଆତ୍ମନଃ | = ନିଜର |
| | ନୁହେଁ; | ରିପୁଃ | = ଶତ୍ରୁ ଅଟେ । |

ନିଜେ ହିଁ ନିଜର ମିତ୍ର ଏବଂ ନିଜେ ହିଁ ନିଜର ଶତ୍ରୁ, ଏହି ପୂର୍ବୋକ୍ତ ରହସ୍ୟର ପ୍ରତିପାଦନ ।

ବନ୍ଧୁରାତ୍ମାତ୍ମନସ୍ତସ୍ୟ ଯେନାତ୍ମୈବାତ୍ମନା ଜିତଃ ।
ଅନାତ୍ମନସ୍ତୁ ଶତ୍ରୁତ୍ୱେ ବର୍ତ୍ତେତାତ୍ମୈବ ଶତ୍ରୁବତ୍ ॥ ୬ ॥

ବନ୍ଧୁଃ, ଆତ୍ମା, ଆତ୍ମନଃ, ତସ୍ୟ, ଯେନ, ଆତ୍ମା, ଏବ, ଆତ୍ମନା, ଜିତଃ,
ଅନାତ୍ମନଃ, ତୁ, ଶତ୍ରୁତ୍ୱେ, ବର୍ତ୍ତେତ, ଆତ୍ମା, ଏବ, ଶତ୍ରୁବତ୍ ।।୬ ।।

| | | | |
|---|---|---|---|
| ଯେନ | = ଯେଉଁ | ଜିତଃ | = ଜୟ କରାଯାଇଛି, |
| ଆତ୍ମନା | = ଜୀବାତ୍ମା ଦ୍ୱାରା | ତସ୍ୟ, ଆତ୍ମନଃ | = ସେହି ଜୀବାତ୍ମା ତ |
| ଆତ୍ମା | = ମନ ଓ ଇନ୍ଦ୍ରିୟ ସହିତ ଶରୀର | ଆତ୍ମା | = ନିଜେ |
| | | ଏବ | = ହିଁ ନିଜର |

| | | | |
|---|---|---|---|
| ବନ୍ଧୁଃ | = ମିତ୍ର | ଆତ୍ମା | = (ସେ) ନିଜେ |
| ତୁ | = ଏବଂ | ଏବ | = ହିଁ (ନିଜର) |
| ଅନାତ୍ମନଃ | = ଯାହାଦ୍ୱାରା ମନ ତଥା ଇନ୍ଦ୍ରିୟ ସହିତ ଶରୀର ଜୟ କରାଯାଇ ନାହିଁ, ତା' ପାଇଁ | ଶତ୍ରୁବତ୍ | = ଶତ୍ରୁପରି |
| | | ଶତ୍ରୁତ୍ୱେ | = ଶତ୍ରୁତାପୂର୍ଣ୍ଣ |
| | | ବର୍ତ୍ତେତ | = ଆଚରଣ କରେ । |

ଶରୀର, ମନ ଏବଂ ଇନ୍ଦ୍ରିୟାଦିକୁ ବଶ କରିବାର ଫଳ ।

**ଜିତାତ୍ମନଃ ପ୍ରଶାନ୍ତସ୍ୟ ପରମାତ୍ମା ସମାହିତଃ ।**
**ଶୀତୋଷ୍ଣସୁଖଦୁଃଖେଷୁ ତଥା ମାନାପମାନୟୋଃ ॥ ୭ ॥**

ଜିତାତ୍ମନଃ, ପ୍ରଶାନ୍ତସ୍ୟ, ପରମାତ୍ମା, ସମାହିତଃ,
ଶୀତୋଷ୍ଣସୁଖଦୁଃଖେଷୁ, ତଥା, ମାନାପମାନୟୋଃ ।। ୭ ।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଶୀତୋଷ୍ଣ ସୁଖଦୁଃଖେଷୁ | = ଶୀତ-ଉଷ୍ଣ ଓ ସୁଖ-ଦୁଃଖାଦିରେ | ଜିତାତ୍ମନଃ | = ସ୍ୱାଧୀନ ଆତ୍ମାବିଶିଷ୍ଟ ପୁରୁଷଙ୍କ (ଜ୍ଞାନରେ) |
| ତଥା | = ତଥା | ପରମାତ୍ମା | = ସଚ୍ଚିଦାନନ୍ଦଘନ ପରମାତ୍ମା |
| ମାନାପମାନୟୋଃ | = ମାନ ଓ ଅପମାନରେ | ସମାହିତଃ | = ସମ୍ୟକ ଭାବରେ ସ୍ଥିତ ଅଟନ୍ତି ଅର୍ଥାତ୍ ତାଙ୍କ ଜ୍ଞାନରେ ପରମାତ୍ମାଙ୍କ ଭିନ୍ନ ଅନ୍ୟ କିଛି ହିଁ ନାହିଁ । |
| ପ୍ରଶାନ୍ତସ୍ୟ | = ଯାହାଙ୍କ ଅନ୍ତଃକରଣର ବୃତ୍ତି ସବୁ ଭଲରୂପେ ଶାନ୍ତ ହୋଇଯାଇଛି (ଏପରି) | | |

ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା

**ଜ୍ଞାନବିଜ୍ଞାନତୃପ୍ତାତ୍ମା କୂଟସ୍ଥୋ ବିଜିତେନ୍ଦ୍ରିୟଃ ।**
**ଯୁକ୍ତ ଇତ୍ୟୁଚ୍ୟତେ ଯୋଗୀ ସମଲୋଷ୍ଟାଶ୍ମକାଞ୍ଚନଃ ॥ ୮ ॥**

ପୁରୁଷଙ୍କ ଲକ୍ଷଣ ଏବଂ ମହତ୍ତ୍ୱର ବର୍ଣ୍ଣନ ।

ଜ୍ଞାନବିଜ୍ଞାନତୃପ୍ତାତ୍ମା, କୂଟସ୍ଥଃ, ବିଜିତେନ୍ଦ୍ରିୟଃ,
ଯୁକ୍ତଃ, ଇତି, ଉଚ୍ୟତେ, ଯୋଗୀ, ସମଲୋଷ୍ଟାଶ୍ମକାଞ୍ଚନଃ ।।୮ ।।

ଜ୍ଞାନବିଜ୍ଞାନ-ତୃପ୍ତାତ୍ମା = ଯାହାଙ୍କ ଅନ୍ତଃକରଣ ଜ୍ଞାନବିଜ୍ଞାନ ଦ୍ୱାରା ତୃପ୍ତ,
କୂଟସ୍ଥଃ = ଯାହାଙ୍କର ସ୍ଥିତି ବିକାର ରହିତ,
ବିଜିତେନ୍ଦ୍ରିୟଃ = ଯାହାଙ୍କର ଇନ୍ଦ୍ରିୟମାନେ ବିଜିତ ଅର୍ଥାତ୍ ଭଲଭାବରେ ବଶୀଭୂତ (ଏବଂ)
ସମଲୋଷ୍ଟାଶ୍ମ-କାଞ୍ଚନଃ = ଯାହାଙ୍କ ପାଇଁ ମାଟି, ପଥର ଓ ସୁନା ସମାନ,
ଯୋଗୀ = (ସେହି) ଯୋଗୀ
ଯୁକ୍ତଃ = ଯୁକ୍ତ ଅର୍ଥାତ୍ ଭଗବତ୍ ପ୍ରାପ୍ତ
ଇତି = ବୋଲି
ଉଚ୍ୟତେ = କୁହାଯାନ୍ତି ।

ସୁହୃନ୍ମିତ୍ରାର୍ଯ୍ୟୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ ।
ସାଧୁଷ୍ୱପି ଚ ପାପେଷୁ ସମବୁଦ୍ଧିର୍ବିଶିଷ୍ୟତେ ॥ ୯ ॥

ସୁହୃନ୍‌ମିତ୍ରାର୍ଯ୍ୟୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ,
ସାଧୁଷୁ, ଅପି, ଚ, ପାପେଷୁ, ସମବୁଦ୍ଧିଃ, ବିଶିଷ୍ୟତେ ।।୯ ।।

ସୁହୃନ୍‌ମିତ୍ରାର୍ଯ୍ୟୁ-ଦାସୀନମଧ୍ୟସ୍ଥ-ଦ୍ୱେଷ୍ୟବନ୍ଧୁଷୁ = ସୁହୃଦ୍,୧ ଶତ୍ରୁ, ମିତ୍ର, ଉଦାସୀନ,୨ ମଧ୍ୟସ୍ଥ,୩ ଦ୍ୱେଷ୍ୟ ଓ ବନ୍ଧୁଗଣଙ୍କଠାରେ
ଚ = ତଥା
ସାଧୁଷୁ = ଧର୍ମାତ୍ମାମାନଙ୍କଠାରେ (ଓ)
ପାପେଷୁ = ପାପୀଙ୍କଠାରେ
ଅପି = ମଧ୍ୟ
ସମବୁଦ୍ଧିଃ = ସମାନ ଭାବ ରଖୁଥିବା ପୁରୁଷ
ବିଶିଷ୍ୟତେ = ଅତ୍ୟନ୍ତ ଶ୍ରେଷ୍ଠ ଅଟନ୍ତି ।

୧- ସ୍ୱାର୍ଥରହିତ ସମସ୍ତଙ୍କର ହିତ କରିବା ମନୁଷ୍ୟ ।

୨- ପକ୍ଷପାତ ରହିତ ।

୩- ଉଭୟ ପକ୍ଷର ମଙ୍ଗଳ ଚାହୁଁଥିବା ମନୁଷ୍ୟ ।

ଧ୍ୟାନଯୋଗ ସାଧନା କରିବା ପାଇଁ ପ୍ରେରଣା ।

ଯୋଗୀ ଯୁଞ୍ଜୀତ ସତତମାତ୍ମାନଂ ରହସି ସ୍ଥିତଃ ।
ଏକାକୀ ଯତଚିତ୍ତାତ୍ମା ନିରାଶୀରପରିଗ୍ରହଃ ॥ ୧୦ ॥

ଯୋଗୀ, ଯୁଞ୍ଜୀତ, ସତତମ୍, ଆତ୍ମାନମ୍, ରହସି, ସ୍ଥିତଃ,
ଏକାକୀ, ଯତଚିତ୍ତାତ୍ମା, ନିରାଶୀଃ, ଅପରିଗ୍ରହଃ ।।୧୦।।

**ଏଥିପାଇଁ ଏହା ଉଚିତ ଅଟେ କି—**

ଯତଚିତ୍ତାତ୍ମା = ମନ ଓ ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ବଶ କରିଥିବା,
ନିରାଶୀଃ = ଆଶାରହିତ
ଅପରିଗ୍ରହଃ = (ଓ) ସଂଗ୍ରହ କରୁନଥିବା
ଯୋଗୀ = ଯୋଗୀ
ଏକାକୀ = ଏକାକୀ ହିଁ
ରହସି = ଏକାନ୍ତ ସ୍ଥାନରେ
ସ୍ଥିତଃ = ଅବସ୍ଥିତ ହୋଇ
ଆତ୍ମାନମ୍ = ଆତ୍ମାକୁ
ସତତମ୍ = ନିରନ୍ତର
ଯୁଞ୍ଜୀତ = (ପରମାତ୍ମାରେ) ଲଗାଇବା ଉଚିତ ।

ଧ୍ୟାନଯୋଗ ପାଇଁ ଆସନ-ସ୍ଥାପନର ବିଧି ।

ଶୁଚୌ ଦେଶେ ପ୍ରତିଷ୍ଠାପ୍ୟ ସ୍ଥିରମାସନମାତ୍ମନଃ ।
ନାତ୍ୟୁଚ୍ଛ୍ରିତଂ ନାତିନୀଚଂ ଚୈଲାଜିନକୁଶୋତ୍ତରମ୍ ॥ ୧୧ ॥

ଶୁଚୌ, ଦେଶେ, ପ୍ରତିଷ୍ଠାପ୍ୟ, ସ୍ଥିରମ୍, ଆସନମ୍, ଆତ୍ମନଃ,
ନ, ଅତ୍ୟୁଚ୍ଛ୍ରିତମ୍, ନ, ଅତିନୀଚମ୍, ଚୈଲାଜିନକୁଶୋତ୍ତରମ୍ ।।୧୧।।

**ଏହା ଏପରି କରିବା ଉଚିତ—**

ଶୁଚୌ = ଶୁଦ୍ଧ
ଦେଶେ = ଭୂମିରେ (ଯାହା ଉପରେ କ୍ରମଶଃ)
ଚୈଲାଜିନ-କୁଶୋତ୍ତରମ୍ = କୁଶ (ଉପରେ) ମୃଗଚର୍ମ ଓ (ତା'ଉପରେ) ବସ୍ତ୍ର ବିଛାଇ
ନ, ଅତ୍ୟୁଚ୍ଛ୍ରିତମ୍ = (ଯାହା) ଅତି ଉଚ୍ଚା ହୋଇନଥିବ (ଓ)

| | | | |
|---|---|---|---|
| ନ, ଅତିନୀଚମ୍ | = ଅତି ନୀଚା ହୋଇନଥିବ (ସେପରି) | ଆସନମ୍ | = ଆସନକୁ |
| | | ସ୍ଥିରମ୍ | = ସ୍ଥିରଭାବେ |
| ଆତ୍ମନଃ | = ନିଜର | ପ୍ରତିଷ୍ଠାପ୍ୟ | = ସ୍ଥାପନ କରି--- |

ଆସନ ଉପରେ ବସି ଯୋଗସାଧନ କରିବା ପାଇଁ ପ୍ରେରଣା ।

**ତତ୍ରୈକାଗ୍ରଂ ମନଃ କୃତ୍ୱା ଯତଚିତ୍ତେନ୍ଦ୍ରିୟକ୍ରିୟଃ ।**
**ଉପବିଶ୍ୟାସନେ ଯୁଞ୍ଜ୍ୟାଦ୍‌ଯୋଗମାତ୍ମବିଶୁଦ୍ଧୟେ ॥ ୧୨ ॥**

ତତ୍ର, ଏକାଗ୍ରମ୍, ମନଃ, କୃତ୍ୱା, ଯତଚିତ୍ତେନ୍ଦ୍ରିୟକ୍ରିୟଃ,
ଉପବିଶ୍ୟ, ଆସନେ, ଯୁଞ୍ଜ୍ୟାତ୍, ଯୋଗମ୍, ଆତ୍ମବିଶୁଦ୍ଧୟେ ।।୧୨।।

**ଏବଂ—**

| | | | |
|---|---|---|---|
| ତତ୍ର | = ସେହି | ଏକାଗ୍ରମ୍ | = ଏକାଗ୍ର |
| ଆସନେ | = ଆସନରେ | କୃତ୍ୱା | = କରି |
| ଉପବିଶ୍ୟ | = ବସି | ଆତ୍ମବିଶୁଦ୍ଧୟେ | = ଅନ୍ତଃକରଣର ଶୁଦ୍ଧିପାଇଁ |
| ଯତଚିତ୍ତେନ୍ଦ୍ରିୟକ୍ରିୟଃ | = ଚିତ୍ତ ଓ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ ବଶରେ ରଖି | ଯୋଗମ୍ | = ଯୋଗର |
| | | ଯୁଞ୍ଜ୍ୟାତ୍ | = ଅଭ୍ୟାସ କରିବା ଉଚିତ । |
| ମନଃ | = ମନକୁ | | |

ଧ୍ୟାନ ଯୋଗର ବିଧି ।

**ସମଂ କାୟଶିରୋଗ୍ରୀବଂ ଧାରୟନ୍ନଚଲଂ ସ୍ଥିରଃ ।**
**ସମ୍ପ୍ରେକ୍ଷ୍ୟ ନାସିକାଗ୍ରଂ ସ୍ୱଂ ଦିଶଶ୍ଚାନବଲୋକୟନ୍ ॥ ୧୩ ॥**

ସମମ୍, କାୟଶିରୋଗ୍ରୀବମ୍, ଧାରୟନ୍, ଅଚଲମ୍, ସ୍ଥିରଃ,
ସଂପ୍ରେକ୍ଷ୍ୟ, ନାସିକାଗ୍ରମ୍, ସ୍ୱମ୍, ଦିଶଃ, ଚ, ଅନବଲୋକୟନ୍।।୧୩।।

**ଏହାର ବିଧି ଏହି ପ୍ରକାର କି—**

| | | | |
|---|---|---|---|
| କାୟଶିରୋ-ଗ୍ରୀବମ୍ | = କାୟ, ଶିର ଓ ଗ୍ରୀବାକୁ | ଅନବଲୋକୟନ୍ | = ଦୃଷ୍ଟି ନ ଦେଇ |
| ଅଚଳମ୍ | = ଅଚଳଭାବରେ | ସ୍ୱମ୍ | = ନିଜ |
| ସମମ୍ | = ସିଧା | ନାସିକାଗ୍ରମ୍ | = ନାସିକାର ଅଗ୍ରଭାଗକୁ |
| ଧାରୟନ୍ | = ରଖି | ସମ୍ପ୍ରେକ୍ଷ୍ୟ | = ଦୃଷ୍ଟି ଦେଇ |
| ଚ | = ତଥା | ସ୍ଥିରଃ | = ସ୍ଥିରଭାବେ (ବସନ୍ତୁ)--- |
| ଦିଶଃ | = କୌଣସି ଦିଗକୁ | | |

ପ୍ରଶାନ୍ତାତ୍ମା ବିଗତଭୀର୍ବ୍ରହ୍ମଚାରିବ୍ରତେ ସ୍ଥିତଃ ।
ମନଃ ସଂଯମ୍ୟ ମଚ୍ଚିତ୍ତୋ ଯୁକ୍ତ ଆସୀତ ମତ୍ପରଃ ॥ ୧୪ ॥

ପ୍ରଶାନ୍ତାତ୍ମା, ବିଗତଭୀଃ, ବ୍ରହ୍ମଚାରିବ୍ରତେ, ସ୍ଥିତଃ,
ମନଃ, ସଂଯମ୍ୟ, ମଚ୍ଚିତ୍ତଃ, ଯୁକ୍ତଃ, ଆସୀତ, ମତ୍ପରଃ ।।୧୪।।

| | | | |
|---|---|---|---|
| ବ୍ରହ୍ମଚାରିବ୍ରତେ | = ବ୍ରହ୍ମଚାରି ବ୍ରତରେ | ମନଃ | = ମନକୁ |
| ସ୍ଥିତଃ | = ସ୍ଥିତ | ସଂଯମ୍ୟ | = ସଂଯତ କରି, |
| ବିଗତଭୀଃ | = ଭୟଶୂନ୍ୟ (ତଥା) | ମଚ୍ଚିତ୍ତଃ | = ମୋଠାରେ ଯୁକ୍ତଚିତ୍ତ ହୋଇ (ଏବଂ) |
| ପ୍ରଶାନ୍ତାତ୍ମା | = ପ୍ରଶାନ୍ତ ଅନ୍ତଃକରଣ ବିଶିଷ୍ଟ | ମତ୍ପରଃ | = ମୋର ପରାୟଣ ହୋଇ |
| ଯୁକ୍ତଃ | = ସାବଧାନ ଯୋଗୀ | ଆସୀତ | = ବସିବା ଉଚିତ । |

ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ନିୟତମାନସଃ ।
ଧ୍ୟାନଯୋଗର ଫଳ । ଶାନ୍ତିଂ ନିର୍ବାଣପରମାଂ ମତ୍ସଂସ୍ଥାମଧିଗଚ୍ଛତି ॥ ୧୫ ॥

ଯୁଞ୍ଜନ୍, ଏବମ୍, ସଦା, ଆତ୍ମାନମ୍, ଯୋଗୀ, ନିୟତମାନସଃ,
ଶାନ୍ତିମ୍, ନିର୍ବାଣପରମାମ୍, ମତ୍‌ସଂସ୍ଥାମ୍, ଅଧିଗଚ୍ଛତି ।।୧୫।।

| | | | |
|---|---|---|---|
| ନିୟତମାନସଃ | = ମନକୁ ବଶକରି ରଖିଥିବା | | ପରମେଶ୍ୱରଙ୍କ ସ୍ୱରୂପରେ) ଲଗାଇ |
| ଯୋଗୀ | = ଯୋଗୀ | ମତ୍‌ସଂସ୍ଥାମ୍ | = ମୋଠାରେ ରହିଥିବା |
| ଏବମ୍ | = ଏପରି ଭାବରେ | ନିର୍ବାଣପରମାମ୍ | = ପରମାନନ୍ଦର ପରାକାଷ୍ଠାରୂପକ |
| ଆତ୍ମାନମ୍ | = ଆତ୍ମାକୁ | ଶାନ୍ତିମ୍ | = ଶାନ୍ତିକୁ |
| ସଦା | = ନିରନ୍ତର | ଅଧିଗଚ୍ଛତି | = ପ୍ରାପ୍ତ ହୁଅନ୍ତି । |
| ଯୁଞ୍ଜନ୍ | = (ମୋର ଅର୍ଥାତ୍ | | |

ଧ୍ୟାନଯୋଗ ନିମିତ୍ତ ଉପଯୁକ୍ତ ଆହାର-ବିହାର ତଥା ଶୟନାଦିର ନିୟମ ଏବଂ ଏହାର ଫଳ ।

**ନାତ୍ୟଶ୍ନତସ୍ତୁ ଯୋଗୋଽସ୍ତି ନ ଚୈକାନ୍ତମନଶ୍ନତଃ ।**
**ନ ଚାତି ସ୍ୱପ୍ନଶୀଳସ୍ୟ ଜାଗ୍ରତୋ ନୈବ ଚାର୍ଜୁନ ॥ ୧୬ ॥**

ନ, ଅତି, ଅଶ୍ନତଃ, ତୁ, ଯୋଗଃ, ଅସ୍ତି, ନ, ଚ, ଏକାନ୍ତମ୍, ଅନଶ୍ନତଃ, ନ, ଚ, ଅତି, ସ୍ୱପ୍ନଶୀଳସ୍ୟ, ଜାଗ୍ରତଃ, ନ, ଏବ, ଚ, ଅର୍ଜୁନ ।।୧୬।।

**କିନ୍ତୁ—**

| | | | |
|---|---|---|---|
| ଅର୍ଜୁନ | = ହେ ଅର୍ଜୁନ ! | ଚ | = ତଥା |
| ଯୋଗଃ | = ଏହି ଯୋଗ | ନ, ଅତି, | = ନା ବହୁତ |
| ନ, ତୁ, ଅତି, | = ନା ଅତି ଭୋଜନ | ସ୍ୱପ୍ନଶୀଳସ୍ୟ | ଶୋଇବା ଲୋକର |
| ଅଶ୍ନତଃ | କରିବା ଲୋକର | ଚ | = ଏବଂ |
| ଚ | = କିମ୍ବା | ନ, ଜାଗ୍ରତଃ, | = ନା ସର୍ବଦା |
| ନ, ଏକାନ୍ତମ୍, | = ନା ଆଦୌ | ଏବ | ଜାଗ୍ରତ |
| ଅନଶ୍ନତଃ | ଭୋଜନ ନ କରିବା ଲୋକର | | ରହିବା ଲୋକର |
| | | ଅସ୍ତି | = ସିଦ୍ଧ ହୁଏ । |

**ଯୁକ୍ତାହାରବିହାରସ୍ୟ ଯୁକ୍ତଚେଷ୍ଟସ୍ୟ କର୍ମସୁ ।**
**ଯୁକ୍ତସ୍ୱପ୍ନାବବୋଧସ୍ୟ ଯୋଗୋ ଭବତି ଦୁଃଖହା ॥ ୧୭ ॥**

ଯୁକ୍ତାହାରବିହାରସ୍ୟ, ଯୁକ୍ତଚେଷ୍ଟସ୍ୟ, କର୍ମସୁ, ଯୁକ୍ତସ୍ୱପ୍ନାବବୋଧସ୍ୟ, ଯୋଗଃ, ଭବତି, ଦୁଃଖହା ।।୧୭।।

**ଏହି—**

| | | | |
|---|---|---|---|
| ଦୁଃଖହା | = (ଏହି) ଦୁଃଖନାଶକାରୀ | ଯୁକ୍ତଚେଷ୍ଟସ୍ୟ | = ଯଥାଯୋଗ୍ୟ ଚେଷ୍ଟା କରୁଥିବା ଲୋକର (ଓ) |
| ଯୋଗଃ | = ଯୋଗ (ତ) | ଯୁକ୍ତସ୍ୱପ୍ନା-ବବୋଧସ୍ୟ | = ଯଥାଯୋଗ୍ୟ ଶୋଉଥିବା ଓ ଚେଉଁଥିବା ଲୋକର ହିଁ |
| ଯୁକ୍ତାହାର-ବିହାରସ୍ୟ | = ଯଥାଯୋଗ୍ୟ ଆହାର-ବିହାର କରୁଥିବା ଲୋକର, | ଭବତି | = ସିଦ୍ଧ ହୁଏ । |
| କର୍ମସୁ | = କର୍ମମାନଙ୍କରେ | | |

ଧ୍ୟାନଯୋଗର ଅନ୍ତିମ ସ୍ଥିତିକୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କ ଲକ୍ଷଣ ।

**ଯଦା ବିନିୟତଂ ଚିତ୍ତମାତ୍ମନ୍ୟେବାବତିଷ୍ଠତେ ।**
**ନିଃସ୍ପୃହଃ ସର୍ବକାମେଭ୍ୟୋ ଯୁକ୍ତ ଇତ୍ୟୁଚ୍ୟତେ ତଦା ॥ ୧୮ ॥**

ଯଦା, ବିନିୟତମ୍, ଚିତ୍ତମ୍, ଆତ୍ମନି, ଏବ, ଅବତିଷ୍ଠତେ,
ନିଃସ୍ପୃହଃ, ସର୍ବକାମେଭ୍ୟଃ, ଯୁକ୍ତଃ, ଇତି, ଉଚ୍ୟତେ, ତଦା ॥୧୮॥

**ଏହି ପ୍ରକାର ଯୋଗର ଅଭ୍ୟାସ ଦ୍ୱାରା—**

| | | | |
|---|---|---|---|
| ବିନିୟତମ୍ | = ଅତ୍ୟନ୍ତ ବଶୀଭୂତ ହୋଇଥିବା | ତଦା | = ସେତେବେଳେ |
| ଚିତ୍ତମ୍ | = ଚିତ୍ତ | ସର୍ବକାମେଭ୍ୟଃ | = ସକଳ ଭୋଗରୁ |
| ଯଦା | = ଯେତେବେଳେ | ନିଃସ୍ପୃହଃ | = ସ୍ପୃହାରହିତ ପୁରୁଷ |
| ଆତ୍ମନି | = ପରମାତ୍ମାଙ୍କ ଠାରେ | ଯୁକ୍ତଃ | = ଯୋଗଯୁକ୍ତ |
| ଏବ | = ହିଁ | ଇତି | = ବୋଲି |
| ଅବତିଷ୍ଠତେ | = ଭଲରୂପେ ଅବସ୍ଥାନ କରେ | ଉଚ୍ୟତେ | = କୁହାଯାଏ । |

ଦୀପକର ଦୃଷ୍ଟାନ୍ତ ଦ୍ୱାରା ଯୋଗୀମାନଙ୍କର ଚିତ୍ତ ସ୍ଥିତିର ବର୍ଣ୍ଣନା

**ଯଥା ଦୀପୋ ନିବାତସ୍ଥୋ ନେଙ୍ଗତେ ସୋପମା ସ୍ମୃତା ।**
**ଯୋଗିନୋ ଯତଚିତ୍ତସ୍ୟ ଯୁଞ୍ଜତୋ ଯୋଗମାତ୍ମନଃ ॥ ୧୯ ॥**

ଯଥା, ଦୀପଃ, ନିବାତସ୍ଥଃ, ନ, ଇଙ୍ଗତେ, ସା, ଉପମା, ସ୍ମୃତା,
ଯୋଗିନଃ, ଯତଚିତ୍ତସ୍ୟ, ଯୁଞ୍ଜତଃ, ଯୋଗମ୍, ଆତ୍ମନଃ ।।୧୯।।

| | | | |
|---|---|---|---|
| ଯଥା | = ଯେପରି | ଆତ୍ମନଃ | = ପରମାତ୍ମାଙ୍କର |
| ନିବାତସ୍ଥଃ | = ପବନ ନ ଥିବା ସ୍ଥାନରେ ଥିବା | ଯୋଗମ୍ | = ଧ୍ୟାନରେ |
| ଦୀପଃ | = ଦୀପର ଶିଖା | ଯୁଞ୍ଜତଃ | = ଲାଗିରହିଥିବା |
| ନ, ଇଙ୍ଗତେ | = ଚଞ୍ଚଳ ହୁଏ ନାହିଁ, | ଯୋଗିନଃ | = ଯୋଗୀଙ୍କର |
| ସା, ଉପମା | = ସେହିପରି ହିଁ ଉପମା | ଯତଚିତ୍ତସ୍ୟ | = ବଶୀଭୂତ ଚିତ୍ତ (ସ୍ଥିର ରହେ ବୋଲି) |
| | | ସ୍ମୃତା | = କୁହାଯାଇଛି । |

ଧ୍ୟାନଯୋଗଦ୍ୱାରା ପରମାତ୍ମାଙ୍କୁ ପ୍ରାପ୍ତ କରିଥିବା ପୁରୁଷଙ୍କ ଲକ୍ଷଣ ।

**ଯତ୍ରୋପରମତେ ଚିତ୍ତଂ ନିରୁଦ୍ଧଂ ଯୋଗସେବୟା ।**
**ଯତ୍ର ଚୈବାତ୍ମନାତ୍ମାନଂ ପଶ୍ୟନ୍ନାତ୍ମନି ତୁଷ୍ୟତି ॥ ୨୦ ॥**

ଯତ୍ର, ଉପରମତେ, ଚିତ୍ତମ୍, ନିରୁଦ୍ଧମ୍, ଯୋଗସେବୟା,
ଯତ୍ର, ଚ, ଏବ, ଆତ୍ମନା, ଆତ୍ମାନମ୍, ପଶ୍ୟନ୍, ଆତ୍ମନି, ତୁଷ୍ୟତି ।।୨୦।।

**ଏବଂ ହେ ଅର୍ଜୁନ ।—**

| | | | |
|---|---|---|---|
| ଯୋଗସେବୟା | = ଯୋଗାଭ୍ୟାସଦ୍ୱାରା | | ହୋଇଯାଏ (ନିବୃତ୍ତ ହୋଇଯାଏ) |
| ନିରୁଦ୍ଧମ୍ | = ନିରୁଦ୍ଧ ହୋଇଥିବା | | |
| ଚିତ୍ତମ୍ | = ଚିତ୍ତ | ଚ | = ତଥା |
| ଯତ୍ର | = ଯେଉଁ ଅବସ୍ଥାରେ | ଯତ୍ର | = ଯେଉଁ ଅବସ୍ଥାରେ (ସ୍ୱୟଂ) |
| ଉପରମତେ | = ଉପରତପ୍ରାପ୍ତ | | |

| | | | |
|---|---|---|---|
| ଆତ୍ମନା | = (ପରମାତ୍ମାଙ୍କ ଧ୍ୟାନରେ ଶୁଦ୍ଧ ହୋଇଥିବା) ସୂକ୍ଷ୍ମବୁଦ୍ଧିଦ୍ୱାରା | ଆତ୍ମନି | = ସଚ୍ଚିଦାନନ୍ଦଘନ ପରମାତ୍ମାରେ |
| ଆତ୍ମାନମ୍ | = ପରମାତ୍ମାଙ୍କୁ | ଏବ | = ହିଁ |
| ପଶ୍ୟନ୍ | = ସାକ୍ଷାତ କରି | ତୁଷ୍ୟତି | = ସନ୍ତୁଷ୍ଟ ହୋଇ ରହେ--- |

**ସୁଖମାତ୍ୟନ୍ତିକଂ ଯତ୍ତଦ୍‌ବୁଦ୍ଧିଗ୍ରାହ୍ୟମତୀନ୍ଦ୍ରିୟମ୍ ।**
**ବେତ୍ତି ଯତ୍ର ନ ଚୈବାୟଂ ସ୍ଥିତଶ୍ଚଳତି ତତ୍ତ୍ୱତଃ ॥ ୨୧ ॥**

ସୁଖମ୍, ଆତ୍ୟନ୍ତିକମ୍, ଯତ୍, ତତ୍, ବୁଦ୍ଧିଗ୍ରାହ୍ୟମ୍, ଅତୀନ୍ଦ୍ରିୟମ୍,
ବେତ୍ତି, ଯତ୍ର, ନ, ଚ, ଏବ, ଅୟମ୍, ସ୍ଥିତଃ, ଚଳତି, ତତ୍ତ୍ୱତଃ ।।୨୧ ।।

**ତଥା—**

| | | | |
|---|---|---|---|
| ଅତୀନ୍ଦ୍ରିୟମ୍ | = ଇନ୍ଦ୍ରିୟାତୀତ (ହୋଇ) | ବେତ୍ତି | = ଅନୁଭବ କରେ |
| | | ଚ | = ଓ |
| ବୁଦ୍ଧିଗ୍ରାହ୍ୟମ୍ | = କେବଳ ବିଶୁଦ୍ଧ ସୂକ୍ଷ୍ମବୁଦ୍ଧି ଦ୍ୱାରା ଗ୍ରହଣ ଯୋଗ୍ୟ | (ଯତ୍ର) | = ଯେଉଁ ଅବସ୍ଥାରେ |
| | | ସ୍ଥିତଃ | = ସ୍ଥିତ (ହେଲେ) |
| | | ଅୟମ୍ | = ଏହି ଯୋଗୀ |
| ଯତ୍ | = ଯେଉଁ | ତତ୍ତ୍ୱତଃ | = ପରମାତ୍ମାଙ୍କ ସ୍ୱରୂପରୁ |
| ଆତ୍ୟନ୍ତିକମ୍ | = ଅନନ୍ତ | | |
| ସୁଖମ୍ | = ଆନନ୍ଦ ରହିଛି | ନ, ଏବ, | = କଦାପି |
| ତତ୍ | = (ଯୋଗୀ) ତାହାକୁ | ଚଳତି | ବିଚଳିତ |
| ଯତ୍ର | = ଯେଉଁ ଅବସ୍ଥାରେ | | ହୁଏ ନାହିଁ ... । |

**ଯଂ ଲବ୍‌ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ ।**
**ଯସ୍ମିନ୍‌ସ୍ଥିତୋ ନ ଦୁଃଖେନ ଗୁରୁଣାପି ବିଚାଲ୍ୟତେ ॥ ୨୨ ॥**

ଯମ୍, ଲବ୍ଧ୍ୱା, ଚ, ଅପରମ୍, ଲାଭମ୍, ମନ୍ୟତେ, ନ, ଅଧିକମ୍, ତତଃ,
ଯସ୍ମିନ୍, ସ୍ଥିତଃ, ନ, ଦୁଃଖେନ, ଗୁରୁଣା, ଅପି, ବିଚାଲ୍ୟତେ ।।୨୨।।

**ଏବଂ ପରମାତ୍ମାଙ୍କ ପ୍ରାପ୍ତିରୂପ—**

| | | | |
|---|---|---|---|
| ଯମ୍ | = ଯେଉଁ | ଚ | = ଏବଂ |
| ଲାଭମ୍ | = (ପରମାତ୍ମ ପ୍ରାପ୍ତିରୂପକ) ଲାଭକୁ | ଯସ୍ମିନ୍ | = ଯେଉଁ ପରମାତ୍ମପ୍ରାପ୍ତି ରୂପକ ଅବସ୍ଥାରେ |
| ଲବ୍ଧ୍ୱା | = ପ୍ରାପ୍ତ ହୋଇ | ସ୍ଥିତଃ | = ସ୍ଥିତ (ଯୋଗୀ) |
| ତତଃ | = ତା'ଠାରୁ | ଗୁରୁଣା | = ଅତିଶୟ |
| ଅଧିକମ୍ | = ଅଧିକ | ଦୁଃଖେନ | = ଦୁଃଖରେ |
| ଅପରମ୍ | = ଅନ୍ୟ କିଛି (ଲାଭ) ଥିବା | ଅପି | = ମଧ୍ୟ |
| ନ, ମନ୍ୟତେ | = (ସେ) ମନେକରେ ନାହିଁ | ନ, ବିଚାଲ୍ୟତେ | = ବିଚଳିତ ହୁଏ ନାହିଁ ... |

ତତ୍ପରତାପୂର୍ବକ ଧ୍ୟାନଯୋଗର ଅନୁଷ୍ଠାନ କରିବା ପାଇଁ ପ୍ରେରଣା ।

**ତଂ ବିଦ୍ୟାଦ୍ ଦୁଃଖସଂଯୋଗବିୟୋଗଂ ଯୋଗସଂଜ୍ଞିତମ୍ ।**
**ସ ନିଶ୍ଚୟେନ ଯୋକ୍ତବ୍ୟୋ ଯୋଗୋଽନିର୍ବିଣ୍ଣଚେତସା ॥ ୨୩ ॥**

ତମ୍ , ବିଦ୍ୟାତ୍ ଦୁଃଖସଂଯୋଗବିୟୋଗମ୍, ଯୋଗସଂଜ୍ଞିତମ୍,
ସଃ, ନିଶ୍ଚୟେନ, ଯୋକ୍ତବ୍ୟଃ, ଯୋଗଃ, ଅନିର୍ବିଣ୍ଣଚେତସା ।।୨୩।।

**ଏବଂ ଯେଉଁ—**

| | | | |
|---|---|---|---|
| ଦୁଃଖସଂଯୋଗ-ବିୟୋଗମ୍ | = ଯେଉଁଥିରେ ଦୁଃଖ ରୂପକ ସଂସାରର ସଂଯୋଗରୁ ବିୟୋଗ ହୁଏ, | ତମ୍ | = ତାହାକୁ |
| | | ଯୋଗସଂଜ୍ଞିତମ୍ | = 'ଯୋଗ' ବୋଲି |
| | | ବିଦ୍ୟାତ୍ | = ଜାଣିବା ଉଚିତ । |
| | | ସଃ | = ସେହି |
| | | ଯୋଗଃ | = ଯୋଗ (ସାଧନା) |

| | | | |
|---|---|---|---|
| ଅନିର୍ବିଣ୍ଣ-ଚେତସା | = କ୍ଷୁଣ୍ଣ ନ ହୋଇଥିବା ଅର୍ଥାତ୍ ଧୈର୍ଯ୍ୟ ଓ ଉତ୍ସାହଯୁକ୍ତ | | ଚିତ୍ତଦ୍ୱାରା |
| | | ନିଶ୍ଚୟେନ | = ନିଶ୍ଚୟପୂର୍ବକ |
| | | ଯୋକ୍ତବ୍ୟଃ | = ଅଭ୍ୟାସ କରିବା କର୍ତ୍ତବ୍ୟ । |

ଅଭେଦ ରୂପରେ ପରମାତ୍ମାଙ୍କୁ ଧ୍ୟାନ କରିବା ବିଧି ।

**ସଙ୍କଳ୍ପପ୍ରଭବାନ୍ କାମାଂସ୍ତ୍ୟକ୍ତ୍ୱା ସର୍ବାନଶେଷତଃ ।**
**ମନସୈବେନ୍ଦ୍ରିୟଗ୍ରାମଂ ବିନିୟମ୍ୟ ସମନ୍ତତଃ ॥ ୨୪ ॥**

ସଂକଳ୍ପପ୍ରଭବାନ୍, କାମାନ୍, ତ୍ୟକ୍ତ୍ୱା, ସର୍ବାନ୍, ଅଶେଷତଃ, ମନସା, ଏବ, ଇନ୍ଦ୍ରିୟଗ୍ରାମମ୍, ବିନିୟମ୍ୟ, ସମନ୍ତତଃ ।।୨୪।।

**ଏଥିପାଇଁ ମନୁଷ୍ୟର ଉଚିତ ଯେ—**

| | | | |
|---|---|---|---|
| ସଂକଳ୍ପପ୍ରଭବାନ୍ | = ସଂକଳ୍ପରୁ ଉତ୍ପନ୍ନ ହେଉଥିବା | ତ୍ୟକ୍ତ୍ୱା | = ତ୍ୟାଗ କରି (ଏବଂ) |
| ସର୍ବାନ୍ | = ସକଳ | ମନସା | = ମନଦ୍ୱାରା |
| କାମାନ୍ | = କାମନାମାନଙ୍କୁ | ଇନ୍ଦ୍ରିୟଗ୍ରାମମ୍ | = ସମସ୍ତ ଇନ୍ଦ୍ରିୟଙ୍କୁ |
| ଅଶେଷତଃ | = ନିଃଶେଷରୂପେ ଅର୍ଥାତ୍ କାମନା ଓ ଆସକ୍ତିର ସଙ୍ଗ | ସମନ୍ତତଃ, ଏବ | = ସକଳ ଦିଗରୁ ହିଁ |
| | | ବିନିୟମ୍ୟ | = ଭଲରୂପେ ନିରୋଧ କରି--- |

**ଶନୈଃ ଶନୈରୁପରମେଦ୍ ବୁଦ୍ଧ୍ୟା ଧୃତିଗୃହୀତୟା ।**
**ଆତ୍ମସଂସ୍ଥଂ ମନଃ କୃତ୍ୱା ନ କିଞ୍ଚିଦପି ଚିନ୍ତୟେତ୍ ॥ ୨୫ ॥**

ଶନୈଃ, ଶନୈଃ, ଉପରମେତ୍, ବୁଦ୍ଧ୍ୟା, ଧୃତିଗୃହୀତୟା, ଆତ୍ମସଂସ୍ଥମ୍, ମନଃ, କୃତ୍ୱା, ନ, କିଞ୍ଚିତ୍, ଅପି, ଚିନ୍ତୟେତ୍ ।।୨୫।।

| | | | |
|---|---|---|---|
| ଶନୈଃ,ଶନୈଃ | = କ୍ରମେ କ୍ରମେ (ଅଭ୍ୟାସ କରି କରି) | ମନଃ | = ମନକୁ |
| ଉପରମେତ୍ | = (ନିବୃତ୍ତ) ଉପରତି ପ୍ରାପ୍ତ ହେବା ଉଚିତ (ତଥା) | ଆତ୍ମସଂସ୍ଥମ୍ | = ପରମାତ୍ମାରେ |
| ଧୃତିଗୃହୀତୟା | = ଧୈର୍ଯ୍ୟଯୁକ୍ତ | କୃତ୍ୱା | = ଲଗାଇ |
| ବୁଦ୍ଧ୍ୟା | = ବୁଦ୍ଧିଦ୍ୱାରା | କିଞ୍ଚିତ୍ | = ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି |
| | | ଅପି | = ବି |
| | | ନ, ଚିନ୍ତୟେତ୍ | = ଚିନ୍ତନ କରିବା ଉଚିତ ନୁହେଁ । |

ମନକୁ ପରମାତ୍ମାମୁଖୀ କରିବାର ଉପାୟ ।

**ଯତୋ ଯତୋ ନିଶ୍ଚରତି ମନଶ୍ଚଞ୍ଚଳମସ୍ଥିରମ୍ ।**
**ତତସ୍ତତୋ ନିୟମ୍ୟୈତଦାତ୍ମନ୍ୟେବ ବଶଂ ନୟେତ୍ ॥ ୨୬ ॥**

ଯତଃ, ଯତଃ, ନିଶ୍ଚରତି, ମନଃ, ଚଞ୍ଚଳମ୍, ଅସ୍ଥିରମ୍,
ତତଃ, ତତଃ, ନିୟମ୍ୟ, ଏତତ୍, ଆତ୍ମନି, ଏବ, ବଶମ୍, ନୟେତ୍ ।।୨୬।।

**କିନ୍ତୁ ଯାହାର ମନ ବଶ ହୁଏ ନାହିଁ, ତାଙ୍କର ଏହା କରିବା ଉଚିତ ଯେ—**

| | | | |
|---|---|---|---|
| ଏତତ୍ | = ଏହି | ତତଃ, ତତଃ | = ସେହି ସେହି (ବିଷୟରୁ) |
| ଅସ୍ଥିରମ୍ | = ଅସ୍ଥିର (ଏବଂ) | ନିୟମ୍ୟ | = ରୋଧ କରି (ମନକୁ ବାରମ୍ବାର) |
| ଚଞ୍ଚଳମ୍ | = ଚଞ୍ଚଳ | ଆତ୍ମନି | = ପରମାତ୍ମାରେ |
| ମନଃ | = ମନ | ଏବ | = ହିଁ |
| ଯତଃ, ଯତଃ | = ଯେଉଁ ଯେଉଁ (ଶବ୍ଦାଦି ବିଷୟନିମିତ୍ତ ସଂସାରରେ) | ବଶମ୍ | = ନିରୁଦ୍ଧ |
| ନିଶ୍ଚରତି | = ବିଚରଣ କରେ, | ନୟେତ୍ | = କରିବା ଉଚିତ । |

ଧ୍ୟାନଯୋଗ ଦ୍ୱାରା ଉତ୍ତମ ଓ ଅତ୍ୟନ୍ତ ସୁଖର ପ୍ରାପ୍ତି ।

ପ୍ରଶାନ୍ତମନସଂ ହ୍ୟେନଂ ଯୋଗିନଂ ସୁଖମୁତ୍ତମମ୍ ।
ଉପୈତି ଶାନ୍ତରଜସଂ ବ୍ରହ୍ମଭୂତମକଲ୍ମଷମ୍ ॥ ୨୭ ॥

ପ୍ରଶାନ୍ତମନସମ୍, ହି, ଏନମ୍, ଯୋଗିନମ୍, ସୁଖମ୍, ଉତ୍ତମମ୍,
ଉପୈତି, ଶାନ୍ତରଜସମ୍, ବ୍ରହ୍ମଭୂତମ୍, ଅକଲ୍ମଷମ୍ ।।୨୭।।

| | | | |
|---|---|---|---|
| ହି | = କାରଣ | ବ୍ରହ୍ମଭୂତମ୍ | = ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କ ସହିତ ଏକତ୍ୱଭାବ ପ୍ରାପ୍ତ ହୋଇଥିବା |
| ପ୍ରଶାନ୍ତମନସମ୍ | = ଯାହାଙ୍କର ମନ ଭଲଭାବରେ ଶାନ୍ତ, | | |
| ଅକଲ୍ମଷମ୍ | = ଯେ ପାପରୁ ରହିତ (ଏବଂ) | ଏନମ୍ | = ସେହି |
| ଶାନ୍ତରଜସମ୍ | = ଯାହାଙ୍କର ରଜୋଗୁଣ ଶାନ୍ତ ହୋଇଗଲାଣି, (ଏପରି) | ଯୋଗିନମ୍ | = ଯୋଗୀଙ୍କୁ |
| | | ଉତ୍ତମମ୍ | = ଉତ୍ତମ |
| | | ସୁଖମ୍ | = ଆନନ୍ଦ |
| | | ଉପୈତି | = ପ୍ରାପ୍ତ ହୁଏ । |

ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ବିଗତକଲ୍ମଷଃ ।
ସୁଖେନ ବ୍ରହ୍ମସଂସ୍ପର୍ଶମତ୍ୟନ୍ତଂ ସୁଖମଶ୍ନୁତେ ॥ ୨୮ ॥

ଯୁଞ୍ଜନ୍, ଏବମ୍, ସଦା, ଆତ୍ମାନମ୍, ଯୋଗୀ, ବିଗତକଲ୍ମଷଃ,
ସୁଖେନ, ବ୍ରହ୍ମସଂସ୍ପର୍ଶମ୍, ଅତ୍ୟନ୍ତମ୍, ସୁଖମ୍, ଅଶ୍ନୁତେ ।।୨୮।।

**ଏବଂ ସେହି—**

| | | | |
|---|---|---|---|
| ବିଗତକଲ୍ମଷଃ | = ନିଷ୍ପାପ | ଆତ୍ମାନମ୍ | = ଆତ୍ମାକୁ |
| ଯୋଗୀ | = ଯୋଗୀ | ଯୁଞ୍ଜନ୍ | = ପରମାତ୍ମାରେ ଲଗାଇରଖି |
| ଏବମ୍ | = ଏପରି ଭାବରେ | | |
| ସଦା | = ନିରନ୍ତର | ସୁଖେନ | = ସୁଖପୂର୍ବକ |

| | | | |
|---|---|---|---|
| ବ୍ରହ୍ମସଂସ୍ପର୍ଶମ୍ | = ପରବ୍ରହ୍ମ ପରମାତ୍ମାଙ୍କ ପ୍ରାପ୍ତି ରୂପକ | ଅତ୍ୟନ୍ତମ୍ | = ଅନନ୍ତ |
| | | ସୁଖମ୍ | = ଆନନ୍ଦକୁ |
| | | ଅଶ୍ନୁତେ | = ଅନୁଭବ କରେ । |

ସାଂଖ୍ୟଯୋଗୀଙ୍କ ବ୍ୟବହାର କାଳୀନ ସ୍ଥିତିର କଥନ ।

**ସର୍ବଭୂତସ୍ଥମାତ୍ମାନଂ ସର୍ବଭୂତାନି ଚାତ୍ମନି ।**
**ଈକ୍ଷତେ ଯୋଗଯୁକ୍ତାତ୍ମା ସର୍ବତ୍ର ସମଦର୍ଶନଃ ॥ ୨୯ ॥**

ସର୍ବଭୂତସ୍ଥମ୍, ଆତ୍ମାନମ୍, ସର୍ବଭୂତାନି, ଚ, ଆତ୍ମନି, ଈକ୍ଷତେ, ଯୋଗଯୁକ୍ତାତ୍ମା, ସର୍ବତ୍ର, ସମଦର୍ଶନଃ ।।୨୯।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଯୋଗଯୁକ୍ତାତ୍ମା | = ସର୍ବବ୍ୟାପୀ ଅନନ୍ତଚେତନରେ ଏକୀ ଭାବରେ ସ୍ଥିତିରୂପ ଯୋଗଦ୍ୱାରା ଯୁକ୍ତ ଆତ୍ମବାନ୍ (ତଥା) | ଆତ୍ମାନମ୍ | = ଆତ୍ମାକୁ |
| | | ସର୍ବଭୂତସ୍ଥମ୍ | = ସକଳ ଭୂତଙ୍କ ଭିତରେ ଥିବା |
| | | ଚ | = ଓ |
| | | ସର୍ବଭୂତାନି | = ସକଳ ଭୂତଙ୍କୁ |
| ସର୍ବତ୍ର | = ସର୍ବତ୍ର | ଆତ୍ମନି | = ଆତ୍ମାରେ (କଳ୍ପିତ) |
| ସମଦର୍ଶନଃ | = ସମଭାବରେ ଦେଖୁଥିବା ଯୋଗୀ | ଈକ୍ଷତେ | = ଦେଖନ୍ତି । |

ସର୍ବତ୍ର ଭଗବଦ୍ ଦର୍ଶନର ଫଳ ।

**ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂ ଚ ମୟି ପଶ୍ୟତି ।**
**ତସ୍ୟାହଂ ନ ପ୍ରଣଶ୍ୟାମି ସ ଚ ମେ ନ ପ୍ରଣଶ୍ୟତି ॥ ୩୦ ॥**

ଯଃ, ମାମ୍, ପଶ୍ୟତି, ସର୍ବତ୍ର, ସର୍ବମ୍, ଚ, ମୟି, ପଶ୍ୟତି, ତସ୍ୟ, ଅହମ୍, ନ, ପ୍ରଣଶ୍ୟାମି, ସଃ, ଚ, ମେ, ନ, ପ୍ରଣଶ୍ୟତି ।।୩୦।।

ଏବଂ—

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | | ଅର୍ଥାତ୍ |
| ସର୍ବତ୍ର | = ସକଳ ପ୍ରାଣୀଙ୍କ | | ବାସୁଦେବଙ୍କର |
| | ଠାରେ | | ଅନ୍ତର୍ଗତ* |
| ମାମ୍ | = ସକଳଙ୍କର | ପଶ୍ୟତି | = ଦେଖେ, |
| | ଆତ୍ମରୂପକ | ତସ୍ୟ | = ତାଙ୍କ ପାଇଁ |
| | ମୋତେ ଅର୍ଥାତ୍ | ଅହମ୍ | = ମୁଁ |
| | ବାସୁଦେବଙ୍କୁ | ନ, ପ୍ରଣଶ୍ୟାମି | = ଅଦୃଶ୍ୟ |
| | ହିଁ (ବ୍ୟାପି ରହିଥିବା) | | ହୁଏ ନାହିଁ |
| ପଶ୍ୟତି | = ଦେଖେ | ଚ | = ଓ (କି) |
| ଚ | = ଓ | ସଃ | = ସେ |
| ସର୍ବମ୍ | = ସକଳ ପ୍ରାଣୀଙ୍କୁ | ମେ | = ମୋ ପାଇଁ |
| ମୟି | = ମୋ'ଠାରେ | ନ, ପ୍ରଣଶ୍ୟତି | = ଅଦୃଶ୍ୟ ହୁଏ ନାହିଁ । |

ଭକ୍ତିଯୋଗଦ୍ୱାରା ତଥା ସାଂଖ୍ୟଯୋଗ ଦ୍ୱାରା ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କ ଲକ୍ଷଣ ଏବଂ ମହତ୍ତ୍ୱର ନିରୂପଣ ।

**ସର୍ବଭୂତସ୍ଥିତଂ ଯୋ ମାଂ ଭଜତ୍ୟେକତ୍ୱମାସ୍ଥିତଃ ।**
**ସର୍ବଥା ବର୍ତ୍ତମାନୋଽପି ସ ଯୋଗୀ ମୟି ବର୍ତ୍ତତେ ॥ ୩୧ ॥**

ସର୍ବଭୂତସ୍ଥିତମ୍, ଯଃ, ମାମ୍, ଭଜତି, ଏକତ୍ୱମ୍, ଆସ୍ଥିତଃ,
ସର୍ବଥା, ବର୍ତ୍ତମାନଃ, ଅପି, ସଃ, ଯୋଗୀ, ମୟି, ବର୍ତ୍ତତେ ।।୩୧ ।।

ଏହିପରି—

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | | ରୂପରେ ସ୍ଥିତ |
| ଏକତ୍ୱମ୍ | = ଏକୀଭାବରେ | ମାମ୍ | = ମୋତେ ଅର୍ଥାତ୍ |
| ଆସ୍ଥିତଃ | = ସ୍ଥିତ ହୋଇ | | ସଚ୍ଚିଦାନନ୍ଦଘନ |
| ସର୍ବଭୂତସ୍ଥିତମ୍ | = ସମସ୍ତ ପ୍ରାଣୀଙ୍କ | | ବାସୁଦେବଙ୍କୁ |
| | ଠାରେ ଆତ୍ମ- | ଭଜତି | = ଭଜନ୍ତି, |

* ଗୀତା ଅଧ୍ୟାୟ ୯ ଶ୍ଳୋକ ୬ ଦେଖିବା ଉଚିତ ।

| | | | |
|---|---|---|---|
| ସଃ | = ସେହି | ଅପି | = ମଧ୍ୟ |
| ଯୋଗୀ | = ଯୋଗୀ | ମୟି, ବର୍ତ୍ତତେ | = ମୋ ସହିତ ହିଁ ସବୁକିଛି କରୁଥାନ୍ତି ଅର୍ଥାତ୍ ମୋ'ଠାରେ ହିଁ ସ୍ଥିତ । |
| ସର୍ବଥା | = ସକଳ ପ୍ରକାରେ | | |
| ବର୍ତ୍ତମାନଃ | = କ୍ରିୟାକଳାପ କରୁଥିଲେ | | |

**ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜୁନ ।**
**ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋ ମତଃ ॥ ୩୨ ॥**

ଆତ୍ମୌପମ୍ୟେନ, ସର୍ବତ୍ର, ସମମ୍, ପଶ୍ୟତି, ଯଃ, ଅର୍ଜୁନ,
ସୁଖମ୍, ବା, ଯଦି, ବା, ଦୁଃଖମ୍, ସଃ, ଯୋଗୀ, ପରମଃ, ମତଃ ।।୩୨ ।।

ଏବଂ—

| | | | |
|---|---|---|---|
| ଅର୍ଜୁନ | = ହେ ଅର୍ଜୁନ ! | ଦୁଃଖମ୍ | = ଦୁଃଖକୁ (ମଧ୍ୟ ସମସ୍ତଙ୍କ ଠାରେ ସମ ଦେଖନ୍ତି), |
| ଯଃ | = ଯେଉଁ ଯୋଗୀ | | |
| ଆତ୍ମୌପମ୍ୟେନ | = ନିଜପରି* | | |
| ସର୍ବତ୍ର | = ସମସ୍ତ ଭୂତଙ୍କଠାରେ | ସଃ | = ସେହି |
| ସମମ୍ | = ସମାନ | ଯୋଗୀ | = ଯୋଗୀ |
| ପଶ୍ୟତି | = ଦେଖନ୍ତି | ପରମଃ | = ଶ୍ରେଷ୍ଠତମ (ବୋଲି) |
| ବା | = ଓ | | |
| ସୁଖମ୍ | = ସୁଖ | ମତଃ | = ସ୍ୱୀକାର କରାଯାଏ । |
| ଯଦି, ବା | = ଅଥବା | | |

* ଯେପରି ମନୁଷ୍ୟ ନିଜର ମସ୍ତକ, ହାତ, ପାଦ ଏବଂ ମଳଦ୍ୱାର ଆଦିକୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏବଂ ମ୍ଳେଚ୍ଛାଦିଙ୍କ-ପରି ବ୍ୟବହାର କରି ମଧ୍ୟ ସେମାନଙ୍କ ଠାରେ ଆତ୍ମଭାବ ଅର୍ଥାତ୍ ନିଜତ୍ୱଭାବ ସମାନ ହେବାରୁ, ସୁଖ ଏବଂ ଦୁଃଖକୁ ସମାନଭାବେ ଦେଖେ, ସେହିପରି ସବୁପ୍ରାଣୀଙ୍କୁ ଦେଖିବା 'ନିଜପରି' ସମ ଦେଖିବା ।

ମନର ଚଞ୍ଚଳତା ହେତୁ ସମତ୍ୱଯୋଗରେ ସ୍ଥିରତା ତଥା ମନର ନିଗ୍ରହ କଠିନ ବୋଲି ଅର୍ଜୁନଙ୍କ ଉକ୍ତି ।

*ଅର୍ଜୁନ ଉବାଚ*

ଯୋଽୟଂ ଯୋଗସ୍ତ୍ୱୟା ପ୍ରୋକ୍ତଃ ସାମ୍ୟେନ ମଧୁସୂଦନ ।
ଏତସ୍ୟାହଂ ନ ପଶ୍ୟାମି ଚଞ୍ଚଳତ୍ୱାତ୍‌ସ୍ଥିତିଂ ସ୍ଥିରାମ୍ ॥ ୩୩ ॥

ଯଃ, ଅୟମ୍, ଯୋଗଃ, ତ୍ୱୟା, ପ୍ରୋକ୍ତଃ, ସାମ୍ୟେନ, ମଧୁସୂଦନ,
ଏତସ୍ୟ, ଅହମ୍, ନ, ପଶ୍ୟାମି, ଚଞ୍ଚଳତ୍ୱାତ୍, ସ୍ଥିତିମ୍, ସ୍ଥିରାମ୍ । ।୩୩ । ।

**ଏହିପରି ଭଗବାନଙ୍କ ବଚନକୁ ଶୁଣି,**
**ଅର୍ଜୁନ କହିଲେ—**

| | | | |
|---|---|---|---|
| ମଧୁସୂଦନ | = ହେ ମଧୁସୂଦନ ! | ଚଞ୍ଚଳତ୍ୱାତ୍ | = (ମନର) ଚଞ୍ଚଳତା ହେତୁ |
| ଅୟମ୍ | = ଏହି | ଅହମ୍ | = ମୁଁ |
| ଯଃ | = ଯେଉଁ | ଏତସ୍ୟ | = ଏହାର |
| ଯୋଗଃ | = ଯୋଗ (ସମତ୍ୱ ଯୋଗ) | ସ୍ଥିରାମ୍ | = ନିତ୍ୟ |
| ତ୍ୱୟା | = ଆପଣଙ୍କ ଦ୍ୱାରା | ସ୍ଥିତିମ୍ | = ସ୍ଥିତି |
| ସାମ୍ୟେନ | = ସମଭାବରେ | ନ, ପଶ୍ୟାମି | = ଦେଖିପାରୁ ନାହିଁ । |
| ପ୍ରୋକ୍ତଃ | = କୁହାଗଲା | | |

ଚଞ୍ଚଳଂ ହି ମନଃ କୃଷ୍ଣ ପ୍ରମାଥି ବଳବଦ୍‌ଦୃଢମ୍ ।
ତସ୍ୟାହଂ ନିଗ୍ରହଂ ମନ୍ୟେ ବାୟୋରିବ ସୁଦୁଷ୍କରମ୍ ॥ ୩୪ ॥

ଚଞ୍ଚଳମ୍, ହି, ମନଃ, କୃଷ୍ଣ, ପ୍ରମାଥି, ବଳବତ୍, ଦୃଢମ୍,
ତସ୍ୟ, ଅହମ୍, ନିଗ୍ରହମ୍, ମନ୍ୟେ, ବାୟୋଃ, ଇବ, ସୁଦୁଷ୍କରମ୍ । ।୩୪ । ।

| | | | |
|---|---|---|---|
| ହି | = କାରଣ | ପ୍ରମାଥି | = ଇନ୍ଦ୍ରିୟକ୍ଷୋଭକାରୀ, |
| କୃଷ୍ଣ | = ହେ ଶ୍ରୀକୃଷ୍ଣ ! | ଦୃଢମ୍ | = ଦୃଢ଼ (ଜିଦ୍‌ଖୋର) ଓ |
| ମନଃ | = (ଏହି ) ମନ | ବଳବତ୍ | = ବଳବାନ୍ ଅଟେ । |
| ଚଞ୍ଚଳମ୍ | = ବଡ଼ ଚଞ୍ଚଳ, | (ଅତଃ) | = ଏଣୁ |

| | | | | | |
|---|---|---|---|---|---|
| ତସ୍ୟ | = | ତାହାକୁ | ଇବ | = | ପରି |
| ନିଗ୍ରହମ୍ | = | ବଶ କରିବା | ସୁଦୁଷ୍କରମ୍ | = | ଅତ୍ୟନ୍ତ ଦୁଷ୍କର |
| ଅହମ୍ | = | ମୁଁ | ମନ୍ୟେ | = | ମନେ |
| ବାୟୋଃ | = | ବାୟୁକୁ ରୋକିବା | | | କରୁଛି । |

*ଶ୍ରୀଭଗବାନ ଉବାଚ*

ଅଭ୍ୟାସ ଏବଂ ବୈରାଗ୍ୟ ଦ୍ୱାରା ମନ ବଶରେ ରହେ ବୋଲି କଥନ ।

ଅସଂଶୟଂ ମହାବାହୋ ମନୋ ଦୁର୍ନିଗ୍ରହଂ ଚଳମ୍ ।
ଅଭ୍ୟାସେନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟତେ ॥ ୩୫ ॥

ଅସଂଶୟମ୍, ମହାବାହୋ, ମନଃ, ଦୁର୍ନିଗ୍ରହମ୍, ଚଳମ୍ ।
ଅଭ୍ୟାସେନ, ତୁ, କୌନ୍ତେୟ, ବୈରାଗ୍ୟେଣ, ଚ, ଗୃହ୍ୟତେ ।।୩୫ ।।

**ଏହିପରି ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେଇ ଭଗବାନ୍ କହିଲେ—**

| | | | | | |
|---|---|---|---|---|---|
| ମହାବାହୋ | = | ହେ ମହାବାହୁ ! | ଅଭ୍ୟାସେନ | = | (ଏହା) ଅଭ୍ୟାସ ଦ୍ୱାରା* |
| ଅସଂଶୟମ୍ | = | ନିଃସନ୍ଦେହ | | | |
| ମନଃ | = | ମନ | | | |
| ଚଳମ୍ | = | ଚଞ୍ଚଳ | | | |
| ଦୁର୍ନିଗ୍ରହମ୍ | = | (ଓ) କଷ୍ଟରେ ବଶୀଭୂତ ହୁଏ; | ଚ | = | ଓ |
| | | | ବୈରାଗ୍ୟେଣ | = | ବୈରାଗ୍ୟଦ୍ୱାରା |
| ତୁ | = | କିନ୍ତୁ | ଗୃହ୍ୟତେ | = | ସଂଯତ |
| କୌନ୍ତେୟ | = | ହେ କୁନ୍ତୀପୁତ୍ର ଅର୍ଜୁନ ! | | | ହୋଇଥାଏ । |

* ଠିକ୍ ଏହି ଆଶୟର ସୂତ୍ର ପାତଞ୍ଜଳ ଯୋଗଦର୍ଶନରେ ରହିଛି—'ଅଭ୍ୟାସ ବୈରାଗ୍ୟାଭ୍ୟାଂ ତନ୍ନିରୋଧଃ' (୧/୧୨)—ଅର୍ଥାତ୍ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ଚିତ୍ତବୃତ୍ତିମାନଙ୍କୁ ନିରୋଧ କରାଯାଏ । ଏବଂ ଏହା ଗୀତା ଅଧ୍ୟାୟ ୧୨ ଶ୍ଳୋକ ୯ ରେ ବିସ୍ତାରଭାବେ କୁହାଯାଇଛି ।

ମନର ନିଗ୍ରହରେ ଧ୍ୟାନଯୋଗର ପ୍ରାପ୍ତି ।

**ଅସଂଯତାତ୍ମନା ଯୋଗୋ ଦୁଷ୍ପ୍ରାପ ଇତି ମେ ମତିଃ ।**
**ବଶ୍ୟାତ୍ମନା ତୁ ଯତତା ଶକ୍ୟୋଽବାପ୍ତୁମୁପାୟତଃ ॥ ୩୬ ॥**

ଅସଂଯତାତ୍ମନା, ଯୋଗଃ, ଦୁଷ୍ପ୍ରାପଃ, ଇତି, ମେ, ମତିଃ,
ବଶ୍ୟାତ୍ମନା, ତୁ, ଯତତା, ଶକ୍ୟଃ, ଅବାପ୍ତୁମ୍, ଉପାୟତଃ ।।୩୬ ।।

### କାହିଁକି ନା—

| | | | |
|---|---|---|---|
| ଅସଂଯତାତ୍ମନା | = ଯାହାର ମନ ସଂଯତ ହୋଇ ନାହିଁ , ତାହା ଦ୍ୱାରା | ଯତତା | = ପ୍ରଯତ୍ନଶୀଳ ପୁରୁଷଙ୍କ ଦ୍ୱାରା |
| ଯୋଗଃ | = ଯୋଗ | ଉପାୟତଃ | = ସାଧନା ବଳରେ |
| ଦୁଷ୍ପ୍ରାପଃ | = ଦୁଷ୍ପ୍ରାପ୍ୟ | ଅବାପ୍ତୁମ୍ | = (ତାହା) ପ୍ରାପ୍ତ ହେବା |
| ତୁ | = ଏବଂ | ଶକ୍ୟଃ | = ସହଜ ଅଟେ |
| ବଶ୍ୟାତ୍ମନା | = ମନକୁ ବଶ କରିଥିବା | ଇତି | = ବୋଲି |
| | | ମେ | = ମୋର |
| | | ମତିଃ | = ମତ ଅଟେ । |

### *ଅର୍ଜୁନ ଉବାଚ*

ଯୋଗଭ୍ରଷ୍ଟ ପୁରୁଷଙ୍କ ଗତି ସମ୍ବନ୍ଧରେ ଅର୍ଜୁନଙ୍କ ପ୍ରଶ୍ନ ଏବଂ ଉଭୟଭ୍ରଷ୍ଟ ହେବାର ଆଶଙ୍କା ପ୍ରକାଶ ।

**ଅୟତିଃ ଶ୍ରଦ୍ଧୟୋପେତୋ ଯୋଗାଚ୍ଚଳିତମାନସଃ ।**
**ଅପ୍ରାପ୍ୟ ଯୋଗସଂସିଦ୍ଧିଂ କାଂ ଗତିଂ କୃଷ୍ଣ ଗଚ୍ଛତି ॥ ୩୭ ॥**

ଅୟତିଃ, ଶ୍ରଦ୍ଧୟା, ଉପେତଃ, ଯୋଗାତ୍, ଚଳିତମାନସଃ,
ଅପ୍ରାପ୍ୟ, ଯୋଗସଂସିଦ୍ଧିମ୍, କାମ୍, ଗତିମ୍, କୃଷ୍ଣ, ଗଚ୍ଛତି ।।୩୭ ।।

| | | | |
|---|---|---|---|
| କୃଷ୍ଣ | = ହେ ଶ୍ରୀକୃଷ୍ଣ ! | ଅୟତିଃ | = (କିନ୍ତୁ) ଯେ ସଂଯମୀ ନୁହେଁ (ଓ ସେହି କାରଣରୁ) |
| ଶ୍ରଦ୍ଧୟା, ଉପେତଃ | = ଯେ ଯୋଗରେ ଶ୍ରଦ୍ଧା ରଖେ | | |

| | | | |
|---|---|---|---|
| ଯୋଗାତ୍‌-ଚଳିତମାନସଃ | = ଅନ୍ତକାଳରେ ଯାହାଙ୍କର ମନ ଯୋଗରୁ ବିଚଳିତ ହୋଇଯାଏ, (ସେପରି ସାଧକ ଯୋଗୀ) | ଯୋଗସଂସିଦ୍ଧିମ୍ | = ଯୋଗସିଦ୍ଧିକୁ ଅର୍ଥାତ୍ ଭଗବତ୍ ସାକ୍ଷାତକାରକୁ |
| | | ଅପ୍ରାପ୍ୟ | = ପ୍ରାପ୍ତ ନ ହୋଇ |
| | | କାମ୍ | = କେଉଁ |
| | | ଗତିମ୍ | = ଗତିକୁ |
| | | ଗଚ୍ଛତି | = ପ୍ରାପ୍ତ ହୁଏ ? |

**କଚ୍ଚିନ୍ନୋଭୟବିଭ୍ରଷ୍ଟଶ୍ଛିନ୍ନାଭ୍ରମିବ ନଶ୍ୟତି ।**
**ଅପ୍ରତିଷ୍ଠୋ ମହାବାହୋ ବିମୂଢ଼ୋ ବ୍ରହ୍ମଣଃ ପଥି ॥ ୩୮ ॥**

କଚ୍ଚିତ୍, ନ, ଉଭୟବିଭ୍ରଷ୍ଟଃ, ଛିନ୍ନାଭ୍ରମ୍, ଇବ, ନଶ୍ୟତି,
ଅପ୍ରତିଷ୍ଠଃ, ମହାବାହୋ, ବିମୂଢ଼ଃ, ବ୍ରହ୍ମଣଃ, ପଥି ।।୩୮ ।।

ଏବଂ—

| | | | |
|---|---|---|---|
| ମହାବାହୋ | = ହେ ମହାବାହୁ ! | ଛିନ୍ନାଭ୍ରମ୍ | = ଛିନ୍ନଭିନ୍ନ ମେଘ |
| କଚ୍ଚିତ୍ | = କଣ (ସେହି) | ଇବ | = ପରି |
| ବ୍ରହ୍ମଣଃ, ପଥି | = ଭଗବତ୍ ପ୍ରାପ୍ତି ମାର୍ଗରେ | ଉଭୟବିଭ୍ରଷ୍ଟଃ | = ଉଭୟ ଦିଗରୁ ଭ୍ରଷ୍ଟ ହୋଇ |
| ବିମୂଢ଼ଃ | = ମୋହିତ (ଓ) | | |
| ଅପ୍ରତିଷ୍ଠଃ | = ଆଶ୍ରୟରହିତ ହୋଇଯାଇଥିବା ପୁରୁଷ | ନ, ନଶ୍ୟତି | = ନଷ୍ଟ ହୋଇଯାଏ ନାହିଁ କି ? |

ସଂଶୟ ନିବାରଣ ପାଇଁ ଭଗବାନଙ୍କ ନିକଟରେ ଅର୍ଜୁନଙ୍କ ପ୍ରାର୍ଥନା ।

**ଏତନ୍ମେ ସଂଶୟଂ କୃଷ୍ଣ ଛେତ୍ତୁମର୍ହସ୍ୟଶେଷତଃ ।**
**ତ୍ୱଦନ୍ୟଃ ସଂଶୟସ୍ୟାସ୍ୟ ଛେତ୍ତା ନ ହ୍ୟୁପପଦ୍ୟତେ ॥ ୩୯ ॥**

ଏତତ୍, ମେ, ସଂଶୟମ୍, କୃଷ୍ଣ, ଛେତ୍ତୁମ୍, ଅର୍ହସି, ଅଶେଷତଃ,
ତ୍ୱଦନ୍ୟଃ, ସଂଶୟସ୍ୟ, ଅସ୍ୟ, ଛେତ୍ତା, ନ, ହି, ଉପପଦ୍ୟତେ ।।୩୯ ।।

| | | | |
|---|---|---|---|
| କୃଷ୍ଣ | = ହେ ଶ୍ରୀକୃଷ୍ଣ ! | ତ୍ୱଦନ୍ୟଃ | = ଆପଣଙ୍କୁ ଛାଡ଼ିଦେଲେ ଅନ୍ୟ କେହି |
| ମେ | = ମୋର | ଅସ୍ୟ | = ଏହି |
| ଏତତ୍ | = ଏହି | ସଂଶୟସ୍ୟ | = ସଂଶୟର |
| ସଂଶୟମ୍ | = ସଂଶୟକୁ | ଛେତ୍ତା | = ଛେଦନକାରୀ |
| ଅଶେଷତଃ | = ସମ୍ପୂର୍ଣ୍ଣ ରୂପେ | ନ,ଉପପଦ୍ୟତେ | = ମିଳିବା ସମ୍ଭବ ନୁହେଁ । |
| ଛେତ୍ତୁମ୍ | = ଛେଦନ କରିବାକୁ | | |
| ଅର୍ହସି | = ଆପଣ ହିଁ ସମର୍ଥ ଅଟନ୍ତି; | | |
| ହି | = କାରଣ | | |

*ଶ୍ରୀଭଗବାନ ଉବାଚ*

ଅର୍ଜୁନଙ୍କ ଶଂକାର ଉତ୍ତରରେ ଯୋଗଭ୍ରଷ୍ଟ ପୁରୁଷଙ୍କ ଦୁର୍ଗତିର ନିଷେଧ ବୋଲିଛନ୍ତି ।

**ପାର୍ଥ ନୈବେହ ନାମୁତ୍ର ବିନାଶସ୍ତସ୍ୟ ବିଦ୍ୟତେ ।**
**ନ ହି କଲ୍ୟାଣକୃତ୍ କଶ୍ଚିଦ୍ଦୁର୍ଗତିଂ ତାତ ଗଚ୍ଛତି ॥ ୪୦ ॥**

ପାର୍ଥ, ନ, ଏବ, ଇହ, ନ, ଅମୁତ୍ର, ବିନାଶଃ, ତସ୍ୟ, ବିଦ୍ୟତେ,
ନ, ହି, କଲ୍ୟାଣକୃତ୍, କଶ୍ଚିତ୍, ଦୁର୍ଗତିମ୍, ତାତ, ଗଚ୍ଛତି ।।୪୦।।

**ଅର୍ଜୁନଙ୍କ ଏପରି ପଚାରିବାରେ**
**ଭଗବାନ୍ କହିଲେ—**

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ହି | = କାରଣ |
| ତସ୍ୟ | = ସେହି ପୁରୁଷର | ତାତ | = ହେ ପ୍ରିୟ ! |
| ନ | = ନା (ତ) | କଲ୍ୟାଣକୃତ୍ | = ଆତ୍ମୋଦ୍ଧାର ପାଇଁ ଅର୍ଥାତ୍ ଭଗବତ୍ ପ୍ରାପ୍ତି ପାଇଁ କର୍ମ କରୁଥିବା |
| ଇହ | = ଏହି ଲୋକରେ | କଶ୍ଚିତ୍ | = କୌଣସି ବି ପୁରୁଷ |
| ବିନାଶଃ | = ବିନାଶ | ଦୁର୍ଗତିମ୍ | = ଦୁର୍ଗତିକୁ |
| ବିଦ୍ୟତେ | = ହୁଏ | ନ, ଗଚ୍ଛତି | = ପ୍ରାପ୍ତ ହୁଏ ନାହିଁ । |
| ନ | = ନା | | |
| ଅମୁତ୍ର | = ପରଲୋକରେ | | |
| ଏବ | = ହିଁ (ବିନାଶ ହୁଏ); | | |

ଯୋଗଭ୍ରଷ୍ଟ ପୁରୁଷଙ୍କ ସ୍ୱର୍ଗଲୋକ ଏବଂ ପବିତ୍ର ଧନବାନଙ୍କ ଘରେ ଜନ୍ମହେବା ନେଇ କଥନ ।

**ପ୍ରାପ୍ୟ ପୁଣ୍ୟକୃତାଂ ଲୋକାନୁଷିତ୍ୱା ଶାଶ୍ୱତୀଃ ସମାଃ ।**
**ଶୁଚୀନାଂ ଶ୍ରୀମତାଂ ଗେହେ ଯୋଗଭ୍ରଷ୍ଟୋଽଭିଜାୟତେ ॥ ୪୧ ॥**

ପ୍ରାପ୍ୟ, ପୁଣ୍ୟକୃତାମ୍, ଲୋକାନ୍, ଉଷିତ୍ୱା, ଶାଶ୍ୱତୀଃ, ସମାଃ,
ଶୁଚୀନାମ୍, ଶ୍ରୀମତାମ୍, ଗେହେ, ଯୋଗଭ୍ରଷ୍ଟଃ, ଅଭିଜାୟତେ ।।୪୧ ।।

**କିନ୍ତୁ ସେହି—**

| | | | |
|---|---|---|---|
| ଯୋଗଭ୍ରଷ୍ଟଃ | = ଯୋଗଭ୍ରଷ୍ଟ ପୁରୁଷ | ଶାଶ୍ୱତୀଃ | = ବହୁତ |
| ପୁଣ୍ୟକୃତାମ୍ | = ପୁଣ୍ୟବାନ୍‌ମାନଙ୍କର | ସମାଃ | = ବର୍ଷ ପର୍ଯ୍ୟନ୍ତ |
| ଲୋକାନ୍ | = ଲୋକମାନଙ୍କୁ ଅର୍ଥାତ୍ ସ୍ୱର୍ଗାଦି ଉତ୍ତମ ଲୋକକୁ | ଉଷିତ୍ୱା | = ନିବାସ କରି (ପୁଣି) |
| | | ଶୁଚୀନାମ୍ | = ଶୁଦ୍ଧ ଆଚରଣବାନ୍ |
| | | ଶ୍ରୀମତାମ୍ | = ଲକ୍ଷ୍ମୀମନ୍ତ ପୁରୁଷମାନଙ୍କ |
| ପ୍ରାପ୍ୟ | = ପ୍ରାପ୍ତ ହୋଇ (ସେଠାରେ) | ଗେହେ | = ଘରେ |
| | | ଅଭିଜାୟତେ | = ଜନ୍ମ ହୁଅନ୍ତି । |

ବୈରାଗ୍ୟବାନ୍ ଯୋଗଭ୍ରଷ୍ଟଙ୍କ ଜନ୍ମ ଜ୍ଞାନବାନ୍ ଯୋଗୀଙ୍କର ଘରେ ହୁଏ ଏବଂ ସେହି ପୁରୁଷ ପୂର୍ବଜନ୍ମର ବୁଦ୍ଧିଯୋଗକୁ ଅନାୟାସ ହିଁ ପ୍ରାପ୍ତ ହୁଏ ।

**ଅଥବା ଯୋଗିନାମେବ କୁଳେ ଭବତି ଧୀମତାମ୍ ।**
**ଏତଦ୍ଧି ଦୁର୍ଲଭତରଂ ଲୋକେ ଜନ୍ମ ଯଦୀଦୃଶମ୍ ॥ ୪୨ ॥**

ଅଥବା, ଯୋଗିନାମ୍, ଏବ, କୁଳେ, ଭବତି, ଧୀମତାମ୍,
ଏତତ୍, ହି, ଦୁର୍ଲ୍ଲଭତରମ୍, ଲୋକେ, ଜନ୍ମ, ଯତ୍, ଇଦୃଶମ୍ ।।୪୨ ।।

| | | | |
|---|---|---|---|
| ଅଥବା | = ଅଥବା (ବୈରାଗ୍ୟବାନ୍ ପୁରୁଷ ସେସବୁ ଲୋକକୁ ନ ଯାଇ) | ଧୀମତାମ୍ | = ଜ୍ଞାନବାନ୍ |
| | | ଯୋଗିନାମ୍ | = ଯୋଗୀମାନଙ୍କର |
| | | ଏବ | = ହିଁ |
| | | କୁଳେ | = କୁଳରେ |

| | | | |
|---|---|---|---|
| ଭବତି | = ଜନ୍ମ ହୁଏ । | ଲୋକେ | = ସଂସାରରେ |
| ଈଦୃଶମ୍ | = (କିନ୍ତୁ) ଏପରି | ହି | = ନିଃସନ୍ଦେହ |
| ଯତ୍, ଏତତ୍ | = ଏହି ଯେଉଁ | ଦୁର୍ଲ୍ଲଭତରମ୍ | = ଅତ୍ୟନ୍ତ ଦୁର୍ଲ୍ଲଭ ଅଟେ । |
| ଜନ୍ମ | = ଜନ୍ମ (ତାହା) | | |

**ତତ୍ର ତଂ ବୁଦ୍ଧିସଂଯୋଗଂ ଲଭତେ ପୌର୍ବଦେହିକମ୍ ।**
**ଯତତେ ଚ ତତୋ ଭୂୟଃ ସଂସିଦ୍ଧୌ କୁରୁନନ୍ଦନ ॥ ୪୩ ॥**

ତତ୍ର, ତମ୍, ବୁଦ୍ଧିସଂଯୋଗମ୍, ଲଭତେ, ପୌର୍ବଦେହିକମ୍,
ଯତତେ, ଚ, ତତଃ, ଭୂୟଃ, ସଂସିଦ୍ଧୌ, କୁରୁନନ୍ଦନ ।।୪୩।।

**ଏବଂ ସେହି ପୁରୁଷ—**

| | | | |
|---|---|---|---|
| ତତ୍ର | = ସେଠାରେ | ଚ | = ଏବଂ |
| ତମ୍ | = ସେହି | କୁରୁନନ୍ଦନ | = ହେ କୁରୁନନ୍ଦନ ! |
| ପୌର୍ବଦେହିକମ୍ | = ପୂର୍ବଜନ୍ମର ଶରୀରରେ ସଂଗ୍ରହ କରିଥିବା | ତତଃ | = ତାହା ପ୍ରଭାବରୁ (ସେ ପୁଣିଥରେ) |
| ବୁଦ୍ଧିସଂଯୋଗମ୍ | = ବୁଦ୍ଧିର ସଂଯୋଗକୁ ଅର୍ଥାତ୍ ସମବୁଦ୍ଧିରୂପକ ଯୋଗସଂସ୍କାରକୁ | ସଂସିଦ୍ଧୌ | = ପରମାତ୍ମା ପ୍ରାପ୍ତି ରୂପକ ସିଦ୍ଧି ପାଇଁ |
| | | ଭୂୟଃ | = ପୂର୍ବ ଅପେକ୍ଷା ଅଧିକ |
| ଲଭତେ | = (ସହଜରେ ହିଁ) ପାଇଯାଏ | ଯତତେ | = ପ୍ରଯତ୍ନ କରେ । |

ପବିତ୍ର ଧନୀମାନଙ୍କ ଘରେ ଜନ୍ମନେଲେ ବି ପୂର୍ବାଭ୍ୟାସ ବଳରେ ଭଗବାନଙ୍କ ପ୍ରତି ଆକର୍ଷିତ ହେବା ଏବଂ ଯୋଗ ସାଧନାରେ ପ୍ରବୃତ୍ତ ହେବା

**ପୂର୍ବାଭ୍ୟାସେନ ତେନୈବ ହ୍ରିୟତେ ହ୍ୟବଶୋଽପି ସଃ ।**
**ଜିଜ୍ଞାସୁରପି ଯୋଗସ୍ୟ ଶବ୍ଦବ୍ରହ୍ମାତିବର୍ତ୍ତତେ ॥ ୪୪ ॥**

ପୂର୍ବାଭ୍ୟାସେନ, ତେନ, ଏବ, ହ୍ରିୟତେ, ହି, ଅବଶଃ, ଅପି, ସଃ,
ଜିଜ୍ଞାସୁଃ, ଅପି, ଯୋଗସ୍ୟ, ଶବ୍ଦବ୍ରହ୍ମ, ଅତିବର୍ତ୍ତତେ ।।୪୪।।

ଏବଂ—

| | | | |
|---|---|---|---|
| ସଃ | = ସେହି (ଲକ୍ଷ୍ମୀବାନ୍ ଲୋକଙ୍କ ଘରେ ଜନ୍ମ ଗ୍ରହଣ କରିଥିବା ଯୋଗଭ୍ରଷ୍ଟ ପୁରୁଷ) | ହ୍ରିୟତେ | = (ଭଗବାନଙ୍କ ପ୍ରତି) ଆକର୍ଷିତ ହୁଏ |
| ଅବଶଃ | = ପରାଧୀନ ହୋଇ | ଯୋଗସ୍ୟ | = (ତଥା) ସମବୁଦ୍ଧିରୂପକ ଯୋଗର |
| ଅପି | = ମଧ୍ୟ | ଜିଜ୍ଞାସୁଃ | = ଜିଜ୍ଞାସୁ |
| ତେନ | = ସେହି | ଅପି | = ମଧ୍ୟ |
| ପୂର୍ବାଭ୍ୟାସେନ | = ପୂର୍ବାଭ୍ୟାସ ପ୍ରଭାବରେ | ଶବ୍ଦବ୍ରହ୍ମ | = ବେଦକଥିତ ସକାମ କର୍ମର ଫଳକୁ |
| ଏବ | = ହିଁ | ଅତିବର୍ତ୍ତତେ | = ଉଲ୍ଲଙ୍ଘନ କରିଯାଏ । |
| ହି | = ନିଃସନ୍ଦେହ | | |

ଯୋଗୀମାନଙ୍କ କୁଳରେ ଜନ୍ମ ନେଇଥିବା ଯୋଗଭ୍ରଷ୍ଟମାନଙ୍କୁ ପରମ ଗତି ପ୍ରାପ୍ତ ହୁଏ ବୋଲି କଥନ ।

**ପ୍ରଯତ୍ନାଦ୍ ଯତମାନସ୍ତୁ ଯୋଗୀ ସଂଶୁଦ୍ଧକିଲ୍ବିଷଃ ।**
**ଅନେକଜନ୍ମସଂସିଦ୍ଧସ୍ତତୋ ଯାତି ପରାଂ ଗତିମ୍ ॥ ୪୫ ॥**

ପ୍ରଯତ୍ନାତ୍, ଯତମାନଃ, ତୁ, ଯୋଗୀ, ସଂଶୁଦ୍ଧକିଲ୍ବିଷଃ,
ଅନେକଜନ୍ମସଂସିଦ୍ଧଃ, ତତଃ, ଯାତି, ପରାମ୍, ଗତିମ୍ ।।୪୫ ।।

| | | | |
|---|---|---|---|
| ତୁ | = କିନ୍ତୁ | | ଇହଜନ୍ମରେ ସଂସିଦ୍ଧ ହୋଇ |
| ପ୍ରଯତ୍ନାତ୍ | = ପ୍ରଯତ୍ନପୂର୍ବକ | ସଂଶୁଦ୍ଧକିଲ୍ବିଷଃ | = ସମସ୍ତ ପାପରୁ ରହିତ ହୋଇ |
| ଯତମାନଃ | = ଅଭ୍ୟାସ କରୁଥିବା | ତତଃ | = ତତ୍କାଳ ହିଁ |
| ଯୋଗୀ | = ଯୋଗୀ (ତ) | ପରାମ୍, ଗତିମ୍ | = ପରମଗତିକୁ |
| ଅନେକଜନ୍ମ-ସଂସିଦ୍ଧଃ | = ପୂର୍ବର ଅନେକ ଜନ୍ମର ସଂସ୍କାରବଳରେ | ଯାତି | = ପ୍ରାପ୍ତ ହୁଏ । |

ଯୋଗୀଙ୍କ ମହିମାର କଥନ ଏବଂ ଯୋଗୀ ହେବାପାଇଁ ଆଜ୍ଞା ।

**ତପସ୍ୱିଭ୍ୟୋଽଧିକୋ ଯୋଗୀ ଜ୍ଞାନିଭ୍ୟୋଽପି ମତୋଽଧିକଃ ।**
**କର୍ମିଭ୍ୟଶ୍ଚାଧିକୋ ଯୋଗୀ ତସ୍ମାଦ୍‌ଯୋଗୀ ଭବାର୍ଜୁନ ॥ ୪୬ ॥**

ତପସ୍ୱିଭ୍ୟଃ, ଅଧିକଃ, ଯୋଗୀ, ଜ୍ଞାନିଭ୍ୟଃ, ଅପି, ମତଃ, ଅଧିକଃ,
କର୍ମିଭ୍ୟଃ, ଚ, ଅଧିକଃ, ଯୋଗୀ, ତସ୍ମାତ୍, ଯୋଗୀ, ଭବ, ଅର୍ଜୁନ ।।୪୬।।

**କାହିଁକି ନା—**

| | | | |
|---|---|---|---|
| ଯୋଗୀ | = ଯୋଗୀ | କର୍ମିଭ୍ୟଃ | = ସକାମକର୍ମ କରୁଥିବା ଲୋକଙ୍କ ଅପେକ୍ଷା ମଧ୍ୟ |
| ତପସ୍ୱିଭ୍ୟଃ | = ତପସ୍ୱିମାନଙ୍କଠାରୁ | ଯୋଗୀ | = ଯୋଗୀ |
| ଅଧିକଃ | = ଶ୍ରେଷ୍ଠ, | ଅଧିକଃ | = ଶ୍ରେଷ୍ଠ; |
| ଜ୍ଞାନିଭ୍ୟଃ | = ଶାସ୍ତ୍ରଜ୍ଞାନିମାନଙ୍କ ଅପେକ୍ଷା | ତସ୍ମାତ୍ | = ତେଣୁ |
| ଅପି | = ମଧ୍ୟ | ଅର୍ଜୁନ | = ହେ ଅର୍ଜୁନ ! |
| ଅଧିକଃ | = ଶ୍ରେଷ୍ଠ (ବୋଲି) | ଯୋଗୀ | = (ତୁମେ) ଯୋଗୀ |
| ମତଃ | = ଗଣ୍ୟ | ଭବ | = ହୋଇଯାଅ । |
| ଚ | = ଓ | | |

ସମସ୍ତ ଯୋଗୀମାନଙ୍କ ଅପେକ୍ଷା ଅନନ୍ୟପ୍ରେମ ଏବଂ ଶ୍ରଦ୍ଧାପୂର୍ବକ ଭଗବାନଙ୍କ ଭଜନ କରୁଥିବା ଯୋଗୀଙ୍କ ପ୍ରଶଂସା ।

**ଯୋଗିନାମପି ସର୍ବେଷାଂ ମଦ୍‌ଗତେନାନ୍ତରାତ୍ମନା ।**
**ଶ୍ରଦ୍ଧାବାନ୍ ଭଜତେ ଯୋ ମାଂ ସ ମେ ଯୁକ୍ତତମୋ ମତଃ ॥ ୪୭ ॥**

ଯୋଗିନାମ୍, ଅପି, ସର୍ବେଷାମ୍, ମଦ୍‌ଗତେନ, ଅନ୍ତରାତ୍ମନା,
ଶ୍ରଦ୍ଧାବାନ୍, ଭଜତେ, ଯଃ, ମାମ୍, ସଃ, ମେ, ଯୁକ୍ତତମଃ, ମତଃ ।।୪୭।।

**ଏବଂ ହେ ପ୍ରିୟ !—**

| | | | |
|---|---|---|---|
| ସର୍ବେଷାମ୍ | = ସମସ୍ତ | ଅପି | = ବି |
| ଯୋଗିନାମ୍ | = ଯୋଗିମାନଙ୍କ ମଧ୍ୟରେ | ଯଃ | = ଯେଉଁ |
| | | ଶ୍ରଦ୍ଧାବାନ୍ | = ଶ୍ରଦ୍ଧାବାନ୍ ଯୋଗୀ |

| | | | |
|---|---|---|---|
| ମଦ୍‌ଗତେନ | = ମୋଠାରେ ଲାଗିରହିଥିବା | ସଃ | = ସେହି ଯୋଗୀ |
| ଅନ୍ତରାତ୍ମନା | = ଅନ୍ତରାତ୍ମାଦ୍ୱାରା | ମେ | = ମୋ ପକ୍ଷରେ |
| ମାମ୍ | = ମୋତେ | ଯୁକ୍ତତମଃ | = ପରମଶ୍ରେଷ୍ଠ (ବୋଲି) |
| ଭଜତେ | = ନିରନ୍ତର ଭଜେ | ମତଃ | = ମାନ୍ୟ ଅଟେ । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଆତ୍ମସଂଯମଯୋଗୋ ନାମ ଷଷ୍ଠୋଽଧ୍ୟାୟଃ ॥ ୬ ॥*

**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ଆତ୍ମସଂଯମଯୋଗ' ନାମକ ଷଷ୍ଠ ଅଧ୍ୟାୟ ପୂର୍ଣ୍ଣ ହେଲା ।। ୬ ।।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

ଓଁ ଶ୍ରୀପରମାତ୍ମନେ ନମଃ

# ସପ୍ତମ ଅଧ୍ୟାୟ

## ଜ୍ଞାନବିଜ୍ଞାନଯୋଗ

**ପ୍ରଧାନ ବିଷୟ**

| | |
|---|---|
| ୧ ରୁ ୭ | ବିଜ୍ଞାନ ସହିତ ଜ୍ଞାନର ବିଷୟ, |
| ୮ ରୁ ୧୨ | ସମ୍ପୂର୍ଣ୍ଣ ପଦାର୍ଥମାନଙ୍କରେ କାରଣ ରୂପରେ ଭଗବାନଙ୍କ ବ୍ୟାପକତାର କଥନ, |
| ୧୩ ରୁ ୧୯ | ଆସୁରୀ-ସ୍ୱଭାବ ମନୁଷ୍ୟଙ୍କ ନିନ୍ଦା ଏବଂ ଭଗବତ୍ ଭକ୍ତଙ୍କର ପ୍ରଶଂସା, |
| ୨୦ ରୁ ୨୩ | ଅନ୍ୟ ଦେବତା ମାନଙ୍କର ଉପାସନାର ବିଷୟ, |
| ୨୪ ରୁ ୩୦ | ଭଗବାନଙ୍କ ପ୍ରଭାବ ଏବଂ ସ୍ୱରୂପକୁ ଜାଣି ନ ଥିବା ମନୁଷ୍ୟଙ୍କର ନିନ୍ଦା ଏବଂ ଜାଣିଥିବା ଲୋକଙ୍କର ମହିମା । |

*ଶ୍ରୀଭଗବାନ ଉବାଚ*

ସମଗ୍ର ରୂପର ବର୍ଣ୍ଣନା ଶୁଣିବା ପାଇଁ ଅର୍ଜୁନଙ୍କ ପ୍ରତି ଭଗବାନଙ୍କ ଆଜ୍ଞା

**ମୟ୍ୟାସକ୍ତମନାଃ ପାର୍ଥ ଯୋଗଂ ଯୁଞ୍ଜନ୍ମଦାଶ୍ରୟଃ ।**
**ଅସଂଶୟଂ ସମଗ୍ରଂ ମାଂ ଯଥା ଜ୍ଞାସ୍ୟସି ତଚ୍ଛୃଣୁ ॥ ୧ ॥**

ମୟି, ଆସକ୍ତମନାଃ, ପାର୍ଥ, ଯୋଗମ୍, ଯୁଞ୍ଜନ୍, ମଦାଶ୍ରୟଃ,
ଅସଂଶୟମ୍, ସମଗ୍ରମ୍, ମାମ୍, ଯଥା, ଜ୍ଞାସ୍ୟସି, ତତ୍, ଶୃଣୁ ।।୧ ।।

**ଏହାପରେ ଶ୍ରୀକୃଷ୍ଣ ଭଗବାନ୍ କହିଲେ—**

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ମଦାଶ୍ରୟଃ | = (ତଥା) ଅନନ୍ୟଭାବରେ ମୋର ପରାୟଣ ହୋଇ |
| ମୟି, | = ଅନନ୍ୟ ପ୍ରେମରେ | | |
| ଆସକ୍ତମନାଃ | ମୋଠାରେ ଆସକ୍ତଚିତ୍ତ ହୋଇ | | |

| | | | |
|---|---|---|---|
| ଯୋଗମ୍,ଯୁଞ୍ଜନ୍ | = ଯୋଗରତ ହେଲେ (ତୁମେ) | ମାମ୍ | = ମୋତେ |
| ଯଥା | = ଯେପରି ଭାବରେ | ଅସଂଶୟମ୍ | = ନିଃସଂଶୟ ଭାବରେ |
| ସମଗ୍ରମ୍ | = ସକଳ ବିଭୂତି, ବଳ, ଐଶ୍ୱର୍ଯ୍ୟାଦି ଗୁଣଯୁକ୍ତ ଆତ୍ମରୂପ | ଜ୍ଞାସ୍ୟସି | = ଜାଣିବ, |
| | | ତତ୍ | = ତାହା |
| | | ଶୃଣୁ | = ଶୁଣ । |

ବିଜ୍ଞାନ ସହିତ ଜ୍ଞାନର ବର୍ଣ୍ଣନା କରିବା ପାଇଁ ଭଗବାନଙ୍କ ପ୍ରତିଜ୍ଞା ଏବଂ ତାହାର ମହିମା ।

**ଜ୍ଞାନଂ ତେଽହଂ ସବିଜ୍ଞାନମିଦଂ ବକ୍ଷ୍ୟାମ୍ୟଶେଷତଃ ।**
**ଯଜ୍‌ଜ୍ଞାତ୍ୱା ନେହ ଭୂୟୋଽନ୍ୟଜ୍‌ଜ୍ଞାତବ୍ୟମବଶିଷ୍ୟତେ ॥ ୨ ॥**

ଜ୍ଞାନମ୍, ତେ, ଅହମ୍, ସବିଜ୍ଞାନମ୍, ଇଦମ୍, ବକ୍ଷ୍ୟାମି, ଅଶେଷତଃ,
ଯତ୍, ଜ୍ଞାତ୍ୱା, ନ, ଇହ, ଭୂୟଃ, ଅନ୍ୟତ୍, ଜ୍ଞାତବ୍ୟମ୍, ଅବଶିଷ୍ୟତେ ।।୨।।

| | | | |
|---|---|---|---|
| ଅହମ୍ | = ମୁଁ | ଯତ୍ | = ଯାହାକୁ |
| ତେ | = ତୁମକୁ | ଜ୍ଞାତ୍ୱା | = ଜାଣିଗଲେ |
| ଇଦମ୍ | = ଏହି | ଇହ | = ଏହି ସଂସାରରେ |
| ସବିଜ୍ଞାନମ୍ | = ବିଜ୍ଞାନ ସହିତ | ଭୂୟଃ | = ଆଉ |
| | | ଅନ୍ୟତ୍ | = ଅନ୍ୟ କିଛି ବି |
| ଜ୍ଞାନମ୍ | = ତତ୍ତ୍ୱଜ୍ଞାନକୁ | ଜ୍ଞାତବ୍ୟମ୍ | = ଜାଣିବାଯୋଗ୍ୟ |
| ଅଶେଷତଃ | = ସମ୍ପୂର୍ଣ୍ଣଭାବରେ | ନ,ଅବଶିଷ୍ୟତେ | = ବାକି ରହିଯାଏ ନାହିଁ । |
| ବକ୍ଷ୍ୟାମି | = କହିବି, | | |

ଭଗବତ୍ ସ୍ୱରୂପକୁ ତତ୍ତ୍ୱତଃ ଜାଣିବା ମନୁଷ୍ୟଙ୍କ ଦୁର୍ଲଭତାର ପ୍ରତିପାଦନ ।

**ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିଦ୍ୟତତି ସିଦ୍ଧୟେ ।**
**ଯତତାମପି ସିଦ୍ଧାନାଂ କଶ୍ଚିନ୍ମାଂ ବେତ୍ତି ତତ୍ତ୍ୱତଃ ॥ ୩ ॥**

ମନୁଷ୍ୟାଣାମ୍, ସହସ୍ରେଷୁ, କଶ୍ଚିତ୍, ଯତତି, ସିଦ୍ଧୟେ,
ଯତତାମ୍, ଅପି, ସିଦ୍ଧାନାମ୍, କଶ୍ଚିତ୍, ମାମ୍, ବେତ୍ତି, ତତ୍ତ୍ୱତଃ ।।୩।।

**ପରନ୍ତୁ—**

| | | | |
|---|---|---|---|
| ସହସ୍ରେଷୁ | = ହଜାର ହଜାର | ସିଦ୍ଧାନାମ୍ | = ଯୋଗୀମାନଙ୍କ ମଧ୍ୟରୁ |
| ମନୁଷ୍ୟାଣାମ୍ | = ମନୁଷ୍ୟମାନଙ୍କ ମଧ୍ୟରୁ | ଅପି | = ବି |
| କଶ୍ଚିତ୍ | = (କ୍ୱଚିତ୍) କେହି ଜଣେ | କଶ୍ଚିତ୍ | = କ୍ୱଚିତ୍ କେହି ଜଣେ (ମୋର ପରାୟଣ ହୋଇ) |
| ସିଦ୍ଧୟେ | = ମୋର ପ୍ରାପ୍ତିପାଇଁ | ମାମ୍ | = ମୋତେ |
| ଯତତି | = ଯତ୍ନ କରିଥାଏ | ତତ୍ତ୍ୱତଃ | = ତତ୍ତ୍ୱତଃ ଅର୍ଥାତ୍ ଯଥାର୍ଥରୂପେ |
| ଯତତାମ୍ | = (ଓ ସେହି) ଯତ୍ନ କରୁଥିବା | ବେତ୍ତି | = ଜାଣେ । |

ଅପରା ଏବଂ ପରା ପ୍ରକୃତିର ସ୍ୱରୂପ ବର୍ଣ୍ଣନା ।

**ଭୂମିରାପୋଽନଲୋ ବାୟୁଃ ଖଂ ମନୋ ବୁଦ୍ଧିରେବ ଚ ।**
**ଅହଂକାର ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା ॥ ୪ ॥**

**ଅପରେୟମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାମ୍ ।**
**ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ ଜଗତ୍ ॥ ୫ ॥**

ଭୂମିଃ, ଆପଃ, ଅନଳଃ, ବାୟୁଃ, ଖମ୍, ମନଃ, ବୁଦ୍ଧିଃ, ଏବ, ଚ, ଅହଙ୍କାରଃ, ଇତି, ଇୟମ୍, ମେ, ଭିନ୍ନା, ପ୍ରକୃତିଃ, ଅଷ୍ଟଧା ।।୪।।

ଅପରା, ଇୟମ୍, ଇତଃ, ତୁ, ଅନ୍ୟାମ୍, ପ୍ରକୃତିମ୍, ବିଦ୍ଧି, ମେ, ପରାମ୍, ଜୀବଭୂତାମ୍, ମହାବାହୋ, ଯୟା, ଇଦମ୍, ଧାର୍ଯ୍ୟତେ, ଜଗତ୍ ।।୫।।

**ଯେଉଁ ହେ ଅର୍ଜୁନ !—**

| | | | |
|---|---|---|---|
| ଭୂମିଃ | = ପୃଥିବୀ, | ଖମ୍ | = ଆକାଶ, |
| ଆପଃ | = ଜଳ, | ମନଃ | = ମନ, |
| ଅନଳଃ | = ଅଗ୍ନି, | ବୁଦ୍ଧିଃ | = ବୁଦ୍ଧି |
| ବାୟୁଃ | = ବାୟୁ, | ଚ | = ଏବଂ |

| | | | |
|---|---|---|---|
| ଅହଂକାରଃ | = ଅହଂକାର | ମହାବାହୋ | = ହେ ମହାବାହୁ ! |
| ଏବ | = ବି - | ଇତଃ | = ଏହା ଠାରୁ |
| ଇତି, ଇୟମ୍ | = ଏପରି, ଏହି | ଅନ୍ୟାମ୍ | = ଅନ୍ୟ ପ୍ରକୃତି |
| ଅଷ୍ଟଧା | = ଆଠପ୍ରକାରେ | ଯୟା | = ଯାହାଦ୍ୱାରା |
| ଭିନ୍ନା | = ବିଭକ୍ତ | ଇଦମ୍ | = ଏହି (ସମସ୍ତ) |
| ମେ | = ମୋର | ଜଗତ୍ | = ଜଗତ୍ |
| ପ୍ରକୃତିଃ | = ପ୍ରକୃତି ଅଟେ । | ଧାର୍ଯ୍ୟତେ | = ଧାରଣ କରାଯାଇଛି, |
| ଇୟମ୍ | = ଏହି (ଆଠ ପ୍ରକାରେ ବିଭକ୍ତ ହୋଇଥିବା) | ମେ | = (ତାହା) ମୋର |
| | | ଜୀବଭୂତାମ୍ | = ଜୀବରୂପା |
| ତୁ | = ତ | ପରାମ୍ | = ପରା ଅର୍ଥାତ୍ ଚେତନ |
| ଅପରା | = ଅପରା ଅର୍ଥାତ୍ ମୋର ଜଡ ପ୍ରକୃତି; (ଏବଂ) | ପ୍ରକୃତିମ୍, ବିଦ୍ଧି | = ପ୍ରକୃତି (ବୋଲି) ଜାଣ । |

ଉକ୍ତ ଦୁଇ ପ୍ରକାର ପ୍ରକୃତିକୁ ସମସ୍ତ ଭୂତ ପ୍ରାଣୀଙ୍କ କାରଣ ଏବଂ ସ୍ୱୟଂ ମହାକାରଣ ବୋଲି ଭଗବାନଙ୍କ କଥନ ।

**ଏତଦ୍ୟୋନୀନି ଭୂତାନି ସର୍ବାଣୀତ୍ୟୁପଧାରୟ ।**
**ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ ପ୍ରଳୟସ୍ତଥା ॥ ୬ ॥**

ଏତଦ୍ୟୋନୀନି, ଭୂତାନି, ସର୍ବାଣି, ଇତି, ଉପଧାରୟ,
ଅହମ୍, କୃତ୍ସ୍ନସ୍ୟ, ଜଗତଃ, ପ୍ରଭବଃ, ପ୍ରଳୟଃ, ତଥା ।।୬।।

**ଏବଂ ହେ ଅର୍ଜୁନ ! ତୁମେ—**

| | | | |
|---|---|---|---|
| ଇତି | = ଏପରି | | (ପରା ଓ ଅପରା) ପ୍ରକୃତିରୁ ହିଁ ଜାତ ହୋଇଥାନ୍ତି (ଏବଂ) |
| ଉପଧାରୟ | = ଜାଣ ଯେ | ଅହମ୍ | = ମୁଁ |
| ସର୍ବାଣି | = ସକଳ | କୃତ୍ସ୍ନସ୍ୟ | = ସମସ୍ତ |
| ଭୂତାନି | = ଭୂତମାନେ | | |
| ଏତଦ୍ୟୋନୀନି | = ଏହି ଦୁଇ | | |

| | | |
|---|---|---|
| ଜଗତଃ | = ଜଗତର | ଅର୍ଥାତ୍ |
| ପ୍ରଭବଃ | = ଉତ୍ପତ୍ତି | ମୁଁ ସମସ୍ତ |
| ତଥା | = ତଥା | ଜଗତର |
| ପ୍ରଳୟଃ | = ପ୍ରଳୟ ଅଟେ, | ମୂଳ କାରଣ । |

ପରମେଶ୍ୱରଙ୍କ ସର୍ବବ୍ୟାପୀ ସ୍ୱରୂପର କଥନ ।

**ମତ୍ତଃ ପରତରଂ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ ।**
**ମୟି ସର୍ବମିଦଂ ପ୍ରୋତଂ ସୂତ୍ରେ ମଣିଗଣା ଇବ ॥ ୭ ॥**

ମତ୍ତଃ, ପରତରମ୍, ନ, ଅନ୍ୟତ୍, କିଞ୍ଚିତ୍, ଅସ୍ତି, ଧନଞ୍ଜୟ,
ମୟି, ସର୍ବମ୍, ଇଦମ୍, ପ୍ରୋତମ୍, ସୂତ୍ରେ, ମଣିଗଣାଃ, ଇବ ।।୭ ।।

**ଏଥିପାଇଁ—**

| | | | |
|---|---|---|---|
| ଧନଞ୍ଜୟ | = ହେ ଧନଞ୍ଜୟ ! | ସର୍ବମ୍ | = ସମସ୍ତ (ଜଗତ) |
| ମତ୍ତଃ | = ମୋଠାରୁ | ସୂତ୍ରେ | = ସୂତାରେ |
| ଅନ୍ୟତ୍ | = ଭିନ୍ନ ଅନ୍ୟ | ମଣିଗଣାଃ | = ମଣିଗୁଡ଼ିଏ |
| କିଞ୍ଚିତ୍ | = କିଛି ବି | ଇବ | = (ଗୁନ୍ଥା ହୋଇଥିବା) ପରି |
| ପରତରମ୍ | = ପରମ (କାରଣ) | ମୟି | = ମୋ'ଠାରେ |
| ନ, ଅସ୍ତି | = ନାହିଁ । | ପ୍ରୋତମ୍ | = ଗୁନ୍ଥା ହୋଇ ରହିଛି । |
| ଇଦମ୍ | = ଏହି | | |

ରସାଦି ରୂପେ ଜଳାଦିରେ ଭଗବାନଙ୍କ ବ୍ୟାପକତାର କଥନ ।

**ରସୋଽହମପ୍ସୁ କୌନ୍ତେୟ ପ୍ରଭାସ୍ମି ଶଶିସୂର୍ଯ୍ୟୟୋଃ ।**
**ପ୍ରଣବଃ ସର୍ବବେଦେଷୁ ଶବ୍ଦଃ ଖେ ପୌରୁଷଂ ନୃଷୁ ॥ ୮ ॥**

ରସଃ, ଅହମ୍, ଅପ୍ସୁ, କୌନ୍ତେୟ, ପ୍ରଭା, ଅସ୍ମି, ଶଶିସୂର୍ଯ୍ୟୟୋଃ,
ପ୍ରଣବଃ, ସର୍ବବେଦେଷୁ, ଶବ୍ଦଃ, ଖେ, ପୌରୁଷମ୍, ନୃଷୁ ।।୮ ।।

**ଯେପରି—**

| | | | |
|---|---|---|---|
| କୌନ୍ତେୟ | = ହେ ଅର୍ଜୁନ ! | ପ୍ରଣବଃ | = ଓଁକାର (ଅଟେ), |
| ଅହମ୍ | = ମୁଁ | ଖେ | = ଆକାଶରେ |
| ଅପ୍ସୁ | = ଜଳରେ | ଶବ୍ଦଃ | = ଶବ୍ଦ (ଓ) |
| ରସଃ | = ରସ ଅଟେ, | ନୃଷୁ | = ପୁରୁଷମାନଙ୍କ ଠାରେ |
| ଶଶିସୂର୍ଯ୍ୟୟୋଃ | = ଚନ୍ଦ୍ର ଓ ସୂର୍ଯ୍ୟରେ | ପୌରୁଷମ୍ | = ପୁରୁଷତ୍ୱ (ମୁଁ ହିଁ ଅଟେ) । |
| ପ୍ରଭା | = ଆଲୋକ | | |
| ଅସ୍ମି | = ଅଟେ, | | |
| ସର୍ବବେଦେଷୁ | = ସକଳ ବେଦରେ | | |

ଗନ୍ଧାଦିରୂପରେ ପୃଥିବୀ ଆଦିରେ ପରମେଶ୍ୱରଙ୍କ ବ୍ୟାପକତାର କଥନ ।

**ପୁଣ୍ୟୋ ଗନ୍ଧଃ ପୃଥିବ୍ୟାଂ ଚ ତେଜଶ୍ଚାସ୍ମି ବିଭାବସୌ ।**
**ଜୀବନଂ ସର୍ବଭୂତେଷୁ ତପଶ୍ଚାସ୍ମି ତପସ୍ୱିଷୁ ॥ ୯ ॥**

ପୁଣ୍ୟଃ, ଗନ୍ଧଃ, ପୃଥିବ୍ୟାମ୍, ଚ, ତେଜଃ, ଚ, ଅସ୍ମି, ବିଭାବସୌ, ଜୀବନମ୍, ସର୍ବଭୂତେଷୁ, ତପଃ, ଚ, ଅସ୍ମି, ତପସ୍ୱିଷୁ ।।୯।।

**ଏବଂ ମୁଁ—**

| | | | |
|---|---|---|---|
| ପୃଥିବ୍ୟାମ୍ | = (ମୁଁ) ପୃଥିବୀରେ | ସର୍ବଭୂତେଷୁ | = ସକଳ ପ୍ରାଣୀଙ୍କଠାରେ |
| ପୁଣ୍ୟଃ | = ପବିତ୍ର | ଜୀବନମ୍ | = ଜୀବନ |
| ଗନ୍ଧଃ | = ଗନ୍ଧ* | ଚ | = ଓ |
| ଚ | = ଓ | ତପସ୍ୱିଷୁ | = ତପସ୍ୱୀମାନଙ୍କ ଠାରେ |
| ବିଭାବସୌ | = ଅଗ୍ନିରେ | ତପଃ, ଅସ୍ମି | = ତପ ଅଟେ । |
| ତେଜଃ | = ତେଜ | | |
| ଅସ୍ମି | = ଅଟେ | | |
| ଚ | = ତଥା | | |

* ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ—ଏହି ପାଞ୍ଚଟି ତନ୍‌ମାତ୍ରା । ଗନ୍ଧ ଶବ୍ଦ ଏଠାରେ ବିଷୟ ରୂପ ଗନ୍ଧକୁ ସୂଚାଉ ନାହିଁ; ଏହା ପୃଥିବୀର କାରଣରୂପା ଗନ୍ଧ ତନ୍‌ମାତ୍ରାକୁ ସୂଚାଉଛି । ରସ ଓ ଶବ୍ଦକୁ ମଧ୍ୟ ଠିକ୍ ଏହି ପ୍ରକାରେ ତନ୍‌ମାତ୍ରା ବୋଲି ବୁଝିବାକୁ ପଡ଼ିବ ।

ବୀଜାଦିରୂପରେ ସମ୍ପୂର୍ଣ୍ଣ ଭୂତମାନଙ୍କରେ ପରମେଶ୍ୱରଙ୍କ ବ୍ୟାପକତାର କଥନ ।

ବୀଜଂ ମାଂ ସର୍ବଭୂତାନାଂ ବିଦ୍ଧି ପାର୍ଥ ସନାତନମ୍ ।
ବୁଦ୍ଧିର୍ବୁଦ୍ଧିମତାମସ୍ମି ତେଜସ୍ତେଜସ୍ୱିନାମହମ୍ ॥ ୧୦ ॥

ବୀଜମ୍, ମାମ୍, ସର୍ବଭୂତାନାମ୍, ବିଦ୍ଧି, ପାର୍ଥ, ସନାତନମ୍,
ବୁଦ୍ଧିଃ, ବୁଦ୍ଧିମତାମ୍, ଅସ୍ମି, ତେଜଃ, ତେଜସ୍ୱିନାମ୍, ଅହମ୍ ।।୧୦।।

ତଥା—

| | | | |
|---|---|---|---|
| ପାର୍ଥ | = ହେ ଅର୍ଜୁନ ! (ତୁମେ) | ଅହମ୍ | = ମୁଁ |
| ସର୍ବଭୂତାନାମ୍ | = ସକଳ ଭୂତଙ୍କର | ବୁଦ୍ଧିମତାମ୍ | = ବୁଦ୍ଧିମାନ୍ ମାନଙ୍କର |
| ସନାତନମ୍ | = ସନାତନ | ବୁଦ୍ଧିଃ | = ବୁଦ୍ଧି (ଓ) |
| ବୀଜମ୍ | = ବୀଜ | ତେଜସ୍ୱିନାମ୍ | = ତେଜସ୍ୱୀମାନଙ୍କର |
| ମାମ୍ | = ମୋତେ (ହିଁ) | ତେଜଃ | = ତେଜ |
| ବିଦ୍ଧି | = ବୋଲି ଜାଣ । | ଅସ୍ମି | = ଅଟେ । |

ବଳାଦିରୂପରେ ଭଗବାନଙ୍କ ବ୍ୟାପକତାର କଥନ ।

ବଳଂ ବଳବତାଂ ଚାହଂ କାମରାଗବିବର୍ଜିତମ୍ ।
ଧର୍ମାବିରୁଦ୍ଧୋ ଭୂତେଷୁ କାମୋଽସ୍ମି ଭରତର୍ଷଭ ॥ ୧୧ ॥

ବଳମ୍, ବଳବତାମ୍, ଚ, ଅହମ୍, କାମରାଗବିବର୍ଜିତମ୍,
ଧର୍ମାବିରୁଦ୍ଧଃ, ଭୂତେଷୁ, କାମଃ, ଅସ୍ମି, ଭରତର୍ଷଭ ।।୧୧।।

ଏବଂ—

| | | | |
|---|---|---|---|
| ଭରତର୍ଷଭ | = ହେ ଭରତଶ୍ରେଷ୍ଠ ! | ବଳମ୍ | = ବଳ ଅର୍ଥାତ୍ ସାମର୍ଥ୍ୟ ଅଟେ |
| ଅହମ୍ | = ମୁଁ | ଚ | = ଓ |
| ବଳବତାମ୍ | = ବଳବାନ୍‌ମାନଙ୍କର | ଭୂତେଷୁ | = ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ |
| କାମରାଗ-ବିବର୍ଜିତମ୍ | = ଆସକ୍ତି ଓ କାମନାରହିତ | | |

| | | | |
|---|---|---|---|
| ଧର୍ମାବିରୁଦ୍ଧଃ | = ଧର୍ମର ଅବିରୁଦ୍ଧ ଅର୍ଥାତ୍ (ଧର୍ମଯୁକ୍ତ ତଥା ଶାସ୍ତ୍ରାନୁକୂଳ) | କାମଃ | = କାମ |
| | | ଅସ୍ମି | = ଅଟେ । |

ପରମାତ୍ମ ସତ୍ତାରୁ ତ୍ରିଗୁଣମୟ ସକଳ ପଦାର୍ଥ ସତ୍ତାବାନ୍ ହୁଅନ୍ତି ।

**ଯେ ଚୈବ ସାତ୍ତ୍ୱିକା ଭାବା ରାଜସାସ୍ତାମସାଶ୍ଚ ଯେ ।**
**ମତ୍ତ ଏବେତି ତାନ୍ ବିଦ୍ଧି ନ ତ୍ୱହଂ ତେଷୁ ତେ ମୟି ॥ ୧୨ ॥**

ଯେ, ଚ, ଏବ, ସାତ୍ତ୍ୱିକାଃ, ଭାବାଃ, ରାଜସାଃ, ତାମସାଃ, ଚ, ଯେ, ମତ୍ତଃ, ଏବ, ଇତି, ତାନ୍, ବିଦ୍ଧି, ନ, ତୁ, ଅହମ୍, ତେଷୁ, ତେ, ମୟି ।।୧୨।।

**ତଥା—**

| | | | |
|---|---|---|---|
| ଚ, ଏବ | = ଆହୁରି ମଧ୍ୟ | ମତ୍ତଃ, ଏବ | = ମୋଠାରୁ ହିଁ ଉତ୍ପନ୍ନ |
| ଯେ | = ଯେଉଁସବୁ | ଇତି | = ବୋଲି |
| ସାତ୍ତ୍ୱିକାଃ | = ସତ୍ତ୍ୱଗୁଣରୁ ଜାତ | ବିଦ୍ଧି | = ଜାଣ; |
| ଭାବାଃ | = ଭାବମାନ ରହିଛି (ଏବଂ) | ତୁ | = କିନ୍ତୁ (ପ୍ରକୃତରେ)* |
| ଯେ | = ଯେଉଁସବୁ | | |
| ରାଜସାଃ | = ରଜୋଗୁଣରୁ | ତେଷୁ | = ସେସବୁରେ |
| ଚ | = ତଥା | ଅହମ୍ | = ମୁଁ (ନାହିଁ କି) |
| ତାମସାଃ | = ତମୋଗୁଣରୁ ଜାତ ଭାବମାନ ରହିଛି, | ତେ | = ସେସବୁ |
| | | ମୟି | = ମୋ ମଧ୍ୟରେ |
| ତାନ୍ | = ସେସବୁକୁ (ତୁମେ) | ନ | = ନାହାନ୍ତି । |

ଭଗବାନଙ୍କୁ ତତ୍ତ୍ୱତଃ ନ ଜାଣିବାର କାରଣ ।

**ତ୍ରିଭିର୍ଗୁଣମୟୈର୍ଭାବୈରେଭିଃ ସର୍ବମିଦଂ ଜଗତ୍ ।**
**ମୋହିତଂ ନାଭିଜାନାତି ମାମେଭ୍ୟଃ ପରମବ୍ୟୟମ୍ ॥ ୧୩ ॥**

ତ୍ରିଭିଃ, ଗୁଣମୟୈଃ, ଭାବୈଃ, ଏଭିଃ, ସର୍ବମ୍, ଇଦମ୍, ଜଗତ୍, ମୋହିତମ୍, ନ, ଅଭିଜାନାତି, ମାମ୍, ଏଭ୍ୟଃ, ପରମ୍, ଅବ୍ୟୟମ୍ ।।୧୩।।

* ଗୀତା ଅଧ୍ୟାୟ ୯ ଶ୍ଳୋକ ୪-୫ ଦ୍ରଷ୍ଟବ୍ୟ ।

କିନ୍ତୁ—

| | | |
|---|---|---|
| ଗୁଣମୟୈଃ | = | ଗୁଣମାନଙ୍କର କାର୍ଯ୍ୟରୂପ ସାତ୍ତ୍ୱିକ, ରାଜସ ଓ ତାମସ- |
| ଏଭିଃ | = | ଏହି |
| ତ୍ରିଭିଃ | = | ତିନି ପ୍ରକାର |
| ଭାବୈଃ | = | ଭାବମାନଙ୍କ ଦ୍ୱାରା* |
| ଇଦମ୍ | = | ଏହି |
| ସର୍ବମ୍ | = | ସମସ୍ତ |
| ଜଗତ୍ | = | ସଂସାର ଅର୍ଥାତ୍ ପ୍ରାଣୀସମୁଦାୟ |
| ମୋହିତମ୍ | = | ମୋହିତ ହେଉଛି, (ତେଣୁ) |
| ଏଭ୍ୟଃ | = | ଏହି ତିନି ଗୁଣରୁ |
| ପରମ୍ | = | ଅତୀତ ହୋଇଥିବା |
| ମାମ୍ | = | ମୋତେ |
| ଅବ୍ୟୟମ୍ | = | ଅବିନାଶୀ (ବୋଲି) |
| ନ, ଅଭିଜାନାତି | = | ଜାଣିପାରୁ ନାହିଁ । |

ଭଗବାନଙ୍କ ଦୁସ୍ତର ମାୟାକୁ ତରିବା ପାଇଁ ସହଜ ଉପାୟ ।

**ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।**
**ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ ॥ ୧୪ ॥**

ଦୈବୀ, ହି, ଏଷା, ଗୁଣମୟୀ, ମମ, ମାୟା, ଦୁରତ୍ୟୟା,
ମାମ, ଏବ, ଯେ, ପ୍ରପଦ୍ୟନ୍ତେ, ମାୟାମ୍, ଏତାମ୍, ତରନ୍ତି, ତେ ।।୧୪।।

| | | |
|---|---|---|
| ହି | = | କାରଣ |
| ଏଷା | = | ଏହି |
| ଦୈବୀ | = | ଅଲୌକିକ ଅର୍ଥାତ୍ ଅତ୍ୟନ୍ତ ଅଦ୍ଭୁତ |
| ଗୁଣମୟୀ | = | ତ୍ରିଗୁଣମୟୀ |
| ମମ | = | ମୋର |
| ମାୟା | = | ମାୟା |
| ଦୁରତ୍ୟୟା | = | ବଡ଼ ଦୁସ୍ତର,(କିନ୍ତୁ) |
| ଯେ | = | ଯେଉଁମାନେ |
| ମାମ୍, ଏବ | = | କେବଳ ମୋତେ ହିଁ |
| ପ୍ରପଦ୍ୟନ୍ତେ | = | ନିରନ୍ତର ଭଜନ କରନ୍ତି |
| ତେ | = | ସେମାନେ |
| ଏତାମ୍ | = | ଏହି |
| ମାୟାମ୍ | = | ମାୟାକୁ |
| ତରନ୍ତି | = | ଉଲ୍ଲଙ୍ଘନ କରିଯାଆନ୍ତି ଅର୍ଥାତ୍ ସଂସାରରୁ ତରିଯାଆନ୍ତି । |

* ଅର୍ଥାତ୍ ରାଗ-ଦ୍ୱେଷାଦି ବିକାର ଏବଂ ସମ୍ପୂର୍ଣ୍ଣ ବିଷୟମାନଙ୍କ ଦ୍ୱାରା ।

ପାପାତ୍ମା ଏବଂ ମୂଢ଼ ମନୁଷ୍ୟଙ୍କର ଭଗବାନଙ୍କ ଭଜନରେ ପ୍ରବୃତ୍ତି ନ ହେବାର କାରଣ ।

ନ ମାଂ ଦୁଷ୍କୃତିନୋ ମୂଢ଼ାଃ ପ୍ରପଦ୍ୟନ୍ତେ ନରାଧମାଃ ।
ମାୟୟାପହୃତଜ୍ଞାନା ଆସୁରଂ ଭାବମାଶ୍ରିତାଃ ॥ ୧୫ ॥

ନ, ମାମ୍, ଦୁଷ୍କୃତିନଃ, ମୂଢ଼ାଃ, ପ୍ରପଦ୍ୟନ୍ତେ, ନରାଧମାଃ,
ମାୟୟା, ଅପହୃତଜ୍ଞାନାଃ, ଆସୁରମ୍, ଭାବମ୍, ଆଶ୍ରିତାଃ ।।୧୫।।

**ଏହିପରି ସୁଗମ ଉପାୟ ଥିବା ସତ୍ତ୍ୱେବି—**

| | | | |
|---|---|---|---|
| ମାୟୟା | = ମାୟାଦ୍ୱାରା | ନରାଧମାଃ | = ମନୁଷ୍ୟମାନଙ୍କ ମଧ୍ୟରେ ନୀଚ, |
| ଅପହୃତଜ୍ଞାନାଃ | = ଯେଉଁମାନଙ୍କର ଜ୍ଞାନ ଅପହୃତ ହୋଇଯାଇଛି, | ଦୁଷ୍କୃତିନଃ | = ଦୂଷିତକର୍ମ କରୁଥିବା |
| ଆସୁରମ୍, ଭାବମ୍ | = ଆସୁର ସ୍ୱଭାବକୁ | ମୂଢ଼ାଃ | = ମୂଢ଼ ଲୋକେ |
| | | ମାମ୍ | = ମୋତେ |
| ଆଶ୍ରିତାଃ | = ଧାରଣ କରିଥିବା | ନ, ପ୍ରପଦ୍ୟନ୍ତେ | = ଭଜନ କରନ୍ତି ନାହିଁ । |

ଚାରି ପ୍ରକାରର ପୁଣ୍ୟାତ୍ମା ଭକ୍ତଙ୍କ ବର୍ଣ୍ଣନ ।

ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜୁନ ।
ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ ॥ ୧୬ ॥

ଚତୁର୍ବିଧାଃ, ଭଜନ୍ତେ, ମାମ୍, ଜନାଃ, ସୁକୃତିନଃ, ଅର୍ଜୁନ,
ଆର୍ତ୍ତଃ, ଜିଜ୍ଞାସୁଃ, ଅର୍ଥାର୍ଥୀ, ଜ୍ଞାନୀ, ଚ, ଭରତର୍ଷଭ ।।୧୬।।

**ଏବଂ—**

| | | | |
|---|---|---|---|
| ଭରତର୍ଷଭ, ଅର୍ଜୁନ | = ହେ ଭରତବଂଶୀଙ୍କ ମଧ୍ୟରେ ଶ୍ରେଷ୍ଠ ଅର୍ଜୁନ ! | ସୁକୃତିନଃ | = ଉତ୍ତମକର୍ମ କରୁଥିବା |
| | | ଅର୍ଥାର୍ଥୀ | = ଅର୍ଥାର୍ଥୀ * |

* ସାଂସାରିକ ପଦାର୍ଥମାନଙ୍କ ପାଇଁ ଭଜନ କରୁଥିବା ଲୋକେ ।

| | | | |
|---|---|---|---|
| ଆର୍ତ୍ତଃ | = ଆର୍ତ୍ତ [୧] | ଚତୁର୍ବିଧାଃ | = ଚାରିପ୍ରକାର |
| ଜିଜ୍ଞାସୁଃ | = ଜିଜ୍ଞାସୁ [୨] | ଜନାଃ | = ଭକ୍ତଜନ |
| ଚ | = ଓ | ମାମ୍ | = ମୋତେ |
| ଜ୍ଞାନୀ | = ଜ୍ଞାନୀ - (ଏପରି) | ଭଜନ୍ତେ | = ଭଜନ କରନ୍ତି । |

ଜ୍ଞାନୀ ଭକ୍ତଙ୍କ ଶ୍ରେଷ୍ଠତାର କଥନ ।

ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ ଏକଭକ୍ତିର୍ବିଶିଷ୍ୟତେ ।
ପ୍ରିୟୋ ହି ଜ୍ଞାନିନୋଽତ୍ୟର୍ଥମହଂ ସ ଚ ମମ ପ୍ରିୟଃ ॥ ୧୭ ॥

ତେଷାମ୍, ଜ୍ଞାନୀ, ନିତ୍ୟଯୁକ୍ତଃ, ଏକଭକ୍ତିଃ, ବିଶିଷ୍ୟତେ, ପ୍ରିୟଃ, ହି, ଜ୍ଞାନିନଃ, ଅତ୍ୟର୍ଥମ୍, ଅହମ୍, ସଃ, ଚ, ମମ, ପ୍ରିୟଃ ।।୧୭।।

| | | | |
|---|---|---|---|
| ତେଷାମ୍ | = ସେମାନଙ୍କ ମଧ୍ୟରେ | ଜ୍ଞାନିନଃ | = ମୋତେ ତତ୍ତ୍ୱତଃ ଜାଣିଥିବା ଜ୍ଞାନୀଙ୍କର |
| ନିତ୍ୟଯୁକ୍ତଃ | = ମୋ ଠାରେ ନିତ୍ୟ ନିବିଷ୍ଟଚିତ୍ତ | ଅହମ୍ | = ମୁଁ |
| | | ଅତ୍ୟର୍ଥମ୍ | = ଅତ୍ୟନ୍ତ |
| ଏକଭକ୍ତିଃ | = ଅନନ୍ୟ ପ୍ରେମଭକ୍ତି ରଖିଥିବା | ପ୍ରିୟଃ | = ପ୍ରିୟ |
| | | ଚ | = ଏବଂ |
| ଜ୍ଞାନୀ | = ଜ୍ଞାନୀଭକ୍ତ | ସଃ | = ସେହି ଜ୍ଞାନୀ |
| ବିଶିଷ୍ୟତେ | = ଅତ୍ୟନ୍ତ ଉତ୍ତମ; | ମମ | = ମୋର |
| ହି | = କାରଣ | ପ୍ରିୟଃ | = (ଅତ୍ୟନ୍ତ) ପ୍ରିୟ । |

ସମସ୍ତ ଭକ୍ତଙ୍କୁ ଉଦାର ଏବଂ ଜ୍ଞାନୀ ଭକ୍ତଙ୍କୁ ପରମେଶ୍ୱରଙ୍କ ଆତ୍ମା ବୋଲି କହିବା ।

ଉଦାରାଃ ସର୍ବ ଏବୈତେ ଜ୍ଞାନୀ ତ୍ୱାତ୍ମୈବ ମେ ମତମ୍ ।
ଆସ୍ଥିତଃ ସ ହି ଯୁକ୍ତାତ୍ମା ମାମେବାନୁତ୍ତମାଂ ଗତିମ୍ ॥ ୧୮ ॥

ଉଦାରାଃ, ସର୍ବେ, ଏବ, ଏତେ, ଜ୍ଞାନୀ, ତୁ, ଆତ୍ମା, ଏବ, ମେ, ମତମ୍, ଆସ୍ଥିତଃ, ସଃ, ହି, ଯୁକ୍ତାତ୍ମା, ମାମ୍, ଏବ, ଅନୁତ୍ତମାମ୍, ଗତିମ୍।।୧୮।।

---

୧- ସଂକଟ ନିବାରଣ ପାଇଁ ଭଜନ କରୁଥିବା ଲୋକେ ।

୨- ମୋତେ ଯଥାର୍ଥରୂପେ ଜାଣିବା ପାଇଁ ଇଚ୍ଛୁକ ଲୋକେ ।

**ଯଦ୍ୟପି—**

| | | | |
|---|---|---|---|
| ଏତେ | = ଏମାନେ | ହି | = କାରଣ |
| ସର୍ବେ, ଏବ | = ସମସ୍ତେ ହିଁ | ସଃ | = ସେହି |
| ଉଦାରାଃ | = ଉଦାର ଅଟନ୍ତି, | ଯୁକ୍ତାତ୍ମା | = ମଦ୍‌ଗତ ମନବୁଦ୍ଧିସମ୍ପନ୍ନ (ଜ୍ଞାନୀ ଭକ୍ତ) |
| ତୁ | = କିନ୍ତୁ | | |
| ଜ୍ଞାନୀ | = ଜ୍ଞାନୀ (ତ) | | |
| ଆତ୍ମା | = ସାକ୍ଷାତ୍ ମୋର ସ୍ୱରୂପ | ଅନୁତ୍ତମାମ୍ | = ଅତି ଉତ୍ତମ |
| | | ଗତିମ୍ | = ଗତିସ୍ୱରୂପ |
| ଏବ | = ହିଁ (ଅଟନ୍ତି); | ମାମ୍ | = ମୋ'ଠାରେ |
| ମେ | = ମୋର | ଏବ | = ହିଁ |
| ମତମ୍ | = (ଏହା) ମତ ଅଟେ; | ଆସ୍ଥିତଃ | = ଭଲରୂପେ ସ୍ଥିତ ହୋଇଥାନ୍ତି । |

ଜ୍ଞାନୀ ଭକ୍ତଙ୍କ ଦୁର୍ଲ୍ଲଭତାର କଥନ ।

**ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ ।**
**ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲଭଃ ॥ ୧୯ ॥**

ବହୂନାମ୍, ଜନ୍ମନାମ୍, ଅନ୍ତେ, ଜ୍ଞାନବାନ୍, ମାମ୍, ପ୍ରପଦ୍ୟତେ, ବାସୁଦେବଃ, ସର୍ବମ୍, ଇତି, ସଃ, ମହାତ୍ମା, ସୁଦୁର୍ଲ୍ଲଭଃ ।।୧୯।।

**ଏବଂ ଯେ—**

| | | | |
|---|---|---|---|
| ବହୂନାମ୍ | = ବହୁ | ଇତି | = ଏପରି (ଜାଣି) |
| ଜନ୍ମନାମ୍ | = ଜନ୍ମମାନଙ୍କ (ପରେ) | ମାମ୍ | = ମୋତେ |
| ଅନ୍ତେ | = ଶେଷ ଜନ୍ମରେ | ପ୍ରପଦ୍ୟତେ | = ଭଜନ୍ତି |
| ଜ୍ଞାନବାନ୍ | = ଯେଉଁ ତତ୍ତ୍ୱଜ୍ଞାନପ୍ରାପ୍ତ ପୁରୁଷ | ସଃ | = ସେ |
| | | ମହାତ୍ମା | = ମହାତ୍ମା |
| ସର୍ବମ୍ | = ସବୁକିଛି | ସୁଦୁର୍ଲ୍ଲଭଃ | = ଅତ୍ୟନ୍ତ ଦୁର୍ଲ୍ଲଭ । |
| ବାସୁଦେବଃ | = ବାସୁଦେବ ହିଁ (ଅଟନ୍ତି)* | | |

* ଅର୍ଥାତ୍ ବାସୁଦେବଙ୍କ ଛଡ଼ା ଆଉ କିଛି ହିଁ ନାହିଁ ।

ଅନ୍ୟ ଦେବତା ମାନଙ୍କୁ ପୂଜା ଓ ଭଜନ କରିବାର କାରଣ ।

**କାମୈସ୍ତୈସ୍ତୈର୍ହୃତଜ୍ଞାନାଃ ପ୍ରପଦ୍ୟନ୍ତେଽନ୍ୟଦେବତାଃ ।**
**ତଂ ତଂ ନିୟମମାସ୍ଥାୟ ପ୍ରକୃତ୍ୟା ନିୟତାଃ ସ୍ୱୟା ॥ ୨୦ ॥**

କାମୈଃ, ତୈଃ, ତୈଃ, ହୃତଜ୍ଞାନାଃ, ପ୍ରପଦ୍ୟନ୍ତେ, ଅନ୍ୟଦେବତାଃ,
ତମ୍, ତମ୍, ନିୟମମ୍, ଆସ୍ଥାୟ, ପ୍ରକୃତ୍ୟା, ନିୟତାଃ, ସ୍ୱୟା ।।୨୦।।

**ଏବଂ ହେ ଅର୍ଜୁନ ।—**

ତୈଃ, ତୈଃ = ସେହି ସେହି (ନାନାପ୍ରକାର)
କାମୈଃ = ଭୋଗମାନଙ୍କ କାମନାଦ୍ୱାରା
ହୃତଜ୍ଞାନାଃ = ଯେଉଁମାନଙ୍କର ଜ୍ଞାନ ଅପହୃତ ହୋଇଯାଇଛି, (ସେମାନେ)
ସ୍ୱୟା = ନିଜର
ପ୍ରକୃତ୍ୟା = ସ୍ୱଭାବଦ୍ୱାରା
ନିୟତାଃ = ପ୍ରେରିତ ହୋଇ
ତମ୍, ତମ୍ = ସେହି ସେହି
ନିୟମମ୍ = ନିୟମକୁ
ଆସ୍ଥାୟ = ଧାରଣ କରି*
ଅନ୍ୟଦେବତାଃ = ଅନ୍ୟ ଦେବତାମାନଙ୍କୁ
ପ୍ରପଦ୍ୟନ୍ତେ = ଭଜନ୍ତି ଅର୍ଥାତ୍ ପୂଜା କରନ୍ତି ।

ଅନ୍ୟଦେବତା ମାନଙ୍କରେ ଶ୍ରଦ୍ଧା ସ୍ଥିର ରଖିବା ନେଇ କଥନ ।

**ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି ।**
**ତସ୍ୟ ତସ୍ୟାଚଳାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହମ୍ ॥ ୨୧ ॥**

ଯଃ, ଯଃ, ଯାମ୍, ଯାମ୍, ତନୁମ୍, ଭକ୍ତଃ, ଶ୍ରଦ୍ଧୟା, ଅର୍ଚ୍ଚିତୁମ୍, ଇଚ୍ଛତି,
ତସ୍ୟ, ତସ୍ୟ, ଅଚଳାମ୍, ଶ୍ରଦ୍ଧାମ୍, ତାମ୍, ଏବ, ବିଦଧାମି, ଅହମ୍ ।।୨୧।।

ଯଃ, ଯଃ = ଯେଉଁ ଯେଉଁ
ଭକ୍ତଃ = ସକାମ ଭକ୍ତ
ଯାମ୍, ଯାମ୍ = ଯେଉଁ ଯେଉଁ
ତନୁମ୍ = ଦେବତାଙ୍କର ସ୍ୱରୂପକୁ
ଶ୍ରଦ୍ଧୟା = ଶ୍ରଦ୍ଧାରେ

* ଅର୍ଥାତ୍ ଯେଉଁ ଯେଉଁ ଦେବତାଙ୍କ ପୂଜାପାଇଁ ଯେଉଁ ଯେଉଁ ନିୟମ ଲୋକ ପ୍ରସିଦ୍ଧ ପାଇଛି, ସେହି ସେହି ନିୟମକୁ ଧାରଣ କରନ୍ତି ।

| | | | |
|---|---|---|---|
| ଅର୍ଚ୍ଚିତୁମ୍ | = ପୂଜା କରିବାକୁ | ଅହମ୍ | = ମୁଁ |
| ଇଚ୍ଛତି | = ଇଚ୍ଛା କରେ | ତାମ୍, ଏବ | = ସେହି ଦେବତାଙ୍କ ଠାରେ |
| ତସ୍ୟ, ତସ୍ୟ | = ସେହି ସେହି ଭକ୍ତଙ୍କ | ଅଚଳାମ୍ | = ସ୍ଥିର |
| ଶ୍ରଦ୍ଧାମ୍ | = ଶ୍ରଦ୍ଧାକୁ | ବିଦଧାମି | = କରିଦିଏ । |

ଅନ୍ୟ ଦେବତାଙ୍କ ଉପାସନାର ଫଳ ।

**ସ ତୟା ଶ୍ରଦ୍ଧୟା ଯୁକ୍ତସ୍ତସ୍ୟାରାଧନମୀହତେ ।**
**ଲଭତେ ଚ ତତଃ କାମାନ୍ମୟୈବ ବିହିତାନ୍ ହି ତାନ୍ ॥ ୨୨ ॥**

ସଃ, ତୟା, ଶ୍ରଦ୍ଧୟା, ଯୁକ୍ତଃ, ତସ୍ୟ, ଆରାଧନମ୍, ଈହତେ, ଲଭତେ, ଚ, ତତଃ, କାମାନ୍, ମୟା, ଏବ, ବିହିତାନ୍, ହି, ତାନ୍ ।।୨୨।।

**ତଥା—**

| | | | |
|---|---|---|---|
| ସଃ | = ସେହି ଭକ୍ତ | ମୟା | = ମୋ ଦ୍ୱାରା |
| ତୟା | = ସେହି | ଏବ | = ହିଁ |
| ଶ୍ରଦ୍ଧୟା | = ଶ୍ରଦ୍ଧାଦ୍ୱାରା | ବିହିତାନ୍ | = ବିଧାନ କରାଯାଇଥିବା |
| ଯୁକ୍ତଃ | = ଯୁକ୍ତ ହୋଇ | | |
| ତସ୍ୟ | = ସେହି ଦେବତାଙ୍କ | ତାନ୍ | = ସେହି |
| ଆରାଧନମ୍ | = ଆରାଧନା | କାମାନ୍ | = ଇଚ୍ଛିତ ଭୋଗମାନ |
| ଈହତେ | = କରେ | | |
| ଚ | = ଓ | ହି | = ନିଃସନ୍ଦେହ |
| ତତଃ | = ସେହି ଦେବତାଙ୍କ ଠାରୁ | ଲଭତେ | = ଲାଭ କରେ । |

ଅନ୍ୟ ଦେବତାମାନଙ୍କର ଉପାସନାର ଫଳ ନାଶବାନ୍ ତଥା ଭଗବାନଙ୍କର ଉପାସନାର ଫଳ ଭଗବତ୍ ପ୍ରାପ୍ତି ।

**ଅନ୍ତବତ୍ତୁ ଫଳଂ ତେଷାଂ ତଦ୍ଭବତ୍ୟଳ୍ପମେଧସାମ୍ ।**
**ଦେବାନ୍ ଦେବଯଜୋ ଯାନ୍ତି ମଦ୍ଭକ୍ତା ଯାନ୍ତି ମାମପି ॥ ୨୩ ॥**

ଅନ୍ତବତ୍, ତୁ, ଫଳମ୍, ତେଷାମ୍, ତତ୍, ଭବତି, ଅଳ୍ପମେଧସାମ୍, ଦେବାନ୍, ଦେବଯଜଃ, ଯାନ୍ତି, ମଦ୍ଭକ୍ତାଃ, ଯାନ୍ତି, ମାମ୍, ଅପି ।।୨୩।।

ତୁ = ପରନ୍ତୁ
ତେଷାମ୍ = ସେହି
ଅଳ୍ପମେଧସାମ୍ = ଅଳ୍ପବୁଦ୍ଧିମାନଙ୍କର
ତତ୍ = ସେହି
ଫଳମ୍ = ଫଳ
ଅନ୍ତବତ୍ = ନାଶବାନ୍
ଭବତି = ହୁଏ । (ତଥା ସେହି)
ଦେବଯଜଃ = ଦେବତାଙ୍କ ଉପାସକମାନେ
ଦେବାନ୍ = (ସେହି) ଦେବତାଙ୍କୁ
ଯାନ୍ତି = ପ୍ରାପ୍ତ ହୁଅନ୍ତି,
ମଦ୍‌ଭକ୍ତାଃ = କିନ୍ତୁ ମୋର ଭକ୍ତମାନେ (ଯେ କୌଣସି ରୂପରେ ଭଜନ କଲେ ବି ଶେଷରେ)
ମାମ୍ = ମୋତେ
ଅପି = ହିଁ
ଯାନ୍ତି = ପ୍ରାପ୍ତ ହୁଅନ୍ତି ।

ଭଗବାନଙ୍କ ଗୁଣ, ପ୍ରଭାବ ଏବଂ ସ୍ୱରୂପକୁ ନ ଜାଣିବାର କାରଣ ।

**ଅବ୍ୟକ୍ତଂ ବ୍ୟକ୍ତିମାପନ୍ନଂ ମନ୍ୟନ୍ତେ ମାମବୁଦ୍ଧୟଃ ।**
**ପରଂ ଭାବମଜାନନ୍ତୋ ମମାବ୍ୟୟମନୁତ୍ତମମ୍ ॥ ୨୪ ॥**

ଅବ୍ୟକ୍ତମ୍, ବ୍ୟକ୍ତିମ୍, ଆପନ୍ନମ୍, ମନ୍ୟନ୍ତେ, ମାମ୍, ଅବୁଦ୍ଧୟଃ,
ପରମ୍, ଭାବମ୍, ଅଜାନନ୍ତଃ, ମମ, ଅବ୍ୟୟମ୍, ଅନୁତ୍ତମମ୍ ।।୨୪।।

**ଏହିପରି ହୋଇବି ସବୁ ମନୁଷ୍ୟ ମୋର ଭଜନ କରନ୍ତି ନାହିଁ, ଏହାର କାରଣ ଏହି କି—**

ଅବୁଦ୍ଧୟଃ = ବୁଦ୍ଧିହୀନ ମନୁଷ୍ୟମାନେ
ମମ = ମୋର
ଅନୁତ୍ତମମ୍ = ଅନୁତ୍ତମ (ସର୍ବଶ୍ରେଷ୍ଠ)
ଅବ୍ୟୟମ୍ = ଅବିନାଶୀ
ପରମ୍ = ପରମ
ଭାବମ୍ = ଭାବକୁ
ଅଜାନନ୍ତଃ = ନ ଜାଣି
ଅବ୍ୟକ୍ତମ୍ = ଅବ୍ୟକ୍ତ ଅର୍ଥାତ୍ ମନ ଓ ଇନ୍ଦ୍ରିୟମାନଙ୍କ ଠାରୁ ଅତୀତ
ମାମ୍ = ମୋତେ ଅର୍ଥାତ୍ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ (ସାଧାରଣ ମନୁଷ୍ୟପରି ଜନ୍ମ ହୋଇ)
ବ୍ୟକ୍ତିମ୍ = ବ୍ୟକ୍ତିଭାବକୁ
ଆପନ୍ନମ୍ = ପ୍ରାପ୍ତ ହୋଇଥିବା
ମନ୍ୟନ୍ତେ = ମନେ କରନ୍ତି ।

ନାହଂ ପ୍ରକାଶଃ ସର୍ବସ୍ୟ ଯୋଗମାୟାସମାବୃତଃ ।
ମୂଢୋଽୟଂ ନାଭିଜାନାତି ଲୋକୋ ମାମଜମବ୍ୟୟମ୍ ॥ ୨୫ ॥

ନ, ଅହମ୍, ପ୍ରକାଶଃ, ସର୍ବସ୍ୟ, ଯୋଗମାୟାସମାବୃତଃ,
ମୂଢଃ, ଅୟମ୍, ନ, ଅଭିଜାନାତି, ଲୋକଃ, ମାମ୍, ଅଜମ୍, ଅବ୍ୟୟମ୍ ।।୨୫।।

ତଥା—

| | | | |
|---|---|---|---|
| ଯୋଗମାୟା-ସମାବୃତଃ | = ନିଜ ଯୋଗମାୟାରେ ଲୁଚି ରହିଥିବା | ଲୋକଃ | = ଲୋକେ |
| ଅହମ୍ | = ମୁଁ | ମାମ୍ | = ମୋତେ |
| ସର୍ବସ୍ୟ | = ସମସ୍ତଙ୍କର | ଅଜମ୍ | = ଅଜନ୍ମା (ଓ) |
| ପ୍ରକାଶଃ | = ପ୍ରତ୍ୟକ୍ଷ | ଅବ୍ୟୟମ୍ | = ଅବିନାଶୀ ପରମେଶ୍ୱର (ବୋଲି) |
| ନ | = ହୁଏ ନାହିଁ, (ତେଣୁ) | ନ, ଅଭିଜାନାତି | = ଜାଣନ୍ତି ନାହିଁ ଅର୍ଥାତ୍ ମୋତେ ଜନ୍ମ-ମରଣଶୀଳ ବୋଲି ଭାବନ୍ତି । |
| ଅୟମ୍ | = ଏହି | | |
| ମୂଢଃ | = ଅଜ୍ଞାନୀ | | |

ଭଗବାନଙ୍କ ସର୍ବଜ୍ଞତାର କଥନ ।

ବେଦାହଂ ସମତୀତାନି ବର୍ତ୍ତମାନାନି ଚାର୍ଜୁନ ।
ଭବିଷ୍ୟାଣି ଚ ଭୂତାନି ମାଂ ତୁ ବେଦ ନ କଶ୍ଚନ ॥ ୨୬ ॥

ବେଦ, ଅହମ୍, ସମତୀତାନି, ବର୍ତ୍ତମାନାନି, ଚ, ଅର୍ଜୁନ,
ଭବିଷ୍ୟାଣି, ଚ, ଭୂତାନି, ମାମ୍, ତୁ, ବେଦ, ନ, କଶ୍ଚନ ।।୨୬।।

ଏବଂ—

| | | | |
|---|---|---|---|
| ଅର୍ଜୁନ | = ହେ ଅର୍ଜୁନ ! | ସମତୀତାନି | = ଅତୀତରେ ଯେଉଁମାନେ ଥିଲେ |

| | | | |
|---|---|---|---|
| ଚ | = ଓ | ଅହମ୍ | = ମୁଁ |
| ବର୍ତ୍ତମାନାନି | = ବର୍ତ୍ତମାନ ଯେଉଁମାନେ ଅଛନ୍ତି | ବେଦ | = ଜାଣେ, |
| | | ତୁ | = କିନ୍ତୁ |
| ଚ | = ତଥା | ମାମ୍ | = ମୋତେ |
| ଭବିଷ୍ୟାଣି | = ଭବିଷ୍ୟତରେ ଯେଉଁମାନେ ଜାତ ହେବେ ସେହି | କଶ୍ଚନ | = କେହି ବି (ଶ୍ରଦ୍ଧାଭକ୍ତିହୀନ ଲୋକ) |
| ଭୂତାନି | = ସମସ୍ତ ଭୂତମାନଙ୍କୁ | ନ, ବେଦ | = ଜାଣେ ନାହିଁ । |

ଭଗବାନଙ୍କୁ ନ ଜାଣିବାର କାରଣ ।

**ଇଚ୍ଛାଦ୍ୱେଷସମୁତ୍ଥେନ ଦ୍ୱନ୍ଦ୍ୱମୋହେନ ଭାରତ ।**
**ସର୍ବଭୂତାନି ସମ୍ମୋହଂ ସର୍ଗେ ଯାନ୍ତି ପରନ୍ତପ ॥ ୨୭ ॥**

ଇଚ୍ଛାଦ୍ୱେଷସମୁତ୍‌ଥେନ, ଦ୍ୱନ୍ଦ୍ୱମୋହେନ, ଭାରତ,
ସର୍ବଭୂତାନି, ସମ୍ମୋହମ୍, ସର୍ଗେ, ଯାନ୍ତି, ପରନ୍ତପ ।।୨୭।।

**କାହିଁକି ନା—**

| | | | |
|---|---|---|---|
| ଭାରତ | = ହେ ଭରତବଂଶୀ | | ଦ୍ୱନ୍ଦ୍ୱରୂପକ ମୋହଦ୍ୱାରା |
| ପରନ୍ତପ | = ଅର୍ଜୁନ ! | | |
| ସର୍ଗେ | = ସଂସାରରେ | ସର୍ବଭୂତାନି | = ସମସ୍ତ ପ୍ରାଣୀ |
| ଇଚ୍ଛାଦ୍ୱେଷ-ସମୁତ୍‌ଥେନ | = ଇଚ୍ଛା ଓ ଦ୍ୱେଷରୁ ଉତ୍ପନ୍ନ | ସମ୍ମୋହମ୍ | = ମୂଢ଼ତା ଅର୍ଥାତ୍ ଜନ୍ମ-ମୃତ୍ୟୁକୁ |
| ଦ୍ୱନ୍ଦ୍ୱମୋହେନ | = ସୁଖ-ଦୁଃଖାଦି | ଯାନ୍ତି | = ପ୍ରାପ୍ତ ହେଉଛନ୍ତି । |

ଭଗବାନଙ୍କୁ ଭଜନ କରୁଥିବା ଭକ୍ତଙ୍କ ଲକ୍ଷଣ ।

**ଯେଷାଂ ତ୍ୱନ୍ତଗତଂ ପାପଂ ଜନାନାଂ ପୁଣ୍ୟକର୍ମଣାମ୍ ।**
**ତେ ଦ୍ୱନ୍ଦ୍ୱମୋହନିର୍ମୁକ୍ତା ଭଜନ୍ତେ ମାଂ ଦୃଢବ୍ରତାଃ ॥ ୨୮ ॥**

ଯେଷାମ୍, ତୁ, ଅନ୍ତଗତମ୍, ପାପମ୍, ଜନାନାମ୍, ପୁଣ୍ୟକର୍ମଣାମ୍,
ତେ, ଦ୍ୱନ୍ଦ୍ୱମୋହନିର୍ମୁକ୍ତାଃ, ଭଜନ୍ତେ, ମାମ୍, ଦୃଢ଼ବ୍ରତାଃ ।।୨୮।।

| | | | |
|---|---|---|---|
| ତୁ | = କିନ୍ତୁ | ଦ୍ୱନ୍ଦ୍ୱମୋହ- | = ରାଗଦ୍ୱେଷଜନିତ |
| ପୁଣ୍ୟକର୍ମଣାମ୍ | = (ନିଷ୍କାମଭାବରେ) ଶ୍ରେଷ୍ଠ କର୍ମ କରୁଥିବା | ନିର୍ମୁକ୍ତାଃ | ଦ୍ୱନ୍ଦ୍ୱରୂପକ ମୋହରୁ ମୁକ୍ତ ହୋଇଥିବା |
| ଯେଷାମ୍ | = ଯେଉଁ | ଦୃଢ଼ବ୍ରତାଃ | = ଦୃଢ଼ନିଶ୍ଚୟୀ ଭକ୍ତମାନେ |
| ଜନାନାମ୍ | = ପୁରୁଷମାନଙ୍କର | | |
| ପାପମ୍ | = ପାପ | ମାମ୍ | = ମୋତେ |
| ଅନ୍ତଗତମ୍ | = ନଷ୍ଟ ହୋଇଗଲାଣି, | ଭଜନ୍ତେ | = ସକଳପ୍ରକାରେ ଭଜନ୍ତି । |
| ତେ | = ସେହି | | |

ଭଗବାନଙ୍କ ଆଶ୍ରୟ ନେଇ ଯତ୍ନ କରିବା ଲୋକଙ୍କୁ ବ୍ରହ୍ମ ପ୍ରାପ୍ତି ।

**ଜରାମରଣମୋକ୍ଷାୟ ମାମାଶ୍ରିତ୍ୟ ଯତନ୍ତି ଯେ ।**
**ତେ ବ୍ରହ୍ମ ତଦ୍‌ବିଦୁଃ କୃତ୍ସ୍ନମଧ୍ୟାତ୍ମଂ କର୍ମ ଚାଖିଳମ୍ ॥ ୨୯ ॥**

ଜରାମରଣମୋକ୍ଷାୟ, ମାମ୍, ଆଶ୍ରିତ୍ୟ, ଯତନ୍ତି, ଯେ,
ତେ, ବ୍ରହ୍ମ, ତତ୍, ବିଦୁଃ, କୃତ୍ସ୍ନମ୍, ଅଧ୍ୟାତ୍ମମ୍, କର୍ମ, ଚ, ଅଖିଳମ୍ ।।୨୯ ।।

ଏବଂ—

| | | | |
|---|---|---|---|
| ଯେ | = ଯେଉଁମାନେ | ତତ୍ | = ସେହି |
| ମାମ୍ | = ମୋତେ | ବ୍ରହ୍ମ | = ବ୍ରହ୍ମଙ୍କୁ, |
| ଆଶ୍ରିତ୍ୟ | = ଆଶ୍ରା କରି | କୃତ୍ସ୍ନମ୍ | = ସମ୍ପୂର୍ଣ୍ଣ |
| ଜରାମରଣ-ମୋକ୍ଷାୟ | = ଜରା ଓ ମରଣରୁ ମୁକ୍ତି ପାଇବାପାଇଁ | ଅଧ୍ୟାତ୍ମମ୍ | = ଅଧ୍ୟାତ୍ମକୁ |
| | | ଚ | = ତଥା |
| | | ଅଖିଳମ୍ | = ସମସ୍ତ |
| ଯତନ୍ତି | = ଯତ୍ନ କରନ୍ତି, | କର୍ମ | = କର୍ମକୁ |
| ତେ | = ସେମାନେ | ବିଦୁଃ | = ଜାଣନ୍ତି । |

ଭଗବାନଙ୍କ ସମଗ୍ର ସ୍ୱରୂପ ଜାଣିବାର ମହିମା ।

**ସାଧିଭୂତାଧିଦୈବଂ ମାଂ ସାଧିଯଜ୍ଞଂ ଚ ଯେ ବିଦୁଃ ।**
**ପ୍ରୟାଣକାଲେଽପି ଚ ମାଂ ତେ ବିଦୁର୍ଯୁକ୍ତଚେତସଃ ॥ ୩୦ ॥**

ସାଧିଭୂତାଧିଦୈବମ୍, ମାମ୍, ସାଧିଯଜ୍ଞମ୍, ଚ, ଯେ, ବିଦୁଃ,
ପ୍ରୟାଣକାଳେ, ଅପି, ଚ, ମାମ୍, ତେ, ବିଦୁଃ, ଯୁକ୍ତଚେତସଃ ।।୩୦।।

ଏବଂ—

| | | | |
|---|---|---|---|
| ଯେ | = ଯେଉଁମାନେ | ବିଦୁଃ | = ଜାଣନ୍ତି * |
| ସାଧିଭୂତା-ଧିଦୈବମ୍ | = ଅଧିଭୂତ ଓ ଅଧିଦୈବ ସହିତ | ତେ | = ସେହି |
| ଚ | = ତଥା | ଯୁକ୍ତଚେତସଃ | = ଯୁକ୍ତଚିତ୍ତ ମନୁଷ୍ୟମାନେ |
| ସାଧିଯଜ୍ଞମ୍ | = ଅଧିଯଜ୍ଞ ସହିତ | ମାମ୍ | = ମୋତେ |
| ମାମ୍ | = (ସମସ୍ତଙ୍କର ଆତ୍ମରୂପ)ମୋତେ | ଚ | = ହିଁ |
| ପ୍ରୟାଣକାଳେ | = ଅନ୍ତକାଳରେ | ବିଦୁଃ | = ଜାଣନ୍ତି ଅର୍ଥାତ୍ ମୋତେ ପ୍ରାପ୍ତ ହୁଅନ୍ତି । |
| ଅପି | = (ହେଲେ) ମଧ୍ୟ | | |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଜ୍ଞାନବିଜ୍ଞାନଯୋଗୋ ନାମ ସପ୍ତମୋଽଧ୍ୟାୟଃ ॥ ୭ ॥*

❂❂❂

**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ଜ୍ଞାନବିଜ୍ଞାନଯୋଗ' ନାମକ ସପ୍ତମ ଅଧ୍ୟାୟ ପୂର୍ଣ୍ଣ ହେଲା ।। ୭ ।।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

---

* ଅର୍ଥାତ୍ ଯେପରି ବାମ୍ପ, ମେଘ, ଧୂଆଁ, ଜଳ ଏବଂ ବରଫ ସବୁ ହିଁ ଜଳସ୍ୱରୂପ, ସେହିପରି ଅଧିଭୂତ, ଅଧିଦୈବ ଏବଂ ଅଧିଯଜ୍ଞ ଆଦି ସବୁକିଛି ବାସୁଦେବ ସ୍ୱରୂପ ଅଟେ—ଏହିପରି ଯେଉଁମାନେ ଜାଣନ୍ତି ।

ଓଁ ଶ୍ରୀପରମାତ୍ମନେ ନମଃ

# ଅଷ୍ଟମ ଅଧ୍ୟାୟ

## ଅକ୍ଷରବ୍ରହ୍ମଯୋଗ

**ପ୍ରଧାନ ବିଷୟ**

| | |
|---|---|
| ୧ ରୁ ୭ | ବ୍ରହ୍ମ, ଅଧ୍ୟାତ୍ମ ଏବଂ କର୍ମାଦି ବିଷୟରେ ଅର୍ଜୁନଙ୍କ ସାତଟି ପ୍ରଶ୍ନ ଏବଂ ତାହାର ଉତ୍ତର, |
| ୮ ରୁ ୨୨ | ଭକ୍ତିଯୋଗର ବିଷୟ, |
| ୨୩ ରୁ ୨୮ | ଶୁକ୍ଳ ଏବଂ କୃଷ୍ଣ ମାର୍ଗର ବିଷୟ । |

*ଅର୍ଜୁନ ଉବାଚ*

ବ୍ରହ୍ମ, ଅଧ୍ୟାତ୍ମ ଏବଂ କର୍ମାଦି-ବିଷୟରେ ଅର୍ଜୁନଙ୍କ ସାତଟି ପ୍ରଶ୍ନ ।

କିଂ ତଦ୍‌ବ୍ରହ୍ମ କିମଧ୍ୟାତ୍ମଂ କିଂ କର୍ମ ପୁରୁଷୋତ୍ତମ ।
ଅଧିଭୂତଂ ଚ କିଂ ପ୍ରୋକ୍ତମଧିଦୈବଂ କିମୁଚ୍ୟତେ ॥ ୧ ॥

କିମ୍, ତତ୍, ବ୍ରହ୍ମ, କିମ୍, ଅଧ୍ୟାତ୍ମମ୍, କିମ୍, କର୍ମ, ପୁରୁଷୋତ୍ତମ, ଅଧିଭୂତମ୍, ଚ, କିମ୍, ପ୍ରୋକ୍ତମ୍, ଅଧିଦୈବମ୍, କିମ୍, ଉଚ୍ୟତେ ।।୧ ।।

**ଏହି ପ୍ରକାରେ ଭଗବାନଙ୍କ ବଚନକୁ ବୁଝିନପାରି ଅର୍ଜୁନ କହିଲେ—**

| | | | |
|---|---|---|---|
| ପୁରୁଷୋତ୍ତମ | = ହେ ପୁରୁଷୋତ୍ତମ ! | ଅଧିଭୂତମ୍ | = ଅଧିଭୂତ |
| ତତ୍ | = ସେହି | କିମ୍ | = କଣ ବୋଲି |
| ବ୍ରହ୍ମ | = ବ୍ରହ୍ମ | ପ୍ରୋକ୍ତମ୍ | = କୁହାଯାଇଛି |
| କିମ୍ | = କଣ ? | ଚ | = ଏବଂ |
| ଅଧ୍ୟାତ୍ମମ୍ | = ଅଧ୍ୟାତ୍ମ | ଅଧିଦୈବମ୍, | = ଅଧିଦୈବ |
| କିମ୍ | = କଣ ? | କିମ୍ | କାହାକୁ |
| କର୍ମ, କିମ୍ | = କର୍ମ କଣ ? | ଉଚ୍ୟତେ | = କୁହାଯାଏ ? |

**ଅଧିଯଜ୍ଞଃ କଥଂ କୋଽତ୍ର ଦେହେଽସ୍ମିନ୍ ମଧୁସୂଦନ ।**
**ପ୍ରୟାଣକାଳେ ଚ କଥଂ ଜ୍ଞେୟୋଽସି ନିୟତାତ୍ମଭିଃ ॥ ୨ ॥**

ଅଧିଯଜ୍ଞଃ, କଥମ୍, କଃ, ଅତ୍ର, ଦେହେ, ଅସ୍ମିନ୍, ମଧୁସୂଦନ,
ପ୍ରୟାଣକାଳେ, ଚ, କଥମ୍, ଜ୍ଞେୟଃ, ଅସି, ନିୟତାତ୍ମଭିଃ ।।୨ ।।

**ଏବଂ—**

| | | | |
|---|---|---|---|
| ମଧୁସୂଦନ | = ହେ ମଧୁସୂଦନ ! | କଥମ୍ | = କିପରି ଅଛନ୍ତି ? |
| ଅତ୍ର | = ଏଠାରେ | ଚ | = ତଥା |
| ଅଧିଯଜ୍ଞଃ | = ଅଧିଯଜ୍ଞ | ନିୟତାତ୍ମଭିଃ | = ଯୁକ୍ତଚିତ୍ତ ପୁରୁଷ ମାନଙ୍କ ଦ୍ୱାରା |
| କଃ | = କିଏ ? (ଏବଂ ସେ) | ପ୍ରୟାଣକାଳେ | = ମରଣ କାଳରେ |
| ଅସ୍ମିନ୍ | = ଏହି | କଥମ୍ | = (ଆପଣ) କିପରି |
| ଦେହେ | = ଦେହରେ | ଜ୍ଞେୟଃ, ଅସି | = ଜାଣି ହୁଅନ୍ତି ? |

*ଶ୍ରୀଭଗବାନ ଉବାଚ*

ବ୍ରହ୍ମ, ଅଧ୍ୟାତ୍ମ ଏବଂ କର୍ମ ବିଷୟରେ ଅର୍ଜୁନଙ୍କର ତିନି ପ୍ରଶ୍ନର ଉତ୍ତର ।

**ଅକ୍ଷରଂ ବ୍ରହ୍ମ ପରମଂ ସ୍ୱଭାବୋଽଧ୍ୟାତ୍ମମୁଚ୍ୟତେ ।**
**ଭୂତଭାବୋଦ୍ଭବକରୋ ବିସର୍ଗଃ କର୍ମସଂଜ୍ଞିତଃ ॥ ୩ ॥**

ଅକ୍ଷରମ୍, ବ୍ରହ୍ମ, ପରମମ୍, ସ୍ୱଭାବଃ, ଅଧ୍ୟାତ୍ମମ୍, ଉଚ୍ୟତେ,
ଭୂତଭାବୋଦ୍ଭବକରଃ, ବିସର୍ଗଃ, କର୍ମସଂଜ୍ଞିତଃ ।।୩ ।।

**ଏହି ପ୍ରକାର ଅର୍ଜୁନଙ୍କ ପ୍ରଶ୍ନର ଉତ୍ତରରେ ଭଗବାନ୍ କହିଲେ, ହେ ଅର୍ଜୁନ !—**

| | | |
|---|---|---|
| ପରମମ୍ | = ପରମ | |
| ଅକ୍ଷରମ୍ | = ଅକ୍ଷର (ଅର୍ଥାତ୍ ଯାହାର କେବେ ହେଲେ ବି | ନାଶ ହୁଏ ନାହିଁ ଏପରି ସଚ୍ଚିଦାନନ୍ଦଘନ ପରମାତ୍ମା ହିଁ) |

| | | | | |
|---|---|---|---|---|
| ବ୍ରହ୍ମ | = 'ବ୍ରହ୍ମ' (ଅଟେ), | | ଭବକରଃ | ପ୍ରାଣୀମାନଙ୍କର ଉତ୍ପତ୍ତି ଓ ଅଭ୍ୟୁଦୟ କରୁଥିବା |
| ସ୍ୱଭାବଃ | = ନିଜର ସ୍ୱରୂପ ଅର୍ଥାତ୍ ଜୀବାତ୍ମା | | ବିସର୍ଗଃ | = ତ୍ୟାଗ |
| ଅଧ୍ୟାତ୍ମମ୍ | = 'ଅଧ୍ୟାତ୍ମ'(ନାମରେ) | | କର୍ମସଂଜ୍ଞିତଃ | = 'କର୍ମ' ନାମରେ କଥିତ ହୁଏ । |
| ଉଚ୍ୟତେ | = କଥିତ ହୁଏ | | | |
| ଭୂତଭାବୋଦ୍- | = (ତଥା) | | | |

ଅଧିଭୂତ, ଅଧିଦୈବ ଏବଂ ଅଧିଯଜ୍ଞ ବିଷୟରେ ଅର୍ଜୁନଙ୍କ ତିନି ପ୍ରଶ୍ନର ଉତ୍ତର ।

**ଅଧିଭୂତଂ କ୍ଷରୋ ଭାବଃ ପୁରୁଷଶ୍ଚାଧିଦୈବତମ୍ ।**
**ଅଧିଯଜ୍ଞୋଽହମେବାତ୍ର ଦେହେ ଦେହଭୃତାଂ ବର ॥ ୪ ॥**

ଅଧିଭୂତମ୍, କ୍ଷରଃ, ଭାବଃ, ପୁରୁଷଃ, ଚ, ଅଧିଦୈବତମ୍,
ଅଧିଯଜ୍ଞଃ, ଅହମ୍, ଏବ, ଅତ୍ର, ଦେହେ, ଦେହଭୃତାମ୍, ବର ।।୪।।

**ତଥା—**

| | | | | |
|---|---|---|---|---|
| କ୍ଷରଃ, ଭାବଃ | = ଉତ୍ପତ୍ତି-ବିନାଶଶୀଳ ସମସ୍ତ ପଦାର୍ଥ | | ଦେହଭୃତାମ୍, ବର | = ହେ ଦେହଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅର୍ଜୁନ ! |
| ଅଧିଭୂତମ୍ | = ଅଧିଭୂତ ଅଟେ, | | ଅତ୍ର | = ଏହି |
| ପୁରୁଷଃ | = ହିରଣ୍ୟମୟ ପୁରୁଷ* | | ଦେହେ | = ଶରୀରରେ |
| | | | ଅହମ୍ | = ମୁଁ ବାସୁଦେବ |
| ଅଧିଦୈବତମ୍ | = ଅଧିଦୈବ ଅଟେ | | ଏବ | = ହିଁ |
| | | | ଅଧିଯଜ୍ଞଃ | = ଅନ୍ତର୍ଯାମୀ ରୂପରେ ଅଧିଯଜ୍ଞ ଅଟେ । |
| ଚ | = ଏବଂ | | | |

* ଯାହାକୁ ଶାସ୍ତ୍ରମାନଙ୍କରେ 'ସୂତ୍ରାତ୍ମା', 'ହିରଣ୍ୟଗର୍ଭ', 'ପ୍ରଜାପତି', 'ବ୍ରହ୍ମା' ଇତ୍ୟାଦି ନାମରେ କୁହାଯାଇଛି ।

ଅନ୍ତକାଳରେ ଭଗବତ୍ ସ୍ମରଣର ଫଳ- (ଅର୍ଜୁନଙ୍କ ସପ୍ତମ ପ୍ରଶ୍ନର ଉତ୍ତର)।

**ଅନ୍ତକାଳେ ଚ ମାମେବ ସ୍ମରନ୍ ମୁକ୍ତ୍ୱା କଳେବରମ୍ ।**
**ଯଃ ପ୍ରୟାତି ସ ମଭାବଂ ଯାତି ନାସ୍ତ୍ୟତ୍ର ସଂଶୟଃ ॥ ୫ ॥**

ଅନ୍ତକାଳେ, ଚ, ମାମ୍, ଏବ, ସ୍ମରନ୍, ମୁକ୍ତ୍ୱା, କଳେବରମ୍,
ଯଃ, ପ୍ରୟାତି, ସଃ, ମଭାବମ୍, ଯାତି, ନ, ଅସ୍ତି, ଅତ୍ର, ସଂଶୟଃ ।।୫ ।।

**ଏବଂ—**

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | ପ୍ରୟାତି | = ଯାଏ |
| ଅନ୍ତକାଳେ, ଚ | = ମରଣକାଳରେ ମଧ୍ୟ | ସଃ | = ସେ |
| ମାମ୍ | = ମୋତେ | ମଦ୍‌ଭାବମ୍ | = ମୋର ସାକ୍ଷାତ୍ ସ୍ୱରୂପକୁ |
| ଏବ | = ହିଁ | ଯାତି | = ପ୍ରାପ୍ତ ହୁଏ; |
| ସ୍ମରନ୍ | = ସ୍ମରଣ କରି କରି | ଅତ୍ର | = ଏଥିରେ |
| କଳେବରମ୍ | = ଦେହକୁ | ସଂଶୟଃ | = (କିଛି ବି) ସନ୍ଦେହ |
| ମୁକ୍ତ୍ୱା | = ତ୍ୟାଗ କରି | ନ, ଅସ୍ତି | = ନାହିଁ । |

ଅନ୍ତକାଳର ଭାବ ଅନୁସାରେ ଗତି ପ୍ରାପ୍ତ ହେବା ।

**ଯଂ ଯଂ ବାପି ସ୍ମରନ୍ ଭାବଂ ତ୍ୟଜତ୍ୟନ୍ତେ କଳେବରମ୍ ।**
**ତଂ ତମେବୈତି କୌନ୍ତେୟ ସଦା ତଭାବଭାବିତଃ ॥ ୬ ॥**

ଯମ୍, ଯମ୍, ବା, ଅପି, ସ୍ମରନ୍, ଭାବମ୍, ତ୍ୟଜତି, ଅନ୍ତେ, କଳେବରମ୍,
ତମ୍, ତମ୍, ଏବ, ଏତି, କୌନ୍ତେୟ, ସଦା, ତଭାବଭାବିତଃ ।।୬ ।।

**କାରଣ ଏହି କି—**

| | | | |
|---|---|---|---|
| କୌନ୍ତେୟ | = ହେ କୁନ୍ତିପୁତ୍ର ଅର୍ଜୁନ ! (ଏହି ମନୁଷ୍ୟ) | ବା, ଅପି | = ବି |
| | | ଭାବମ୍ | = ଭାବକୁ |
| ଅନ୍ତେ | = ଅନ୍ତକାଳରେ | ସ୍ମରନ୍ | = ସ୍ମରଣ କରି କରି |
| ଯମ୍, ଯମ୍ | = ଯେଉଁ ଯେଉଁ | କଳେବରମ୍ | = ଦେହକୁ |

| | | | |
|---|---|---|---|
| ତ୍ୟଜତି | = ତ୍ୟାଗ କରେ, | ଏବ | (ଭାବକୁ) ହିଁ |
| ସଦା | = ସବୁବେଳେ | ଏତି | = ପ୍ରାପ୍ତ ହୁଏ |
| ତଦ୍‌ଭାବ- | = ସେହିପରି ଭାବରେ | | ଅର୍ଥାତ୍ ସେହି |
| ଭାବିତଃ | ଭାବିତ ହୋଇ | | ସେହି ଯୋନିକୁ |
| ତମ୍, ତମ୍, | = ସେହି ସେହି | | ଚାଲିଯାଏ । |

ନିରନ୍ତର ଭଗବତ୍ ଚିନ୍ତନ କରି ଯୁଦ୍ଧ କରିବା ପାଇଁ ଆଜ୍ଞା ଏବଂ ତାହାର ଫଳ ।

**ତସ୍ମାତ୍ସର୍ବେଷୁ କାଳେଷୁ ମାମନୁସ୍ମର ଯୁଧ୍ୟ ଚ ।**
**ମୟ୍ୟର୍ପିତମନୋବୁଦ୍ଧିର୍ମାମେବୈଷ୍ୟସ୍ୟସଂଶୟମ୍ ॥ ୭ ॥**

ତସ୍ମାତ୍, ସର୍ବେଷୁ, କାଳେଷୁ, ମାମ୍, ଅନୁସ୍ମର, ଯୁଧ୍ୟ, ଚ,
ମୟି, ଅର୍ପିତମନୋବୁଦ୍ଧିଃ, ମାମ୍, ଏବ, ଏଷ୍ୟସି, ଅସଂଶୟମ୍ ।।୭ ।।

| | | | |
|---|---|---|---|
| ତସ୍ମାତ୍ | = ତେଣୁ (ହେ ଅର୍ଜୁନ ! ତୁମେ) | ଅର୍ପିତ-ମନୋବୁଦ୍ଧିଃ | = ଅର୍ପଣ କରାଯାଇଥିବା ମନ-ବୁଦ୍ଧିରେ ଯୁକ୍ତ ହୋଇ (ତୁମେ) |
| ସର୍ବେଷୁ, କାଳେଷୁ | = ସର୍ବଦା ନିରନ୍ତର | | |
| ମାମ୍ | = ମୋତେ (ହିଁ) | | |
| ଅନୁସ୍ମର | = ସ୍ମରଣ କର | | |
| ଚ | = ଓ | ଅସଂଶୟମ୍ | = ନିଃସନ୍ଦେହ |
| ଯୁଧ୍ୟ | = ଯୁଦ୍ଧ ବି କର । | ମାମ୍ | = ମୋତେ |
| ମୟି | = (ଏପରିଭାବରେ) | ଏବ | = ହିଁ |
| | ମୋଠାରେ | ଏଷ୍ୟସି | = ପ୍ରାପ୍ତ ହେବ । |

ନିରନ୍ତର ଚିନ୍ତା କରିବା ଦ୍ୱାରା ପରମ ଦିବ୍ୟ ପୁରୁଷଙ୍କ ପ୍ରାପ୍ତି ।

**ଅଭ୍ୟାସଯୋଗଯୁକ୍ତେନ ଚେତସା ନାନ୍ୟଗାମିନା ।**
**ପରମଂ ପୁରୁଷଂ ଦିବ୍ୟଂ ଯାତି ପାର୍ଥାନୁଚିନ୍ତୟନ୍ ॥ ୮ ॥**

ଅଭ୍ୟାସଯୋଗଯୁକ୍ତେନ, ଚେତସା, ନାନ୍ୟଗାମିନା,
ପରମମ୍, ପୁରୁଷମ୍, ଦିବ୍ୟମ୍, ଯାତି, ପାର୍ଥ, ଅନୁଚିନ୍ତୟନ୍ ।।୮ ।।

ଏବଂ—

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! (ଏହି ନିୟମ ଯେ) | ଅନୁଚିନ୍ତୟନ୍ | = ନିରନ୍ତର ଚିନ୍ତନ କରୁଥିବା (ମନୁଷ୍ୟ) |
| ଅଭ୍ୟାସଯୋଗ-ଯୁକ୍ତେନ | = ପରମେଶ୍ୱରଙ୍କ ଧ୍ୟାନର ଅଭ୍ୟାସରୂପକ ଯୋଗରେ ଯୁକ୍ତ, | ପରମମ୍ | = ପରମ (ପ୍ରକାଶ ସ୍ୱରୂପ) |
| | | ଦିବ୍ୟମ୍ | = ଦିବ୍ୟ |
| | | ପୁରୁଷମ୍ | = ପୁରୁଷଙ୍କୁ ଅର୍ଥାତ୍ ପରମେଶ୍ୱରଙ୍କୁ (ହିଁ) |
| ନାନ୍ୟଗାମିନା | = ଅନ୍ୟ ଆଡ଼େ ଯାଉ ନ ଥିବା | | |
| ଚେତସା | = ଚିତ୍ତଦ୍ୱାରା | ଯାତି | = ପ୍ରାପ୍ତ ହୁଏ । |

ପରମଦିବ୍ୟ ପୁରୁଷଙ୍କ ସ୍ୱରୂପର ବର୍ଣ୍ଣନ ଏବଂ ତାଙ୍କର ଚିନ୍ତନର ବିଧି ।

**କବିଂ ପୁରାଣମନୁଶାସିତାର-**
**ମଣୋରଣୀୟାଂସମନୁସ୍ମରେଦ୍ ଯଃ ।**
**ସର୍ବସ୍ୟ ଧାତାରମଚିନ୍ତ୍ୟରୂପ-**
**ମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ॥ ୯ ॥**

କବିମ୍, ପୁରାଣମ୍, ଅନୁଶାସିତାରମ୍,
ଅଣୋଃ, ଅଣୀୟାଂସମ୍, ଅନୁସ୍ମରେତ୍, ଯଃ,
ସର୍ବସ୍ୟ, ଧାତାରମ୍, ଅଚିନ୍ତ୍ୟରୂପମ୍, ଆଦିତ୍ୟ-
ବର୍ଣ୍ଣମ୍, ତମସଃ, ପରସ୍ତାତ୍ ।।୯ ।।

**ଏଥିପାଇଁ—**

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | ଅନୁଶାସିତାରମ୍ | = ସର୍ବନିୟନ୍ତା,* |
| କବିମ୍ | = ସର୍ବଜ୍ଞ, | ଅଣୋଃ, ଅଣୀୟାଂସମ୍ | = ସୂକ୍ଷ୍ମାତିସୂକ୍ଷ୍ମ |
| ପୁରାଣମ୍ | = ଅନାଦି, | | |

* ଅନ୍ତର୍ଯାମୀ ରୂପରେ ସମସ୍ତ ପ୍ରାଣୀମାନଙ୍କର ଶୁଭ ଏବଂ ଅଶୁଭ କର୍ମ ଅନୁସାରେ ଶାସନକର୍ତ୍ତା ।

| | | | |
|---|---|---|---|
| ସର୍ବସ୍ୟ | = ସମସ୍ତଙ୍କର | ତମସଃ | = (ଓ) ଅବିଦ୍ୟାରୁ |
| ଧାତାରମ୍ | = ଧାରଣ-ପୋଷଣକାରୀ, | ପରସ୍ତାତ୍ | = ସମ୍ପୂର୍ଣ୍ଣ ଅତୀତ, ଶୁଦ୍ଧ ସଚ୍ଚିଦାନନ୍ଦଘନ ପରମେଶ୍ୱରଙ୍କୁ |
| ଅଚିନ୍ତ୍ୟରୂପମ୍ | = ଅଚିନ୍ତ୍ୟସ୍ୱରୂପ, | ଅନୁସ୍ମରେତ୍ | = ସ୍ମରଣ କରେ - |
| ଆଦିତ୍ୟବର୍ଣ୍ଣମ୍ | = ସୂର୍ଯ୍ୟ ସଦୃଶ ନିତ୍ୟ, ଚେତନ, ପ୍ରକାଶରୂପ | | |

ପ୍ରୟାଣକାଳେ ମନସାଚଳେନ
ଭକ୍ତ୍ୟା ଯୁକ୍ତୋ ଯୋଗବଳେନ ଚୈବ ।
ଭ୍ରୁବୋର୍ମଧ୍ୟେ ପ୍ରାଣମାବେଶ୍ୟ ସମ୍ୟକ୍
ସ ତଂ ପରଂ ପୁରୁଷମୁପୈତି ଦିବ୍ୟମ୍ ॥ ୧୦ ॥

ପ୍ରୟାଣକାଳେ, ମନସା, ଅଚଳେନ,
ଭକ୍ତ୍ୟା, ଯୁକ୍ତଃ, ଯୋଗବଳେନ, ଚ, ଏବ,
ଭ୍ରୁବୋଃ, ମଧ୍ୟେ, ପ୍ରାଣମ୍, ଆବେଶ୍ୟ, ସମ୍ୟକ୍,
ସଃ, ତମ୍, ପରମ୍, ପୁରୁଷମ୍, ଉପୈତି, ଦିବ୍ୟମ୍ ।।୧୦।।

| | | | |
|---|---|---|---|
| ସଃ | = ସେହି | ଅଚଳେନ | = ନିଶ୍ଚଳ |
| ଭକ୍ତ୍ୟା, ଯୁକ୍ତଃ | = ଭକ୍ତିଯୁକ୍ତ ପୁରୁଷ | ମନସା | = ମନଦ୍ୱାରା |
| ପ୍ରୟାଣକାଳେ | = ମରଣକାଳରେ (ବି) | (ସ୍ମରନ୍) | = ସ୍ମରଣ କରି କରି |
| ଯୋଗବଳେନ | = ଯୋଗବଳରେ | ତମ୍ | = ସେହି |
| ଭ୍ରୁବୋଃ | = ଦୁଇ ଭ୍ରୂଲତାର | ଦିବ୍ୟମ୍ | = ଦିବ୍ୟରୂପ |
| ମଧ୍ୟେ | = ମଧ୍ୟବର୍ତ୍ତୀ ସ୍ଥାନରେ | ପରମ୍ | = ପରମ |
| ପ୍ରାଣମ୍ | = ପ୍ରାଣକୁ | ପୁରୁଷମ୍ | = ପୁରୁଷ ପରମାତ୍ମାଙ୍କୁ |
| ସମ୍ୟକ୍ | = ଭଲରୂପେ | | |
| ଆବେଶ୍ୟ | = ସ୍ଥାପିତ କରି | ଏବ | = ହିଁ |
| ଚ | = ଓ | ଉପୈତି | = ପ୍ରାପ୍ତ ହୁଏ । |

ପରମାତ୍ମାଙ୍କ ନିର୍ଗୁଣ ସ୍ୱରୂପର ପ୍ରଶଂସା ।

ଯଦକ୍ଷରଂ ବେଦବିଦୋ ବଦନ୍ତି
ବିଶନ୍ତି ଯଦ୍‌ଯତୟୋ ବୀତରାଗାଃ ।
ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି
ତତ୍ତେ ପଦଂ ସଙ୍ଗ୍ରହେଣ ପ୍ରବକ୍ଷ୍ୟେ ॥ ୧୧ ॥

ଯତ୍, ଅକ୍ଷରମ୍, ବେଦବିଦଃ, ବଦନ୍ତି,
ବିଶନ୍ତି, ଯତ୍, ଯତୟଃ, ବୀତରାଗାଃ,
ଯତ୍, ଇଚ୍ଛନ୍ତଃ, ବ୍ରହ୍ମଚର୍ଯ୍ୟମ୍, ଚରନ୍ତି,
ତତ୍, ତେ, ପଦମ୍, ସଂଗ୍ରହେଣ, ପ୍ରବକ୍ଷ୍ୟେ । ।୧୧ । ।

**ଏବଂ ହେ ଅର୍ଜୁନ !—**

ବେଦବିଦଃ = ବେଦଜ୍ଞ ବିଦ୍ୱାନ୍‌ମାନେ
ଯତ୍ = ଯେଉଁ ସଚ୍ଚିଦାନନ୍ଦଘନ ରୂପକ ପରମ ପଦକୁ
ଅକ୍ଷରମ୍ = ଅବିନାଶୀ
ବଦନ୍ତି = କହନ୍ତି,
ବୀତରାଗାଃ = ଆସକ୍ତିଶୂନ୍ୟ
ଯତୟଃ = ଯତ୍ନଶୀଳ ସନ୍ନ୍ୟାସୀ ମହାତ୍ମାମାନେ
ଯତ୍ = ଯାହାଠାରେ
ବିଶନ୍ତି = ପ୍ରବେଶ କରନ୍ତି (ଏବଂ)
ଯତ୍ = ଯେଉଁ ପରମପଦକୁ
ଇଚ୍ଛନ୍ତଃ = ଇଚ୍ଛା କରୁଥିବା (ବ୍ରହ୍ମଚାରୀମାନେ)
ବ୍ରହ୍ମଚର୍ଯ୍ୟମ୍ = ବ୍ରହ୍ମଚର୍ଯ୍ୟକୁ
ଚରନ୍ତି = ଆଚରଣ କରନ୍ତି,
ତତ୍ = ସେହି
ପଦମ୍ = ପରମପଦ ବିଷୟରେ (ମୁଁ)
ତେ = ତୁମକୁ
ସଂଗ୍ରହେଣ = ସଂକ୍ଷେପରେ
ପ୍ରବକ୍ଷ୍ୟେ = କହିବି ।

ଅନ୍ତକାଳରେ ଯୋଗଧାରଣର ବିଧିସହ ନିର୍ଗୁଣ ବ୍ରହ୍ମଙ୍କ ଜପଧ୍ୟାନର ପ୍ରକାର ଏବଂ ତାହାର ଫଳର ବର୍ଣ୍ଣନ ।

ସର୍ବଦ୍ୱାରାଣି ସଂଯମ୍ୟ ମନୋ ହୃଦି ନିରୁଧ୍ୟ ଚ ।
ମୂର୍ଦ୍ଧ୍ନ୍ୟାଧାୟାତ୍ମନଃ ପ୍ରାଣମାସ୍ଥିତୋ ଯୋଗଧାରଣାମ୍ ॥ ୧୨ ॥

ଓମିତ୍ୟେକାକ୍ଷରଂ ବ୍ରହ୍ମ ବ୍ୟାହରନ୍ମାମନୁସ୍ମରନ୍ ।
ଯଃ ପ୍ରୟାତି ତ୍ୟଜନ୍ଦେହଂ ସ ଯାତି ପରମାଂ ଗତିମ୍ ॥ ୧୩ ॥

ସର୍ବଦ୍ୱାରାଣି, ସଂଯମ୍ୟ, ମନଃ, ହୃଦି, ନିରୁଧ୍ୟ, ଚ,
ମୂର୍ଦ୍ଧ୍ନି, ଆଧାୟ, ଆତ୍ମନଃ, ପ୍ରାଣମ୍, ଆସ୍ଥିତଃ, ଯୋଗଧାରଣାମ୍ ।।୧୨।।

ଓମ୍, ଇତି, ଏକାକ୍ଷରମ୍, ବ୍ରହ୍ମ, ବ୍ୟାହରନ୍, ମାମ୍, ଅନୁସ୍ମରନ୍,
ଯଃ, ପ୍ରୟାତି, ତ୍ୟଜନ୍, ଦେହମ୍, ସଃ, ଯାତି, ପରମାମ୍, ଗତିମ୍ ।।୧୩।।

| | | | |
|---|---|---|---|
| ସର୍ବଦ୍ୱାରାଣି | = ସମସ୍ତ ଇନ୍ଦ୍ରିୟମାନଙ୍କ ଦ୍ୱାରଗୁଡ଼ିକୁ | ଯଃ | = ଯେଉଁ ପୁରୁଷ |
| ସଂଯମ୍ୟ | = ରୁଦ୍ଧ କରି | ଓମ୍ | = ' ଓଁ '- |
| ଚ | = ତଥା | ଇତି | = ଏହି |
| ମନଃ | = ମନକୁ | ଏକାକ୍ଷରମ୍ | = ଏକ ଅକ୍ଷରରୂପ |
| ହୃଦି | = ହୃଦ୍‌ଦେଶରେ | ବ୍ରହ୍ମ | = ବ୍ରହ୍ମକୁ |
| ନିରୁଧ୍ୟ | = ସ୍ଥିର କରି, (ପୁଣି ସେହି ବିଜିତ ହୋଇଥିବା ମନଦ୍ୱାରା) | ବ୍ୟାହରନ୍ | = ଉଚ୍ଚାରଣ କରି କରି(ଏବଂ ତା'ର ଅର୍ଥସ୍ୱରୂପ ) |
| | | ମାମ୍ | = ମୋତେ ଅର୍ଥାତ୍ ନିର୍ଗୁଣ ବ୍ରହ୍ମକୁ |
| | | ଅନୁସ୍ମରନ୍ | = ଚିନ୍ତନ କରି କରି |
| ପ୍ରାଣମ୍ | = ପ୍ରାଣକୁ | ଦେହମ୍ | = ଶରୀରକୁ |
| ମୂର୍ଦ୍ଧ୍ନି | = ମସ୍ତକରେ | ତ୍ୟଜନ୍ | = ତ୍ୟାଗ କରି |
| ଆଧାୟ | = ସ୍ଥାପନ କରି | ପ୍ରୟାତି | = ପ୍ରୟାଣ କରେ, |
| ଆତ୍ମନଃ | = ପରମାତ୍ମ ସମ୍ବନ୍ଧୀୟ | ସଃ | = ସେହି ପୁରୁଷ |
| ଯୋଗଧାରଣାମ୍ | = ଯୋଗ ଧାରଣାରେ | ପରମାମ୍,ଗତିମ୍ | = ପରମ ଗତିକୁ |
| ଆସ୍ଥିତଃ | = ସ୍ଥିତ ହୋଇ | ଯାତି | = ପ୍ରାପ୍ତ ହୁଏ । |

ଅନନ୍ୟ ପ୍ରେମପୂର୍ବକ ନିରନ୍ତର ଭଗବାନଙ୍କ ଚିନ୍ତନ କରିବା ହିଁ ତାଙ୍କୁ ପାଇବାର ସୁଗମ ଉପାୟ ।

**ଅନନ୍ୟଚେତାଃ ସତତଂ ଯୋ ମାଂ ସ୍ମରତି ନିତ୍ୟଶଃ ।**
**ତସ୍ୟାହଂ ସୁଲଭଃ ପାର୍ଥ ନିତ୍ୟଯୁକ୍ତସ୍ୟ ଯୋଗିନଃ ॥ ୧୪ ॥**

ଅନନ୍ୟଚେତାଃ, ସତତମ୍, ଯଃ, ମାମ୍, ସ୍ମରତି, ନିତ୍ୟଶଃ,
ତସ୍ୟ, ଅହମ୍, ସୁଲଭଃ, ପାର୍ଥ, ନିତ୍ୟଯୁକ୍ତସ୍ୟ, ଯୋଗିନଃ ।।୧୪।।

ଏବଂ—

| | |
|---|---|
| ପାର୍ଥ | = ହେ ଅର୍ଜୁନ ! |
| ଯଃ | = ଯେଉଁ ପୁରୁଷ |
| (ମୟି) | = ମୋଠାରେ |
| ଅନନ୍ୟଚେତାଃ | = ଅନନ୍ୟଚିତ୍ତ ହୋଇ |
| ନିତ୍ୟଶଃ | = ସଦାସର୍ବଦା |
| ସତତମ୍ | = ନିରନ୍ତର |
| ମାମ୍ | = ମୋତେ ଅର୍ଥାତ୍ ପୁରୁଷୋତ୍ତମଙ୍କୁ |
| ସ୍ମରତି | = ସ୍ମରଣ କରେ, |
| ତସ୍ୟ | = ସେହି |
| ନିତ୍ୟଯୁକ୍ତସ୍ୟ | = ନିତ୍ୟ ନିରନ୍ତର ମୋଠାରେ ଯୁକ୍ତ ହୋଇଥିବା |
| ଯୋଗିନଃ | = ଯୋଗୀପାଇଁ |
| ଅହମ୍ | = ମୁଁ |
| ସୁଲଭଃ | = ସୁଲଭ ଅଟେ ଅର୍ଥାତ୍ ତାକୁ ସହଜରେ ପ୍ରାପ୍ତ ହୋଇଯାଏ । |

ଭଗବତ୍ ପ୍ରାପ୍ତିଦ୍ୱାରା ପୁନର୍ଜନ୍ମର ଅଭାବ ଏବଂ ଅନ୍ୟ ସମସ୍ତ ଲୋକମାନଙ୍କ କ୍ଷେତ୍ରରେ ପୁନରାବୃତ୍ତିଶୀଳ ବୋଲି ଉକ୍ତି ।

**ମାମୁପେତ୍ୟ ପୁନର୍ଜନ୍ମ ଦୁଃଖାଲୟମଶାଶ୍ୱତମ୍ ।**
**ନାପ୍ନୁବନ୍ତି ମହାତ୍ମାନଃ ସଂସିଦ୍ଧିଂ ପରମାଂ ଗତାଃ ॥ ୧୫ ॥**

ମାମ୍, ଉପେତ୍ୟ, ପୁନର୍ଜନ୍ମ, ଦୁଃଖାଲୟମ୍, ଅଶାଶ୍ୱତମ୍,
ନ, ଆପ୍ନୁବନ୍ତି, ମହାତ୍ମାନଃ, ସଂସିଦ୍ଧିମ୍, ପରମାମ୍, ଗତାଃ ।।୧୫।।

ଏବଂ ସେମାନେ—

| | |
|---|---|
| ପରମାମ୍ | = ପରମ |
| ସଂସିଦ୍ଧିମ୍ | = ସିଦ୍ଧିକୁ |
| ଗତାଃ | = ପ୍ରାପ୍ତ |
| ମହାତ୍ମାନଃ | = ମହାତ୍ମାମାନେ |
| ମାମ୍ | = ମୋତେ |
| ଉପେତ୍ୟ | = ପ୍ରାପ୍ତ ହୋଇ |
| ଦୁଃଖାଲୟମ୍ | = ଦୁଃଖର ଗୃହ (ରୂପକ) |
| ଅଶାଶ୍ୱତମ୍ | = କ୍ଷଣଭଙ୍ଗୁର |
| ପୁନର୍ଜନ୍ମ | = ପୁନର୍ଜନ୍ମକୁ |
| ନ, ଆପ୍ନୁବନ୍ତି | = ପ୍ରାପ୍ତ ହୁଅନ୍ତି ନାହିଁ । |

**ଆବ୍ରହ୍ମଭୁବନାଲ୍ଲୋକାଃ ପୁନରାବର୍ତ୍ତିନୋଽର୍ଜୁନ ।**
**ମାମୁପେତ୍ୟ ତୁ କୌନ୍ତେୟ ପୁନର୍ଜନ୍ମ ନ ବିଦ୍ୟତେ ॥ ୧୬ ॥**

ଆବ୍ରହ୍ମଭୁବନାତ୍, ଲୋକାଃ, ପୁନରାବର୍ତ୍ତିନଃ, ଅର୍ଜୁନ,
ମାମ୍, ଉପେତ୍ୟ, ତୁ, କୌନ୍ତେୟ, ପୁନର୍ଜନ୍ମ, ନ, ବିଦ୍ୟତେ ।।୧୬।।

**କାହିଁକି ନା—**

| | | | |
|---|---|---|---|
| ଅର୍ଜୁନ | = ହେ ଅର୍ଜୁନ ! | | ଆସିବାକୁ ପଡ଼େ), |
| ଆବ୍ରହ୍ମଭୁବନାତ୍ | = ବ୍ରହ୍ମଲୋକ ପର୍ଯ୍ୟନ୍ତ | ତୁ | = ପରନ୍ତୁ |
| ଲୋକାଃ | = ସମସ୍ତ ଲୋକ | କୌନ୍ତେୟ | = ହେ କୁନ୍ତୀପୁତ୍ର ! |
| ପୁନରାବର୍ତ୍ତିନଃ | = ପୁନରାବର୍ତ୍ତୀ* | ମାମ୍ | = ମୋତେ |
| | (ଅର୍ଥାତ୍ ଯାହାକୁ | ଉପେତ୍ୟ | = ପ୍ରାପ୍ତ ହୋଇ |
| | ପ୍ରାପ୍ତ କରି ପୁଣି | ପୁନର୍ଜନ୍ମ | = ପୁନର୍ଜନ୍ମ |
| | ସଂସାରକୁ | ନ, ବିଦ୍ୟତେ | = ହୁଏ ନାହିଁ । |

**କାରଣ, ମୁଁ କାଳାତୀତ ଅଟେ ଏବଂ ଏହି ସବୁ ବ୍ରହ୍ମାଦିଲୋକର ଆୟୁ କାଳର ଅବଧି ଦ୍ୱାରା ସୀମିତ ହୋଇଥିବାରୁ ଅନିତ୍ୟ ଅଟନ୍ତି ।**

ସହସ୍ରଯୁଗପର୍ଯ୍ୟନ୍ତମହର୍ଯଦ୍ ବ୍ରହ୍ମଣୋ ବିଦୁଃ ।
ରାତ୍ରିଂ ଯୁଗସହସ୍ରାନ୍ତାଂ ତେଽହୋରାତ୍ରବିଦୋ ଜନାଃ ॥ ୧୭ ॥

ବ୍ରହ୍ମାଙ୍କର ଦିବା-ରାତ୍ରିର ଅବଧି ।

ସହସ୍ରଯୁଗପର୍ଯ୍ୟନ୍ତମ୍, ଅହଃ, ଯତ୍, ବ୍ରହ୍ମଣଃ, ବିଦୁଃ,
ରାତ୍ରିମ୍, ଯୁଗସହସ୍ରାନ୍ତାମ୍, ତେ, ଅହୋରାତ୍ରବିଦଃ, ଜନାଃ ।।୧୭।।

**ହେ ଅର୍ଜୁନ !—**

| | | | |
|---|---|---|---|
| ବ୍ରହ୍ମଣଃ | = ବ୍ରହ୍ମାଙ୍କର | ରାତ୍ରିମ୍ | = ରାତ୍ରିକୁ (ମଧ୍ୟ) |
| ଯତ୍ | = ଯାହା | ଯୁଗସହସ୍ରାନ୍ତାମ୍ | = ଏକହଜାର |
| ଅହଃ | = ଏକଦିନ (ତାହାକୁ) | | ଚତୁର୍ଯୁଗୀ |
| ସହସ୍ରଯୁଗ- | = ଏକହଜାର ଚତୁର୍ଯୁଗୀ | | ଅବଧିବିଶିଷ୍ଟ |
| ପର୍ଯ୍ୟନ୍ତମ୍ | ଅବଧିବିଶିଷ୍ଟ (ଏବଂ) | | (ବୋଲି) |

* ଅର୍ଥାତ୍ କାଳଦ୍ୱାରା ଏକ ହଜାର ଚତୁର୍ଯୁଗୀ ଅବଧି ବିଶିଷ୍ଟ ହେବା ହେତୁ ବ୍ରହ୍ମଲୋକ ବି ଅନିତ୍ୟ ।

| | | | |
|---|---|---|---|
| (ଯେ) | = ଯେଉଁ ପୁରୁଷମାନେ | ତେ | = ସେହି |
| | | ଜନାଃ | = ଯୋଗୀଜନମାନେ |
| | | ଅହୋରାତ୍ରବିଦଃ | = କାଳର ତତ୍ତ୍ୱକୁ ଜାଣନ୍ତି । |
| ବିଦୁଃ | = ତତ୍ତ୍ୱତଃ ଜାଣନ୍ତି,* | | |

ସମସ୍ତ ପ୍ରାଣୀମାନଙ୍କର ବାରମ୍ବାର ଉତ୍ପତ୍ତି ଏବଂ ପ୍ରଳୟର ବର୍ଣ୍ଣନା ।

**ଅବ୍ୟକ୍ତାଦ୍‌ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତ୍ୟହରାଗମେ ।**
**ରାତ୍ର୍ୟାଗମେ ପ୍ରଲୀୟନ୍ତେ ତତ୍ରୈବାବ୍ୟକ୍ତସଂଜ୍ଞକେ ॥ ୧୮ ॥**

ଅବ୍ୟକ୍ତାତ୍, ବ୍ୟକ୍ତୟଃ, ସର୍ବାଃ, ପ୍ରଭବନ୍ତି, ଅହରାଗମେ,
ରାତ୍ର୍ୟାଗମେ, ପ୍ରଲୀୟନ୍ତେ, ତତ୍ର, ଏବ, ଅବ୍ୟକ୍ତସଂଜ୍ଞକେ ।।୧୮।।

**ଏଥିହେତୁ ସେମାନେ ଏହା ବି ଜାଣନ୍ତି ଯେ—**

| | | | |
|---|---|---|---|
| ସର୍ବାଃ | = ସକଳ | | ରାତ୍ରିର ପ୍ରବେଶକାଳରେ |
| ବ୍ୟକ୍ତୟଃ | = ଚରାଚର ଭୂତଗଣ | ତତ୍ର | = ସେହି |
| ଅହରାଗମେ | = ବ୍ରହ୍ମାଙ୍କ ଦିନର ପ୍ରବେଶକାଳରେ | ଅବ୍ୟକ୍ତସଂଜ୍ଞକେ | = ଅବ୍ୟକ୍ତ ନାମକ ବ୍ରହ୍ମାଙ୍କ ସୂକ୍ଷ୍ମ ଶରୀରରେ |
| ଅବ୍ୟକ୍ତାତ୍ | = ଅବ୍ୟକ୍ତରୁ ଅର୍ଥାତ୍ ବ୍ରହ୍ମାଙ୍କ ସୂକ୍ଷ୍ମଶରୀରରୁ | ଏବ | = ହିଁ |
| ପ୍ରଭବନ୍ତି | = ଉତ୍ପନ୍ନ ହୁଅନ୍ତି | ପ୍ରଲୀୟନ୍ତେ | = ଲୀନ ହୋଇଯାଆନ୍ତି । |
| ରାତ୍ର୍ୟାଗମେ | = (ଏବଂ) ବ୍ରହ୍ମାଙ୍କ | | |

**ଭୂତଗ୍ରାମଃ ସ ଏବାୟଂ ଭୂତ୍ୱା ଭୂତ୍ୱା ପ୍ରଲୀୟତେ ।**
**ରାତ୍ର୍ୟାଗମେଽବଶଃ ପାର୍ଥ ପ୍ରଭବତ୍ୟହରାଗମେ ॥ ୧୯ ॥**

ଭୂତଗ୍ରାମଃ, ସଃ, ଏବ, ଅୟମ୍, ଭୂତ୍ୱା, ଭୂତ୍ୱା, ପ୍ରଲୀୟତେ,
ରାତ୍ର୍ୟାଗମେ, ଅବଶଃ, ପାର୍ଥ, ପ୍ରଭବତି, ଅହରାଗମେ ।।୧୯।।

* ଏହିଭାବେ ବ୍ରହ୍ମାଙ୍କର ଏକଶତ ବର୍ଷ ପୂର୍ଣ୍ଣ ହେଲେ ନିଜଲୋକଙ୍କ ସଙ୍ଗେ ବ୍ରହ୍ମା ମଧ୍ୟ ବିଲୟ ପ୍ରାପ୍ତ ହୁଅନ୍ତି ।

ଏବଂ—

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ରାତ୍ର୍ୟାଗମେ | = ରାତ୍ରିର ପ୍ରବେଶ କାଳରେ |
| ସଃ,ଏବ,ଅୟମ୍,ଭୂତଗ୍ରାମଃ | = ଏହି ଭୂତ ସମୁଦାୟ | ପ୍ରଲୀୟତେ | = ଲୀନ ହୋଇଯାଏ (ଏବଂ) |
| ଭୂତ୍ୱା, ଭୂତ୍ୱା | = ବାରମ୍ବାର ଉତ୍ପନ୍ନ ହୋଇ | ଅହରାଗମେ | = ଦିନର ପ୍ରବେଶ କାଳରେ (ପୁଣି) |
| ଅବଶଃ | = ପ୍ରକୃତିର ପରବଶ ହୋଇ | ପ୍ରଭବତି | = ଉତ୍ପନ୍ନ ହୁଏ । |

ଏହି ଅବ୍ୟକ୍ତ ଠାରୁ ଶ୍ରେଷ୍ଠ ଦ୍ୱିତୀୟ ସନାତନ ଅବ୍ୟକ୍ତ ପରମେଶ୍ୱରଙ୍କ ସ୍ୱରୂପର କଥନ ।

**ପରସ୍ତସ୍ମାତ୍ତୁ ଭାବୋଽନ୍ୟୋଽବ୍ୟକ୍ତୋଽବ୍ୟକ୍ତାତ୍ସନାତନଃ ।**
**ଯଃ ସ ସର୍ବେଷୁ ଭୂତେଷୁ ନଶ୍ୟତ୍ସୁ ନ ବିନଶ୍ୟତି ॥ ୨୦ ॥**

ପରଃ, ତସ୍ମାତ୍, ତୁ, ଭାବଃ, ଅନ୍ୟଃ, ଅବ୍ୟକ୍ତଃ, ଅବ୍ୟକ୍ତାତ୍, ସନାତନଃ,
ଯଃ, ସଃ, ସର୍ବେଷୁ, ଭୂତେଷୁ, ନଶ୍ୟତ୍ସୁ, ନ, ବିନଶ୍ୟତି ।।୨୦।।

| | | | |
|---|---|---|---|
| ତୁ | = ପରନ୍ତୁ | ଭାବଃ | = ଭାବରୂପକ |
| ତସ୍ମାତ୍ | = ସେହି | ସଃ | = ସେହି ପରମ ଦିବ୍ୟ ପୁରୁଷ |
| ଅବ୍ୟକ୍ତାତ୍ | = ଅବ୍ୟକ୍ତଠାରୁ (ମଧ୍ୟ) | | |
| ପରଃ | = ଅତି ଶ୍ରେଷ୍ଠ | ସର୍ବେଷୁ | = ସମସ୍ତ |
| ଅନ୍ୟଃ | = ଅନ୍ୟ ଅର୍ଥାତ୍ ଭିନ୍ନ | ଭୂତେଷୁ | = ଭୂତଙ୍କ |
| ଯଃ | = ଯେଉଁ | ନଶ୍ୟତ୍ସୁ, ନ, ବିନଶ୍ୟତି | = ନଷ୍ଟ ହେଲା ପରେ ମଧ୍ୟ ନଷ୍ଟ ହୁଅନ୍ତି ନାହିଁ । |
| ସନାତନଃ | = ସନାତନ | | |
| ଅବ୍ୟକ୍ତଃ | = ଅବ୍ୟକ୍ତ (ଈଶ୍ୱର)ଅଛନ୍ତି | | |

ସେହି ଦିବ୍ୟ ପୁରୁଷଙ୍କୁ ହିଁ

**ଅବ୍ୟକ୍ତୋଽକ୍ଷର ଇତ୍ୟୁକ୍ତସ୍ତମାହୁଃ ପରମାଂ ଗତିମ୍ ।**
**ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ ॥ ୨୧ ॥**

‘ଅକ୍ଷର’, ‘ପରମଗତି’ ଏବଂ ‘ପରମଧାମ’ କୁହାଯାଇଛି ଏବଂ ଏହି ପରମ ପୁରୁଷଙ୍କୁ ପ୍ରାପ୍ତ କରିବାର ଉପାୟ ।

ଅବ୍ୟକ୍ତଃ, ଅକ୍ଷରଃ, ଇତି, ଉକ୍ତଃ, ତମ୍, ଆହୁଃ, ପରମାମ୍, ଗତିମ୍,
ଯମ୍, ପ୍ରାପ୍ୟ, ନ, ନିବର୍ତ୍ତନ୍ତେ, ତତ୍, ଧାମ, ପରମମ୍, ମମ ।।୨୧।।

ଏବଂ ଯେଉଁ—

| | | | |
|---|---|---|---|
| ଅବ୍ୟକ୍ତଃ | = ଯେଉଁ ଅବ୍ୟକ୍ତକୁ | ଯମ୍ | = ଯେଉଁ ସନାତନ ଅବ୍ୟକ୍ତ ଭାବକୁ |
| ଅକ୍ଷରଃ | = ‘ଅକ୍ଷର’ | ପ୍ରାପ୍ୟ | = ପ୍ରାପ୍ତ ହୋଇ (ମନୁଷ୍ୟମାନେ) |
| ଇତି | = ବୋଲି | ନ, ନିବର୍ତ୍ତନ୍ତେ | = ଫେରି ଆସନ୍ତି ନାହିଁ, |
| ଉକ୍ତଃ | = କୁହାଯାଇଛି, | ତତ୍ | = ତାହା |
| ତମ୍ | = ସେହି ଅକ୍ଷର ନାମକ ଅବ୍ୟକ୍ତ ଭାବକୁ | ମମ | = ମୋର |
| ପରମାମ୍,ଗତିମ୍ | = ପରମ ଗତି | ପରମମ୍ | = ପରମ |
| ଆହୁଃ | = କହନ୍ତି, (ତଥା) | ଧାମ | = ଧାମ ଅଟେ । |

**ପୁରୁଷଃ ସ ପରଃ ପାର୍ଥ ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା ।**
**ଯସ୍ୟାନ୍ତଃସ୍ଥାନି ଭୂତାନି ଯେନ ସର୍ବମିଦଂ ତତମ୍ ॥ ୨୨ ॥**

ପୁରୁଷଃ, ସଃ, ପରଃ, ପାର୍ଥ, ଭକ୍ତ୍ୟା, ଲଭ୍ୟଃ, ତୁ, ଅନନ୍ୟୟା,
ଯସ୍ୟ, ଅନ୍ତଃସ୍ଥାନି, ଭୂତାନି, ଯେନ, ସର୍ବମ୍, ଇଦମ୍, ତତମ୍ ।।୨୨।।

| | | | |
|---|---|---|---|
| ତୁ | = ଏବଂ | | (ଏବଂ) |
| ପାର୍ଥ | = ହେ ପାର୍ଥ ! | ଯେନ | = ଯେଉଁ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଦ୍ୱାରା |
| ଯସ୍ୟ | = ଯେଉଁ ପରମାତ୍ମାଙ୍କର | | |
| ଅନ୍ତଃସ୍ଥାନି | = ଅନ୍ତର୍ଗତ (ହୋଇ) | ଇଦମ୍ | = ଏହି |
| ଭୂତାନି | = ସର୍ବଭୂତ ଅଛନ୍ତି | ସର୍ବମ୍ | = ସମସ୍ତ ଜଗତ |

| | | | |
|---|---|---|---|
| ତତମ୍ | = ପରିପୂର୍ଣ୍ଣ,[୧] | ପୁରୁଷଃ | = ପୁରୁଷ |
| ସଃ | = ସେହି ସନାତନ ଅବ୍ୟକ୍ତ | ଅନନ୍ୟୟା | = ଅନନ୍ୟ[୨] |
| | | ଭକ୍ତ୍ୟା | = ଭକ୍ତିଦ୍ୱାରା (ହିଁ) |
| ପରଃ | = ପରମ | ଲଭ୍ୟଃ | = ପ୍ରାପ୍ତ ହେବା ଯୋଗ୍ୟ । |

ଶୁକ୍ଳ ଏବଂ କୃଷ୍ଣ ମାର୍ଗର ବିଷୟ କହିବା ପାଇଁ ଭଗବାନଙ୍କ ପ୍ରତିଜ୍ଞା ।

**ଯତ୍ର କାଳେ ତ୍ୱନାବୃତ୍ତିମାବୃତ୍ତିଂ ଚୈବ ଯୋଗିନଃ ।**
**ପ୍ରୟାତା ଯାନ୍ତି ତଂ କାଳଂ ବକ୍ଷ୍ୟାମି ଭରତର୍ଷଭ ॥ ୨୩ ॥**

ଯତ୍ର, କାଳେ, ତୁ, ଅନାବୃତ୍ତିମ୍, ଆବୃତ୍ତିମ୍, ଚ, ଏବ, ଯୋଗିନଃ,
ପ୍ରୟାତାଃ, ଯାନ୍ତି, ତମ୍, କାଳମ୍, ବକ୍ଷ୍ୟାମି, ଭରତର୍ଷଭ ।।୨୩।।

| | | | |
|---|---|---|---|
| ଭରତର୍ଷଭ | = ହେ ଅର୍ଜୁନ ! | ଚ | = ଏବଂ (ଯେଉଁ କାଳରେ ଗଲେ) |
| ଯତ୍ର | = ଯେଉଁ | | |
| କାଳେ | = କାଳରେ (ମାର୍ଗରେ)[୩] | ଆବୃତ୍ତିମ୍ | = ପୁଣି ଫେରି ଆସିବା ଗତିକୁ |
| ପ୍ରୟାତାଃ | = ଶରୀର ତ୍ୟାଗ କରି ଯାଇଥିବା | ଏବ | = ହିଁ |
| | | ଯାନ୍ତି | = ପ୍ରାପ୍ତ ହୁଅନ୍ତି, |
| ଯୋଗିନଃ | = ଯୋଗୀମାନେ | ତମ୍ | = ସେହି |
| ତୁ | = ତ | କାଳମ୍ | = କାଳକୁ ଅର୍ଥାତ୍ ଦୁଇଟିଯାକ ମାର୍ଗକୁ |
| ଅନାବୃତ୍ତିମ୍ | = ଫେରି ଆସୁ ନ ଥିବା ଗତିକୁ | ବକ୍ଷ୍ୟାମି | = କହିବି । |

---

୧- ଗୀତା ଅଧ୍ୟାୟ ୯ ଶ୍ଲୋକ ୪ ଦେଖିବା ଉଚିତ।

୨- ଗୀତା ଅଧ୍ୟାୟ ୧୧ ଶ୍ଲୋକ ୫୪ ଦେଖିବା ଉଚିତ।

୩- ଏଠାରେ 'କାଳ' ଶବ୍ଦକୁ ମାର୍ଗ ବୁଝିବା ଉଚିତ, କାରଣ ଆଗକୁ ଥିବା ଶ୍ଲୋକମାନଙ୍କରେ ତାହାର ନାମ 'ସୃତି', 'ଗତି' ଏପରି କୁହାଯାଇଛି।

ଫଳ ସହିତ ଶୁକ୍ଳ ମାର୍ଗର କଥନ ।

ଅଗ୍ନିର୍ଜ୍ୟୋତିରହଃ ଶୁକ୍ଳଃ ଷଣ୍ମାସା ଉତ୍ତରାୟଣମ୍ ।
ତତ୍ର ପ୍ରୟାତା ଗଚ୍ଛନ୍ତି ବ୍ରହ୍ମ ବ୍ରହ୍ମବିଦୋ ଜନାଃ ॥ ୨୪ ॥

ଅଗ୍ନିଃ, ଜ୍ୟୋତିଃ, ଅହଃ, ଶୁକ୍ଳଃ, ଷଣ୍ମାସାଃ, ଉତ୍ତରାୟଣମ୍,
ତତ୍ର, ପ୍ରୟାତାଃ, ଗଚ୍ଛନ୍ତି, ବ୍ରହ୍ମ, ବ୍ରହ୍ମବିଦଃ, ଜନାଃ ।।୨୪।।

**ଏହି ଦୁଇ ପ୍ରକାରର ମାର୍ଗ ମଧ୍ୟରୁ, ଯେଉଁ ମାର୍ଗରେ—**

ଜ୍ୟୋତିଃ, = (ଯେଉଁ ମାର୍ଗରେ)
ଅଗ୍ନିଃ ଜ୍ୟୋତିର୍ମୟ ଅଗ୍ନି-ଅଭିମାନୀ ଦେବତା (ଅଛନ୍ତି),
ଅହଃ = ଦିନର ଅଭିମାନୀ ଦେବତା ଅଛନ୍ତି,
ଶୁକ୍ଳଃ = ଶୁକ୍ଳପକ୍ଷର ଅଭିମାନୀ ଦେବତା (ଏବଂ)
ଉତ୍ତରାୟଣମ୍ = ଉତ୍ତରାୟଣ
ଷଣ୍ମାସାଃ = ଛ ମାସର ଅଭିମାନୀ ଦେବତା (ଅଛନ୍ତି)
ତତ୍ର = ସେହି ମାର୍ଗରେ
ପ୍ରୟାତାଃ = ମରି ଯାଇଥିବା
ବ୍ରହ୍ମବିଦଃ,ଜନାଃ = ବ୍ରହ୍ମବେତ୍ତା ଯୋଗୀମାନେ* (ଉପରୋକ୍ତ ଦେବତାଙ୍କ ଦ୍ୱାରା କ୍ରମାନୁସାରେ ନିଆଯାଇ)
ବ୍ରହ୍ମ = ବ୍ରହ୍ମକୁ
ଗଚ୍ଛନ୍ତି = ପ୍ରାପ୍ତ ହୁଅନ୍ତି ।

ଫଳ ସହିତ କୃଷ୍ଣମାର୍ଗର କଥନ ।

ଧୂମୋ ରାତ୍ରିସ୍ତଥା କୃଷ୍ଣଃ ଷଣ୍ମାସା ଦକ୍ଷିଣାୟନମ୍ ।
ତତ୍ର ଚାନ୍ଦ୍ରମସଂ ଜ୍ୟୋତିର୍ଯୋଗୀ ପ୍ରାପ୍ୟ ନିବର୍ତ୍ତତେ ॥ ୨୫ ॥

ଧୂମଃ, ରାତ୍ରିଃ, ତଥା, କୃଷ୍ଣଃ, ଷଣ୍ମାସାଃ, ଦକ୍ଷିଣାୟନମ୍,
ତତ୍ର, ଚାନ୍ଦ୍ରମସମ୍, ଜ୍ୟୋତିଃ, ଯୋଗୀ, ପ୍ରାପ୍ୟ, ନିବର୍ତ୍ତତେ ।।୨୫।।

* ଅର୍ଥାତ୍ ପରମେଶ୍ୱରଙ୍କ ଉପାସନା ଦ୍ୱାରା ପରମେଶ୍ୱରଙ୍କୁ ପରୋକ୍ଷଭାବେ ଜାଣିଥିବା ଯୋଗୀପୁରୁଷ ।

ଏବଂ ଯେଉଁ ମାର୍ଗରେ—

| | | | |
|---|---|---|---|
| ଧୂମଃ | = (ଯେଉଁ ମାର୍ଗରେ) ଧୂମାଭିମାନୀ ଦେବତା | ଯୋଗୀ | = ସକାମ କର୍ମ କରିଥିବା ଯୋଗୀ (ଉପର୍ଯ୍ୟୁକ୍ତ ଦେବତାମାନଙ୍କ ଦ୍ୱାରା କ୍ରମରେ ନିଆଯାଇ) |
| ରାତ୍ରିଃ | = ରାତ୍ରି-ଅଭିମାନୀ ଦେବତା | ଚାନ୍ଦ୍ରମସମ୍ | = ଚନ୍ଦ୍ରମା ସମ୍ବନ୍ଧୀ |
| ତଥା | = ତଥା | ଜ୍ୟୋତିଃ | = ଜ୍ୟୋତିକୁ |
| କୃଷ୍ଣଃ | = କୃଷ୍ଣପକ୍ଷର ଅଭିମାନୀ ଦେବତା (ଏବଂ) | ପ୍ରାପ୍ୟ | = ପ୍ରାପ୍ତ ହୋଇ (ସ୍ୱର୍ଗରେ ନିଜର ଶୁଭ କର୍ମର ଫଳ ଭୋଗ କରିସାରି) |
| ଦକ୍ଷିଣାୟନମ୍, ଷଣ୍ମାସାଃ | = ଦକ୍ଷିଣାୟନ ଛଅ ମାସର ଅଭିମାନୀ ଦେବତା (ଅଛନ୍ତି), | ନିବର୍ତ୍ତତେ | = ପୁଣି ଫେରିଆସେ । |
| ତତ୍ର | = ସେହି ମାର୍ଗରେ (ମୃତ୍ୟୁପରେ ଯାଇଥିବା) | | |

ଶୁକ୍ଳ-କୃଷ୍ଣ ଗତିର ଅନାଦିତାର କଥନ ।

**ଶୁକ୍ଳକୃଷ୍ଣେ ଗତୀ ହ୍ୟେତେ ଜଗତଃ ଶାଶ୍ୱତେ ମତେ ।**
**ଏକୟା ଯାତ୍ୟନାବୃତ୍ତିମନ୍ୟୟାବର୍ତ୍ତତେ ପୁନଃ ॥ ୨୬ ॥**

ଶୁକ୍ଳକୃଷ୍ଣେ, ଗତୀ, ହି, ଏତେ, ଜଗତଃ, ଶାଶ୍ୱତେ, ମତେ,
ଏକୟା, ଯାତି, ଅନାବୃତ୍ତିମ୍, ଅନ୍ୟୟା, ଆବର୍ତ୍ତତେ, ପୁନଃ ।।୨୬।।

| | | | |
|---|---|---|---|
| ହି | = କାରଣ | ଶାଶ୍ୱତେ | = ସନାତନ |
| ଜଗତଃ | = ଜଗତର | ମତେ | = ବୋଲି ମାନି ନିଆଯାଇଛି । |
| ଏତେ | = ଏହି ଦୁଇ ପ୍ରକାରର | ଏକୟା | = ତା'ଭିତରୁ ଗୋଟିକଦ୍ୱାରା* (ଯାଇଥିବା ଯୋଗୀ) |
| ଶୁକ୍ଳ-କୃଷ୍ଣେ | = ଶୁକ୍ଳ ଓ କୃଷ୍ଣ ଅର୍ଥାତ୍ ଦେବଯାନ ଓ ପିତୃଯାନ | | |
| ଗତୀ | = ମାର୍ଗ | | |

* ଅର୍ଥାତ୍ ଏହି ଅଧ୍ୟାୟର ଶ୍ଳୋକ ୨୪ ଅନୁସାରେ ଅର୍ଚିମାର୍ଗରେ ଯାଇଥିବା ଯୋଗୀ ।

| | |
|---|---|
| ଅନାବୃତ୍ତିମ୍ | = ଯେଉଁଠାରୁ ଫେରିବାକୁ ହୁଏ ନାହିଁ, ସେହି ପରମଗତିକୁ |
| ଯାତି | = ପ୍ରାପ୍ତ ହୁଏ (ଏବଂ) |
| ଅନ୍ୟଯା | = ଅନ୍ୟଟି ଦ୍ୱାରା[୧] (ଯାଇଥିବା ସକାମ କର୍ମୀ) |
| ପୁନଃ | = ପୁଣି |
| ଆବର୍ତ୍ତତେ | = ଫେରି ଆସେ (ଅର୍ଥାତ୍ ଜନ୍ମ-ମୃତ୍ୟୁକୁ ପ୍ରାପ୍ତ ହୁଏ) । |

ଉଭୟ ଗତିକୁ ଜାଣିଥିବା ଯୋଗୀଙ୍କୁ ପ୍ରଶଂସା ଏବଂ ଅର୍ଜୁନଙ୍କୁ ଯୋଗୀ ହେବା ପାଇଁ ଆଜ୍ଞା ।

**ନୈତେ ସୃତୀ ପାର୍ଥ ଜାନନ୍ ଯୋଗୀ ମୁହ୍ୟତି କଶ୍ଚନ ।**
**ତସ୍ମାତ୍ସର୍ବେଷୁ କାଳେଷୁ ଯୋଗଯୁକ୍ତୋ ଭବାର୍ଜୁନ ॥ ୨୭ ॥**

ନ, ଏତେ, ସୃତୀ, ପାର୍ଥ, ଜାନନ୍, ଯୋଗୀ, ମୁହ୍ୟତି, କଶ୍ଚନ,
ତସ୍ମାତ୍, ସର୍ବେଷୁ, କାଳେଷୁ, ଯୋଗଯୁକ୍ତଃ, ଭବ, ଅର୍ଜୁନ ।।୨୭।।

ଏବଂ—

| | |
|---|---|
| ପାର୍ଥ | = ହେ ପାର୍ଥ ! (ଏହିପ୍ରକାରେ) |
| ଏତେ | = ଏହି ଦୁଇ |
| ସୃତୀ | = ମାର୍ଗକୁ |
| ଜାନନ୍ | = ତତ୍ତ୍ୱତଃ ଜାଣିଗଲେ |
| କଶ୍ଚନ | = କୌଣସି ବି |
| ଯୋଗୀ | = ଯୋଗୀ |
| ନ, ମୁହ୍ୟତି | = ମୋହିତ ହୁଏ ନାହିଁ[୨] |
| ତସ୍ମାତ୍ | = ତେଣୁ |
| ଅର୍ଜୁନ | = ହେ ଅର୍ଜୁନ ! (ତୁମେ) |
| ସର୍ବେଷୁ | = ସର୍ବ |
| କାଳେଷୁ | = କାଳରେ |
| ଯୋଗଯୁକ୍ତଃ | = ସମବୁଦ୍ଧିରୂପକ ଯୋଗରେ ଯୁକ୍ତ |
| ଭବ | = ହୁଅ ଅର୍ଥାତ୍ ନିରନ୍ତର ମୋର ପ୍ରାପ୍ତି ପାଇଁ ସାଧନାରତ ହୁଅ । |

୧- ଅର୍ଥାତ୍ ଏହି ଅଧ୍ୟାୟର ଶ୍ଳୋକ ୨୫ ଅନୁସାରେ ଧୂମମାର୍ଗରେ ଯାଇଥିବା ସକାମ କର୍ମୀ ।
୨- ଅର୍ଥାତ୍ ସେ ପୁଣି ନିଷ୍କାମ ଭାବରେ ହିଁ ସାଧନ କରେ, କାମନା ମାନଙ୍କରେ ପଡ଼େ ନାହିଁ ।

ଏହି ଅଧ୍ୟାୟରେ ବର୍ଣ୍ଣିତ ତତ୍ତ୍ୱକୁ ଜାଣିବାର ଫଳ ।

ବେଦେଷୁ ଯଜ୍ଞେଷୁ ତପଃସୁ ଚୈବ
ଦାନେଷୁ ଯତ୍ ପୁଣ୍ୟଫଳଂ ପ୍ରଦିଷ୍ଟମ୍ ।
ଅତ୍ୟେତି ତତ୍ ସର୍ବମିଦଂ ବିଦିତ୍ୱା
ଯୋଗୀ ପରଂ ସ୍ଥାନମୁପୈତି ଚାଦ୍ୟମ୍ ॥ ୨୮ ॥

ବେଦେଷୁ, ଯଜ୍ଞେଷୁ, ତପଃସୁ, ଚ, ଏବ,
ଦାନେଷୁ, ଯତ୍, ପୁଣ୍ୟଫଳମ୍, ପ୍ରଦିଷ୍ଟମ୍,
ଅତ୍ୟେତି, ତତ୍, ସର୍ବମ୍, ଇଦମ୍, ବିଦିତ୍ୱା,
ଯୋଗୀ, ପରମ୍, ସ୍ଥାନମ୍, ଉପୈତି, ଚ, ଆଦ୍ୟମ୍ । ।୨୮ । ।

**କାହିଁକି ନା—**

| | | | |
|---|---|---|---|
| ଯୋଗୀ | = ଯୋଗୀ ପୁରୁଷ | ପ୍ରଦିଷ୍ଟମ୍ | = କୁହାଯାଇଛି, |
| ଇଦମ୍ | = ଏହି ରହସ୍ୟକୁ | ତତ୍ | = ସେହି |
| ବିଦିତ୍ୱା | = ତତ୍ତ୍ୱତଃ ଜାଣି | ସର୍ବମ୍ | = ସବୁକୁ |
| ବେଦେଷୁ | = ବେଦ ପଢ଼ିବାରେ | ଏବ | = ନିଃସନ୍ଦେହ |
| ଚ | = ତଥା | ଅତ୍ୟେତି | = ଉଲ୍ଲଂଘନ କରିଯାଏ |
| ଯଜ୍ଞେଷୁ, ତପଃସୁ,ଦାନେଷୁ | = ଯଜ୍ଞ, ତପ ଓ ଦାନାଦି କର୍ମମାନଙ୍କରେ | ଚ | = ଏବଂ |
| ଯତ୍ | = ଯେଉଁ | ଆଦ୍ୟମ୍ | = ସନାତନ |
| ପୁଣ୍ୟଫଳମ୍ | = ପୁଣ୍ୟଫଳ | ପରମ୍, ସ୍ଥାନମ୍ | = ପରମ ପଦକୁ |
| | | ଉପୈତି | = ପ୍ରାପ୍ତ ହୁଏ । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଅକ୍ଷରବ୍ରହ୍ମଯୋଗୋ ନାମ ଅଷ୍ଟମୋଽଧ୍ୟାୟଃ ॥ ୮ ॥*

**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ଅକ୍ଷରବ୍ରହ୍ମଯୋଗ' ନାମକ ଅଷ୍ଟମ ଅଧ୍ୟାୟ ପୂର୍ଣ୍ଣ ହେଲା । । ୮ । ।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

ଓଁ ଶ୍ରୀପରମାତ୍ମନେ ନମଃ

# ନବମ ଅଧ୍ୟାୟ

## ରାଜବିଦ୍ୟାରାଜଗୁହ୍ୟଯୋଗ

**ପ୍ରଧାନ ବିଷୟ**

| | |
|---|---|
| ୧ ରୁ ୬ | ପ୍ରଭାବ ସହିତ ଜ୍ଞାନର ବିଷୟ, |
| ୭ ରୁ ୧୦ | ଜଗତର ଉତ୍ପତ୍ତି ବିଷୟ, |
| ୧୧ ରୁ ୧୫ | ଭଗବାନଙ୍କୁ ତିରସ୍କାର କରୁଥିବା ଆସୁରୀ ପ୍ରକୃତି ମନୁଷ୍ୟଙ୍କୁ ନିନ୍ଦା ଏବଂ ଦୈବୀ ପ୍ରକୃତି ଭଗବଦ୍‌ଜନଙ୍କ ପ୍ରକାର, |
| ୧୬ ରୁ ୧୯ | ସର୍ବାତ୍ମରୂପରେ ପ୍ରଭାବ ସହିତ ଭଗବାନଙ୍କ ସ୍ୱରୂପର ବର୍ଣ୍ଣନ, |
| ୨୦ ରୁ ୨୫ | ସକାମ ଏବଂ ନିଷ୍କାମ ଉପାସନାର ଫଳ, |
| ୨୬ ରୁ ୩୪ | ନିଷ୍କାମ ଭଗବଦ୍‌ଭକ୍ତିର ମହିମା । |

*ଶ୍ରୀଭଗବାନ ଉବାଚ*

ବିଜ୍ଞାନ ସହିତ ଜ୍ଞାନ କହିବା ପାଇଁ ଭଗବାନଙ୍କ ପ୍ରତିଜ୍ଞା ।

**ଇଦଂ ତୁ ତେ ଗୁହ୍ୟତମଂ ପ୍ରବକ୍ଷ୍ୟାମ୍ୟନସୂୟବେ ।**
**ଜ୍ଞାନଂ ବିଜ୍ଞାନସହିତଂ ଯଜ୍‌ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ ॥ ୧ ॥**

ଇଦମ୍, ତୁ, ତେ, ଗୁହ୍ୟତମମ୍, ପ୍ରବକ୍ଷ୍ୟାମି, ଅନସୂୟବେ,
ଜ୍ଞାନମ୍, ବିଜ୍ଞାନସହିତମ୍, ଯତ୍, ଜ୍ଞାତ୍ୱା, ମୋକ୍ଷ୍ୟସେ, ଅଶୁଭାତ୍ ।। ୧ ।।

**ଏହାପରେ ଶ୍ରୀକୃଷ୍ଣ ଭଗବାନ୍ କହିଲେ, ହେ ଅର୍ଜୁନ !—**

| | | | |
|---|---|---|---|
| ତେ | = ତୁମପରି | ଇଦମ୍ | = ଏହି |
| ଅନସୂୟବେ | = ଦୋଷଦୃଷ୍ଟିଶୂନ୍ୟ ଭକ୍ତଙ୍କୁ | ଗୁହ୍ୟତମମ୍ | = ପରମ ଗୋପନୀୟ |

| | | | |
|---|---|---|---|
| ବିଜ୍ଞାନସହିତମ୍ | = ବିଜ୍ଞାନସହିତ | ଯତ୍, ଜ୍ଞାତ୍ୱା | = ଯାହା ଜାଣି |
| ଜ୍ଞାନମ୍ | = ଜ୍ଞାନକୁ | ଅଶୁଭାତ୍ | = (ତୁମେ) ଦୁଃଖରୂପୀ ସଂସାରରୁ |
| ପ୍ରବକ୍ଷ୍ୟାମି | = ପୁନର୍ବାର ଭଲଭାବେ ବୁଝାଇ କହିଦେବି | ମୋକ୍ଷ୍ୟସେ | = ମୁକ୍ତ ହୋଇଯିବ । |
| ତୁ | = ଯେ, | | |

ବିଜ୍ଞାନ ସହିତ ଜ୍ଞାନର ମହିମା ।

ରାଜବିଦ୍ୟା ରାଜଗୁହ୍ୟଂ ପବିତ୍ରମିଦମୁତ୍ତମମ୍ ।
ପ୍ରତ୍ୟକ୍ଷାବଗମଂ ଧର୍ମ୍ୟଂ ସୁସୁଖଂ କର୍ତ୍ତୁମବ୍ୟୟମ୍ ॥ ୨ ॥

ରାଜବିଦ୍ୟା, ରାଜଗୁହ୍ୟମ୍, ପବିତ୍ରମ୍, ଇଦମ୍, ଉତ୍ତମମ୍,
ପ୍ରତ୍ୟକ୍ଷାବଗମମ୍, ଧର୍ମ୍ୟମ୍, ସୁସୁଖମ୍, କର୍ତ୍ତୁମ୍, ଅବ୍ୟୟମ୍ ।।୨ ।।

| | | | |
|---|---|---|---|
| ଇଦମ୍ | = ଏହି ବିଜ୍ଞାନ ସହିତ ଜ୍ଞାନ (ହେଉଛି) | ପବିତ୍ରମ୍ | = ଅତ୍ୟନ୍ତ ପବିତ୍ର, |
| ରାଜବିଦ୍ୟା | = ସକଳ ବିଦ୍ୟାର ରାଜା, | ଉତ୍ତମମ୍ | = ଅତ୍ୟନ୍ତ ଉତ୍ତମ, |
| ରାଜଗୁହ୍ୟମ୍ | = ସକଳ ଗୋପନୀୟ ରହସ୍ୟମାନଙ୍କର ରାଜା, | ପ୍ରତ୍ୟକ୍ଷାବଗମମ୍ | = ପ୍ରତ୍ୟକ୍ଷଫଳଦାୟୀ । |
| | | ଧର୍ମ୍ୟମ୍ | = (ଓ) ଧର୍ମଯୁକ୍ତ |
| | | କର୍ତ୍ତୁମ୍ | = ସାଧନା କରିବାରେ |
| | | ସୁସୁଖମ୍ | = ଅତ୍ୟନ୍ତ ସୁଗମ |
| | | ଅବ୍ୟୟମ୍ | = (ଓ) ଅବିନାଶୀ । |

ଏହି ଜ୍ଞାନରେ ଶ୍ରଦ୍ଧା ନରଖିବା ମନୁଷ୍ୟଙ୍କର ଜନ୍ମ-ମରଣରୂପୀ ସଂସାର-ଚକ୍ରକୁ ପ୍ରାପ୍ତି ।

ଅଶ୍ରଦ୍ଦଧାନାଃ ପୁରୁଷା ଧର୍ମସ୍ୟାସ୍ୟ ପରନ୍ତପ ।
ଅପ୍ରାପ୍ୟ ମାଂ ନିବର୍ତ୍ତନ୍ତେ ମୃତ୍ୟୁସଂସାରବର୍ତ୍ମନି ॥ ୩ ॥

ଅଶ୍ରଦ୍ଦଧାନାଃ, ପୁରୁଷାଃ, ଧର୍ମସ୍ୟ, ଅସ୍ୟ, ପରନ୍ତପ,
ଅପ୍ରାପ୍ୟ, ମାମ୍, ନିବର୍ତ୍ତନ୍ତେ, ମୃତ୍ୟୁସଂସାରବର୍ତ୍ମନି ।।୩ ।।

ଏବଂ—

| | |
|---|---|
| ପରନ୍ତପ | = ହେ ପରନ୍ତପ ଅର୍ଜୁନ ! |
| ଅସ୍ୟ | = ଏହି (ଉପରୋକ୍ତ) |
| ଧର୍ମସ୍ୟ | = ଧର୍ମରେ |
| ଅଶ୍ରଦ୍ଦଧାନାଃ | = ଶ୍ରଦ୍ଧାହୀନ |
| ପୁରୁଷାଃ | = ପୁରୁଷମାନେ |
| ମାମ୍ | = ମୋତେ |
| ଅପ୍ରାପ୍ୟ | = ପ୍ରାପ୍ତ ନ ହୋଇ |
| ମୃତ୍ୟୁସଂସାର-ବର୍ତ୍ମନି | = ମୃତ୍ୟୁରୂପକ ସଂସାରଚକ୍ରରେ |
| ନିବର୍ତ୍ତନ୍ତେ | = ଘୂରିଚାଲନ୍ତି । |

ପ୍ରଭାବସହିତ ଭଗବାନଙ୍କ ସର୍ବବ୍ୟାପୀ ସ୍ୱରୂପର କଥନ ।

**ମୟା ତତମିଦଂ ସର୍ବଂ ଜଗଦବ୍ୟକ୍ତମୂର୍ତ୍ତିନା ।**
**ମତ୍‌ସ୍ଥାନି ସର୍ବଭୂତାନି ନ ଚାହଂ ତେଷ୍ୱବସ୍ଥିତଃ ॥ ୪ ॥**

ମୟା, ତତମ୍, ଇଦମ୍, ସର୍ବମ୍, ଜଗତ୍, ଅବ୍ୟକ୍ତମୂର୍ତ୍ତିନା,
ମତ୍‌ସ୍ଥାନି, ସର୍ବଭୂତାନି, ନ, ଚ, ଅହମ୍, ତେଷୁ, ଅବସ୍ଥିତଃ ।।୪ ।।

**ଏବଂ ହେ ଅର୍ଜୁନ !—**

| | |
|---|---|
| ମୟା | = ମୋ ଦ୍ୱାରା (ଅର୍ଥାତ) |
| ଅବ୍ୟକ୍ତମୂର୍ତ୍ତିନା | = ନିରାକାର ପରମାତ୍ମାଙ୍କଦ୍ୱାରା |
| ଇଦମ୍ | = ଏହି |
| ସର୍ବମ୍ | = ସମସ୍ତ |
| ଜଗତ୍ | = ଜଗତ (ଜଳଦ୍ୱାରା ବରଫପରି) |
| ତତମ୍ | = ପରିପୂର୍ଣ୍ଣ |
| ଚ | = ଏବଂ |
| ସର୍ବଭୂତାନି | = ସକଳ ଭୂତ |
| ମତ୍‌ସ୍ଥାନି | = ମୋର ଅନ୍ତର୍ଗତ ସଂକଳ୍ପର ଆଧାରରେ ଅବସ୍ଥିତ । (କିନ୍ତୁ ପ୍ରକୃତରେ) |
| ଅହମ୍ | = ମୁଁ |
| ତେଷୁ | = ସେମାନଙ୍କ ମଧ୍ୟରେ |
| ନ, ଅବସ୍ଥିତଃ | = ଅବସ୍ଥିତ ନୁହେଁ । |

**ନ ଚ ମତ୍‌ସ୍ଥାନି ଭୂତାନି ପଶ୍ୟ ମେ ଯୋଗମୈଶ୍ୱରମ୍ ।**
**ଭୂତଭୃନ୍ନ ଚ ଭୂତସ୍ଥୋ ମମାତ୍ମା ଭୂତଭାବନଃ ॥ ୫ ॥**

ନ, ଚ, ମତ୍‌ସ୍ଥାନି, ଭୂତାନି, ପଶ୍ୟ, ମେ, ଯୋଗମ୍, ଐଶ୍ୱରମ୍,
ଭୂତଭୃତ୍, ନ, ଚ, ଭୂତସ୍ଥଃ, ମମ, ଆତ୍ମା, ଭୂତଭାବନଃ ।।୫।।

| | | | |
|---|---|---|---|
| ଭୂତାନି | = ସେହି ସମସ୍ତ ଭୂତ | ଚ | = ଏବଂ |
| ମତ୍‌ସ୍ଥାନି, ନ | = ମୋ ଭିତରେ ଅବସ୍ଥିତ ନୁହନ୍ତି; | ଭୂତଭାବନଃ | = ପ୍ରାଣୀମାନଙ୍କର ସୃଷ୍ଟିକର୍ତ୍ତା |
| ମେ | = (କିନ୍ତୁ) ମୋର | ଚ | = (ହୋଇ) ମଧ୍ୟ |
| ଐଶ୍ୱରମ୍ | = ଈଶ୍ୱରୀୟ | ମମ | = ମୋର |
| ଯୋଗମ୍ | = ଯୋଗଶକ୍ତିକୁ | ଆତ୍ମା | = ଆତ୍ମା (ପ୍ରକୃତରେ) |
| ପଶ୍ୟ | = ଦେଖ (ଯେ) | | |
| ଭୂତଭୃତ୍ | = ପ୍ରାଣୀମାନଙ୍କର ଧାରଣ-ପୋଷଣକାରୀ | ଭୂତସ୍ଥଃ | = ପ୍ରାଣୀମାନଙ୍କ ମଧ୍ୟରେ ଅବସ୍ଥିତ |
| | | ନ | = ନୁହେଁ । |

ଆକାଶର ଦୃଷ୍ଟାନ୍ତ ଦ୍ୱାରା ସର୍ବବ୍ୟାପୀ ଭଗବାନଙ୍କ ସ୍ୱରୂପର କଥନ ।

**ଯଥାକାଶସ୍ଥିତୋ ନିତ୍ୟଂ ବାୟୁଃ ସର୍ବତ୍ରଗୋ ମହାନ୍ ।**
**ତଥା ସର୍ବାଣି ଭୂତାନି ମତ୍‌ସ୍ଥାନୀତ୍ୟୁପଧାରୟ ॥ ୬ ॥**

ଯଥା, ଆକାଶସ୍ଥିତଃ, ନିତ୍ୟମ୍, ବାୟୁଃ, ସର୍ବତ୍ରଗଃ, ମହାନ୍,
ତଥା, ସର୍ବାଣି, ଭୂତାନି, ମତ୍‌ସ୍ଥାନି, ଇତି, ଉପଧାରୟ ।।୬।।

**କାହିଁକି ନା—**

| | | | |
|---|---|---|---|
| ଯଥା | = ଯେପରି (ଆକାଶରୁ ଉତ୍ପନ୍ନ) | ଆକାଶସ୍ଥିତଃ | = ଆକାଶରେ ହିଁ ସ୍ଥିତ, |
| ସର୍ବତ୍ରଗଃ | = ସର୍ବତ୍ର ବିଚରଣ କରୁଥିବା | ତଥା | = ସେହିପରି (ମୋର ସଂକଳ୍ପ ଦ୍ୱାରା ଉତ୍ପନ୍ନ ହୋଇଥିବାରୁ) |
| ମହାନ୍ | = ମହାନ୍ | | |
| ବାୟୁଃ | = ବାୟୁ | | |
| ନିତ୍ୟମ୍ | = ସର୍ବଦା | ସର୍ବାଣି | = ସମସ୍ତ |

| | | | |
|---|---|---|---|
| ଭୂତାନି | = ଭୂତମାନେ | ଇତି | = ବୋଲି |
| ମତ୍‌ସ୍ଥାନି | = ମୋ ମଧ୍ୟରେ ଅବସ୍ଥିତ | ଉପଧାରୟ | = ଜାଣ । |

ସମସ୍ତ ଭୂତଙ୍କ ଉତ୍ପତ୍ତି ଏବଂ ପ୍ରଳୟର କଥନ ।

**ସର୍ବଭୂତାନି କୌନ୍ତେୟ ପ୍ରକୃତିଂ ଯାନ୍ତି ମାମିକାମ୍ ।**
**କଳ୍ପକ୍ଷୟେ ପୁନସ୍ତାନି କଳ୍ପାଦୌ ବିସୃଜାମ୍ୟହମ୍ ॥ ୭ ॥**

ସର୍ବଭୂତାନି, କୌନ୍ତେୟ, ପ୍ରକୃତିମ୍, ଯାନ୍ତି, ମାମିକାମ୍, କଳ୍ପକ୍ଷୟେ, ପୁନଃ, ତାନି, କଳ୍ପାଦୌ, ବିସୃଜାମି, ଅହମ୍।।୭।।

**ଏବଂ—**

| | | | |
|---|---|---|---|
| କୌନ୍ତେୟ | = ହେ ଅର୍ଜୁନ ! | କଳ୍ପାଦୌ | = (ପୁଣି) କଳ୍ପର ଆରମ୍ଭରେ |
| କଳ୍ପକ୍ଷୟେ | = କଳ୍ପର ଶେଷରେ | | |
| ସର୍ବଭୂତାନି | = ସକଳ ଭୂତ | | |
| ମାମିକାମ୍ | = ମୋର | | |
| ପ୍ରକୃତିମ୍ | = ପ୍ରକୃତିକୁ | ତାନି | = ସେମାନଙ୍କୁ |
| ଯାନ୍ତି | = ପ୍ରାପ୍ତ ହୁଅନ୍ତି (ଅର୍ଥାତ୍ ପ୍ରକୃତିରେ ଲୀନ ହୁଅନ୍ତି); | ଅହମ୍ | = ମୁଁ |
| | | ପୁନଃ | = ପୁଣିଥରେ |
| | | ବିସୃଜାମି | = ରଚନା କରେ । |

ସମସ୍ତ ଭୂତଙ୍କ ବାରମ୍ବାର ଉତ୍ପତ୍ତିର କଥନ ।

**ପ୍ରକୃତିଂ ସ୍ୱାମବଷ୍ଟଭ୍ୟ ବିସୃଜାମି ପୁନଃ ପୁନଃ ।**
**ଭୂତଗ୍ରାମମିମଂ କୃତ୍ସ୍ନମବଶଂ ପ୍ରକୃତେର୍ବଶାତ୍ ॥ ୮ ॥**

ପ୍ରକୃତିମ୍, ସ୍ୱାମ୍, ଅବଷ୍ଟଭ୍ୟ, ବିସୃଜାମି, ପୁନଃ, ପୁନଃ, ଭୂତଗ୍ରାମମ୍, ଇମମ୍, କୃତ୍ସ୍ନମ୍, ଅବଶମ୍, ପ୍ରକୃତେଃ, ବଶାତ୍।।୮।।

**ଯେପରି—**

| | | | |
|---|---|---|---|
| ମାମ୍ | = (ମୁଁ ମୋ) ନିଜ | କୃତ୍ସ୍ନମ୍ | = ସମସ୍ତ |
| ପ୍ରକୃତିମ୍ | = ପ୍ରକୃତିକୁ | ଭୂତଗ୍ରାମମ୍ | = ଭୂତସମୁଦାୟକୁ |
| ଅବଷ୍ଟଭ୍ୟ | = ଗ୍ରହଣ କରି | ପୁନଃ, ପୁନଃ | = ବାରମ୍ବାର (ସେମାନଙ୍କ କର୍ମ ଅନୁସାରେ) |
| ପ୍ରକୃତେଃ, ବଶାତ୍ | = ସ୍ୱଭାବବଶତଃ | | |
| ଅବଶମ୍ | = ପରତନ୍ତ୍ର ହୋଇଥିବା | | |
| ଇମମ୍ | = ଏହି | ବିସୃଜାମି | = ସୃଷ୍ଟି କରେ । |

ଭଗବାନଙ୍କୁ କର୍ମ ବାନ୍ଧି ପାରେନାହିଁ - ତାହାର କାରଣ ।

**ନ ଚ ମାଂ ତାନି କର୍ମାଣି ନିବଧ୍ନନ୍ତି ଧନଞ୍ଜୟ ।**
**ଉଦାସୀନବଦାସୀନମସକ୍ତଂ ତେଷୁ କର୍ମସୁ ॥ ୯ ॥**

ନ, ଚ, ମାମ୍, ତାନି, କର୍ମାଣି, ନିବଧ୍ନନ୍ତି, ଧନଞ୍ଜୟ, ଉଦାସୀନବତ୍, ଆସୀନମ୍, ଅସକ୍ତମ୍, ତେଷୁ, କର୍ମସୁ ।।୯।।

| | | | |
|---|---|---|---|
| ଧନଞ୍ଜୟ | = ହେ ଅର୍ଜୁନ ! | ଆସୀନମ୍ | = ଅବସ୍ଥାନ କରୁଥିବା |
| ତେଷୁ | = ସେ ସବୁ | | |
| କର୍ମସୁ | = କର୍ମମାନଙ୍କରେ | ମାମ୍ | = ମୋତେ ଅର୍ଥାତ୍ ପରମାତ୍ମାଙ୍କୁ |
| ଅସକ୍ତମ୍ | = ଆସକ୍ତିରହିତ | | |
| ଚ | = ଏବଂ | ତାନି | = ସେ ସବୁ |
| ଉଦାସୀନବତ୍ | = ଉଦାସୀନ ସଦୃଶ* | କର୍ମାଣି | = କର୍ମମାନ |
| | | ନ, ନିବଧ୍ନନ୍ତି | = ବାନ୍ଧନ୍ତି ନାହିଁ । |

ଭଗବାନଙ୍କ ସଂକଳ୍ପରୁ ପ୍ରକୃତି ଦ୍ୱାରା ଚରାଚର ଜଗତର ଉତ୍ପତ୍ତି ।

**ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍ ।**
**ହେତୁନାନେନ କୌନ୍ତେୟ ଜଗଦ୍ବିପରିବର୍ତ୍ତତେ ॥ ୧୦ ॥**

ମୟା, ଅଧ୍ୟକ୍ଷେଣ, ପ୍ରକୃତିଃ, ସୂୟତେ, ସଚରାଚରମ୍, ହେତୁନା, ଅନେନ, କୌନ୍ତେୟ, ଜଗତ୍, ବିପରିବର୍ତ୍ତତେ ।।୧୦।।

* ଯାହାଙ୍କର ସମ୍ପୂର୍ଣ୍ଣ କାର୍ଯ୍ୟ କର୍ତ୍ତୃତ୍ୱଭାବ ବିନା ନିଜେ ନିଜେ ହୁଏ, ତାହାର ନାମ 'ଉଦାସୀନ ସଦୃଶ' ଅଟେ ।

ଏବଂ—

| | |
|---|---|
| କୌନ୍ତେୟ | = ହେ ଅର୍ଜ୍ଜୁନ ! |
| ମୟା, | = ଅଧ୍ୟକ୍ଷରୂପୀ |
| ଅଧ୍ୟକ୍ଷେଣ | ମୋର ଶକ୍ତି ଓ ସହାୟତାରେ |
| ପ୍ରକୃତିଃ | = ପ୍ରକୃତି |
| ସଚରାଚରମ୍ | = ସମଗ୍ର ଚରାଚର ସହିତ ଜଗତକୁ |
| ସୂୟତେ | = ସୃଷ୍ଟି କରେ (ଏବଂ) |
| ଅନେନ | = ଏହି |
| ହେତୁନା | = କାରଣରୁ |
| ଜଗତ୍ | = ଏହି ସଂସାର-ଚକ୍ର |
| ବିପରିବର୍ତ୍ତତେ | = ଘୂରିଚାଲିଛି । |

ଭଗବାନଙ୍କ ପ୍ରଭାବକୁ ନଜାଣିବାର କାରଣ ଏବଂ ଭଗବାନଙ୍କୁ ତିରସ୍କାର କରୁଥିବା ମନୁଷ୍ୟମାନଙ୍କୁ ନିନ୍ଦା ।

**ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତମ୍ ।**
**ପରଂ ଭାବମଜାନନ୍ତୋ ମମ ଭୂତମହେଶ୍ୱରମ୍ ॥ ୧୧ ॥**

ଅବଜାନନ୍ତି, ମାମ୍, ମୂଢ଼ାଃ, ମାନୁଷୀମ୍, ତନୁମ୍, ଆଶ୍ରିତମ୍,
ପରମ୍, ଭାବମ୍, ଅଜାନନ୍ତଃ, ମମ, ଭୂତମହେଶ୍ୱରମ୍ ।। ୧୧ ।।

**ଏହିପରି ହେଲେ ବି—**

| | |
|---|---|
| ମମ | = ମୋର |
| ପରମ୍ | = ପରମ |
| ଭାବମ୍ | = ଭାବକୁ * |
| ଅଜାନନ୍ତଃ | = ଜାଣୁ ନଥିବା |
| ମୂଢ଼ାଃ | = ମୂଢ଼ ଲୋକମାନେ |
| ମାନୁଷୀମ୍, ତନୁମ୍ | = ମନୁଷ୍ୟ ଶରୀର |
| ଆଶ୍ରିତମ୍ | = ଧାରଣ କରିଥିବା |
| ଭୂତମହେଶ୍ୱରମ୍, ମାମ୍ | = ସକଳ ଭୂତଙ୍କ ମହାନ୍ ଈଶ୍ୱର ସ୍ୱରୂପ ମୋତେ |
| ଅବଜାନନ୍ତି | = ତୁଚ୍ଛ ଦୃଷ୍ଟିରେ ଦେଖନ୍ତି (ଅର୍ଥାତ୍ ନିଜର ଯୋଗମାୟା ଦ୍ୱାରା ସଂସାରର ଉଦ୍ଧାର ନିମନ୍ତେ ମନୁଷ୍ୟରୂପରେ ବିଚରଣ କରୁଥିବା ମୋତେ ସାଧାରଣ ମନୁଷ୍ୟ ବୋଲି ଭାବନ୍ତି ।) |

* ଗୀତା ଅଧ୍ୟାୟ ୭ ଶ୍ଳୋକ ୨୪ ଦ୍ରଷ୍ଟବ୍ୟ ।

ରାକ୍ଷସୀ ଏବଂ ଆସୁରୀ ପ୍ରକୃତି ମନୁଷ୍ୟଙ୍କ ଲକ୍ଷଣ ।

**ମୋଘାଶା ମୋଘକର୍ମାଣୋ ମୋଘଜ୍ଞାନା ବିଚେତସଃ ।**
**ରାକ୍ଷସୀମାସୁରୀଂ ଚୈବ ପ୍ରକୃତିଂ ମୋହିନୀଂ ଶ୍ରିତାଃ ॥ ୧୨ ॥**

ମୋଘାଶାଃ, ମୋଘକର୍ମାଣଃ, ମୋଘଜ୍ଞାନାଃ, ବିଚେତସଃ, ରାକ୍ଷସୀମ୍, ଆସୁରୀମ୍, ଚ,ଏବ, ପ୍ରକୃତିମ୍, ମୋହିନୀମ୍, ଶ୍ରିତାଃ ।।୧୨।।

**ସେମାନେ—**

| | | | |
|---|---|---|---|
| ମୋଘାଶାଃ | = (ସେହି) ବ୍ୟର୍ଥ ଆଶା ରଖୁଥିବା, | ରାକ୍ଷସୀମ୍ | = ରାକ୍ଷସୀ, |
| | | ଆସୁରୀମ୍ | = ଆସୁରୀ |
| ମୋଘକର୍ମାଣଃ | = ବ୍ୟର୍ଥ କର୍ମ କରୁଥିବା (ଓ) | ଚ | = ଓ |
| | | ମୋହିନୀମ୍ | = ମୋହିନୀ |
| ମୋଘଜ୍ଞାନାଃ | = ବ୍ୟର୍ଥ ଜ୍ଞାନଯୁକ୍ତ | ପ୍ରକୃତିମ୍ | = ପ୍ରକୃତିକୁ[୧] |
| | | ଏବ | = ହିଁ |
| ବିଚେତସଃ | = ବିକ୍ଷିପ୍ତଚିତ୍ତ ଅଜ୍ଞାନୀମାନେ | ଶ୍ରିତାଃ | = ଧାରଣ କରି ରହନ୍ତି । |

ଭଗବାନଙ୍କ ପ୍ରଭାବକୁ ଜାଣିଥିବା ଅନନ୍ୟ ଭକ୍ତଙ୍କର ଭଜନର ପ୍ରକାର ।

**ମହାତ୍ମାନସ୍ତୁ ମାଂ ପାର୍ଥ ଦୈବୀଂ ପ୍ରକୃତିମାଶ୍ରିତାଃ ।**
**ଭଜନ୍ତ୍ୟନନ୍ୟମନସୋ ଜ୍ଞାତ୍ୱା ଭୂତାଦିମବ୍ୟୟମ୍ ॥ ୧୩ ॥**

ମହାତ୍ମାନଃ, ତୁ, ମାମ୍, ପାର୍ଥ, ଦୈବୀମ୍, ପ୍ରକୃତିମ୍, ଆଶ୍ରିତାଃ, ଭଜନ୍ତି, ଅନନ୍ୟମନସଃ, ଜ୍ଞାତ୍ୱା, ଭୂତାଦିମ୍, ଅବ୍ୟୟମ୍।।୧୩।।

| | | | |
|---|---|---|---|
| ତୁ | = କିନ୍ତୁ | ଦୈବୀମ୍, ପ୍ରକୃତିମ୍ | = ଦୈବୀ ପ୍ରକୃତିର[୨] |
| ପାର୍ଥ | = ହେ କୁନ୍ତୀପୁତ୍ର ! | | |

୧- 'ଆସୁରୀ-ସମ୍ପଦା' ନାମରେ କୁହାଯାଇଥିବା ପ୍ରକୃତି ବିଷୟରେ ଅଧ୍ୟାୟ ୧୬ ଶ୍ଳୋକ ୪ ତଥା ୭ ରୁ ୨୧ ଯାଏଁ ବିସ୍ତୃତଭାବେ କୁହାଯାଇଛି ।

୨- ଏହା ଗୀତା ଅଧ୍ୟାୟ ୧୬ ଶ୍ଳୋକ ୧ ରୁ ୩ ରେ 'ଦୈବୀ-ସମ୍ପଦା' ନାମରେ କୁହା ଯାଇଛି ।

| | | | |
|---|---|---|---|
| ଆଶ୍ରିତାଃ | = ଆଶ୍ରିତ | | ଅକ୍ଷରସ୍ୱରୂପ |
| ମହାତ୍ମାନଃ | = ମହାତ୍ମାମାନେ | ଜ୍ଞାତ୍ୱା | = ଜାଣି |
| ମାମ୍ | = ମୋତେ | ଅନନ୍ୟମନସଃ | = ଅନନ୍ୟ ମନରେ ଯୁକ୍ତ (ହୋଇ) |
| ଭୂତାଦିମ୍ | = ସକଳ ଭୂତଙ୍କର ସନାତନ କାରଣ (ଓ) | ଭଜନ୍ତି | = (ନିରନ୍ତର ମୋର) ଭଜନ କରନ୍ତି । |
| ଅବ୍ୟୟମ୍ | = ଅବିନାଶୀ- | | |

ସତତଂ କୀର୍ତ୍ତୟନ୍ତୋ ମାଂ ଯତନ୍ତଶ୍ଚ ଦୃଢବ୍ରତାଃ ।
ନମସ୍ୟନ୍ତଶ୍ଚ ମାଂ ଭକ୍ତ୍ୟା ନିତ୍ୟଯୁକ୍ତା ଉପାସତେ ॥ ୧୪ ॥

ସତତମ୍, କୀର୍ତ୍ତୟନ୍ତଃ, ମାମ୍, ଯତନ୍ତଃ, ଚ, ଦୃଢ଼ବ୍ରତାଃ,
ନମସ୍ୟନ୍ତଃ, ଚ, ମାମ୍, ଭକ୍ତ୍ୟା, ନିତ୍ୟଯୁକ୍ତାଃ, ଉପାସତେ ।।୧୪।।

**ଏବଂ ସେମାନେ—**

| | | | |
|---|---|---|---|
| ଦୃଢ଼ବ୍ରତାଃ | = ଦୃଢ଼ନିଶ୍ଚୟୀ ଭକ୍ତମାନେ | ଚ | = ଓ |
| ସତତମ୍ | = ନିରନ୍ତର | ମାମ୍ | = ମୋତେ |
| କୀର୍ତ୍ତୟନ୍ତଃ | = (ମୋର ନାମ ଓ ଗୁଣ) କୀର୍ତ୍ତନ କରି କରି | ନମସ୍ୟନ୍ତଃ | = (ବାରମ୍ବାର) ପ୍ରଣାମ କରି |
| ଚ | = ତଥା | ନିତ୍ୟଯୁକ୍ତାଃ | = ସଦା ମୋର ଧ୍ୟାନରେ ଲାଗିରହି |
| ଯତନ୍ତଃ | = (ମୋର ପ୍ରାପ୍ତି ନିମନ୍ତେ) ଯତ୍ନ କରି କରି | ଭକ୍ତ୍ୟା | = ଅନନ୍ୟ ପ୍ରେମରେ |
| | | ମାମ୍ | = ମୋର |
| | | ଉପାସତେ | = ଉପାସନା କରନ୍ତି । |

ଏକତ୍ୱଭାବସହ ଜ୍ଞାନଯଜ୍ଞ ଦ୍ୱାରା ବ୍ରହ୍ମଙ୍କୁ ଉପାସନା କରୁଥିବା

ଜ୍ଞାନଯଜ୍ଞେନ ଚାପ୍ୟନ୍ୟେ ଯଜନ୍ତୋ ମାମୁପାସତେ ।
ଏକତ୍ୱେନ ପୃଥକ୍ତ୍ୱେନ ବହୁଧା ବିଶ୍ୱତୋମୁଖମ୍ ॥ ୧୫ ॥

ଜ୍ଞାନଯୋଗୀମାନଙ୍କର ଏବଂ ବିଶ୍ୱରୂପ ପରମେଶ୍ୱରଙ୍କ ଉପାସନା କରୁଥିବା ଲୋକଙ୍କ ବର୍ଣ୍ଣନ ।

ଜ୍ଞାନଯଜ୍ଞେନ, ଚ, ଅପି, ଅନ୍ୟେ, ଯଜନ୍ତଃ, ମାମ୍, ଉପାସତେ,
ଏକତ୍ୱେନ, ପୃଥକ୍ତ୍ୱେନ, ବହୁଧା, ବିଶ୍ୱତୋମୁଖମ୍ ।।୧୫।।

| | | | |
|---|---|---|---|
| ଅନ୍ୟେ | = ଅନ୍ୟ କେତେକ ଜ୍ଞାନଯୋଗୀ | ଚ | = ଏବଂ (ଅନ୍ୟ କେତେକ ମନୁଷ୍ୟ) |
| ମାମ୍ | = ମୋତେ (ନିର୍ଗୁଣ ନିରାକାର ବ୍ରହ୍ମଙ୍କୁ) | ବହୁଧା | = ବହୁତ ପ୍ରକାରରେ ସ୍ଥିତ |
| ଜ୍ଞାନଯଜ୍ଞେନ | = ଜ୍ଞାନଯଜ୍ଞ ଦ୍ୱାରା | ବିଶ୍ୱତୋମୁଖମ୍ | = ମୋତେ ଅର୍ଥାତ୍ ବିରାଟ ସ୍ୱରୂପ ପରମେଶ୍ୱରଙ୍କୁ |
| ଏକତ୍ୱେନ | = ଅଭିନ୍ନ ଭାବରେ | | |
| ଯଜନ୍ତଃ | = ପୂଜା କରୁଥିଲେ | | |
| ଅପି | = ମଧ୍ୟ (ମୋର ଉପାସନା କରନ୍ତି) | ପୃଥକ୍ତ୍ୱେନ | = ପୃଥକ୍ ଭାବରେ |
| | | ଉପାସତେ | = ଉପାସନା କରନ୍ତି । |

ଭଗବାନ୍ ନିଜର ଗୁଣ, ପ୍ରଭାବ ଏବଂ ବିଭୂତି ସହିତ ନିଜ ସ୍ୱରୂପର ବର୍ଣ୍ଣନ କରି ସମସ୍ତ ଜଗତକୁ ମଧ୍ୟ ନିଜର ସ୍ୱରୂପ ବୋଲି କହିବା ।

ଅହଂ କ୍ରତୁରହଂ ଯଜ୍ଞଃ ସ୍ୱଧାହମହମୌଷଧମ୍ ।
ମନ୍ତ୍ରୋଽହମହମେବାଜ୍ୟମହମଗ୍ନିରହଂ ହୁତମ୍ ॥ ୧୬ ॥

ଅହମ୍, କ୍ରତୁଃ, ଅହମ୍, ଯଜ୍ଞଃ, ସ୍ୱଧା, ଅହମ୍, ଅହମ୍, ଔଷଧମ୍,
ମନ୍ତ୍ରଃ, ଅହମ୍, ଅହମ୍, ଏବ, ଆଜ୍ୟମ୍, ଅହମ୍, ଅଗ୍ନିଃ, ଅହମ୍, ହୁତମ୍ ।।୧୬।।

**ଯେହେତୁ—**

| | | | |
|---|---|---|---|
| ଅହମ୍, କ୍ରତୁଃ | = ମୁଁ କ୍ରତୁ, | ଅହମ୍, ଆଜ୍ୟମ୍ | = ମୁଁ ଘୃତ, |
| ଅହମ୍, ଯଜ୍ଞଃ | = ମୁଁ ଯଜ୍ଞ, | ଅହମ୍, ଅଗ୍ନିଃ | = ମୁଁ ଅଗ୍ନି (ଓ) |
| ଅହମ୍, ସ୍ୱଧା | = ମୁଁ ସ୍ୱଧା, | ଅହମ୍, ହୁତମ୍, ଏବ | = ମୁଁ ହିଁ ହବନରୂପୀ କ୍ରିୟା ଅଟେ । |
| ଅହମ୍, ଔଷଧମ୍ | = ମୁଁ ଔଷଧ, | | |
| ଅହମ୍, ମନ୍ତ୍ରଃ | = ମୁଁ ମନ୍ତ୍ର, | | |

**ପିତାହମସ୍ୟ ଜଗତୋ ମାତା ଧାତା ପିତାମହଃ ।**
**ବେଦ୍ୟଂ ପବିତ୍ରମୋଙ୍କାର ଋକ୍ସାମ ଯଜୁରେବ ଚ ॥ ୧୭ ॥**

ପିତା, ଅହମ୍, ଅସ୍ୟ, ଜଗତଃ, ମାତା, ଧାତା, ପିତାମହଃ,
ବେଦ୍ୟମ୍, ପବିତ୍ରମ୍, ଓଙ୍କାରଃ, ଋକ୍, ସାମ, ଯଜୁଃ, ଏବ, ଚ ।।୧୭।।

**ଏବଂ ହେ ଅର୍ଜୁନ! ମୁଁ ହିଁ—**

| | | | |
|---|---|---|---|
| ଅସ୍ୟ, ଜଗତଃ | = ଏହି ସମଗ୍ର ଜଗତର | ବେଦ୍ୟମ୍ | = ଜାଣିବାର ଯୋଗ୍ୟ* |
| ଧାତା | = ଧାତା ଅର୍ଥାତ୍ ଧାରଣକର୍ତ୍ତା ଓ କର୍ମଫଳଦାତା, | ପବିତ୍ରମ୍ | = ପବିତ୍ର |
| | | ଓଙ୍କାରଃ | = ଓଁକାର (ତଥା) |
| | | ଋକ୍ | = ଋଗ୍ ବେଦ, |
| | | ସାମ | = ସାମ ବେଦ |
| ପିତା | = ପିତା, | ଚ | = ଓ |
| ମାତା | = ମାତା, | ଯଜୁଃ | = ଯଜୁର୍ବେଦ (ମଧ୍ୟ) |
| ପିତାମହଃ | = ପିତାମହ, | ଅହମ୍, ଏବ | = ମୁଁ ହିଁ ଅଟେ । |

**ଗତିର୍ଭର୍ତ୍ତା ପ୍ରଭୁଃ ସାକ୍ଷୀ ନିବାସଃ ଶରଣଂ ସୁହୃତ୍ ।**
**ପ୍ରଭବଃ ପ୍ରଳୟଃ ସ୍ଥାନଂ ନିଧାନଂ ବୀଜମବ୍ୟୟମ୍ ॥ ୧୮ ॥**

ଗତିଃ, ଭର୍ତ୍ତା, ପ୍ରଭୁଃ, ସାକ୍ଷୀ, ନିବାସଃ, ଶରଣମ୍, ସୁହୃତ୍,
ପ୍ରଭବଃ, ପ୍ରଳୟଃ, ସ୍ଥାନମ୍, ନିଧାନମ୍, ବୀଜମ୍, ଅବ୍ୟୟମ୍।।୧୮।।

**ଏବଂ ହେ ଅର୍ଜୁନ!—**

| | | | |
|---|---|---|---|
| ଗତିଃ | = ପ୍ରାପ୍ତ ହେବା ଯୋଗ୍ୟ ପରମଧାମ, | ଭର୍ତ୍ତା | =ଭରଣ-ପୋଷଣକାରୀ |
| | | ପ୍ରଭୁଃ | = ସମସ୍ତଙ୍କର ସ୍ୱାମୀ, |

* ଗୀତା ଅଧ୍ୟାୟ ୧୩ ଶ୍ଳୋକ ୧୨ ରୁ ୧୭ ଯାଏଁ ଦେଖିବା ଉଚିତ।

ସାକ୍ଷୀ = ଶୁଭାଶୁଭ ଦ୍ରଷ୍ଟା,
ନିବାସଃ = (ସମସ୍ତଙ୍କର) ବାସସ୍ଥାନ,
ଶରଣମ୍ = ଶରଣ ନେବାର ଯୋଗ୍ୟ,
ସୁହୃତ୍ = ପ୍ରତ୍ୟୁପକାର ନ ଚାହିଁ (ସମସ୍ତଙ୍କର) ହିତକାରୀ,
ପ୍ରଭବଃ, ପ୍ରଳୟଃ = ସମସ୍ତଙ୍କର ଉତ୍ପତ୍ତି ଓ ପ୍ରଳୟର ହେତୁ,
ସ୍ଥାନମ୍ = ସ୍ଥିତିର ଆଧାର,
ନିଧାନମ୍ = ନିଧାନ (ଓ)*
ଅବ୍ୟୟମ୍ = ଅବିନାଶୀ
ବୀଜମ୍ = ବୀଜ (ମଧ୍ୟ)
(ଅହମ୍ ଏବ) = ମୁଁ ହିଁ ଅଟେ ।

**ତପାମ୍ୟହମହଂ ବର୍ଷଂ ନିଗୃହ୍ଣାମ୍ୟୁତ୍ସୃଜାମି ଚ ।**
**ଅମୃତଂ ଚୈବ ମୃତ୍ୟୁଶ୍ଚ ସଦସଚ୍ଚାହମର୍ଜୁନ ॥ ୧୯ ॥**

ତପାମି, ଅହମ୍, ଅହମ୍, ବର୍ଷମ୍, ନିଗୃହ୍ଣାମି, ଉତ୍ସୃଜାମି, ଚ,
ଅମୃତମ୍, ଚ, ଏବ, ମୃତ୍ୟୁଃ, ଚ, ସତ୍, ଅସତ୍, ଚ, ଅହମ୍, ଅର୍ଜୁନ ।। ୧୯ ।।

ଏବଂ—

ଅହମ୍ = ମୁଁ (ହିଁ)
ତପାମି = ସୂର୍ଯ୍ୟରୂପରେ ଉତ୍ତାପ ପ୍ରଦାନ କରେ
ବର୍ଷମ୍ = ବର୍ଷାକୁ
ନିଗୃହ୍ଣାମି = ଆକର୍ଷଣ କରେ
ଚ = ଏବଂ (ତାହାକୁ)
ଉତ୍ସୃଜାମି = ଉତ୍ସର୍ଗ କରେ (ବୃଷ୍ଟି କରେ) ।
ଅର୍ଜୁନ = ହେ ଅର୍ଜୁନ !
ଅହମ୍ = ମୁଁ
ଏବ = ହିଁ
ଅମୃତମ୍ = ଅମୃତ
ଚ = ଓ
ମୃତ୍ୟୁଃ = ମୃତ୍ୟୁ (ଅଟେ)
ଚ = ତଥା
ସତ୍, ଅସତ୍ = ସତ୍ ଓ ଅସତ୍
ଚ = ମଧ୍ୟ
ଅହମ୍ = ମୁଁ ହିଁ ଅଟେ ।

* ପ୍ରଳୟକାଳରେ ସମ୍ପୂର୍ଣ୍ଣଭୂତ ସୂକ୍ଷ୍ମରୂପରେ ଯେଉଁଥିରେ ଲୟ ହୋଇଯାନ୍ତି ତାହାର ନାମ 'ନିଧାନ' ଅଟେ ।

ସକାମ ଉପାସନାର ଫଳ ।

ତ୍ରୈବିଦ୍ୟା ମାଂ ସୋମପାଃ ପୂତପାପା
ଯଜ୍ଞୈରିଷ୍ଟ୍ୱା ସ୍ୱର୍ଗତିଂ ପ୍ରାର୍ଥୟନ୍ତେ ।
ତେ ପୁଣ୍ୟମାସାଦ୍ୟ ସୁରେନ୍ଦ୍ରଲୋକ-
ମଶ୍ନନ୍ତି ଦିବ୍ୟାନ୍ଦିବି ଦେବଭୋଗାନ୍ ॥ ୨୦ ॥

ତ୍ରୈବିଦ୍ୟାଃ, ମାମ୍, ସୋମପାଃ, ପୂତପାପାଃ,
ଯଜ୍ଞୈଃ, ଇଷ୍ଟ୍ୱା, ସ୍ୱର୍ଗତିମ୍, ପ୍ରାର୍ଥୟନ୍ତେ,
ତେ, ପୁଣ୍ୟମ୍, ଆସାଦ୍ୟ, ସୁରେନ୍ଦ୍ରଲୋକମ୍,
ଅଶ୍ନନ୍ତି, ଦିବ୍ୟାନ୍, ଦିବି, ଦେବଭୋଗାନ୍ ।।୨୦ ।।

**କିନ୍ତୁ ଯେଉଁମାନେ—**

ତ୍ରୈବିଦ୍ୟାଃ = ତିନିବେଦରେ ବିଧାନ କରାଯାଇଥିବା ସକାମକର୍ମକାରୀ,
ସୋମପାଃ = (ଯଜ୍ଞର) ସୋମରସ ପାନ କରୁଥିବା
ପୂତପାପାଃ = ନିଷ୍ପାପ ପୁରୁଷମାନେ*
ମାମ୍ = ମୋତେ
ଯଜ୍ଞୈଃ = ଯଜ୍ଞଦ୍ୱାରା
ଇଷ୍ଟ୍ୱା = ପୂଜା କରି
ସ୍ୱର୍ଗତିମ୍ = ସ୍ୱର୍ଗପ୍ରାପ୍ତି
ପ୍ରାର୍ଥୟନ୍ତେ = ଚାହାଁନ୍ତି;
ତେ = ସେମାନେ
ପୁଣ୍ୟମ୍ = ସେମାନଙ୍କ ପୁଣ୍ୟର ଫଳସ୍ୱରୂପ
ସୁରେନ୍ଦ୍ରଲୋକମ୍ = ସ୍ୱର୍ଗଲୋକକୁ
ଆସାଦ୍ୟ = ପ୍ରାପ୍ତହୋଇ
ଦିବି = ସ୍ୱର୍ଗରେ
ଦିବ୍ୟାନ୍ = ଦିବ୍ୟ
ଦେବଭୋଗାନ୍ = ଦେବତାମାନଙ୍କର ସୁଖଭୋଗମାନ
ଅଶ୍ନନ୍ତି = ଉପଭୋଗ କରନ୍ତି ।

* ଏଠାରେ ସ୍ୱର୍ଗ ପ୍ରାପ୍ତିର ପ୍ରତିବନ୍ଧକ ଦେବ-ଋଣ ପାପରୁ ପବିତ୍ର ହେବା ବୁଝିବା ଉଚିତ ।

ତେ ତଂ ଭୁକ୍ତ୍ୱା ସ୍ୱର୍ଗଲୋକଂ ବିଶାଳଂ
କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି ।
ଏବଂ ତ୍ରୟୀଧର୍ମମନୁପ୍ରପନ୍ନା
ଗତାଗତଂ କାମକାମା ଲଭନ୍ତେ ॥ ୨୧ ॥

ତେ, ତମ୍, ଭୁକ୍ତ୍ୱା, ସ୍ୱର୍ଗଲୋକମ୍, ବିଶାଳମ୍,
କ୍ଷୀଣେ, ପୁଣ୍ୟେ, ମର୍ତ୍ତ୍ୟଲୋକମ୍, ବିଶନ୍ତି,
ଏବମ୍, ତ୍ରୟୀଧର୍ମମ୍, ଅନୁପ୍ରପନ୍ନାଃ,
ଗତାଗତମ୍, କାମକାମାଃ, ଲଭନ୍ତେ ।।୨୧ ।।

ଏବଂ—

ତେ = ସେମାନେ
ତମ୍ = ସେହି
ବିଶାଳମ୍ = ବିଶାଳ
ସ୍ୱର୍ଗଲୋକମ୍ = ସ୍ୱର୍ଗଲୋକକୁ
ଭୁକ୍ତ୍ୱା = ଭୋଗ କରି
ପୁଣ୍ୟେ = ପୁଣ୍ୟ
କ୍ଷୀଣେ = କ୍ଷୀଣ ହୋଇଯିବା ପରେ
ମର୍ତ୍ତ୍ୟଲୋକମ୍ = ମୃତ୍ୟୁଲୋକକୁ
ବିଶନ୍ତି = ପ୍ରାପ୍ତ ହୁଅନ୍ତି ।
ଏବମ୍ = ଏହିପରି (ସ୍ୱର୍ଗପ୍ରାପ୍ତିର ସାଧନରୂପକ)
ତ୍ରୟୀଧର୍ମମ୍ = ତିନିବେଦରେ କୁହାଯାଇଥିବା ସକାମ କର୍ମର
ଅନୁପ୍ରପନ୍ନାଃ = ଆଶ୍ରୟ ନେଇଥିବା (ଓ)
କାମକାମାଃ = ବିଭିନ୍ନ ଭୋଗ କାମନା କରୁଥିବା ପୁରୁଷମାନେ
ଗତାଗତମ୍ = ବାରମ୍ବାର ଗମନାଗମନକୁ
ଲଭନ୍ତେ = ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ପୁଣ୍ୟବଳରେ ସ୍ୱର୍ଗକୁ ଯାଆନ୍ତି ଓ ପୁଣ୍ୟକ୍ଷୀଣ ହୋଇଗଲେ ପୁଣି ମୃତ୍ୟୁଲୋକକୁ ଫେରିଆସନ୍ତି ।

ନିଷ୍କାମ ଭାବରେ ନିତ୍ୟ-ନିରନ୍ତର ଚିନ୍ତନ କରୁଥିବା ନିଜ ଭକ୍ତଙ୍କର ଯୋଗ-କ୍ଷେମ ସ୍ୱୟଂ ବହନ କରିବାର ପ୍ରତିଜ୍ଞା ।

**ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।**
**ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ॥ ୨୨ ॥**

ଅନନ୍ୟାଃ, ଚିନ୍ତୟନ୍ତଃ, ମାମ୍, ଯେ, ଜନାଃ, ପର୍ଯ୍ୟୁପାସତେ,
ତେଷାମ୍, ନିତ୍ୟାଭିଯୁକ୍ତାନାମ୍, ଯୋଗକ୍ଷେମମ୍, ବହାମି, ଅହମ୍ ।।୨୨।।

ଏବଂ—

| | | | |
|---|---|---|---|
| ଯେ | = ଯେଉଁ | ତେଷାମ୍ | = ସେହି |
| ଅନନ୍ୟାଃ | = ଅନନ୍ୟପ୍ରେମୀ | ନିତ୍ୟାଭିଯୁକ୍ତାନାମ୍ | =ନିତ୍ୟନିରନ୍ତର ମୋର ଚିନ୍ତନ କରୁଥିବା ପୁରୁଷମାନଙ୍କର |
| ଜନାଃ | = ଭକ୍ତଜନମାନେ | | |
| ମାମ୍ | = ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ | | |
| ଚିନ୍ତୟନ୍ତଃ | = ନିରନ୍ତର ଚିନ୍ତନ କରି କରି | ଯୋଗକ୍ଷେମମ୍ | = ଯୋଗକ୍ଷେମ* |
| ପର୍ଯ୍ୟୁପାସତେ | = ନିଷ୍କାମଭାବରେ ଉପାସନା କରନ୍ତି, | ଅହମ୍ | = ମୁଁ ସ୍ୱୟଂ |
| | | ବହାମି | = ବହନ କରେ । |

ଅନ୍ୟ ଦେବତାମାନଙ୍କ ଉପାସନା ମଧ୍ୟ ପ୍ରକାରାନ୍ତରେ ଅବିଧି ପୂର୍ବକ ଭଗବାନଙ୍କର ହିଁ ଉପାସନା ।

**ଯେଽପ୍ୟନ୍ୟଦେବତା ଭକ୍ତା ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।**
**ତେଽପି ମାମେବ କୌନ୍ତେୟ ଯଜନ୍ତ୍ୟବିଧିପୂର୍ବକମ୍ ॥ ୨୩ ॥**

ଯେ, ଅପି, ଅନ୍ୟଦେବତାଃ, ଭକ୍ତାଃ, ଯଜନ୍ତେ, ଶ୍ରଦ୍ଧୟା, ଅନ୍ୱିତାଃ,
ତେ, ଅପି, ମାମ୍, ଏବ, କୌନ୍ତେୟ, ଯଜନ୍ତି, ଅବିଧିପୂର୍ବକମ୍ ।।୨୩।।

ଏବଂ—

* ଭଗବତ୍ ସ୍ୱରୂପ ପ୍ରାପ୍ତିର ନାମ 'ଯୋଗ' ଏବଂ ଭଗବତ୍ ପ୍ରାପ୍ତି ନିମିତ୍ତ କରାଯାଉଥିବା ସାଧନର ରକ୍ଷାର ନାମ 'କ୍ଷେମ' ଅଟେ ।

| | | | |
|---|---|---|---|
| କୌନ୍ତେୟ | = ହେ କୁନ୍ତୀପୁତ୍ର ଅର୍ଜୁନ ! | ଅପି | = ମଧ୍ୟ |
| ଯେ | = ଯେଉଁ | ମାମ୍ | = ମୋତେ |
| ଭକ୍ତାଃ | = ସକାମ ଭକ୍ତମାନେ | ଏବ | = ହିଁ |
| ଶ୍ରଦ୍ଧୟା | = ଶ୍ରଦ୍ଧାରେ | ଯଜନ୍ତି | = ପୂଜା କରନ୍ତି, |
| ଅନ୍ୱିତାଃ | = ଯୁକ୍ତ ହୋଇ | ଅବିଧିପୂର୍ବକମ୍ | = (କିନ୍ତୁ ସେମାନଙ୍କର ସେହି ପୂଜା) ଅବିଧିପୂର୍ବକ ଅର୍ଥାତ୍ ଅଜ୍ଞାନପୂର୍ବକ ହୋଇଥାଏ । |
| ଅପି | = ଯଦ୍ୟପି | | |
| ଅନ୍ୟଦେବତାଃ | = ଅନ୍ୟ ଦେବତାମାନଙ୍କୁ | | |
| ଯଜନ୍ତେ | = ପୂଜା କରନ୍ତି, | | |
| ତେ | = ସେମାନେ | | |

ଭଗବାନଙ୍କୁ ତତ୍ତ୍ୱତଃ ଜାଣି ନ ଥିବା ମନୁଷ୍ୟଙ୍କ ପତନ ।

ଅହଂ ହି ସର୍ବଯଜ୍ଞାନାଂ ଭୋକ୍ତା ଚ ପ୍ରଭୁରେବ ଚ ।
ନ ତୁ ମାମଭିଜାନନ୍ତି ତତ୍ତ୍ୱେନାତଶ୍ଚ୍ୟବନ୍ତି ତେ ॥ ୨୪ ॥

ଅହମ୍, ହି, ସର୍ବଯଜ୍ଞାନାମ୍, ଭୋକ୍ତା, ଚ, ପ୍ରଭୁଃ, ଏବ, ଚ,
ନ, ତୁ, ମାମ୍, ଅଭିଜାନନ୍ତି, ତତ୍ତ୍ୱେନ, ଅତଃ, ଚ୍ୟବନ୍ତି, ତେ ।।୨୪।।

| | | | |
|---|---|---|---|
| ହି | = କାରଣ | ତେ | = ସେମାନେ |
| ସର୍ବଯଜ୍ଞାନାମ୍ | = ସବୁ ଯଜ୍ଞମାନଙ୍କର | ମାମ୍ | = ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ |
| ଭୋକ୍ତା | = ଭୋକ୍ତା | | |
| ଚ | = ଓ | ତତ୍ତ୍ୱେନ | = ତତ୍ତ୍ୱତଃ |
| ପ୍ରଭୁଃ | = ସ୍ୱାମୀ | ନ, ଅଭିଜାନନ୍ତି | = ଜାଣନ୍ତି ନାହିଁ, |
| ଚ | = ମଧ୍ୟ | ଅତଃ | = ଏଣୁ |
| ଅହମ୍ | = ମୁଁ | ଚ୍ୟବନ୍ତି | = ଚ୍ୟୁତ ହୁଅନ୍ତି ଅର୍ଥାତ୍ ପୁନର୍ଜନ୍ମକୁ ପ୍ରାପ୍ତ ହୁଅନ୍ତି । |
| ଏବ | = ହିଁ ଅଟେ; | | |
| ତୁ | = କିନ୍ତୁ | | |

ଉପାସନା ଅନୁଯାୟୀ ଫଳପ୍ରାପ୍ତିର କଥନ ।

ଯାନ୍ତି ଦେବବ୍ରତା ଦେବାନ୍ ପିତୃନ୍ ଯାନ୍ତି ପିତୃବ୍ରତାଃ ।
ଭୂତାନି ଯାନ୍ତି ଭୂତେଜ୍ୟା ଯାନ୍ତି ମଦ୍ୟାଜିନୋଽପି ମାମ୍ ॥ ୨୫ ॥

ଯାନ୍ତି, ଦେବବ୍ରତାଃ, ଦେବାନ୍, ପିତୃନ୍, ଯାନ୍ତି, ପିତୃବ୍ରତାଃ,
ଭୂତାନି, ଯାନ୍ତି, ଭୂତେଜ୍ୟାଃ, ଯାନ୍ତି, ମଦ୍‌ଯାଜିନଃ, ଅପି, ମାମ୍ ।।୨୫।।

**କାରଣ ଏହା ନିୟମ ଯେ—**

ଦେବବ୍ରତାଃ = ଦେବତାମାନଙ୍କୁ ପୂଜା କରୁଥିବା ମନୁଷ୍ୟମାନେ
ଦେବାନ୍ = ଦେବମାନଙ୍କୁ ଅର୍ଥାତ୍ ଦେବଲୋକକୁ
ଯାନ୍ତି = ପ୍ରାପ୍ତ ହୁଅନ୍ତି,
ପିତୃବ୍ରତାଃ = ପିତୃମାନଙ୍କୁ ପୂଜା କରୁଥିବା ମନୁଷ୍ୟମାନେ
ପିତୃନ୍ = ପିତୃମାନଙ୍କୁ
ଯାନ୍ତି = ପ୍ରାପ୍ତ ହୁଅନ୍ତି,
ଭୂତେଜ୍ୟାଃ = ଭୂତପ୍ରେତଙ୍କୁ ପୂଜା କରୁଥିବା ମନୁଷ୍ୟମାନେ
ଭୂତାନି = ଭୂତପ୍ରେତଙ୍କୁ
ଯାନ୍ତି = ପ୍ରାପ୍ତ ହୁଅନ୍ତି (ଓ)
ମଦ୍‌ଯାଜିନଃ = ମୋତେ ପୂଜା କରୁଥିବା ଭକ୍ତମାନେ
ମାମ୍ = ମୋତେ
ଅପି = ହିଁ
ଯାନ୍ତି = ପ୍ରାପ୍ତ ହୁଅନ୍ତି (ତେଣୁ ମୋର ଭକ୍ତମାନଙ୍କର ପୁନର୍ଜନ୍ମ ହୁଏ ନାହିଁ)* ।

ଭକ୍ତିପୂର୍ବକ ଅର୍ପଣ କରାଯାଇଥିବା ପତ୍ର-ପୁଷ୍ପାଦିକୁ ଖାଇବା (ଗ୍ରହଣ କରିବା) ପାଇଁ ଭଗବାନଙ୍କ ପ୍ରତିଜ୍ଞା ।

**ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି ।**
**ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରଯତାତ୍ମନଃ ॥ ୨୬ ॥**

ପତ୍ରମ୍, ପୁଷ୍ପମ୍, ଫଳମ୍, ତୋୟମ୍, ଯଃ, ମେ, ଭକ୍ତ୍ୟା, ପ୍ରଯଚ୍ଛତି,
ତତ୍, ଅହମ୍, ଭକ୍ତ୍ୟୁପହୃତମ୍, ଅଶ୍ନାମି, ପ୍ରଯତାତ୍ମନଃ ।।୨୬।।

**ତଥା ହେ ଅର୍ଜୁନ ! ମୋର ପୂଜନରେ ସୁଗମତା ବି ଏହି କି—**

* ଗୀତା ଅଧ୍ୟାୟ ୮ ଶ୍ଳୋକ ୧୬ ଦ୍ରଷ୍ଟବ୍ୟ ।

| | |
|---|---|
| ଯଃ | = ଯେକେହି ଭକ୍ତ |
| ମେ | = ମୋ'ପାଇଁ |
| ଭକ୍ତ୍ୟା | = ପ୍ରେମର ସହିତ |
| ପତ୍ରମ୍ | = ପତ୍ର, |
| ପୁଷ୍ପମ୍ | = ପୁଷ୍ପ, |
| ଫଳମ୍ | = ଫଳ, |
| ତୋୟମ୍ | = ଜଳ ଆଦିକୁ (ଯଥାସାଧ୍ୟ ଓ ଅନାୟାସ ପ୍ରାପ୍ତ ଦ୍ରବ୍ୟକୁ) |
| ପ୍ରଯଚ୍ଛତି | = ଅର୍ପଣ କରେ, |
| ପ୍ରଯତାତ୍ମନଃ | = (ସେହି) ଶୁଦ୍ଧବୁଦ୍ଧି ନିଷ୍କାମପ୍ରେମୀ ଭକ୍ତଙ୍କର |
| ଭକ୍ତ୍ୟୁପହୃତମ୍ | = ପ୍ରେମପୂର୍ବକ ଅର୍ପିତ |
| ତତ୍ | = ସେହି (ପତ୍ରପୁଷ୍ପାଦି) |
| ଅହମ୍ | = ମୁଁ (ସଗୁଣରୂପରେ ପ୍ରକଟ ହୋଇ ପ୍ରୀତିପୂର୍ବକ) |
| ଅଶ୍ନାମି | = ଖାଇଦିଏ ଅର୍ଥାତ୍ ଗ୍ରହଣ କରେ । |

ସମସ୍ତ କର୍ମକୁ ଭଗବତ୍-ଅର୍ପଣ କରିବା ପାଇଁ ଆଜ୍ଞା-ଏବଂ ଏହାର ଫଳ ଭଗବତ୍ ପ୍ରାପ୍ତି ବୋଲି ଉକ୍ତି ।

**ଯତ୍କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍ ।**
**ଯତ୍ତପସ୍ୟସି କୌନ୍ତେୟ ତତ୍କୁରୁଷ୍ୱ ମଦର୍ପଣମ୍ ॥ ୨୭ ॥**

ଯତ୍, କରୋଷି, ଯତ୍, ଅଶ୍ନାସି, ଯତ୍, ଜୁହୋଷି, ଦଦାସି, ଯତ୍,
ଯତ୍, ତପସ୍ୟସି, କୌନ୍ତେୟ, ତତ୍, କୁରୁଷ୍ୱ, ମଦର୍ପଣମ୍ ।।୨୭।।

## ଏଥିପାଇଁ—

| | |
|---|---|
| କୌନ୍ତେୟ | = ହେ ଅର୍ଜୁନ ! (ତୁମେ) |
| ଯତ୍ | = ଯାହାକିଛି (କର୍ମ) |
| କରୋଷି | = କରୁଛ, |
| ଯତ୍ | = ଯାହାକିଛି |
| ଅଶ୍ନାସି | = ଖାଉଛ, |
| ଯତ୍ | = ଯେଉଁସବୁ |
| ଜୁହୋଷି | = ଯଜ୍ଞ କରୁଛ, |
| ଯତ୍ | = ଯାହାକିଛି |
| ଦଦାସି | = ଦାନ ଦେଉଛ, (ଓ) |
| ଯତ୍ | = ଯେଉଁସବୁ |
| ତପସ୍ୟସି | = ତପ କରୁଛ, |
| ତତ୍ | = ସେ ସମସ୍ତ |
| ମଦର୍ପଣମ୍ | = ମୋତେ ଅର୍ପଣ |
| କୁରୁଷ୍ୱ | = କରିଦିଅ । |

ଶୁଭାଶୁଭଫଳୈରେବଂ ମୋକ୍ଷ୍ୟସେ କର୍ମବନ୍ଧନୈଃ ।
ସନ୍ନ୍ୟାସଯୋଗଯୁକ୍ତାତ୍ମା ବିମୁକ୍ତୋ ମାମୁପୈଷ୍ୟସି ॥ ୨୮ ॥

ଶୁଭାଶୁଭଫଳୈଃ, ଏବମ୍, ମୋକ୍ଷ୍ୟସେ, କର୍ମବନ୍ଧନୈଃ,
ସନ୍ନ୍ୟାସଯୋଗଯୁକ୍ତାତ୍ମା, ବିମୁକ୍ତଃ, ମାମ୍, ଉପୈଷ୍ୟସି ।।୨୮।।

| | | | |
|---|---|---|---|
| ଏବମ୍ | = ଏପରିଭାବରେ | | କରୁଥିବା) |
| ସନ୍ନ୍ୟାସ-ଯୋଗଯୁକ୍ତାତ୍ମା | = ଯେଉଁଥିରେ ସମସ୍ତ କର୍ମ ମୋତେ ଅର୍ପଣ କରାଯାଏ, ଏପରି ସନ୍ନ୍ୟାସଯୋଗରେ ଯୁକ୍ତଚିତ୍ତ, (ଅର୍ଥାତ୍ ଫଳାସକ୍ତିତ୍ୟାଗପୂର୍ବକ ସମର୍ପଣବୁଦ୍ଧିରେ କର୍ତ୍ତବ୍ୟକର୍ମ | ଶୁଭାଶୁଭଫଳୈଃ | = ଶୁଭାଶୁଭ ଫଳରୂପକ |
| | | କର୍ମବନ୍ଧନୈଃ | = କର୍ମବନ୍ଧନରୁ |
| | | ମୋକ୍ଷ୍ୟସେ | = ମୁକ୍ତ ହୋଇଯିବ (ଓ ସେଥିରୁ) |
| | | ବିମୁକ୍ତଃ | = ମୁକ୍ତ ହୋଇ |
| | | ମାମ୍ | = ମୋତେ ହିଁ |
| | | ଉପୈଷ୍ୟସି | = ପ୍ରାପ୍ତ ହେବ । |

ଭଗବାନଙ୍କ ସମତ୍ୱଭାବର ତଥା ଭଗବାନଙ୍କୁ ଭଜନ କରୁଥିବା ଲୋକଙ୍କ ମହିମା ।

ସମୋଽହଂ ସର୍ବଭୂତେଷୁ ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ ।
ଯେ ଭଜନ୍ତି ତୁ ମାଂ ଭକ୍ତ୍ୟା ମୟି ତେ ତେଷୁ ଚାପ୍ୟହମ୍ ॥ ୨୯ ॥

ସମଃ, ଅହମ୍, ସର୍ବଭୂତେଷୁ, ନ, ମେ, ଦ୍ୱେଷ୍ୟଃ, ଅସ୍ତି, ନ, ପ୍ରିୟଃ,
ଯେ, ଭଜନ୍ତି, ତୁ, ମାମ୍, ଭକ୍ତ୍ୟା, ମୟି, ତେ, ତେଷୁ, ଚ, ଅପି, ଅହମ୍,।।୨୯।।

ଯଦ୍ୟପି—

| | | | |
|---|---|---|---|
| ଅହମ୍ | = ମୁଁ | ମେ | = ମୋର |
| ସର୍ବଭୂତେଷୁ | = ସକଳ ଭୂତଙ୍କ ଠାରେ | ନ, ଦ୍ୱେଷ୍ୟଃ | = କେହି ଅପ୍ରିୟ ନୁହେଁ (ଓ) |
| ସମଃ | = ସମଭାବରେ ବ୍ୟାପକ ଅଟେ, | ପ୍ରିୟଃ | = କେହି ପ୍ରିୟ |

| | | | |
|---|---|---|---|
| ନ, ଅସ୍ତି | = ନୁହେଁ; | ମୟି | = ମୋ ମଧ୍ୟରେ (ଥାଆନ୍ତି) |
| ତୁ | = କିନ୍ତୁ | ଚ | = ଓ |
| ଯେ | = ଯେଉଁ ଭକ୍ତମାନେ | ଅହମ୍ | = ମୁଁ |
| ମାମ୍ | = ମୋତେ | ଅପି | = ମଧ୍ୟ |
| ଭକ୍ତ୍ୟା | = ପ୍ରେମପୂର୍ବକ | ତେଷୁ | = ସେମାନଙ୍କ ମଧ୍ୟରେ (ପ୍ରତ୍ୟକ୍ଷ ଭାବେ ପ୍ରକଟ ହୋଇଥାଏ) ।* |
| ଭଜନ୍ତି | = ଭଜନ କରନ୍ତି, | | |
| ତେ | = ସେମାନେ | | |

ଦୁରାଚାରୀ ହେଲେ ବି ଦୃଢ଼ନିଶ୍ଚୟ ଏବଂ ଅନନ୍ୟ ଭାବଯୁକ୍ତ ଭଗବତ୍ ବିଶ୍ୱାସୀ ମନୁଷ୍ୟଙ୍କ ମହତ୍ତ୍ୱ ପ୍ରତିପାଦନ ।

**ଅପି ଚେତ୍ ସୁଦୁରାଗ୍ଚରୋ ଭଜତେ ମାମନନ୍ୟଭାକ୍ ।**
**ସାଧୁରେବ ସ ମନ୍ତବ୍ୟଃ ସମ୍ୟଗ୍‌ବ୍ୟବସିତୋ ହି ସଃ ॥ ୩୦ ॥**

ଅପି, ଚେତ୍, ସୁଦୁରାଚାରଃ, ଭଜତେ, ମାମ୍, ଅନନ୍ୟଭାକ୍,
ସାଧୁଃ, ଏବ, ସଃ, ମନ୍ତବ୍ୟଃ, ସମ୍ୟକ୍, ବ୍ୟବସିତଃ, ହି, ସଃ ।।୩୦ ।।

**ତଥା, ଆହୁରି ମଧ୍ୟ ମୋର ଭକ୍ତିର ପ୍ରଭାବ ଶୁଣ—**

| | | | |
|---|---|---|---|
| ଚେତ୍ | = ଯଦି (କୌଣସି) | ସଃ | = ସେ |
| ସୁଦୁରାଚାରଃ | = ଅତିଶୟ ଦୁରାଚାରୀ | ସାଧୁଃ | = ସାଧୁ ବୋଲି |
| ଅପି | = ମଧ୍ୟ | ଏବ | = ହିଁ |
| ଅନନ୍ୟଭାକ୍ | = ଅନନ୍ୟଭାବରେ ମୋର ଭକ୍ତ ହୋଇ | ମନ୍ତବ୍ୟଃ | = ଗଣାଯିବାକୁ ଯୋଗ୍ୟ, |
| | | ହି | = କାରଣ |
| ମାମ୍ | = ମୋତେ | ସଃ | = ସେ |
| ଭଜତେ | = ଭଜନ କରେ (ତେବେ) | ସମ୍ୟକ୍ | = ଯଥାର୍ଥ |

* ଯେପରି ସୂକ୍ଷ୍ମ ରୂପରେ ସବୁ ସ୍ଥାନରେ ବ୍ୟାପକ ଥିବା ଅଗ୍ନି ମଧ୍ୟ ସାଧନ ମାଧ୍ୟମରେ ହିଁ ପ୍ରତ୍ୟକ୍ଷଭାବେ ପ୍ରକଟ ହୁଏ, ସେହିପରି ସବୁ ସ୍ଥାନରେ ଥିବା ପରମେଶ୍ୱର ମଧ୍ୟ ଭକ୍ତିରେ ଭଜନ କରୁଥିବା ମନୁଷ୍ୟଙ୍କ ଅନ୍ତଃକରଣରେ ହିଁ ପ୍ରକଟ ହୋଇଥାନ୍ତି ।

| | | | |
|---|---|---|---|
| ବ୍ୟବସିତଃ | = ନିଶ୍ଚୟ କରିଥାଏ ଅର୍ଥାତ୍ ସେ ଭଲରୂପେ ନିଶ୍ଚୟ କରି ନେଇଥାଏ | | ଯେ,ପରମେଶ୍ୱରଙ୍କ ଭଜନ ସମାନ ଆଉ କିଛି ବି ନାହିଁ । |

**କ୍ଷିପ୍ରଂ ଭବତି ଧର୍ମାତ୍ମା ଶଶ୍ୱଚ୍ଛାନ୍ତିଂ ନିଗଚ୍ଛତି ।**
**କୌନ୍ତେୟ ପ୍ରତି ଜାନୀହି ନ ମେ ଭକ୍ତଃ ପ୍ରଣଶ୍ୟତି ॥ ୩୧ ॥**

କ୍ଷିପ୍ରମ୍, ଭବତି, ଧର୍ମାତ୍ମା, ଶଶ୍ୱତ୍, ଶାନ୍ତିମ୍, ନିଗଚ୍ଛତି,
କୌନ୍ତେୟ, ପ୍ରତି, ଜାନୀହି, ନ, ମେ, ଭକ୍ତଃ, ପ୍ରଣଶ୍ୟତି ।।୩୧ ।।

**ଏହି କାରଣରୁ ସେ—**

| | | | |
|---|---|---|---|
| କ୍ଷିପ୍ରମ୍ | = (ତେଣୁ ସେ) ଶୀଘ୍ର ହିଁ | କୌନ୍ତେୟ | = ହେ ଅର୍ଜୁନ ! (ତୁମେ) |
| ଧର୍ମାତ୍ମା | = ଧର୍ମାତ୍ମା | ପ୍ରତି | = (ଏହା) ନିଶ୍ଚିତ ସତ୍ୟ ବୋଲି |
| ଭବତି | = ହୋଇଯାଏ (ଏବଂ) | ଜାନୀହି | = ଜାଣ (ଯେ) |
| ଶଶ୍ୱତ୍ | = ଚିରନ୍ତନ | ମେ | = ମୋର |
| ଶାନ୍ତିମ୍ | = ପରମ ଶାନ୍ତିକୁ | ଭକ୍ତଃ | = ଭକ୍ତ |
| ନିଗଚ୍ଛତି | = ପ୍ରାପ୍ତ ହୋଇଯାଏ । | ନ, ପ୍ରଣଶ୍ୟତି | = ନଷ୍ଟ ହୁଏ ନାହିଁ । |

ଭଗବାନଙ୍କ ଶରଣାଗତ ହୋଇ ସ୍ତ୍ରୀ, ବୈଶ୍ୟ, ଶୂଦ୍ର ଏବଂ ଚାଣ୍ଡାଳାଦି ମନୁଷ୍ୟମାନେ ବି ପରମ ଗତିକୁ ପ୍ରାପ୍ତ ହୋଇଛନ୍ତି ।

**ମାଂ ହି ପାର୍ଥ ବ୍ୟପାଶ୍ରିତ୍ୟ ଯେଽପି ସ୍ୟୁଃ ପାପଯୋନୟଃ ।**
**ସ୍ତ୍ରିୟୋ ବୈଶ୍ୟାସ୍ତଥା ଶୂଦ୍ରାସ୍ତେଽପି ଯାନ୍ତି ପରାଂ ଗତିମ୍ ॥ ୩୨ ॥**

ମାମ୍, ହି, ପାର୍ଥ, ବ୍ୟପାଶ୍ରିତ୍ୟ, ଯେ, ଅପି, ସ୍ୟୁଃ, ପାପଯୋନୟଃ,
ସ୍ତ୍ରିୟଃ, ବୈଶ୍ୟାଃ, ତଥା, ଶୂଦ୍ରାଃ, ତେ, ଅପି, ଯାନ୍ତି, ପରାମ୍, ଗତିମ୍ ।।୩୨ ।।

| | | | |
|---|---|---|---|
| ହି | = କାରଣ | ସ୍ୟୁଃ | = ହୋଇଥାନ୍ତୁ (ନା କାହିଁକି) |
| ପାର୍ଥ | = ହେ ଅର୍ଜୁନ ! | ତେ | = ସେମାନେ |
| ସ୍ତ୍ରିୟଃ | = ସ୍ତ୍ରୀମାନେ, | ଅପି | = ମଧ୍ୟ |
| ବୈଶ୍ୟାଃ | = ବୈଶ୍ୟମାନେ, | ମାମ୍ | = ମୋର |
| ଶୂଦ୍ରାଃ | = ଶୂଦ୍ରମାନେ | ବ୍ୟପାଶ୍ରିତ୍ୟ | = ଶରଣାପନ୍ନ ହୋଇ |
| ତଥା | = ତଥା | ପରାମ୍ | = ପରମ |
| ପାପଯୋନୟଃ | = ଅନ୍ୟ ପାପଯୋନି-ଚଣ୍ଡାଳାଦି | ଗତିମ୍ | = ଗତିକୁ (ହିଁ) |
| ଯେ, ଅପି | = ଯେ କେହି ବି | ଯାନ୍ତି | = ପ୍ରାପ୍ତ ହୁଅନ୍ତି । |

ପୁଣ୍ୟଶୀଳ ବ୍ରାହ୍ମଣ ଏବଂ ରାଜର୍ଷି ଭକ୍ତଙ୍କର ପ୍ରଶଂସା ଏବଂ ଭକ୍ତଜନଙ୍କ ପାଇଁ ଭଗବାନଙ୍କ ଆଜ୍ଞା ।

କିଂ ପୁନର୍ବ୍ରାହ୍ମଣାଃ ପୁଣ୍ୟା ଭକ୍ତା ରାଜର୍ଷୟସ୍ତଥା ।
ଅନିତ୍ୟମସୁଖଂ ଲୋକମିମଂ ପ୍ରାପ୍ୟ ଭଜସ୍ୱ ମାମ୍ ॥ ୩୩ ॥

କିମ୍, ପୁନଃ, ବ୍ରାହ୍ମଣାଃ, ପୁଣ୍ୟାଃ, ଭକ୍ତାଃ, ରାଜର୍ଷୟଃ, ତଥା, ଅନିତ୍ୟମ୍, ଅସୁଖମ୍, ଲୋକମ୍, ଇମମ୍, ପ୍ରାପ୍ୟ, ଭଜସ୍ୱ, ମାମ୍।।୩୩।।

| | | | |
|---|---|---|---|
| ପୁଣ୍ୟାଃ | = ପୁଣ୍ୟଶୀଳ | ଅସୁଖମ୍ | = ସୁଖ ରହିତ (ଓ) |
| ବ୍ରାହ୍ମଣାଃ | = ବ୍ରାହ୍ମଣମାନେ | ଅନିତ୍ୟମ୍ | = କ୍ଷଣଭଙ୍ଗୁର |
| ତଥା | = ତଥା | ଇମମ୍ | = ଏହି |
| ରାଜର୍ଷୟଃ | = ରାଜର୍ଷି | ଲୋକମ୍ | = ମନୁଷ୍ୟ ଶରୀରକୁ |
| ଭକ୍ତାଃ | = ଭକ୍ତମାନେ ମୋର ଶରଣାପନ୍ନ ହୋଇ ପରମ ଗତିକୁ ପ୍ରାପ୍ତ ହୁଅନ୍ତି । | ପ୍ରାପ୍ୟ | = ପ୍ରାପ୍ତ ହୋଇ (ତୁମେ) |
| ପୁନଃ, କିମ୍ | = ଏଥିରେ ଆଉ କହିବାର କ'ଣ ଅଛି ! (ତେଣୁ ) | ମାମ୍ | = ମୋତେ ହିଁ |
| | | ଭଜସ୍ୱ | = ଭଜନ କର । |

ଅର୍ଜୁନଙ୍କୁ ଭଗବାନଙ୍କ ଶରଣ ହେବା ପାଇଁ କହିବା ଏବଂ ଅଙ୍ଗ ସହିତ ଶରଣାଗତିର ସ୍ୱରୂପ ନିରୂପଣ ।

ମନ୍ମନା ଭବ ମଦ୍ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ଯୁକ୍ତ୍ୱୈବମାତ୍ମାନଂ ମତ୍ପରାୟଣଃ ॥ ୩୪ ॥

ମନ୍ମନାଃ, ଭବ, ମଦ୍ଭକ୍ତଃ, ମଦ୍‌ଯାଜୀ, ମାମ୍, ନମସ୍କୁରୁ, ମାମ୍, ଏବ, ଏଷ୍ୟସି, ଯୁକ୍ତ୍ୱା, ଏବମ୍, ଆତ୍ମାନମ୍, ମତ୍‌ପରାୟଣଃ ।।୩୪ ।।

| | | | |
|---|---|---|---|
| ମନ୍ମନାଃ, ଭବ | = ମୋଠାରେ ମନ ଲଗାଅ, | ଆତ୍ମାନମ୍ | = ଆତ୍ମାକୁ (ମୋଠାରେ) |
| ମଦ୍‌ଭକ୍ତଃ | = ମୋର ଭକ୍ତ (ହୁଅ), | ଯୁକ୍ତ୍ୱା | = ଲଗାଇ |
| ମଦ୍‌ଯାଜୀ | = ମୋର ପୂଜକ (ହୁଅ), | ମତ୍‌ପରାୟଣଃ | = ମୋର ପରାୟଣ ହୋଇ (ତୁମେ) |
| ମାମ୍ | = ମୋତେ | ମାମ୍ | = ମୋତେ |
| ନମସ୍କୁରୁ | = ପ୍ରଣାମ କର । | ଏବ | = ହିଁ |
| ଏବମ୍ | = ଏପରି ଭାବରେ | ଏଷ୍ୟସି | = ପ୍ରାପ୍ତ ହେବ । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ରାଜବିଦ୍ୟାରାଜଗୁହ୍ୟଯୋଗୋ ନାମ ନବମୋଽଧ୍ୟାୟଃ ॥ ୯ ॥*



**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ରାଜବିଦ୍ୟାରାଜଗୁହ୍ୟଯୋଗ' ନାମକ ନବମ ଅଧ୍ୟାୟ ପୂର୍ଣ୍ଣ ହେଲା ।। ୯ ।।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

ଓଁ ଶ୍ରୀପରମାତ୍ମନେ ନମଃ

# ଦଶମ ଅଧ୍ୟାୟ

## ବିଭୂତିଯୋଗ

**ପ୍ରଧାନ ବିଷୟ**

| | |
|---|---|
| ୧ ରୁ ୭ | ଭଗବାନଙ୍କର ବିଭୂତି ଏବଂ ଯୋଗଶକ୍ତିର କଥନ ତଥା ଭଗବାନଙ୍କୁ ଜାଣିବାର ଫଳ, |
| ୮ ରୁ ୧୧ | ଫଳ ଓ ପ୍ରଭାବ ସହିତ ଭକ୍ତିଯୋଗର କଥନ, |
| ୧୨ ରୁ ୧୮ | ଅର୍ଜୁନଙ୍କ ଦ୍ୱାରା ଭଗବାନଙ୍କ ସ୍ତୁତି ଏବଂ ବିଭୂତି ତଥା ଯୋଗଶକ୍ତି ବିଷୟରେ କହିବା ପାଇଁ ପ୍ରାର୍ଥନା, |
| ୧୯ ରୁ ୪୨ | ଭଗବାନଙ୍କ ଦ୍ୱାରା ନିଜର ବିଭୂତିମାନଙ୍କର ଅବତାରଣା ତଥା ଯୋଗଶକ୍ତିର କଥନ । |

*ଶ୍ରୀଭଗବାନ ଉବାଚ*

ଭଗବାନଙ୍କ ଯେଉଁ ସବୁ ଶ୍ରେଷ୍ଠତମ ଉପଦେଶ, ତାହା ପୁନଃ ପ୍ରଦାନ କରିବା ପାଇଁ ପ୍ରତିଜ୍ଞା ଏବଂ ସେ ସବୁ ଶୁଣିବା ପାଇଁ ଅର୍ଜୁନଙ୍କୁ ଅନୁରୋଧ ।

**ଭୂୟ ଏବ ମହାବାହୋ ଶୃଣୁ ମେ ପରମଂ ବଚଃ ।**
**ଯତ୍ତେଽହଂ ପ୍ରୀୟମାଣାୟ ବକ୍ଷ୍ୟାମି ହିତକାମ୍ୟୟା ॥ ୧ ॥**

ଭୂୟଃ, ଏବ, ମହାବାହୋ, ଶୃଣୁ, ମେ, ପରମମ୍, ବଚଃ,
ଯତ୍, ତେ, ଅହମ୍, ପ୍ରୀୟମାଣାୟ, ବକ୍ଷ୍ୟାମି, ହିତକାମ୍ୟୟା ।।୧ ।।

**ଶ୍ରୀଭଗବାନ୍ କହିଲେ—**

| | | | |
|---|---|---|---|
| ମହାବାହୋ | = ହେ ମହାବାହୋ ! | ପରମମ୍ | = ପରମ (ରହସ୍ୟ ଓ ପ୍ରଭାବଯୁକ୍ତ) |
| ମେ | = ମୋର | | |

| | | | |
|---|---|---|---|
| ବଚଃ | = ବଚନକୁ | ପ୍ରୀୟମାଣାୟ | = ଅତିଶୟ ପ୍ରେମୀ (ପୁରୁଷଙ୍କୁ) |
| ଭୂୟଃ,ଏବ | = ପୁଣି ଥରେ | | |
| ଶୃଣୁ | = ଶ୍ରବଣ କର, | | |
| ଯତ୍ | = ଯାହା (କି) | ହିତକାମ୍ୟୟା | = (ତୁମର) ହିତ କାମନା କରି |
| ଅହମ୍ | = ମୁଁ | | |
| ତେ | = ତୁମ (ପରି) | ବକ୍ଷ୍ୟାମି | = କହିବି । |

‘ଯୋଗ’ ଶବ୍ଦର ଅର୍ଥ ବର୍ଣ୍ଣନା କରି ତାହା ଜାଣିବାର ଫଳ କହିବା ।

**ନ ମେ ବିଦୁଃ ସୁରଗଣାଃ ପ୍ରଭବଂ ନ ମହର୍ଷୟଃ ।**
**ଅହମାଦିର୍ହି ଦେବାନାଂ ମହର୍ଷୀଣାଂ ଚ ସର୍ବଶଃ ॥ ୨ ॥**

ନ, ମେ, ବିଦୁଃ, ସୁରଗଣାଃ, ପ୍ରଭବମ୍, ନ, ମହର୍ଷୟଃ,
ଅହମ୍, ଆଦିଃ, ହି, ଦେବାନାମ୍, ମହର୍ଷୀଣାମ୍, ଚ, ସର୍ବଶଃ ।।୨ ।।

**ହେ ଅର୍ଜୁନ ।—**

| | | | |
|---|---|---|---|
| ମେ | = ମୋର | (ବିଦୁଃ) | ଜାଣନ୍ତି ନାହିଁ, |
| ପ୍ରଭବମ୍ | = ଉତ୍ପତ୍ତିକୁ ଅର୍ଥାତ୍ ଲୀଳାରେ ପ୍ରକଟ ହେଉଥିବା ରହସ୍ୟକୁ | ହି | = କାରଣ |
| | | ଅହମ୍ | = ମୁଁ |
| | | ସର୍ବଶଃ | = ସବୁପ୍ରକାରେ |
| | | ଦେବାନାମ୍ | = ଦେବତା ମାନଙ୍କର |
| | | ଚ | = ତଥା |
| ନ, ସୁରଗଣାଃ, | = ଦେବତାମାନେ | ମହର୍ଷୀଣାମ୍ | = ମହର୍ଷୀମାନଙ୍କର (ମଧ୍ୟ) |
| ବିଦୁଃ | ଜାଣନ୍ତି ନାହିଁ, | | |
| ନ, ମହର୍ଷୟଃ | = (କି) ମହର୍ଷିମାନେ | ଆଦିଃ | = ଆଦି କାରଣ । |

**ଯୋ ମାମଜମନାଦିଂ ଚ ବେତ୍ତି ଲୋକମହେଶ୍ୱରମ୍ ।**
**ଅସମ୍ମୂଢଃ ସ ମର୍ତ୍ତ୍ୟେଷୁ ସର୍ବପାପୈଃ ପ୍ରମୁଚ୍ୟତେ ॥ ୩ ॥**

ଯଃ, ମାମ୍, ଅଜମ୍, ଅନାଦିମ୍, ଚ, ବେତ୍ତି, ଲୋକମହେଶ୍ୱରମ୍,
ଅସମ୍ମୂଢଃ, ସଃ, ମର୍ତ୍ତ୍ୟେଷୁ, ସର୍ବପାପୈଃ, ପ୍ରମୁଚ୍ୟତେ ।।୩।।

ଏବଂ—

| | | | |
|---|---|---|---|
| ଯଃ | = ଯେ | ବେତ୍ତି | = (ବୋଲି) ତତ୍ତ୍ୱତଃ ଜାଣେ, |
| ମାମ୍ | = ମୋତେ | ମର୍ତ୍ତ୍ୟେଷୁ | = ମନୁଷ୍ୟମାନଙ୍କ ମଧ୍ୟରେ |
| ଅଜମ୍ | = ଅଜନ୍ମା ଅର୍ଥାତ୍ ପ୍ରକୃତରେ ଜନ୍ମରହିତ, | | |
| ଅନାଦିମ୍ | = ଅନାଦି* | ସଃ | = ସେହି |
| ଚ | = ଓ | ଅସମ୍ମୂଢଃ | = ଜ୍ଞାନୀପୁରୁଷ |
| ଲୋକମହେ-ଶ୍ୱରମ୍ | = ଲୋକମାନଙ୍କର ମହାନ୍ ଈଶ୍ୱର | ସର୍ବପାପୈଃ | = ସକଳ ପାପରୁ |
| | | ପ୍ରମୁଚ୍ୟତେ | = ମୁକ୍ତ ହୋଇଯାଏ । |

ଭଗବାନଙ୍କ ଠାରୁ ବୁଦ୍ଧି ଆଦି ଭାବର ଉତ୍ପତ୍ତି ବୋଲି କଥନ ।

**ବୁଦ୍ଧିର୍ଜ୍ଞାନମସମ୍ମୋହଃ କ୍ଷମା ସତ୍ୟଂ ଦମଃ ଶମଃ ।**
**ସୁଖଂ ଦୁଃଖଂ ଭବୋଽଭାବୋ ଭୟଂ ଚାଭୟମେବ ଚ ॥ ୪ ॥**

**ଅହିଂସା ସମତା ତୁଷ୍ଟିସ୍ତପୋ ଦାନଂ ଯଶୋଽଯଶଃ ।**
**ଭବନ୍ତି ଭାବା ଭୂତାନାଂ ମତ୍ତ ଏବ ପୃଥଗ୍‌ବିଧାଃ ॥ ୫ ॥**

ବୁଦ୍ଧିଃ, ଜ୍ଞାନମ୍, ଅସମ୍ମୋହଃ, କ୍ଷମା, ସତ୍ୟମ୍, ଦମଃ, ଶମଃ,
ସୁଖମ୍, ଦୁଃଖମ୍, ଭବଃ, ଅଭାବଃ, ଭୟମ୍, ଚ, ଅଭୟମ୍, ଏବ, ଚ ।।୪।।

ଅହିଂସା, ସମତା, ତୁଷ୍ଟିଃ, ତପଃ, ଦାନମ୍, ଯଶଃ, ଅଯଶଃ,
ଭବନ୍ତି, ଭାବାଃ, ଭୂତାନାମ୍, ମତ୍ତଃ, ଏବ, ପୃଥଗ୍‌ବିଧାଃ ।।୫।।

* ଅନାଦି ତାହାକୁ କହନ୍ତି, ଯିଏ ଆଦି ରହିତ ଏବଂ ସମସ୍ତଙ୍କର କାରଣ ହୁଅନ୍ତି ।

ଏବଂ ହେ ଅର୍ଜୁନ !—

| | | | |
|---|---|---|---|
| ବୁଦ୍ଧିଃ | = ନିଶ୍ଚୟ କରିବା ଶକ୍ତି, | ତୁଷ୍ଟିଃ | = ସନ୍ତୋଷ, |
| ଜ୍ଞାନମ୍ | = ଯଥାର୍ଥ ଜ୍ଞାନ, | ତପଃ | = ତପ,* |
| ଅସମ୍ମୋହଃ | = ଅସମ୍ମୂଢ଼ତା, | ଦାନମ୍ | = ଦାନ, |
| କ୍ଷମା | = କ୍ଷମା, | ଯଶଃ | = କୀର୍ତ୍ତି (ଏବଂ) |
| ସତ୍ୟମ୍ | = ସତ୍ୟ, | ଅଯଶଃ | = ଅପକୀର୍ତ୍ତି- |
| ଦମଃ | = ଇନ୍ଦ୍ରିୟସଂଯମ, | ଭୂତାନାମ୍ | = ପ୍ରାଣୀମାନଙ୍କର |
| ଶମଃ | = ମନୋନିଗ୍ରହ, | (ଏବମ୍) | = ଏହିପରି |
| ଏବ | = ତଥା | ପୃଥଗ୍‌ବିଧାଃ | = ନାନାପ୍ରକାର (ଯେଉଁ) |
| ସୁଖମ୍-ଦୁଃଖମ୍ | = ସୁଖ-ଦୁଃଖ, | | |
| ଭବଃ, ଅଭାବଃ | = ଉତ୍ପତ୍ତି-ପ୍ରଳୟ, | ଭାବାଃ | = ଭାବମାନ (ରହିଛି, ସେଗୁଡ଼ିକ) |
| ଚ | = ଓ | | |
| ଭୟମ୍,ଅଭୟମ୍ | = ଭୟ-ଅଭୟ, | ମତ୍ତଃ | = ମୋ'ଠାରୁ |
| ଚ | = ଏବଂ | ଏବ | = ହିଁ |
| ଅହିଂସା | = ଅହିଂସା, | ଭବନ୍ତି | = ଉତ୍ପନ୍ନ ହୋଇଥାନ୍ତି । |
| ସମତା | = ସମତା, | | |

ଭଗବାନଙ୍କ ସଂକଳ୍ପରୁ ସପ୍ତର୍ଷି ଏବଂ ସନକାଦିଙ୍କ ଉତ୍ପତ୍ତିର କଥନ ।

**ମହର୍ଷୟଃ ସପ୍ତ ପୂର୍ବେ ଚତ୍ୱାରୋ ମନବସ୍ତଥା ।**
**ମଦ୍‌ଭାବା ମାନସା ଜାତା ଯେଷାଂ ଲୋକ ଇମାଃ ପ୍ରଜାଃ ॥ ୬ ॥**

ମହର୍ଷୟଃ, ସପ୍ତ, ପୂର୍ବେ, ଚତ୍ୱାରଃ, ମନବଃ, ତଥା,
ମଦ୍‌ଭାବାଃ, ମାନସାଃ, ଜାତାଃ, ଯେଷାମ୍, ଲୋକେ, ଇମାଃ, ପ୍ରଜାଃ ।।୬।।

ଏବଂ ହେ ଅର୍ଜୁନ !—

* ସ୍ୱଧର୍ମ ପାଳନ ପାଇଁ କଷ୍ଟ ସହିବାକୁ 'ତପ' କୁହାଯାଏ ଯାହାଦ୍ୱାରା ଅନ୍ତଃକରଣ ଶୁଦ୍ଧ ହୁଏ ।

| | | | |
|---|---|---|---|
| ଲୋକେ | = ସଂସାରର | ତଥା | = ତଥା |
| ଇମାଃ, ପ୍ରଜାଃ | = ଏହି ସମସ୍ତ ପ୍ରଜା | ମନବଃ | = ସ୍ୱାୟମ୍ଭୁବାଦି ଚଉଦ ମନୁ |
| ଯେଷାମ୍ (ଜାତାଃ) | = ଯେଉଁମାନଙ୍କ ଠାରୁ ଉତ୍ପନ୍ନ ହୋଇଛନ୍ତି | ମାନସାଃ | = ମୋ ସଂକଳ୍ପରୁ |
| (ତେ) | = ସେହି | ଜାତାଃ | = ଉତ୍ପନ୍ନ ହୋଇଛନ୍ତି । |
| ସପ୍ତ, ମହର୍ଷୟଃ | = ସପ୍ତମହର୍ଷି (ଓ) | ମଦ୍‌ଭାବାଃ | = (ଏ ସମସ୍ତେ) ମୋ ଠାରେ ଶ୍ରଦ୍ଧାଭାବ ରଖନ୍ତି । |
| ପୂର୍ବେ | = (ସେମାନଙ୍କ) ପୂର୍ବରୁ (ଜାତ ହୋଇଥିବା) | | |
| ଚତ୍ୱାରଃ | = ସନକାଦି ଚାରିକୁମାର | | |

ଭଗବାନଙ୍କ ବିଭୂତି ତଥା ଯୋଗକୁ ତତ୍ତ୍ୱତଃ ଜାଣିବାର ଫଳ ।

**ଏତାଂ ବିଭୂତିଂ ଯୋଗଂ ଚ ମମ ଯୋ ବେତ୍ତି ତତ୍ତ୍ୱତଃ ।**
**ସୋଽବିକମ୍ପେନ ଯୋଗେନ ଯୁଜ୍ୟତେ ନାତ୍ର ସଂଶୟଃ ॥ ୭ ॥**

ଏତାମ୍, ବିଭୂତିମ୍, ଯୋଗମ୍, ଚ, ମମ, ଯଃ, ବେତ୍ତି, ତତ୍ତ୍ୱତଃ,
ସଃ, ଅବିକମ୍ପେନ, ଯୋଗେନ, ଯୁଜ୍ୟତେ, ନ, ଅତ୍ର, ସଂଶୟଃ ।।୭।।

ଏବଂ—

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | ବେତ୍ତି | = ଜାଣେ*, |
| ମମ | = ମୋର | ସଃ | = ସେ |
| ଏତାମ୍ | = ଏହି | ଅବିକମ୍ପେନ | = ନିଶ୍ଚଳ |
| ବିଭୂତିମ୍ | = ପରମ ଐଶ୍ୱର୍ଯ୍ୟରୂପୀ ବିଭୂତିକୁ | ଯୋଗେନ | = ଭକ୍ତିଯୋଗଦ୍ୱାରା |
| | | ଯୁଜ୍ୟତେ | = ଯୁକ୍ତ ହୋଇଯାଏ- |
| ଚ | = ଓ | ଅତ୍ର | = ଏଥିରେ (କୌଣସି) |
| ଯୋଗମ୍ | = ଯୋଗଶକ୍ତିକୁ | ସଂଶୟଃ | = ସନ୍ଦେହ |
| ତତ୍ତ୍ୱତଃ | = ତତ୍ତ୍ୱତଃ | ନ (ଅସ୍ତି) | = ନାହିଁ । |

* ଦୃଶ୍ୟ ହେଉଥିବା ସମସ୍ତ ସଂସାରର ସବୁକିଛି ହିଁ ଭଗବାନଙ୍କର ମାୟା ଅଟେ ଏବଂ କେବଳ ଭଗବାନ୍ ବାସୁଦେବ ହିଁ ସର୍ବତ୍ର ପରିପୂର୍ଣ୍ଣ ବୋଲି ଜାଣିବା ହିଁ 'ତତ୍ତ୍ୱତଃ ଜାଣିବା' ଅଟେ ।

ଭଗବାନଙ୍କର ବୁଦ୍ଧିମାନ୍ ତଥା ଅନନ୍ୟ ପ୍ରେମୀ ଭକ୍ତଙ୍କ ଭଜନର ପ୍ରକାର ।

**ଅହଂ ସର୍ବସ୍ୟ ପ୍ରଭବୋ ମତ୍ତଃ ସର୍ବଂ ପ୍ରବର୍ତ୍ତତେ ।**
**ଇତି ମତ୍ୱା ଭଜନ୍ତେ ମାଂ ବୁଧା ଭାବସମନ୍ୱିତାଃ ॥ ୮ ॥**

ଅହମ୍, ସର୍ବସ୍ୟ, ପ୍ରଭବଃ, ମତ୍ତଃ, ସର୍ବମ୍, ପ୍ରବର୍ତ୍ତତେ,
ଇତି, ମତ୍ୱା, ଭଜନ୍ତେ, ମାମ୍, ବୁଧାଃ, ଭାବସମନ୍ୱିତାଃ ।।୮।।

| | | | |
|---|---|---|---|
| ଅହମ୍ | = ମୁଁ ବାସୁଦେବ ହିଁ | ମତ୍ୱା | = ବୁଝି |
| ସର୍ବସ୍ୟ | = ସମସ୍ତ ଜଗତର | ଭାବସମନ୍ୱିତାଃ | = ଶ୍ରଦ୍ଧାଯୁକ୍ତ ଓ ଭକ୍ତିଯୁକ୍ତ |
| ପ୍ରଭବଃ | = ଉତ୍ପତ୍ତିର କାରଣ | ବୁଧାଃ | = ବୁଦ୍ଧିମାନ୍ ଭକ୍ତମାନେ |
| ମତ୍ତଃ | = (ଓ) ମୋ ଠାରୁ (ହିଁ) | ମାମ୍ | = ମୋତେ ଅର୍ଥାତ୍ ପରମେଶ୍ୱରଙ୍କୁ (ହିଁ) |
| ସର୍ବମ୍ | = ସମସ୍ତ ଜଗତ | | |
| ପ୍ରବର୍ତ୍ତତେ | = ପ୍ରବୃତ୍ତ ହେଉଛି, | | |
| ଇତି | = ଏପରି | ଭଜନ୍ତେ | = ଭଜନ କରନ୍ତି । |

**ମଚ୍ଚିତ୍ତା ମଦ୍‌ଗତପ୍ରାଣା ବୋଧୟନ୍ତଃ ପରସ୍ପରମ୍ ।**
**କଥୟନ୍ତଶ୍ଚ ମାଂ ନିତ୍ୟଂ ତୁଷ୍ୟନ୍ତି ଚ ରମନ୍ତି ଚ ॥ ୯ ॥**

ମଚ୍ଚିତ୍ତାଃ, ମଦ୍‌ଗତପ୍ରାଣାଃ, ବୋଧୟନ୍ତଃ, ପରସ୍ପରମ୍,
କଥୟନ୍ତଃ, ଚ, ମାମ୍, ନିତ୍ୟମ୍, ତୁଷ୍ୟନ୍ତି, ଚ, ରମନ୍ତି, ଚ ।।୯।।

**ଏବଂ ସେମାନେ—**

| | |
|---|---|
| ମଚ୍ଚିତ୍ତାଃ | = ନିରନ୍ତର ମୋଠାରେ ମନ ଲଗାଇଥିବା (ଓ) |
| ମଦ୍‌ଗତପ୍ରାଣାଃ | = ମୋଠାରେ ହିଁ ପ୍ରାଣକୁ* ଅର୍ପଣ କରିଦେଇଥିବା ଭକ୍ତଗଣ |

* ମୋତେ ଅର୍ଥାତ୍ ବାସୁଦେବଙ୍କ ପାଇଁ ହିଁ ନିଜର ଜୀବନ ଯେଉଁମାନେ ଅର୍ପଣ କରିଦେଇଛନ୍ତି, ସେମାନେ 'ମଦ୍‌ଗତପ୍ରାଣାଃ' ଅଟନ୍ତି ।

| | |
|---|---|
| ପରସ୍ପରମ୍, = ମୋ ଭକ୍ତିସମ୍ବନ୍ଧରେ | ଚ = ହିଁ |
| ବୋଧୟନ୍ତଃ ଚର୍ଚ୍ଚା କରି ଓ ମୋର ପ୍ରଭାବକୁ ପରସ୍ପର ମଧ୍ୟରେ ଆଲୋଚନା କରି, ଏକ ଆରେକକୁ ବୋଧ କରାଇ | ନିତ୍ୟମ୍ = ନିରନ୍ତର |
| ଚ = ତଥା | ତୁଷ୍ୟନ୍ତି = ସନ୍ତୁଷ୍ଟ ହୁଅନ୍ତି |
| କଥୟନ୍ତଃ = ମୋର ଗୁଣ ଓ ପ୍ରଭାବ ସହିତ ମୋ ବିଷୟରେ କଥାଭାଷା କରି | ଚ = ଓ |
| | ମାମ୍ = ମୋ ଠାରେ (ବାସୁଦେବଙ୍କ ଠାରେ ହିଁ) |
| | ରମନ୍ତି = ନିରନ୍ତର ରମଣ କରନ୍ତି । |

ପ୍ରେମପୂର୍ବକ ନିରନ୍ତର ଭଜନ କରିବାର ଫଳ ।

**ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକମ୍ ।**
**ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତି ତେ ॥ ୧୦ ॥**

ତେଷାମ୍, ସତତଯୁକ୍ତାନାମ୍, ଭଜତାମ୍, ପ୍ରୀତିପୂର୍ବକମ୍, ଦଦାମି, ବୁଦ୍ଧିଯୋଗମ୍, ତମ୍, ଯେନ, ମାମ୍, ଉପଯାନ୍ତି, ତେ ।।୧୦।।

| | |
|---|---|
| ତେଷାମ୍ = ସେହି | ତମ୍ = ସେହି |
| ସତତଯୁକ୍ତାନାମ୍ = ନିରନ୍ତର ମୋର ଧ୍ୟାନ ଆଦିରେ ଲାଗିରହୁଥିବା | ବୁଦ୍ଧିଯୋଗମ୍ = ତତ୍ତ୍ୱଜ୍ଞାନରୂପୀ ଯୋଗ |
| ପ୍ରୀତିପୂର୍ବକମ୍ = (ତଥା) ପ୍ରେମପୂର୍ବକ | ଦଦାମି = ପ୍ରଦାନ କରେ, |
| ଭଜତାମ୍ = ଭଜନ କରୁଥିବା ଭକ୍ତମାନଙ୍କୁ (ମୁଁ) | ଯେନ = ଯାହାଦ୍ୱାରା |
| | ତେ = ସେମାନେ |
| | ମାମ୍ = ମୋତେ (ହିଁ) |
| | ଉପଯାନ୍ତି = ପ୍ରାପ୍ତ ହୁଅନ୍ତି । |

**ତେଷାମେବାନୁକମ୍ପାର୍ଥମହମଜ୍ଞାନଜଂ ତମଃ ।**
**ନାଶୟାମ୍ୟାତ୍ମଭାବସ୍ଥୋ ଜ୍ଞାନଦୀପେନ ଭାସ୍ୱତା ॥ ୧୧ ॥**

ତେଷାମ୍, ଏବ, ଅନୁକମ୍ପାର୍ଥମ୍, ଅହମ୍, ଅଜ୍ଞାନଜମ୍, ତମଃ,
ନାଶୟାମି, ଆତ୍ମଭାବସ୍ଥଃ, ଜ୍ଞାନଦୀପେନ, ଭାସ୍ୱତା ।। ୧୧ ।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ତେଷାମ୍ | = ସେମାନଙ୍କ ଉପରେ | ଭାସ୍ୱତା | = ଆଲୋକମୟ |
| ଅନୁକମ୍ପାର୍ଥମ୍ | = ଅନୁଗ୍ରହ କରିବା ପାଇଁ | ଜ୍ଞାନଦୀପେନ | = ତତ୍ତ୍ୱଜ୍ଞାନରୂପୀ ଦୀପଦ୍ୱାରା |
| ଆତ୍ମଭାବସ୍ଥଃ | = (ସେମାନଙ୍କ) ଅନ୍ତଃକରଣରେ ଅବସ୍ଥିତ ହୋଇ | ଅଜ୍ଞାନଜମ୍ | = (ସେମାନଙ୍କ) ଅଜ୍ଞାନ ଜନିତ |
| ଅହମ୍ | = ମୁଁ (ନିଜେ) | ତମଃ | = ଅନ୍ଧକାରକୁ |
| ଏବ | = ହିଁ | ନାଶୟାମି | = ନାଶ କରିଦିଏ । |

*ଅର୍ଜୁନ ଉବାଚ*

ଅର୍ଜୁନଙ୍କ ଦ୍ୱାରା ଭଗବାନଙ୍କୁ ସ୍ତୁତି ।

**ପରଂ ବ୍ରହ୍ମ ପରଂ ଧାମ ପବିତ୍ରଂ ପରମଂ ଭବାନ୍ ।**
**ପୁରୁଷଂ ଶାଶ୍ୱତଂ ଦିବ୍ୟମାଦିଦେବମଜଂ ବିଭୁମ୍ ॥ ୧୨ ॥**

**ଆହୁସ୍ତ୍ୱାମୃଷୟଃ ସର୍ବେ ଦେବର୍ଷିର୍ନାରଦସ୍ତଥା ।**
**ଅସିତୋ ଦେବଲୋ ବ୍ୟାସଃ ସ୍ୱୟଂ ଚୈବ ବ୍ରବୀଷି ମେ ॥ ୧୩ ॥**

ପରମ୍, ବ୍ରହ୍ମ, ପରମ୍, ଧାମ, ପବିତ୍ରମ୍, ପରମମ୍, ଭବାନ୍,
ପୁରୁଷମ୍, ଶାଶ୍ୱତମ୍, ଦିବ୍ୟମ୍, ଆଦିଦେବମ୍, ଅଜମ୍, ବିଭୁମ୍ ।। ୧୨ ।।

ଆହୁଃ, ତ୍ୱାମ୍, ଋଷୟଃ, ସର୍ବେ, ଦେବର୍ଷିଃ, ନାରଦଃ, ତଥା,
ଅସିତଃ, ଦେବଲଃ, ବ୍ୟାସଃ, ସ୍ୱୟମ୍, ଚ, ଏବ, ବ୍ରବୀଷି, ମେ ।। ୧୩ ।।

**ଭଗବାନଙ୍କ ଠାରୁ ଏହିପ୍ରକାର ବଚନ ଶୁଣି ଅର୍ଜୁନ କହିଲେ,**
**ହେ ଭଗବାନ୍ !—**

| | | | |
|---|---|---|---|
| ଭବାନ୍ | = ଆପଣ | ବିଭୁମ୍ | = ସର୍ବବ୍ୟାପୀ |
| ପରମ୍ | = ପରମ | ଆହୁଃ | = (ବୋଲି) କହନ୍ତି । |
| ବ୍ରହ୍ମ | = ବ୍ରହ୍ମ, | ତଥା | = ସେହିପରି |
| ପରମ୍ | = ପରମ | ଦେବର୍ଷିଃ | = ଦେବର୍ଷି |
| ଧାମ | = ଧାମ (ଓ) | ନାରଦଃ | = ନାରଦ (ତଥା) |
| ପରମମ୍ | = ପରମ | ଅସିତଃ | = ଅସିତ (ଓ) |
| ପବିତ୍ରମ୍ | = ପବିତ୍ର ଅଟନ୍ତି; (କାହିଁକି ନା) | ଦେବଲଃ | = ଦେବଲ ଋଷି (ତଥା) |
| ତ୍ୱାମ୍ | = ଆପଣଙ୍କୁ | ବ୍ୟାସଃ | = ମହର୍ଷି ବ୍ୟାସ |
| ସର୍ବେ | = ସକଳ | ଚ | = ଓ |
| ଋଷୟଃ | = ଋଷିମାନେ | ସ୍ୱୟମ୍ | = ସ୍ୱୟଂ ଆପଣ |
| ଶାଶ୍ୱତମ୍ | = ସନାତନ, | ଏବ | = ମଧ୍ୟ |
| ଦିବ୍ୟମ୍,ପୁରୁଷମ୍ | = ଦିବ୍ୟ ପୁରୁଷ (ଓ) | ମେ | = ମୋତେ |
| ଆଦିଦେବମ୍ | = ଦେବତାମାନଙ୍କର ମଧ୍ୟ ଆଦିଦେବ, | ବ୍ରବୀଷି | = (ନିଜେ ସେହି କଥା) କହୁଛନ୍ତି । |
| ଅଜମ୍ | = ଅଜନ୍ମା (ଓ) | | |

ଅର୍ଜ୍ଜୁନଙ୍କ ଦ୍ୱାରା ଭଗବାନଙ୍କ ପ୍ରଭାବର ବର୍ଣ୍ଣନା ।

**ସର୍ବମେତଦୃତଂ ମନ୍ୟେ ଯନ୍ମାଂ ବଦସି କେଶବ ।**
**ନ ହି ତେ ଭଗବନ୍ ବ୍ୟକ୍ତିଂ ବିଦୁର୍ଦେବା ନ ଦାନବାଃ ॥ ୧୪ ॥**

ସର୍ବମ୍, ଏତତ୍, ଋତମ୍, ମନ୍ୟେ, ଯତ୍, ମାମ୍, ବଦସି, କେଶବ, ନ, ହି, ତେ, ଭଗବନ୍, ବ୍ୟକ୍ତିମ୍, ବିଦୁଃ, ଦେବାଃ, ନ, ଦାନବାଃ ।।୧୪ ।।

ଏବଂ—

| | | | |
|---|---|---|---|
| କେଶବ | = ହେ କେଶବ ! | ଏତତ୍, ସର୍ବମ୍ | = ସେସବୁକୁ (ମୁଁ) |
| ଯତ୍ | = ଯାହା (କିଛି ବି) | ଋତମ୍ | = ସତ୍ୟ (ବୋଲି) |
| ମାମ୍ | = ମୋତେ | ମନ୍ୟେ | = ମାନୁଛି । |
| ବଦସି | = ଆପଣ କହୁଛନ୍ତି | ଭଗବନ୍ | = ହେ ଭଗବନ୍ ! |

| | | | |
|---|---|---|---|
| ତେ | = ଆପଣଙ୍କର | ବିଦୁଃ | ଜାଣନ୍ତି ନାହିଁ (କି) |
| ବ୍ୟକ୍ତିମ୍ | = ଲୀଳାମୟ ସ୍ୱରୂପକୁ* | ନ, ଦେବାଃ, | = ଦେବତାମାନେ ବି |
| ନ, ଦାନବାଃ, | = ଦାନବମାନେ | ହି, (ବିଦୁଃ) | ଜାଣନ୍ତି ନାହିଁ । |

**ସ୍ୱୟମେବାତ୍ମନାତ୍ମାନଂ ବେତ୍ଥ ତ୍ୱଂ ପୁରୁଷୋତ୍ତମ ।**
**ଭୂତଭାବନ ଭୂତେଶ ଦେବଦେବ ଜଗତ୍‌ପତେ ॥ ୧୫ ॥**

ସ୍ୱୟମ୍, ଏବ, ଆତ୍ମନା, ଆତ୍ମାନମ୍, ବେତ୍ଥ, ତ୍ୱମ୍, ପୁରୁଷୋତ୍ତମ,
ଭୂତଭାବନ, ଭୂତେଶ, ଦେବଦେବ, ଜଗତ୍‌ପତେ ।।୧୫।।

| | | | |
|---|---|---|---|
| ଭୂତଭାବନ | = ହେ ପ୍ରାଣୀମାନଙ୍କର ସୃଷ୍ଟିକର୍ତ୍ତା ! | ତ୍ୱମ୍ | = ଆପଣ |
| | | ସ୍ୱୟମ୍ | = ନିଜେ |
| ଭୂତେଶ | = ହେ ଭୂତମାନଙ୍କର ଈଶ୍ୱର ! | ଏବ | = ହିଁ |
| ଦେବଦେବ | = ହେ ଦେବାଧିଦେବ ! | ଆତ୍ମନା | = ନିଜଦ୍ୱାରା |
| ଜଗତ୍‌ପତେ | = ହେ ଜଗନ୍ନାଥ ! | ଆତ୍ମାନମ୍ | = ନିଜକୁ |
| ପୁରୁଷୋତ୍ତମ | = ହେ ପୁରୁଷୋତ୍ତମ ! | ବେତ୍ଥ | = ଜାଣନ୍ତି । |

ଭଗବାନଙ୍କ ବିଭୂତିମାନଙ୍କୁ ଜାଣିବା ପାଇଁ ଅର୍ଜୁନଙ୍କ ଇଚ୍ଛା ପ୍ରକାଶ ।

**ବକ୍ତୁମର୍ହସ୍ୟଶେଷେଣ ଦିବ୍ୟା ହ୍ୟାତ୍ମବିଭୂତୟଃ ।**
**ଯାଭିର୍ବିଭୂତିଭିର୍ଲୋକାନିମାଂସ୍ତ୍ୱଂ ବ୍ୟାପ୍ୟ ତିଷ୍ଠସି ॥ ୧୬ ॥**

ବକ୍ତୁମ୍, ଅର୍ହସି, ଅଶେଷେଣ, ଦିବ୍ୟାଃ, ହି, ଆତ୍ମବିଭୂତୟଃ,
ଯାଭିଃ, ବିଭୂତିଭିଃ, ଲୋକାନ୍, ଇମାନ୍, ତ୍ୱମ୍, ବ୍ୟାପ୍ୟ, ତିଷ୍ଠସି ।।୧୬।।

**ଏଥିପାଇଁ ହେ ଭଗବାନ୍ !—**

* ଗୀତା ଅଧ୍ୟାୟ ୪ ଶ୍ଳୋକ ୬ ରେ ଏହା ବିସ୍ତାରଭାବେ କୁହାଯାଇଛି ।

| | | | |
|---|---|---|---|
| ତ୍ୱମ୍ | = ଆପଣ | ଯାଭିଃ | = ଯେଉଁ |
| ହି | = ହିଁ | ବିଭୂତିଭିଃ | = ବିଭୂତିଗୁଡ଼ିକଦ୍ୱାରା (ଆପଣ) |
| ଦିବ୍ୟାଃ, | = ନିଜର ସେହି ଦିବ୍ୟ | ଇମାନ୍ | = ଏହିସବୁ |
| ଆତ୍ମବିଭୂତୟଃ | ବିଭୂତିଗୁଡ଼ିକୁ | ଲୋକାନ୍ | = ଲୋକଗୁଡ଼ିକୁ |
| ଅଶେଷେଣ | = ସମ୍ପୂର୍ଣ୍ଣରୂପେ | ବ୍ୟାପ୍ୟ | = ବ୍ୟାପି |
| ବକ୍ତୁମ୍ | = କହିବାକୁ | ତିଷ୍ଠସି | = ରହିଛନ୍ତି । |
| ଅର୍ହସି | = ସମର୍ଥ ଅଟନ୍ତି, | | |

ଭଗବତ୍ ଚିନ୍ତନ ବିଷୟରେ ଅର୍ଜୁନଙ୍କ ପ୍ରଶ୍ନ ।

**କଥଂ ବିଦ୍ୟାମହଂ ଯୋଗିଂସ୍ତ୍ୱାଂ ସଦା ପରିଚିନ୍ତୟନ୍ ।**
**କେଷୁ କେଷୁ ଚ ଭାବେଷୁ ଚିନ୍ତ୍ୟୋଽସି ଭଗବନ୍ମୟା ॥ ୧୭ ॥**

କଥମ୍, ବିଦ୍ୟାମ୍, ଅହମ୍, ଯୋଗିନ୍, ତ୍ୱାମ୍, ସଦା, ପରିଚିନ୍ତୟନ୍, କେଷୁ, କେଷୁ, ଚ, ଭାବେଷୁ, ଚିନ୍ତ୍ୟଃ, ଅସି, ଭଗବନ୍, ମୟା ।।୧୭।।

| | | | |
|---|---|---|---|
| ଯୋଗିନ୍ | = ହେ ଯୋଗେଶ୍ୱର ! | ଭଗବନ୍ | = ହେ ଭଗବନ୍ ! (ଆପଣ) |
| ଅହମ୍ | = ମୁଁ | କେଷୁ, କେଷୁ | = କେଉଁ କେଉଁ |
| କଥମ୍ | = କିପରି | ଭାବେଷୁ | = ଭାବମାନଙ୍କରେ |
| ସଦା | = ନିରନ୍ତର | ମୟା | = ମୋ ଦ୍ୱାରା |
| ପରିଚିନ୍ତୟନ୍ | = ଚିନ୍ତନ କରି କରି | ଚିନ୍ତ୍ୟଃ | = ଚିନ୍ତନ କରିବା ଯୋଗ୍ୟ |
| ତ୍ୱାମ୍ | = ଆପଣଙ୍କୁ | ଅସି | = ଅଟନ୍ତି ? |
| ବିଦ୍ୟାମ୍ | = ଜାଣିପାରିବି | | |
| ଚ | = ଓ | | |

ଯୋଗଶକ୍ତି ଏବଂ ବିଭୂତିମାନଙ୍କୁ ବିସ୍ତାରପୂର୍ବକ କହିବା ପାଇଁ ଅର୍ଜୁନଙ୍କ ପ୍ରାର୍ଥନା ।

**ବିସ୍ତରେଣାତ୍ମନୋ ଯୋଗଂ ବିଭୂତିଂ ଚ ଜନାର୍ଦ୍ଦନ ।**
**ଭୂୟଃ କଥୟ ତୃପ୍ତିର୍ହି ଶୃଣ୍ୱତୋ ନାସ୍ତି ମେଽମୃତମ୍ ॥ ୧୮ ॥**

ବିସ୍ତରେଣ, ଆତ୍ମନଃ, ଯୋଗମ୍, ବିଭୂତିମ୍, ଚ, ଜନାର୍ଦ୍ଦନ, ଭୂୟଃ, କଥୟ, ତୃପ୍ତିଃ, ହି, ଶୃଣ୍ୱତଃ, ନ, ଅସ୍ତି, ମେ, ଅମୃତମ୍ ।।୧୮।।

ଏବଂ—

| | | | |
|---|---|---|---|
| ଜନାର୍ଦ୍ଦନ | = ହେ ଜନାର୍ଦ୍ଦନ ! | ଅମୃତମ୍ | = ଆପଣଙ୍କର ଅମୃତମୟ ବଚନକୁ |
| ଆତ୍ମନଃ | = ନିଜର | ଶୃଣ୍ୱତଃ | = ଶୁଣି ଶୁଣି |
| ଯୋଗମ୍ | = ଯୋଗଶକ୍ତିକୁ | ମେ | = ମୋର |
| ଚ | = ଓ | ତୃପ୍ତିଃ | = ତୃପ୍ତି |
| ବିଭୂତିମ୍ | = ବିଭୂତିମାନଙ୍କୁ | ନ, ଅସ୍ତି | = ହେଉ ନାହିଁ ଅର୍ଥାତ୍ ଶୁଣିବାର ଉତ୍କଣ୍ଠା ବଢୁଛି । |
| ଭୂୟଃ | = ଆହୁରି | | |
| ବିସ୍ତରେଣ | = ବିସ୍ତୃତଭାବରେ | | |
| କଥୟ | = କହନ୍ତୁ; | | |
| ହି | = କାରଣ | | |

*ଶ୍ରୀଭଗବାନ ଉବାଚ*

ନିଜର ବିଭୂତି ମାନଙ୍କୁ ଅନନ୍ତ ବୋଲି କହି, ପ୍ରଧାନ-ପ୍ରଧାନ ବିଭୂତିମାନଙ୍କୁ କହିବା ପାଇଁ ଭଗବାନଙ୍କ ପ୍ରତିଜ୍ଞା ।

**ହନ୍ତ ତେ କଥୟିଷ୍ୟାମି ଦିବ୍ୟା ହ୍ୟାତ୍ମବିଭୂତୟଃ ।**
**ପ୍ରାଧାନ୍ୟତଃ କୁରୁଶ୍ରେଷ୍ଠ ନାସ୍ତ୍ୟନ୍ତୋ ବିସ୍ତରସ୍ୟ ମେ ॥ ୧୯ ॥**

ହନ୍ତ, ତେ, କଥୟିଷ୍ୟାମି, ଦିବ୍ୟାଃ, ହି, ଆତ୍ମବିଭୂତୟଃ,
ପ୍ରାଧାନ୍ୟତଃ, କୁରୁଶ୍ରେଷ୍ଠ, ନ, ଅସ୍ତି, ଅନ୍ତଃ, ବିସ୍ତରସ୍ୟ, ମେ ।।୧୯ ।।

**ଏହିପରି ଅର୍ଜୁନଙ୍କ ପଚାରିବାରେ ଭଗବାନ୍ କହିଲେ—**

| | | | |
|---|---|---|---|
| କୁରୁଶ୍ରେଷ୍ଠ | = ହେ କୁରୁଶ୍ରେଷ୍ଠ ! | କଥୟିଷ୍ୟାମି | = କହିବି; |
| ହନ୍ତ | = ବର୍ତ୍ତମାନ | ହି | = କାରଣ |
| ଦିବ୍ୟାଃ, ଆତ୍ମବିଭୂତୟଃ | = ମୋର ଯେଉଁ ଦିବ୍ୟ ବିଭୂତିଗୁଡ଼ିକ ରହିଛି (ସେଗୁଡ଼ିକୁ) | ମେ | = ମୋର (ବିଭୂତିମାନଙ୍କର) |
| ତେ | = ତୁମକୁ | ବିସ୍ତରସ୍ୟ | = ବିସ୍ତାରର |
| ପ୍ରାଧାନ୍ୟତଃ | = ମୁଖ୍ୟରୂପରେ | ଅନ୍ତଃ | = ଅନ୍ତ |
| | | ନ, ଅସ୍ତି | = ନାହିଁ । |

ସର୍ବାତ୍ମରୂପରେ ଭଗବାନଙ୍କ ସ୍ୱରୂପର କଥନ ।

**ଅହମାତ୍ମା ଗୁଡାକେଶ ସର୍ବଭୂତାଶୟସ୍ଥିତଃ ।**
**ଅହମାଦିଶ୍ଚ ମଧ୍ୟଂ ଚ ଭୂତାନାମନ୍ତ ଏବ ଚ ॥ ୨୦ ॥**

ଅହମ୍, ଆତ୍ମା, ଗୁଡ଼ାକେଶ, ସର୍ବଭୂତାଶୟସ୍ଥିତଃ,
ଅହମ୍, ଆଦିଃ, ଚ, ମଧ୍ୟମ୍, ଚ, ଭୂତାନାମ୍, ଅନ୍ତଃ, ଏବ, ଚ ।।୨୦ ।।

| | | | |
|---|---|---|---|
| ଗୁଡ଼ାକେଶ | = ହେ ଅର୍ଜୁନ ! | ଆଦିଃ | = ଆଦି, |
| ଅହମ୍ | = ମୁଁ | ମଧ୍ୟମ୍ | = ମଧ୍ୟ |
| ସର୍ବଭୂତା-ଶୟସ୍ଥିତଃ | = ସକଳଜୀବଙ୍କ ହୃଦୟରେ ସ୍ଥିତ | ଚ | = ଓ |
| | | ଅନ୍ତଃ | = ଅନ୍ତ |
| ଆତ୍ମା | = ସମସ୍ତଙ୍କର ଆତ୍ମା; | ଚ | = ବି |
| ଚ | = ତଥା | ଅହମ୍ | = ମୁଁ |
| ଭୂତାନାମ୍ | = ସକଳଜୀବଙ୍କର | ଏବ | = (ହିଁ) ଅଟେ । |

ବିଷ୍ଣୁ ଆଦି ବିଭୂତିମାନଙ୍କର କଥନ ।

**ଆଦିତ୍ୟାନାମହଂ ବିଷ୍ଣୁର୍ଜ୍ୟୋତିଷାଂ ରବିରଂଶୁମାନ୍ ।**
**ମରୀଚିର୍ମରୁତାମସ୍ମି ନକ୍ଷତ୍ରାଣାମହଂ ଶଶୀ ॥ ୨୧ ॥**

ଆଦିତ୍ୟାନାମ୍, ଅହମ୍, ବିଷ୍ଣୁଃ, ଜ୍ୟୋତିଷାମ୍, ରବିଃ, ଅଂଶୁମାନ୍,
ମରୀଚିଃ, ମରୁତାମ୍, ଅସ୍ମି, ନକ୍ଷତ୍ରାଣାମ୍, ଅହମ୍, ଶଶୀ ।।୨୧ ।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଅହମ୍ | = ମୁଁ | | ମଧ୍ୟରେ |
| ଆଦିତ୍ୟାନାମ୍ | = ଅଦିତିଙ୍କ ଦ୍ୱାଦଶ ପୁତ୍ରଙ୍କ ମଧ୍ୟରେ | ଅଂଶୁମାନ୍ | = କିରଣଧାରୀ |
| | | ରବିଃ | = ସୂର୍ଯ୍ୟ |
| ବିଷ୍ଣୁଃ | = ବିଷ୍ଣୁ (ଓ) | ଅସ୍ମି | = ଅଟେ (ତଥା) |
| ଜ୍ୟୋତିଷାମ୍ | = ଜ୍ୟୋତିମାନଙ୍କ | ଅହମ୍ | = ମୁଁ |

| | | | |
|---|---|---|---|
| ମରୁତାମ୍ | = ଅଣଚାଶ ବାୟୁଦେବତା ମାନଙ୍କର | ନକ୍ଷତ୍ରାଣାମ୍ | = ନକ୍ଷତ୍ରମାନଙ୍କର ଅଧିପତି |
| ମରୀଚିଃ | = ତେଜ (ଓ)* | ଶଶୀ | = ଚନ୍ଦ୍ରମା |
| | | (ଅସ୍ମି) | = ଅଟେ । |

ସାମବେଦାଦି ବିଭୂତିମାନଙ୍କର କଥନ ।

**ବେଦାନାଂ ସାମବେଦୋଽସ୍ମି ଦେବାନାମସ୍ମି ବାସବଃ ।**
**ଇନ୍ଦ୍ରିୟାଣାଂ ମନଶ୍ଚାସ୍ମି ଭୂତାନାମସ୍ମି ଚେତନା ॥ ୨୨ ॥**

ବେଦାନାମ୍, ସାମବେଦଃ, ଅସ୍ମି, ଦେବାନାମ୍, ଅସ୍ମି, ବାସବଃ,
ଇନ୍ଦ୍ରିୟାଣାମ୍, ମନଃ, ଚ, ଅସ୍ମି, ଭୂତାନାମ୍, ଅସ୍ମି, ଚେତନା ।।୨୨ ।।

**ଏବଂ ମୁଁ—**

| | | | |
|---|---|---|---|
| ବେଦାନାମ୍ | = (ମୁଁ) ବେଦମାନଙ୍କ ମଧ୍ୟରେ | ଇନ୍ଦ୍ରିୟାଣାମ୍ | = ଇନ୍ଦ୍ରିୟମାନଙ୍କ ମଧ୍ୟରେ |
| ସାମବେଦଃ | = ସାମବେଦ | ମନଃ | = ମନ |
| ଅସ୍ମି | = ଅଟେ, | ଅସ୍ମି | = ଅଟେ |
| | | ଚ | = ଓ |
| ଦେବାନାମ୍ | = ଦେବମାନଙ୍କ ମଧ୍ୟରେ | ଭୂତାନାମ୍ | = ପ୍ରାଣୀମାନଙ୍କର |
| | | ଚେତନା | = ଚେତନା ଅର୍ଥାତ୍ ଜୀବନୀ ଶକ୍ତି |
| ବାସବଃ | = ଇନ୍ଦ୍ର | | |
| ଅସ୍ମି | = ଅଟେ, | ଅସ୍ମି | = ଅଟେ । |

ଶଙ୍କରାଦି ବିଭୂତି ମାନଙ୍କର କଥନ ।

**ରୁଦ୍ରାଣାଂ ଶଙ୍କରଶ୍ଚାସ୍ମି ବିତ୍ତେଶୋ ଯକ୍ଷରକ୍ଷସାମ୍ ।**
**ବସୂନାଂ ପାବକଶ୍ଚାସ୍ମି ମେରୁଃ ଶିଖରିଣାମହମ୍ ॥ ୨୩ ॥**

---

* ଅଣଚାଶ ମରୁତଙ୍କ ମଧ୍ୟରେ 'ମରୀଚି'ଙ୍କ ନାମ ନାହିଁ । ଅତଏବ ମରୀଚିଙ୍କୁ ମରୁତ୍ ବୋଲି ନମାନି ସମସ୍ତ ମରୁତ୍‌ଗଣଙ୍କ ତେଜ ମାନିବା ସମୀଚୀନ ହେବ ।

ରୁଦ୍ରାଣାମ୍, ଶଙ୍କରଃ, ଚ, ଅସ୍ମି, ବିତ୍ତେଶଃ, ଯକ୍ଷରକ୍ଷସାମ୍,
ବସୂନାମ୍, ପାବକଃ, ଚ, ଅସ୍ମି, ମେରୁଃ, ଶିଖରିଣାମ୍, ଅହମ୍ ।।୨୩।।

ଏବଂ ମୁଁ—

| | | | |
|---|---|---|---|
| ରୁଦ୍ରାଣାମ୍ | = (ମୁଁ) ଏକାଦଶ ରୁଦ୍ରଙ୍କ ମଧ୍ୟରେ | ଅହମ୍ | = ମୁଁ |
| ଶଙ୍କରଃ | = ଶଙ୍କର | ବସୂନାମ୍ | = ଅଷ୍ଟବସୁଙ୍କ ମଧ୍ୟରେ |
| ଅସ୍ମି | = ଅଟେ | ପାବକଃ | = ଅଗ୍ନି |
| ଚ | = ଓ | ଅସ୍ମି | = ଅଟେ |
| | | ଚ | = ଓ |
| ଯକ୍ଷରକ୍ଷସାମ୍ | = ଯକ୍ଷ ଓ ରାକ୍ଷସମାନଙ୍କ ମଧ୍ୟରେ | ଶିଖରିଣାମ୍ | = ପର୍ବତମାନଙ୍କ ମଧ୍ୟରେ |
| ବିତ୍ତେଶଃ | = ଧନର ସ୍ୱାମୀ କୁବେର ଅଟେ । | ମେରୁଃ | = ସୁମେରୁ ପର୍ବତ |
| | | (ଅସ୍ମି) | = ଅଟେ । |

ବୃହସ୍ପତି ଆଦି ବିଭୂତିମାନଙ୍କର କଥନ ।

**ପୁରୋଧସାଂ ଚ ମୁଖ୍ୟଂ ମାଂ ବିଦ୍ଧି ପାର୍ଥ ବୃହସ୍ପତିମ୍ ।**
**ସେନାନୀନାମହଂ ସ୍କନ୍ଦଃ ସରସାମସ୍ମି ସାଗରଃ ॥ ୨୪ ॥**

ପୁରୋଧସାମ୍, ଚ, ମୁଖ୍ୟମ୍, ମାମ୍, ବିଦ୍ଧି, ପାର୍ଥ, ବୃହସ୍ପତିମ୍,
ସେନାନୀନାମ୍, ଅହମ୍, ସ୍କନ୍ଦଃ, ସରସାମ୍, ଅସ୍ମି, ସାଗରଃ ।।୨୪।।

ଏବଂ—

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ବୃହସ୍ପତିମ୍ | = ବୃହସ୍ପତି |
| ମାମ୍ | = ମୋତେ | ବିଦ୍ଧି | = (ବୋଲି) ଜାଣ । |
| ପୁରୋଧସାମ୍ | = ପୁରୋହିତମାନଙ୍କର | | |
| ମୁଖ୍ୟମ୍ | = ମୁଖ୍ୟ | ଅହମ୍ | = ମୁଁ |

| | | | |
|---|---|---|---|
| ସେନାନୀନାମ୍ | = ସେନାପତିମାନଙ୍କ ମଧ୍ୟରେ | ସରସାମ୍ | = ଜଳାଶୟମାନଙ୍କ ମଧ୍ୟରେ |
| ସ୍କନ୍ଦଃ | = କାର୍ତ୍ତିକେୟ | ସାଗରଃ | = ସମୁଦ୍ର |
| ଚ | = ଏବଂ | ଅସ୍ମି | = ଅଟେ । |

ଭୃଗୁ ଆଦି ବିଭୂତି ମାନଙ୍କର କଥନ ।

**ମହର୍ଷୀଣାଂ ଭୃଗୁରହଂ ଗିରାମସ୍ମ୍ୟେକମକ୍ଷରମ୍ ।**
**ଯଜ୍ଞାନାଂ ଜପଯଜ୍ଞୋଽସ୍ମି ସ୍ଥାବରାଣାଂ ହିମାଳୟଃ ॥ ୨୫ ॥**

ମହର୍ଷୀଣାମ୍, ଭୃଗୁଃ, ଅହମ୍, ଗିରାମ୍, ଅସ୍ମି, ଏକମ୍, ଅକ୍ଷରମ୍,
ଯଜ୍ଞାନାମ୍, ଜପଯଜ୍ଞଃ, ଅସ୍ମି, ସ୍ଥାବରାଣାମ୍, ହିମାଳୟଃ ।।୨୫।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଅହମ୍ | = ମୁଁ | ଯଜ୍ଞାନାମ୍ | = ସକଳପ୍ରକାର ଯଜ୍ଞମାନଙ୍କ ମଧ୍ୟରେ |
| ମହର୍ଷୀଣାମ୍ | = ମହର୍ଷିମାନଙ୍କ ମଧ୍ୟରେ | | |
| ଭୃଗୁଃ | = ଭୃଗୁ (ଓ) | ଜପଯଜ୍ଞଃ | = ଜପଯଜ୍ଞ (ଓ) |
| ଗିରାମ୍ | = ଶବ୍ଦମାନଙ୍କ ମଧ୍ୟରେ | ସ୍ଥାବରାଣାମ୍ | = ସ୍ଥାବରମାନଙ୍କ ମଧ୍ୟରେ |
| ଏକମ୍ | = ଏକ | | |
| ଅକ୍ଷରମ୍ | = ଅକ୍ଷର ଅର୍ଥାତ୍ ଓଁକାର | ହିମାଳୟଃ | = ହିମାଳୟ ପର୍ବତ |
| ଅସ୍ମି | = ଅଟେ । | ଅସ୍ମି | = ଅଟେ । |

ଅଶ୍ୱତ୍ଥ ଆଦି ବିଭୂତିମାନଙ୍କର କଥନ ।

**ଅଶ୍ୱତ୍ଥଃ ସର୍ବବୃକ୍ଷାଣାଂ ଦେବର୍ଷୀଣାଂ ଚ ନାରଦଃ ।**
**ଗନ୍ଧର୍ବାଣାଂ ଚିତ୍ରରଥଃ ସିଦ୍ଧାନାଂ କପିଲୋ ମୁନିଃ ॥ ୨୬ ॥**

ଅଶ୍ୱତ୍ଥଃ, ସର୍ବବୃକ୍ଷାଣାମ୍, ଦେବର୍ଷୀଣାମ୍, ଚ, ନାରଦଃ,
ଗନ୍ଧର୍ବାଣାମ୍, ଚିତ୍ରରଥଃ, ସିଦ୍ଧାନାମ୍, କପିଲଃ, ମୁନିଃ ।।୨୬।।

ଏବଂ ମୁଁ—

| | | | |
|---|---|---|---|
| ସର୍ବବୃକ୍ଷାଣାମ୍ | = (ମୁଁ) ସମସ୍ତ ବୃକ୍ଷଙ୍କ ମଧ୍ୟରେ | ଚିତ୍ରରଥଃ | = ଚିତ୍ରରଥ |
| ଅଶ୍ୱତ୍ଥଃ | = ଅଶ୍ୱତ୍ଥ ବୃକ୍ଷ, | ଚ | = ଓ |
| ଦେବର୍ଷୀଣାମ୍ | = ଦେବର୍ଷି ମାନଙ୍କ ମଧ୍ୟରେ | ସିଦ୍ଧାନାମ୍ | = ସିଦ୍ଧମାନଙ୍କ ମଧ୍ୟରେ |
| ନାରଦଃ | = ନାରଦ ମୁନି, | କପିଳଃ | = କପିଳ |
| ଗନ୍ଧର୍ବାଣାମ୍ | = ଗନ୍ଧର୍ବମାନଙ୍କ ମଧ୍ୟରେ | ମୁନିଃ | = ମୁନି |
| | | (ଅସ୍ମି) | = ଅଟେ । |

ଉଚ୍ଚୈଃଶ୍ରବା ଆଦି ବିଭୂତିମାନଙ୍କର କଥନ

ଉଚ୍ଚୈଃଶ୍ରବସମଶ୍ୱାନାଂ ବିଦ୍ଧି ମାମମୃତୋଦ୍ଭବମ୍ ।
ଐରାବତଂ ଗଜେନ୍ଦ୍ରାଣାଂ ନରାଣାଂ ଚ ନରାଧିପମ୍ ॥ ୨୭ ॥

ଉଚ୍ଚୈଃଶ୍ରବସମ୍, ଅଶ୍ୱାନାମ୍, ବିଦ୍ଧି, ମାମ୍, ଅମୃତୋଦ୍ଭବମ୍,
ଐରାବତମ୍, ଗଜେନ୍ଦ୍ରାଣାମ୍, ନରାଣାମ୍, ଚ, ନରାଧିପମ୍ ।।୨୭।।

ଏବଂ ହେ ଅର୍ଜୁନ ! ତୁମେ—

| | | | |
|---|---|---|---|
| ମାମ୍ | = ମୋତେ | ଗଜେନ୍ଦ୍ରାଣାମ୍ | = ଶ୍ରେଷ୍ଠ ହସ୍ତୀମାନଙ୍କ ମଧ୍ୟରେ |
| ଅଶ୍ୱାନାମ୍ | = ଅଶ୍ୱମାନଙ୍କ ମଧ୍ୟରେ | ଐରାବତମ୍ | = ଐରାବତ |
| ଅମୃତୋଦ୍ଭବମ୍ | = ଅମୃତସହିତ ଉତ୍ପନ୍ନ ହୋଇଥିବା | ଚ | = ଓ |
| | | ନରାଣାମ୍ | = ମନୁଷ୍ୟମାନଙ୍କ ମଧ୍ୟରେ |
| ଉଚ୍ଚୈଃଶ୍ରବସମ୍ | = ଉଚ୍ଚୈଃଶ୍ରବା ନାମକ ଘୋଡ଼ା, | ନରାଧିପମ୍ | = ରାଜା |
| | | ବିଦ୍ଧି | = (ବୋଲି) ଜାଣ । |

ବଜ୍ରାଦି ବିଭୂତିମାନଙ୍କର କଥନ ।

ଆୟୁଧାନାମହଂ ବଜ୍ରଂ ଧେନୂନାମସ୍ମି କାମଧୁକ୍ ।
ପ୍ରଜନଶ୍ଚାସ୍ମି କନ୍ଦର୍ପଃ ସର୍ପାଣାମସ୍ମି ବାସୁକିଃ ॥ ୨୮ ॥

ଆୟୁଧାନାମ୍, ଅହମ୍, ବଜ୍ରମ୍, ଧେନୂନାମ୍, ଅସ୍ମି, କାମଧୁକ୍,
ପ୍ରଜନଃ, ଚ, ଅସ୍ମି, କନ୍ଦର୍ପଃ, ସର୍ପାଣାମ୍, ଅସ୍ମି, ବାସୁକିଃ ।।୨୮ ।।

**ଏହି ପ୍ରକାରେ ହେ ଅର୍ଜୁନ !—**

| | |
|---|---|
| ଅହମ୍ | = ମୁଁ |
| ଆୟୁଧାନାମ୍ | = ଶସ୍ତ୍ରମାନଙ୍କ ମଧ୍ୟରେ |
| ବଜ୍ରମ୍ | = ବଜ୍ର (ଏବଂ) |
| ଧେନୂନାମ୍ | = ଧେନୁ (ଗାଈ)ମାନଙ୍କ ମଧ୍ୟରେ |
| କାମଧୁକ୍ | = କାମଧେନୁ |
| ଅସ୍ମି | = ଅଟେ । |
| ପ୍ରଜନଃ | = ଶାସ୍ତ୍ରୋକ୍ତ ବିଧିରେ ସନ୍ତାନ-ଉତ୍ପତ୍ତିର ହେତୁ |
| କନ୍ଦର୍ପଃ | = କାମଦେବ |
| ଅସ୍ମି | = ଅଟେ |
| ଚ | = ଓ |
| ସର୍ପାଣାମ୍ | = ସର୍ପମାନଙ୍କ ମଧ୍ୟରେ |
| ବାସୁକିଃ | = ସର୍ପରାଜ ବାସୁକି |
| ଅସ୍ମି | = ଅଟେ । |

ଅନନ୍ତ ଆଦି ବିଭୂତିମାନଙ୍କର କଥନ ।

ଅନନ୍ତଶ୍ଚାସ୍ମି ନାଗାନାଂ ବରୁଣୋ ଯାଦସାମହମ୍ ।
ପିତୃଣାମର୍ଯ୍ୟମା ଚାସ୍ମି ଯମଃ ସଂଯମତାମହମ୍ ॥ ୨୯ ॥

ଅନନ୍ତଃ, ଚ, ଅସ୍ମି, ନାଗାନାମ୍, ବରୁଣଃ, ଯାଦସାମ୍, ଅହମ୍,
ପିତୃଣାମ୍, ଅର୍ଯ୍ୟମା, ଚ, ଅସ୍ମି, ଯମଃ, ସଂଯମତାମ୍, ଅହମ୍।।୨୯ ।।

**ତଥା—**

| | | | |
|---|---|---|---|
| ଅହମ୍ | = ମୁଁ | ଚ | = ଓ |
| ନାଗାନାମ୍ | = ନାଗମାନଙ୍କ ମଧ୍ୟରେ [1] | ପିତୃଣାମ୍ | = ପିତୃମାନଙ୍କ ମଧ୍ୟରେ |
| ଅନନ୍ତଃ | = ଶେଷନାଗ | ଅର୍ଯ୍ୟମା | = ଅର୍ଯ୍ୟମା ନାମକ ପିତୃ (ତଥା) |
| ଚ | = ଓ | ସଂଯମତାମ୍ | = ଶାସକମାନଙ୍କ ମଧ୍ୟରେ |
| ଯାଦସାମ୍ | = ଜଳଚରମାନଙ୍କର (ଅଧିପତି) | ଯମଃ | = ଯମରାଜ |
| ବରୁଣଃ | = ବରୁଣ ଦେବତା | ଅହମ୍ | = ମୁଁ (ହିଁ) |
| ଅସ୍ମି | = ଅଟେ | ଅସ୍ମି | = ଅଟେ । |

ପ୍ରହ୍ଲାଦାଦି ବିଭୂତିମାନଙ୍କର କଥନ ।

**ପ୍ରହ୍ଲାଦଶ୍ଚାସ୍ମି ଦୈତ୍ୟାନାଂ କାଳଃ କଳୟତାମହମ୍ ।**
**ମୃଗାଣାଂ ଚ ମୃଗେନ୍ଦ୍ରୋଽହଂ ବୈନତେୟଶ୍ଚ ପକ୍ଷିଣାମ୍ ॥ ୩୦ ॥**

ପ୍ରହ୍ଲାଦଃ, ଚ, ଅସ୍ମି, ଦୈତ୍ୟାନାମ୍, କାଳଃ, କଳୟତାମ୍, ଅହମ୍, ମୃଗାଣାମ୍, ଚ, ମୃଗେନ୍ଦ୍ରଃ, ଅହମ୍, ବୈନତେୟଃ, ଚ, ପକ୍ଷିଣାମ୍ ।।୩୦ ।।

**ଏବଂ ଆହୁରି ମଧ୍ୟ ହେ ଅର୍ଜୁନ !—**

| | | | |
|---|---|---|---|
| ଅହମ୍ | = ମୁଁ | କାଳଃ | = ସମୟ [2] |
| ଦୈତ୍ୟାନାମ୍ | = ଦୈତ୍ୟମାନଙ୍କ ମଧ୍ୟରେ | ଅସ୍ମି | = ଅଟେ |
| ପ୍ରହ୍ଲାଦଃ | = ପ୍ରହ୍ଲାଦ | ଚ | = ତଥା |
| ଚ | = ଓ | ମୃଗାଣାମ୍ | = ପଶୁମାନଙ୍କ ମଧ୍ୟରେ |
| କଳୟତାମ୍ | = ଗଣନାକାରୀମାନଙ୍କ ମଧ୍ୟରେ | ମୃଗେନ୍ଦ୍ରଃ | = ମୃଗରାଜ ସିଂହ |

୧-ନାଗ ଏବଂ ସର୍ପ—ଏହା ସର୍ପମାନଙ୍କର ହିଁ ଦୁଇ ପ୍ରକାର ଜାତି ଅଟେ ।
୨-କ୍ଷଣ-ଘଡ଼ି-ଦିନ-ପକ୍ଷ-ମାସ ଆଦିରେ ଯେଉଁ ସମୟ ଅଛି, ତାହା ମୁଁ ଅଟେ ।

| | | | |
|---|---|---|---|
| ଚ | = ଓ | ଅହମ୍ | = ମୁଁ |
| ପକ୍ଷିଣାମ୍ | = ପକ୍ଷୀମାନଙ୍କ ମଧ୍ୟରେ | ବୈନତେୟଃ | = ଗରୁଡ଼ |
| | | (ଅସ୍ମି) | = ଅଟେ । |

ପବନ ଆଦି ବିଭୂତିମାନଙ୍କର କଥନ ।

ପବନଃ ପବତାମସ୍ମି ରାମଃ ଶସ୍ତ୍ରଭୃତାମହମ୍ ।
ଝଷାଣାଂ ମକରଶ୍ଚାସ୍ମି ସ୍ରୋତସାମସ୍ମି ଜାହ୍ନବୀ ॥ ୩୧ ॥

ପବନଃ, ପବତାମ୍, ଅସ୍ମି, ରାମଃ, ଶସ୍ତ୍ରଭୃତାମ୍, ଅହମ୍,
ଝଷାଣାମ୍, ମକରଃ, ଚ, ଅସ୍ମି, ସ୍ରୋତସାମ୍, ଅସ୍ମି, ଜାହ୍ନବୀ ।।୩୧ ।।

**ଆହୁରି ବି—**

| | | | |
|---|---|---|---|
| ଅହମ୍ | = ମୁଁ | ଝଷାଣାମ୍ | = ମତ୍ସ୍ୟମାନଙ୍କ ମଧ୍ୟରେ |
| ପବତାମ୍ | = ପବିତ୍ରକାରୀମାନଙ୍କ ମଧ୍ୟରେ | ମକରଃ | = ମଗର |
| ପବନଃ | = ବାୟୁ (ଓ) | ଅସ୍ମି | = ଅଟେ |
| ଶସ୍ତ୍ରଭୃତାମ୍ | = ଶସ୍ତ୍ରଧାରୀମାନଙ୍କ ମଧ୍ୟରେ | ଚ | = ଓ |
| | | ସ୍ରୋତସାମ୍ | = ନଦୀ ମାନଙ୍କ ମଧ୍ୟରେ |
| ରାମଃ | = ଶ୍ରୀରାମ | ଜାହ୍ନବୀ | = ଶ୍ରୀଭାଗୀରଥୀ ଗଙ୍ଗା |
| ଅସ୍ମି | = ଅଟେ (ତଥା) | ଅସ୍ମି | = ଅଟେ । |

ଭଗବାନଙ୍କ ଯୋଗଶକ୍ତି ଏବଂ ଅଧ୍ୟାତ୍ମବିଦ୍ୟା ଆଦି ବିଭୂତିମାନଙ୍କର କଥନ ।

ସର୍ଗାଣାମାଦିରନ୍ତଶ୍ଚ ମଧ୍ୟଂ ଚୈବାହମର୍ଜୁନ ।
ଅଧ୍ୟାତ୍ମବିଦ୍ୟା ବିଦ୍ୟାନାଂ ବାଦଃ ପ୍ରବଦତାମହମ୍ ॥ ୩୨ ॥

ସର୍ଗାଣାମ୍, ଆଦିଃ, ଅନ୍ତଃ, ଚ, ମଧ୍ୟମ୍, ଚ, ଏବ, ଅହମ୍, ଅର୍ଜୁନ,
ଅଧ୍ୟାତ୍ମବିଦ୍ୟା, ବିଦ୍ୟାନାମ୍, ବାଦଃ, ପ୍ରବଦତାମ୍, ଅହମ୍ ।।୩୨ ।।

**ଆହୁରି ବି—**

| | | | |
|---|---|---|---|
| ଅର୍ଜୁନ | = ହେ ଅର୍ଜୁନ ! | ବିଦ୍ୟାନାମ୍ | = ବିଦ୍ୟାମାନଙ୍କ ମଧ୍ୟରେ |
| ସର୍ଗାଣାମ୍ | = ସୃଷ୍ଟିମାନଙ୍କର | ଅଧ୍ୟାତ୍ମବିଦ୍ୟା | = ଅଧ୍ୟାତ୍ମବିଦ୍ୟା ଅର୍ଥାତ୍ ବ୍ରହ୍ମବିଦ୍ୟା (ଓ) |
| ଆଦିଃ | = ଆଦି | ପ୍ରବଦତାମ୍ | = (ଶାସ୍ତ୍ରାର୍ଥ ପାଇଁ) ପରସ୍ପର ବାଦରତ ଲୋକଙ୍କର |
| ଚ | = ଓ | ବାଦଃ | = ତତ୍ତ୍ୱ ନିର୍ଣ୍ଣାୟକ ବାଦ |
| ଅନ୍ତଃ | = ଅନ୍ତ | (ଅସ୍ମି) | = (ମଧ୍ୟ ମୁଁ) ଅଟେ । |
| ଚ | = ତଥା | | |
| ମଧ୍ୟମ୍ | = ମଧ୍ୟ (ବି) | | |
| ଅହମ୍ | = ମୁଁ | | |
| ଏବ | = ହିଁ (ଅଟେ) । | | |
| ଅହମ୍ | = ମୁଁ | | |

ଅକାରାଦି ବିଭୂତିମାନଙ୍କର କଥନ ।

**ଅକ୍ଷରାଣାମକାରୋଽସ୍ମି ଦ୍ୱନ୍ଦ୍ୱଃ ସାମାସିକସ୍ୟ ଚ ।**
**ଅହମେବାକ୍ଷୟଃ କାଲୋ ଧାତାହଂ ବିଶ୍ୱତୋମୁଖଃ ॥ ୩୩ ॥**

ଅକ୍ଷରାଣାମ୍, ଅକାରଃ, ଅସ୍ମି, ଦ୍ୱନ୍ଦ୍ୱଃ, ସାମାସିକସ୍ୟ, ଚ,
ଅହମ୍, ଏବ, ଅକ୍ଷୟଃ, କାଲଃ, ଧାତା, ଅହମ୍, ବିଶ୍ୱତୋମୁଖଃ ।।୩୩ ।।

**ତଥା—**

| | | | |
|---|---|---|---|
| ଅହମ୍ | = ମୁଁ | ଚ | = ଓ |
| ଅକ୍ଷରାଣାମ୍ | = ଅକ୍ଷରମାନଙ୍କ ମଧ୍ୟରେ | ସାମାସିକସ୍ୟ | = ସମାସମାନଙ୍କ ମଧ୍ୟରେ |
| ଅକାରଃ | = 'ଅ'କାର ଅଟେ | ଦ୍ୱନ୍ଦ୍ୱଃ | = ଦ୍ୱନ୍ଦ୍ୱ ନାମକ ସମାସ |

| | | | |
|---|---|---|---|
| ଅସ୍ମି | = ଅଟେ । | ଧାତା | = (ସମସ୍ତଙ୍କର) ଧାରଣ-ପୋଷଣକାରୀ (ମଧ୍ୟ) |
| ଅକ୍ଷୟଃ | = ଅକ୍ଷୟ | | |
| କାଳଃ | = କାଳ ଅର୍ଥାତ୍ କାଳର ମଧ୍ୟ ମହାକାଳ ଅଟେ (ତଥା) | | |
| ବିଶ୍ୱତୋମୁଖଃ | = ସକଳ ଦିଗରେ ମୁଖ ଥିବା ବିରାଟ ସ୍ୱରୂପ (ଓ) | ଅହମ୍ | = ମୁଁ |
| | | ଏବ | = ହିଁ |
| | | (ଅସ୍ମି) | = ଅଟେ । |

ମୃତ୍ୟୁ ଆଦି ବିଭୂତିମାନଙ୍କର କଥନ ।

**ମୃତ୍ୟୁଃ ସର୍ବହରଶ୍ଚାହମୁଦ୍‌ଭବଶ୍ଚ ଭବିଷ୍ୟତାମ୍ ।**
**କୀର୍ତ୍ତିଃ ଶ୍ରୀର୍ବାକ୍ ଚ ନାରୀଣାଂ ସ୍ମୃତିର୍ମେଧା ଧୃତିଃ କ୍ଷମା ॥ ୩୪ ॥**

**ମୃତ୍ୟୁଃ, ସର୍ବହରଃ, ଚ, ଅହମ୍, ଉଦ୍‌ଭବଃ, ଚ, ଭବିଷ୍ୟତାମ୍, କୀର୍ତ୍ତିଃ, ଶ୍ରୀଃ, ବାକ୍, ଚ, ନାରୀଣାମ୍, ସ୍ମୃତିଃ, ମେଧା, ଧୃତିଃ, କ୍ଷମା ।।୩୪ ।।**

**ହେ ଅର୍ଜୁନ !—**

| | | | |
|---|---|---|---|
| ଅହମ୍ | = ମୁଁ | | ମଧ୍ୟରେ |
| ସର୍ବହରଃ | = ସମସ୍ତଙ୍କ ବିନାଶକ | କୀର୍ତ୍ତିଃ | = କୀର୍ତ୍ତି,* |
| ମୃତ୍ୟୁଃ | = ମୃତ୍ୟୁ | ଶ୍ରୀଃ | = ଶ୍ରୀ, |
| ଚ | = ଓ | ବାକ୍ | = ବାକ୍, |
| ଭବିଷ୍ୟତାମ୍ | = ଉତ୍ପନ୍ନ ହେବାକୁ ଯାଉଥିବା ସମସ୍ତଙ୍କର | ସ୍ମୃତିଃ | = ସ୍ମୃତି, |
| | | ମେଧା | = ମେଧା, |
| ଉଦ୍‌ଭବଃ | = ଉତ୍ପତ୍ତିର କାରଣ ଅଟେ | ଧୃତିଃ | = ଧୃତି |
| | | ଚ | = ଓ |
| ଚ | = ତଥା | କ୍ଷମା | = କ୍ଷମା |
| ନାରୀଣାମ୍ | = ନାରୀମାନଙ୍କ | (ଅସ୍ମି) | = ଅଟେ । |

* କୀର୍ତ୍ତି ଆଦି ଯେଉଁ ସାତ ଦେବତାମାନଙ୍କର ସ୍ତ୍ରୀମାନେ ଏବଂ ସ୍ତ୍ରୀବାଚକ ନାମଧାରୀ ଗୁଣ ମଧ୍ୟ ପ୍ରସିଦ୍ଧ ଅଟେ । ଏଥିପାଇଁ ଉଭୟ ପ୍ରକାରେ ମଧ୍ୟ ଭଗବାନଙ୍କ ବିଭୂତି ଅଟେ ।

ବୃହତ୍‌ସାମ ଆଦି ବିଭୂତିମାନଙ୍କର କଥନ ।

**ବୃହତ୍ସାମ ତଥା ସାମ୍ନାଂ ଗାୟତ୍ରୀ ଛନ୍ଦସାମହମ୍ ।**
**ମାସାନାଂ ମାର୍ଗଶୀର୍ଷୋଽହମୃତୂନାଂ କୁସୁମାକରଃ ॥ ୩୫ ॥**

ବୃହତ୍‌ସାମ, ତଥା, ସାମ୍ନାମ୍, ଗାୟତ୍ରୀ, ଛନ୍ଦସାମ୍, ଅହମ୍,
ମାସାନାମ୍, ମାର୍ଗଶୀର୍ଷଃ, ଅହମ୍, ଋତୂନାମ୍, କୁସୁମାକରଃ । ।୩୫ । ।

| | | | |
|---|---|---|---|
| ତଥା | = ତଥା | ମାସାନାମ୍ | = ମାସମାନଙ୍କ ମଧ୍ୟରେ |
| ସାମ୍ନାମ୍ | = ଗାୟନଯୋଗ୍ୟ ଶ୍ରୁତିମାନଙ୍କ ମଧ୍ୟରେ | ମାର୍ଗଶୀର୍ଷଃ | = ମାର୍ଗଶିର (ଓ) |
| ଅହମ୍ | = ମୁଁ | ଋତୂନାମ୍ | = ଋତୁମାନଙ୍କ ମଧ୍ୟରେ |
| ବୃହତ୍‌ସାମ | = ବୃହତ୍‌ସାମ (ଓ) | | |
| ଛନ୍ଦସାମ୍ | = ଛନ୍ଦମାନଙ୍କ ମଧ୍ୟରେ | କୁସୁମାକରଃ | = ବସନ୍ତ |
| ଗାୟତ୍ରୀ | = ଗାୟତ୍ରୀ ଛନ୍ଦ (ତଥା) | ଅହମ୍ | = ମୁଁ |
| | | ଅସ୍ମି | = ଅଟେ । |

ଦ୍ୟୂତ ଆଦି ବିଭୂତିମାନଙ୍କର କଥନ ।

**ଦ୍ୟୂତଂ ଛଳୟତାମସ୍ମି ତେଜସ୍ତେଜସ୍ୱିନାମହମ୍ ।**
**ଜୟୋଽସ୍ମି ବ୍ୟବସାୟୋଽସ୍ମି ସତ୍ତ୍ୱଂ ସତ୍ତ୍ୱବତାମହମ୍ ॥ ୩୬ ॥**

ଦ୍ୟୂତମ୍, ଛଳୟତାମ୍, ଅସ୍ମି, ତେଜଃ, ତେଜସ୍ୱିନାମ୍, ଅହମ୍,
ଜୟଃ, ଅସ୍ମି, ବ୍ୟବସାୟଃ, ଅସ୍ମି, ସତ୍ତ୍ୱମ୍, ସତ୍ତ୍ୱବତାମ୍, ଅହମ୍ । ।୩୬ । ।

**ହେ ଅର୍ଜୁନ !—**

| | | | |
|---|---|---|---|
| ଅହମ୍ | = ମୁଁ | ତେଜସ୍ୱିନାମ୍ | = ପ୍ରଭାବଶାଳୀ ପୁରୁଷମାନଙ୍କର |
| ଛଳୟତାମ୍ | = ଛଳନାକାରୀମାନଙ୍କ ମଧ୍ୟରେ | ତେଜଃ | = ପ୍ରଭାବ |
| ଦ୍ୟୂତମ୍ | = ଦ୍ୟୂତ (ଜୁଆ) ଏବଂ | ଅସ୍ମି | = ଅଟେ । |

| | | | |
|---|---|---|---|
| ଅହମ୍ | = ମୁଁ | ବ୍ୟବସାୟଃ | = ନିଶ୍ଚୟ, ଏବଂ |
| (ଜେତୃଣାମ୍) | = ବିଜେତାମାନଙ୍କର | ସତ୍ତ୍ୱବତାମ୍ | = ସାତ୍ତ୍ୱିକ ପୁରୁଷମାନଙ୍କର |
| ଜୟଃ | = ବିଜୟ | ସତ୍ତ୍ୱମ୍ | = ସାତ୍ତ୍ୱିକ ଭାବ |
| ଅସ୍ମି | = ଅଟେ । | | |
| (ବ୍ୟବସାୟିନାମ୍) | = ନିଶ୍ଚୟ କରୁଥିବା ଲୋକଙ୍କର | ଅସ୍ମି | = (ମୁଁ ହିଁ) ଅଟେ । |

ବାସୁଦେବ ଆଦି ବିଭୂତିମାନଙ୍କର କଥନ ।

**ବୃଷ୍ଣୀନାଂ ବାସୁଦେବୋଽସ୍ମି ପାଣ୍ଡବାନାଂ ଧନଞ୍ଜୟଃ ।**
**ମୁନୀନାମପ୍ୟହଂ ବ୍ୟାସଃ କବୀନାମୁଶନା କବିଃ ॥ ୩୭ ॥**

ବୃଷ୍ଣୀନାମ୍, ବାସୁଦେବଃ, ଅସ୍ମି, ପାଣ୍ଡବାନାମ୍, ଧନଞ୍ଜୟଃ,
ମୁନୀନାମ୍, ଅପି, ଅହମ୍, ବ୍ୟାସଃ, କବୀନାମ୍, ଉଶନା, କବିଃ ।।୩୭ ।।

ଏବଂ—

| | | | |
|---|---|---|---|
| ବୃଷ୍ଣୀନାମ୍ | = ବୃଷ୍ଣିବଂଶୀମାନଙ୍କ ମଧ୍ୟରେ* | ମୁନୀନାମ୍ | = ମୁନିମାନଙ୍କ ମଧ୍ୟରେ |
| ବାସୁଦେବଃ | = ବାସୁଦେବ (ଅର୍ଥାତ୍ ମୁଁ ସ୍ୱୟଂ, ତୁମ ସଖା) | ବ୍ୟାସଃ | = ବେଦବ୍ୟାସ (ଓ) |
| | | କବୀନାମ୍ | = କବିମାନଙ୍କ ମଧ୍ୟରେ |
| ପାଣ୍ଡବାନାମ୍ | = ପାଣ୍ଡବମାନଙ୍କ ମଧ୍ୟରେ | ଉଶନା | = ଶୁକ୍ରାଚାର୍ଯ୍ୟ |
| | | କବିଃ | = କବି |
| ଧନଞ୍ଜୟଃ | = ଧନଞ୍ଜୟ ଅର୍ଥାତ୍ ତୁମେ, | ଅପି | = ମଧ୍ୟ |
| | | ଅହମ୍ | = ମୁଁ (ହିଁ) |
| | | ଅସ୍ମି | = ଅଟେ । |

* ଯାଦବମାନଙ୍କ ଅନ୍ତର୍ଗତ ହିଁ ଏକ ବୃଷ୍ଣିବଂଶ ମଧ୍ୟ ଥିଲା ।

ଦଣ୍ଡ ଆଦି ବିଭୂତିମାନଙ୍କର କଥନ ।

ଦଣ୍ଡୋ ଦମୟତାମସ୍ମି ନୀତିରସ୍ମି ଜିଗୀଷତାମ୍ ।
ମୌନଂ ଚୈବାସ୍ମି ଗୁହ୍ୟାନାଂ ଜ୍ଞାନଂ ଜ୍ଞାନବତାମହମ୍ ॥ ୩୮ ॥

ଦଣ୍ଡଃ, ଦମୟତାମ୍, ଅସ୍ମି, ନୀତିଃ, ଅସ୍ମି, ଜିଗୀଷତାମ୍,
ମୌନମ୍, ଚ, ଏବ, ଅସ୍ମି, ଗୁହ୍ୟାନାମ୍, ଜ୍ଞାନମ୍, ଜ୍ଞାନବତାମ୍, ଅହମ୍ ।।୩୮ ।।

ମୁଁ—

(ଅହମ୍) = ମୁଁ
ଦମୟତାମ୍ = ଦମନକାରୀ-ମାନଙ୍କର
ଦଣ୍ଡଃ = ଦଣ୍ଡ ଅର୍ଥାତ୍ ଦମନ କରିବା ଶକ୍ତି
ଅସ୍ମି = ଅଟେ,
ଜିଗୀଷତାମ୍ = ବିଜୟକାମୀ-ମାନଙ୍କର
ନୀତିଃ = ନୀତି
ଅସ୍ମି = ଅଟେ,
ଗୁହ୍ୟାନାମ୍ = ଗୋପନ ରଖିବା ଯୋଗ୍ୟ ଭାବମାନଙ୍କର (ରକ୍ଷକ)
ମୌନମ୍ = ମୌନ
ଅସ୍ମି = ଅଟେ
ଚ = ଓ
ଜ୍ଞାନବତାମ୍ = ଜ୍ଞାନୀମାନଙ୍କର
ଜ୍ଞାନମ୍ = ତତ୍ତ୍ୱଜ୍ଞାନ
ଅହମ୍ = ମୁଁ
ଏବ = ହିଁ
ଅସ୍ମି = ଅଟେ ।

ସର୍ବରୂପରେ ପ୍ରଭାବ ସହିତ ଭଗବାନଙ୍କ ସ୍ୱରୂପର କଥନ ।

ଯଚ୍ଚାପି ସର୍ବଭୂତାନାଂ ବୀଜଂ ତଦହମର୍ଜୁନ ।
ନ ତଦସ୍ତି ବିନା ଯତ୍ସ୍ୟାନ୍ମୟା ଭୂତଂ ଚରାଚରମ୍ ॥ ୩୯ ॥

ଯତ୍, ଚ, ଅପି, ସର୍ବଭୂତାନାମ୍, ବୀଜମ୍, ତତ୍, ଅହମ୍, ଅର୍ଜୁନ,
ନ, ତତ୍, ଅସ୍ତି, ବିନା, ଯତ୍, ସ୍ୟାତ୍, ମୟା, ଭୂତମ୍, ଚରାଚରମ୍ ।।୩୯ ।।

| | | | |
|---|---|---|---|
| ଚ | = ଏବଂ | ତତ୍ | = ସେହି |
| ଅର୍ଜୁନ | = ହେ ଅର୍ଜୁନ ! | ଚରାଚରମ୍ | = ଚର ଓ ଅଚର (ହୋଇ କୌଣସି ବି) |
| ଯତ୍ | = ଯାହା | ଭୂତମ୍ | = ପ୍ରାଣୀ |
| ସର୍ବଭୂତାନାମ୍ | = ସକଳ ଜୀବଙ୍କର | ନ, ଅସ୍ତି | = ନାହିଁ, |
| ବୀଜମ୍ | = ବୀଜ ବା ଉତ୍ପତ୍ତିର କାରଣ, | ଯତ୍ | = ଯାହା |
| ତତ୍ | = ତାହା | ମୟା | = ମୋ |
| ଅପି | = ମଧ୍ୟ | | |
| ଅହମ୍ | = ମୁଁ (ହିଁ ଅଟେ, କାରଣ) | ବିନା | = ବିନା |
| | | ସ୍ୟାତ୍ | = ହୋଇପାରେ । |

ଭଗବାନଙ୍କ ଦିବ୍ୟ ବିଭୂତିଗୁଡ଼ିକର ଅନନ୍ତତାର ବର୍ଣ୍ଣନା ।

**ନାନ୍ତୋଽସ୍ତି ମମ ଦିବ୍ୟାନାଂ ବିଭୂତୀନାଂ ପରନ୍ତପ ।**
**ଏଷ ତୂଦ୍ଦେଶତଃ ପ୍ରୋକ୍ତୋ ବିଭୂତେର୍ବିସ୍ତରୋ ମୟା ॥ ୪୦ ॥**

ନ, ଅନ୍ତଃ, ଅସ୍ତି, ମମ, ଦିବ୍ୟାନାମ୍, ବିଭୂତୀନାମ୍, ପରନ୍ତପ,
ଏଷଃ, ତୁ, ଉଦ୍ଦେଶତଃ, ପ୍ରୋକ୍ତଃ, ବିଭୂତେଃ, ବିସ୍ତରଃ, ମୟା ।।୪୦ ।।

| | | | |
|---|---|---|---|
| ପରନ୍ତପ | = ହେ ପରନ୍ତପ ! | ବିଭୂତେଃ | = ବିଭୂତିମାନଙ୍କର |
| ମମ | = ମୋର | ଏଷଃ | = ଏହି |
| ଦିବ୍ୟାନାମ୍ | = ଦିବ୍ୟ | ବିସ୍ତରଃ, | = ବିସ୍ତାର |
| ବିଭୂତୀନାମ୍ | = ବିଭୂତିମାନଙ୍କର | ତୁ | = ତ (ତୁମ ପାଇଁ) |
| ଅନ୍ତଃ | = ଅନ୍ତ | | |
| ନ, ଅସ୍ତି | = ନାହିଁ, | ଉଦ୍ଦେଶତଃ | = ଅତି ସଂକ୍ଷେପରେ |
| ମୟା | = ମୋ'ଦ୍ୱାରା (ନିଜର) | ପ୍ରୋକ୍ତଃ | = କୁହାଗଲା । |

ଭଗବାନଙ୍କ ତେଜର ଅଂଶରୁ ସମ୍ପୂର୍ଣ୍ଣ ବସ୍ତୁମାନଙ୍କର ଉତ୍ପତ୍ତିର କଥନ ।

**ଯଦ୍ ଯଦ୍ ବିଭୂତିମତ୍ସତ୍ତ୍ୱଂ ଶ୍ରୀମଦୂର୍ଜିତମେବ ବା ।**
**ତତ୍ତଦେବାବଗଚ୍ଛ ତ୍ୱଂ ମମ ତେଜୋଂଽଶସମ୍ଭବମ୍ ॥ ୪୧ ॥**

ଯତ୍, ଯତ୍, ବିଭୂତିମତ୍, ସତ୍ତ୍ୱମ୍, ଶ୍ରୀମତ୍, ଉର୍ଜିତମ୍, ଏବ, ବା,
ତତ୍, ତତ୍, ଏବ, ଅବଗଚ୍ଛ, ତ୍ୱମ୍, ମମ, ତେଜୋଂଽଶସଂଭବମ୍ ।।୪୧।।

**ଏଥିପାଇଁ ହେ ଅର୍ଜୁନ!—**

| | | | |
|---|---|---|---|
| ଯତ୍, ଯତ୍ | = ଯାହା ଯାହା | ସତ୍ତ୍ୱମ୍ | = ବସ୍ତୁ ଅଛି, |
| ଏବ | = ବି | ତତ୍, ତତ୍ | = ତାହା ତାହା |
| ବିଭୂତିମତ୍ | = ବିଭୂତିଯୁକ୍ତ ଅର୍ଥାତ୍ ଐଶ୍ୱର୍ଯ୍ୟଯୁକ୍ତ, | ତ୍ୱମ୍ | = ତୁମେ |
| | | ମମ | = ମୋର |
| ଶ୍ରୀମତ୍ | = କାନ୍ତିଯୁକ୍ତ | ତେଜୋଂଽଶ-ସମ୍ଭବମ୍, ଏବ | = ତେଜର ଆଂଶିକ ଅଭିବ୍ୟକ୍ତି ବୋଲି (ହିଁ) |
| ବା | = ଓ | | |
| ଉର୍ଜିତମ୍ | = ଶକ୍ତିଯୁକ୍ତ | ଅବଗଚ୍ଛ | = ଜାଣ । |

ଭଗବାନଙ୍କ ଯୋଗଶକ୍ତିର ଏକ ଅଂଶରେ ସମ୍ପୂର୍ଣ୍ଣ ଜଗତର ସ୍ଥିତିର କଥନ ।

**ଅଥବା ବହୁନୈତେନ କିଂ ଜ୍ଞାତେନ ତବାର୍ଜୁନ ।**
**ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍ ॥ ୪୨ ॥**

ଅଥବା, ବହୁନା, ଏତେନ, କିମ୍, ଜ୍ଞାତେନ, ତବ, ଅର୍ଜୁନ,
ବିଷ୍ଟଭ୍ୟ, ଅହମ୍, ଇଦମ୍, କୃତ୍ସ୍ନମ୍, ଏକାଂଶେନ, ସ୍ଥିତଃ, ଜଗତ୍ ।।୪୨।।

| | | | |
|---|---|---|---|
| ଅଥବା | = ଅଥବା | ତବ | = ତୁମର |
| ଅର୍ଜୁନ | = ହେ ଅର୍ଜୁନ! | କିମ୍ | = କେଉଁ (ପ୍ରୟୋଜନ) । |
| ଏତେନ | = ଏତେ | ଅହମ୍ | = ମୁଁ |
| ବହୁନା | = ବହୁତ | ଇଦମ୍ | = ଏହି |
| ଜ୍ଞାତେନ | = ଜାଣିବାରେ | କୃତ୍ସ୍ନମ୍ | = ସମଗ୍ର |

| | | | |
|---|---|---|---|
| ଜଗତ୍ | = ଜଗତକୁ | | ଅଂଶ ଦ୍ୱାରା |
| ଏକାଂଶେନ | = ନିଜ ଯୋଗଶକ୍ତିର ଗୋଟିଏ ମାତ୍ର | ବିଷ୍ଟଭ୍ୟ | = ଧାରଣ କରି |
| | | ସ୍ଥିତଃ | = ରହିଛି । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ବିଭୂତିଯୋଗୋ ନାମ ଦଶମୋଽଧ୍ୟାୟଃ ॥ ୧୦ ॥*

ဓဓဓ

**ଏହି ପ୍ରକାରେ 'ଓଁ, ତତ୍, ସତ୍—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ବିଭୂତିଯୋଗୋ' ନାମକ ଦଶମ ଅଧ୍ୟାୟ ପୂର୍ଣ୍ଣ ହେଲା ।। ୧୦ ।।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

ଓଁ ଶ୍ରୀପରମାତ୍ମନେ ନମଃ

# ଏକାଦଶ ଅଧ୍ୟାୟ

## ବିଶ୍ୱରୂପଦର୍ଶନଯୋଗ

**ପ୍ରଧାନ ବିଷୟ**

| | |
|---|---|
| ୧ ରୁ ୪ | ବିଶ୍ୱରୂପଦର୍ଶନ କରାଇବା ଲାଗି ଅର୍ଜ୍ଜୁନଙ୍କ ପ୍ରାର୍ଥନା, |
| ୫ ରୁ ୮ | ଭଗବାନଙ୍କ ଦ୍ୱାରା ନିଜ ବିଶ୍ୱରୂପର ବର୍ଣ୍ଣନ, |
| ୯ ରୁ ୧୪ | ଧୃତରାଷ୍ଟ୍ରଙ୍କୁ ସଂଜୟ ଦ୍ୱାରା ବିଶ୍ୱରୂପ ବର୍ଣ୍ଣନ, |
| ୧୫ ରୁ ୩୧ | ଅର୍ଜ୍ଜୁନଙ୍କ ଦ୍ୱାରା ଭଗବାନଙ୍କ ବିଶ୍ୱରୂପ ଦର୍ଶନ ଏବଂ ସ୍ତୁତି, |
| ୩୨ ରୁ ୩୪ | ଭଗବାନଙ୍କ ଦ୍ୱାରା ନିଜର ପ୍ରଭାବର ବର୍ଣ୍ଣନା ଏବଂ ଯୁଦ୍ଧ କରିବା ପାଇଁ ଉତ୍ସାହିତ କରିବା, |
| ୩୫ ରୁ ୪୬ | ଭୟଭୀତ ହୋଇଥିବା ଅର୍ଜ୍ଜୁନଙ୍କ ଦ୍ୱାରା ଭଗବାନଙ୍କ ସ୍ତୁତି ଏବଂ ଚତୁର୍ଭୁଜ ରୂପରେ ଦର୍ଶନ ଦେବାପାଇଁ ପ୍ରାର୍ଥନା, |
| ୪୭ ରୁ ୫୦ | ଭଗବାନଙ୍କ ଦ୍ୱାରା ନିଜ ବିଶ୍ୱରୂପ ଦର୍ଶନର ମହିମା କଥନ, ତଥା ଚତୁର୍ଭୁଜ ଏବଂ ସୌମ୍ୟ ରୂପରେ ଦେଖାଯିବା, |
| ୫୧ ରୁ ୫୫ | ଅନନ୍ୟ ଭକ୍ତି ବିନା ଚତୁର୍ଭୁଜ ରୂପ ଦର୍ଶନର ଦୁର୍ଲଭତା ତଥା ଫଳ ସହିତ ଅନନ୍ୟ ଭକ୍ତିର କଥନ । |

*ଅର୍ଜ୍ଜୁନ ଉବାଚ*

ଭଗବାନ ଏବଂ ତାଙ୍କର ଉପଦେଶର ପ୍ରଶଂସା କରି ବିଶ୍ୱରୂପ ଦର୍ଶନ କରାଇବା ପାଇଁ ଅର୍ଜ୍ଜୁନଙ୍କ ପ୍ରାର୍ଥନା ।

ମଦନୁଗ୍ରହାୟ ପରମଂ ଗୁହ୍ୟମଧ୍ୟାତ୍ମସଂଜ୍ଞିତମ୍ ।
ଯତ୍ତ୍ୱୟୋକ୍ତଂ ବଚସ୍ତେନ ମୋହୋଽୟଂ ବିଗତୋ ମମ ॥ ୧ ॥

ମଦନୁଗ୍ରହାୟ, ପରମମ୍, ଗୁହ୍ୟମ୍, ଅଧ୍ୟାତ୍ମସଂଜ୍ଞିତମ୍,
ଯତ୍, ତ୍ୱୟା, ଉକ୍ତମ୍, ବଚଃ ତେନ, ମୋହଃ, ଅୟମ୍, ବିଗତଃ, ମମ ॥ ୧ ॥

**ଏହି ପ୍ରକାର ଭଗବାନଙ୍କ ବଚନ ଶୁଣି ଅର୍ଜ୍ଜୁନ କହିଲେ,**
**ହେ ଭଗବନ୍ !—**

| | | | |
|---|---|---|---|
| ମଦନୁଗ୍ରହାୟ | = ମୋ ପ୍ରତି ଅନୁଗ୍ରହ କରିବା ପାଇଁ | ବଚଃ | = ବଚନ ଅର୍ଥାତ୍ ଉପଦେଶ |
| ତ୍ୱୟା | = ଆପଣଙ୍କ ଦ୍ୱାରା | ଉକ୍ତମ୍ | = କଥିତ ହେଲା, |
| ଯତ୍ | = ଯେଉଁ | ତେନ | = ତାହା ଦ୍ୱାରା |
| ପରମମ୍ | = ପରମ | ମମ | = ମୋର |
| ଗୁହ୍ୟମ୍ | = ଗୋପନୀୟ | ଅୟମ୍ | = ଏହି |
| ଅଧ୍ୟାତ୍ମ-ସଂଜ୍ଞିତମ୍ | = ଅଧ୍ୟାତ୍ମ ବିଷୟକ | ମୋହଃ | = ଅଜ୍ଞାନ |
| | | ବିଗତଃ | = ନଷ୍ଟ ହୋଇଗଲା । |

**ଭବାପ୍ୟୟୌ ହି ଭୂତାନାଂ ଶ୍ରୁତୌ ବିସ୍ତରଶୋ ମୟା ।**
**ତ୍ୱତ୍ତଃ କମଲପତ୍ରାକ୍ଷ ମାହାତ୍ମ୍ୟମପି ଚାବ୍ୟୟମ୍ ॥ ୨ ॥**

ଭବାପ୍ୟୟୌ, ହି, ଭୂତାନାମ୍, ଶ୍ରୁତୌ, ବିସ୍ତରଶଃ, ମୟା,
ତ୍ୱତ୍ତଃ, କମଲପତ୍ରାକ୍ଷ, ମାହାତ୍ମ୍ୟମ୍, ଅପି, ଚ, ଅବ୍ୟୟମ୍ ।।୨।।

| | | | |
|---|---|---|---|
| ହି | = କାରଣ | ବିସ୍ତରଶଃ | = ବିସ୍ତୃତ ଭାବରେ |
| କମଲପତ୍ରାକ୍ଷ | = ହେ କମଳନୟନ ! | ଶ୍ରୁତୌ | = ଶୁଣିଲି |
| ମୟା | = ମୋ'ଦ୍ୱାରା | ଚ | = ତଥା (ଆପଣଙ୍କର) |
| ତ୍ୱତ୍ତଃ | = ଆପଣଙ୍କଠାରୁ | | |
| ଭୂତାନାମ୍ | = ପ୍ରାଣୀମାନଙ୍କର | ଅବ୍ୟୟମ୍ | = ଅବିନାଶୀ |
| ଭବାପ୍ୟୟୌ | = ଉତ୍ପତ୍ତି ଓ ପ୍ରଳୟ ବିଷୟ | ମାହାତ୍ମ୍ୟମ୍ | = ମହିମା |
| | | ଅପି | = ମଧ୍ୟ (ଶୁଣିଲି) । |

**ଏବମେତଦ୍ ଯଥାତ୍ଥ ତ୍ୱମାତ୍ମାନଂ ପରମେଶ୍ୱର ।**
**ଦ୍ରଷ୍ଟୁମିଚ୍ଛାମି ତେ ରୂପମୈଶ୍ୱରଂ ପୁରୁଷୋତ୍ତମ ॥ ୩ ॥**

ଏବମ୍, ଏତତ୍, ଯଥା, ଆତ୍ଥ, ତ୍ୱମ୍, ଆତ୍ମାନମ୍, ପରମେଶ୍ୱର,
ଦ୍ରଷ୍ଟୁମ୍, ଇଚ୍ଛାମି, ତେ, ରୂପମ୍, ଐଶ୍ୱରମ୍, ପୁରୁଷୋତ୍ତମ ।।୩।।

| | | | |
|---|---|---|---|
| ପରମେଶ୍ୱର | = ହେ ପରମେଶ୍ୱର ! | ପୁରୁଷୋତ୍ତମ | = ହେ ପୁରୁଷୋତ୍ତମ ! |
| ତ୍ୱମ୍ | = ଆପଣ | ତେ | = (ମୁଁ) ଆପଣଙ୍କର |
| ଆତ୍ମାନମ୍ | = ନିଜକୁ | ଐଶ୍ୱରମ୍, | = ଜ୍ଞାନ, ଐଶ୍ୱର୍ଯ୍ୟ, |
| ଯଥା | = ଯେପରି | ରୂପମ୍ | ଶକ୍ତି, ବଳ, ବୀର୍ଯ୍ୟ |
| ଆତ୍ଥ | = କହୁଛନ୍ତି | | ଓ ତେଜଯୁକ୍ତ |
| ଏତତ୍ | = ଏହା | | ଦିବ୍ୟରୂପକୁ |
| ଏବମ୍ (ଏବ) | = ଠିକ୍ ସେହିପରି । | ଦ୍ରଷ୍ଟୁମ୍ | = ପ୍ରତ୍ୟକ୍ଷ ଦେଖିବାକୁ |
| | (ତଥାପି) | ଇଚ୍ଛାମି | = ଚାହୁଁଛି । |

**ମନ୍ୟସେ ଯଦି ତଚ୍ଛକ୍ୟଂ ମୟା ଦ୍ରଷ୍ଟୁମିତି ପ୍ରଭୋ ।**
**ଯୋଗେଶ୍ୱର ତତୋ ମେ ତ୍ୱଂ ଦର୍ଶୟାତ୍ମାନମବ୍ୟୟମ୍ ॥ ୪ ॥**

ମନ୍ୟସେ, ଯଦି, ତତ୍, ଶକ୍ୟମ୍, ମୟା, ଦ୍ରଷ୍ଟୁମ୍, ଇତି, ପ୍ରଭୋ,
ଯୋଗେଶ୍ୱର, ତତଃ, ମେ, ତ୍ୱମ୍, ଦର୍ଶୟ, ଆତ୍ମାନମ୍, ଅବ୍ୟୟମ୍ ।।୪।।

**ଏଥିପାଇଁ —**

| | | | |
|---|---|---|---|
| ପ୍ରଭୋ | = ହେ ପ୍ରଭୁ !* | ମନ୍ୟସେ | = ଆପଣ ମନେ |
| ଯଦି | = ଯଦି | | କରୁଛନ୍ତି, |
| ମୟା | = ମୋ' ଦ୍ୱାରା | ତତଃ | = ତେବେ |
| ତତ୍ | = ଆପଣଙ୍କର | ଯୋଗେଶ୍ୱର | = ହେ ଯୋଗେଶ୍ୱର ! |
| | ସେହି ରୂପ | ତ୍ୱମ୍ | = ଆପଣ |
| | | ଆତ୍ମାନମ୍ , | = ନିଜର ସେହି |
| ଦ୍ରଷ୍ଟୁମ୍ | = ଦେଖିହେବା | ଅବ୍ୟୟମ୍ | ଅବିନାଶୀ ସ୍ୱରୂପକୁ |
| ଶକ୍ୟମ୍ | = ସମ୍ଭବ | ମେ | = ମୋତେ |
| ଇତି | = ବୋଲି | ଦର୍ଶୟ | = ଦେଖାନ୍ତୁ । |

* ଉତ୍ପତ୍ତି, ସ୍ଥିତି ଏବଂ ପ୍ରଳୟ ତଥା ଅନ୍ତର୍ଯ୍ୟାମୀ ରୂପରେ ଶାସନକର୍ତ୍ତା ହୋଇଥିବାରୁ ଭଗବାନଙ୍କ ନାମ "ପ୍ରଭୁ" ଅଟେ ।

ଭଗବାନଙ୍କ ଭିତରେ ଦେବତା, ମନୁଷ୍ୟ, ପଶୁ, ପକ୍ଷୀ ଆଦି ସମସ୍ତ ଚରାଚର ପ୍ରାଣୀଙ୍କୁ ତଥା ଅନେକ ଆଶ୍ଚର୍ଯ୍ୟପ୍ରଦ ଦୃଶ୍ୟ ସହିତ ସମସ୍ତ ଜଗତକୁ ଦେଖିବା ପାଇଁ ଆଜ୍ଞା ଦେବା ତଥା ଦିବ୍ୟଦୃଷ୍ଟି ପ୍ରଦାନ କରିବା ପାଇଁ ପ୍ରତିଶ୍ରୁତି ଦେବା ।

*ଶ୍ରୀଭଗବାନ ଉବାଚ*

ପଶ୍ୟ ମେ ପାର୍ଥ ରୂପାଣି ଶତଶୋଽଥ ସହସ୍ରଶଃ ।
ନାନାବିଧାନି ଦିବ୍ୟାନି ନାନାବର୍ଣ୍ଣାକୃତୀନି ଚ ॥ ୫ ॥

ପଶ୍ୟ, ମେ, ପାର୍ଥ, ରୂପାଣି, ଶତଶଃ, ଅଥ, ସହସ୍ରଶଃ,
ନାନାବିଧାନି, ଦିବ୍ୟାନି, ନାନାବର୍ଣ୍ଣାକୃତୀନି, ଚ ।।୫।।

**ଏହି ପ୍ରକାର ଅର୍ଜୁନଙ୍କ ପ୍ରାର୍ଥନା କରିବାରେ ଶ୍ରୀ ଭଗବାନ କହିଲେ—**

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ଚ | = ଏବଂ |
| ଅଥ | = ବର୍ତ୍ତମାନ (ତୁମେ) | ନାନା - | = ନାନା ବର୍ଣ୍ଣର ତଥା |
| ମେ | = ମୋର | ବର୍ଣ୍ଣାକୃତୀନି | ନାନା ଆକୃତିର |
| ଶତଶଃ, | = ଶତ-ଶତ, | ଦିବ୍ୟାନି | = ଅଲୌକିକ |
| ସହସ୍ରଶଃ | ସହସ୍ର-ସହସ୍ର | ରୂପାଣି | = ରୂପମାନ |
| ନାନାବିଧାନି | = ନାନା ପ୍ରକାର | ପଶ୍ୟ | = ଦେଖ । |

ପଶ୍ୟାଦିତ୍ୟାନ୍ ବସୂନ୍ ରୁଦ୍ରାନଶ୍ୱିନୌ ମରୁତସ୍ତଥା ।
ବହୂନ୍ୟଦୃଷ୍ଟପୂର୍ବାଣି ପଶ୍ୟାଶ୍ଚର୍ଯ୍ୟାଣି ଭାରତ ॥ ୬ ॥

ପଶ୍ୟ, ଆଦିତ୍ୟାନ୍, ବସୂନ୍, ରୁଦ୍ରାନ୍, ଅଶ୍ୱିନୌ, ମରୁତଃ, ତଥା,
ବହୂନି, ଅଦୃଷ୍ଟପୂର୍ବାଣି, ପଶ୍ୟ, ଆଶ୍ଚର୍ଯ୍ୟାଣି, ଭାରତ।।୬।।

**ଏବଂ—**

| | | | |
|---|---|---|---|
| ଭାରତ | = ହେ ଭରତବଂଶୀ ଅର୍ଜୁନ (ମୋ ଦେହରେ) | ଆଦିତ୍ୟାନ୍ | = ଆଦିତ୍ୟମାନଙ୍କୁ ଅର୍ଥାତ୍ ଅଦିତିଙ୍କର ଦ୍ୱାଦଶ ପୁତ୍ରଙ୍କୁ, |

| | | | |
|---|---|---|---|
| ବସୂନ୍ | = ଅଷ୍ଟ ବସୁଙ୍କୁ, | ବହୂନି | = ବହୁ |
| ରୁଦ୍ରାନ୍ | = ଏକାଦଶ ରୁଦ୍ରଙ୍କୁ, | ଅଦୃଷ୍ଟପୂର୍ବାଣି | = ପୂର୍ବରୁ କେବେ ଦେଖି ନ ଥିବା |
| ଅଶ୍ୱିନୌ | = ଦୁଇ ଅଶ୍ୱିନୀ କୁମାରଙ୍କୁ (ଏବଂ) | ଆଶ୍ଚର୍ଯ୍ୟାଣି | = ଆଶ୍ଚର୍ଯ୍ୟମୟ ରୂପଗୁଡ଼ିକୁ |
| ମରୁତଃ | = ଅଣଚାଶ ମରୁତଙ୍କୁ | ପଶ୍ୟ | = ଦେଖ । |
| ପଶ୍ୟ | = ତୁମେ ଦେଖ | | |
| ତଥା | = ତଥା (ଆହୁରି ମଧ୍ୟ) | | |

**ଇହୈକସ୍ଥଂ ଜଗତ୍‌କୃତ୍ସ୍ନଂ ପଶ୍ୟାଦ୍ୟ ସଚରାଚରମ୍ ।**
**ମମ ଦେହେ ଗୁଡାକେଶ ଯଚ୍ଚାନ୍ୟଦ୍‌ଦ୍ରଷ୍ଟୁମିଚ୍ଛସି ॥ ୭ ॥**

ଇହ, ଏକସ୍ଥମ୍, ଜଗତ୍, କୃତ୍ସ୍ନମ୍, ପଶ୍ୟ, ଅଦ୍ୟ, ସଚରାଚରମ୍,
ମମ, ଦେହେ, ଗୁଡ଼ାକେଶ, ଯତ୍, ଚ, ଅନ୍ୟତ୍, ଦ୍ରଷ୍ଟୁମ୍, ଇଚ୍ଛସି ।।୭।।

ଏବଂ—

| | | | |
|---|---|---|---|
| ଗୁଡ଼ାକେଶ* | = ହେ ଅର୍ଜୁନ ! | କୃତ୍ସ୍ନମ୍ | = ସମଗ୍ର |
| ଅଦ୍ୟ | = ବର୍ତ୍ତମାନ | ଜଗତ୍ | = ଜଗତକୁ |
| ଇହ | = ଏହି | ପଶ୍ୟ | = ଦେଖ (ତଥା) |
| ମମ | = ମୋର | ଅନ୍ୟତ୍ | = ଏହା ବ୍ୟତୀତ ଆଉ |
| ଦେହେ | = ଶରୀରର | ଯତ୍, ଚ | = ଯାହାକିଛି ମଧ୍ୟ |
| ଏକସ୍ଥମ୍ | = ଗୋଟିଏ ଅଂଶରେ ଅବସ୍ଥିତ | ଦ୍ରଷ୍ଟୁମ୍ | = ଦେଖିବାକୁ |
| ସଚରାଚରମ୍ | = ଚରାଚର ସମେତ | ଇଚ୍ଛସି | = ଇଚ୍ଛା କରୁଛ (ତାହା ଦେଖ) । |

**ନ ତୁ ମାଂ ଶକ୍ୟସେ ଦ୍ରଷ୍ଟୁମନେନୈବ ସ୍ୱଚକ୍ଷୁଷା ।**
**ଦିବ୍ୟଂ ଦଦାମି ତେ ଚକ୍ଷୁଃ ପଶ୍ୟ ମେ ଯୋଗମୈଶ୍ୱରମ୍ ॥ ୮ ॥**

* ନିଦ୍ରାକୁ ଜୟ କରିଥିବା ହେତୁ ଅର୍ଜୁନଙ୍କ ନାମ 'ଗୁଡ଼ାକେଶ' ହୋଇଛି ।

ନ, ତୁ, ମାମ୍, ଶକ୍ୟସେ, ଦ୍ରଷ୍ଟୁମ୍, ଅନେନ, ଏବ, ସ୍ୱଚକ୍ଷୁଷା,
ଦିବ୍ୟମ୍, ଦଦାମି, ତେ, ଚକ୍ଷୁଃ, ପଶ୍ୟ, ମେ, ଯୋଗମ୍, ଐଶ୍ୱରମ୍ ।।୮।।

| | | | |
|---|---|---|---|
| ତୁ | = କିନ୍ତୁ | ଦିବ୍ୟମ୍ | = ଦିବ୍ୟ ଅର୍ଥାତ୍ ଅଲୌକିକ |
| ମାମ୍ | = (ତୁମେ) ମୋତେ | | |
| ଅନେନ | = ଏହି | ଚକ୍ଷୁଃ | = ଚକ୍ଷୁ |
| ସ୍ୱଚକ୍ଷୁଷା | = ନିଜ ପ୍ରାକୃତ ନେତ୍ର ଦ୍ୱାରା | ଦଦାମି | = ପ୍ରଦାନ କରୁଛି; |
| | | (ତେନ) | = ତାହାଦ୍ୱାରା ତୁମେ |
| ଦ୍ରଷ୍ଟୁମ୍ | = ଦେଖିବାକୁ | | |
| ଏବ | = ନିଃସନ୍ଦେହ | ମେ | = ମୋର |
| ନ, ଶକ୍ୟସେ | = ସମର୍ଥ ହେବ ନାହିଁ । | ଐଶ୍ୱରମ୍ | = ଈଶ୍ୱରୀୟ |
| (ଅତଃ) | = ଏଣୁ (ମୁଁ) | ଯୋଗମ୍ | = ଯୋଗଶକ୍ତିକୁ |
| ତେ | = ତୁମକୁ | ପଶ୍ୟ | = ଦେଖ । |

*ସଞ୍ଜୟ ଉବାଚ*

ଭଗବାନଙ୍କ ଦ୍ୱାରା ଅର୍ଜୁନଙ୍କୁ ବିଶ୍ୱରୂପ ଦର୍ଶନ କରାଇବା ।

**ଏବମୁକ୍ତ୍ୱା ତତୋ ରାଜନ୍ ମହାଯୋଗେଶ୍ୱରୋ ହରିଃ ।**
**ଦର୍ଶୟାମାସ ପାର୍ଥାୟ ପରମଂ ରୂପମୈଶ୍ୱରମ୍ ॥ ୯ ॥**

ଏବମ୍, ଉକ୍ତ୍ୱା, ତତଃ, ରାଜନ୍, ମହାଯୋଗେଶ୍ୱରଃ, ହରିଃ,
ଦର୍ଶୟାମାସ, ପାର୍ଥାୟ, ପରମମ୍, ରୂପମ୍, ଐଶ୍ୱରମ୍।।୯।।

**ସଞ୍ଜୟ କହିଲେ—**

| | | | |
|---|---|---|---|
| ରାଜନ୍ | = ହେ ରାଜନ୍! | ଏବମ୍ | = ଏପରି |
| ମହାଯୋଗେଶ୍ୱରଃ | = ମହାଯୋଗେଶ୍ୱର | ଉକ୍ତ୍ୱା | = କହି |
| ହରିଃ | = (ଓ) ସକଳ ପାପ ହରଣକାରୀ ଭଗବାନ୍ | ତତଃ | = ତା'ପରେ |
| | | ପାର୍ଥାୟ | = ଅର୍ଜୁନଙ୍କୁ |

| | | | |
|---|---|---|---|
| ପରମମ୍ | = (ନିଜର) ପରମ | ରୂପମ୍ | = ଦିବ୍ୟସ୍ୱରୂପ |
| ଐଶ୍ୱରମ୍ | = ଐଶ୍ୱର୍ଯ୍ୟଯୁକ୍ତ | ଦର୍ଶୟାମାସ | = ଦେଖାଇଲେ* । |

ସଞ୍ଜୟଙ୍କ ଦ୍ୱାରା ବିଶ୍ୱରୂପର ବର୍ଣ୍ଣନ ।

**ଅନେକବକ୍ତ୍ରନୟନମନେକାଦ୍ଭୁତଦର୍ଶନମ୍ ।**
**ଅନେକଦିବ୍ୟାଭରଣଂ ଦିବ୍ୟାନେକୋଦ୍ୟତାୟୁଧମ୍ ॥ ୧୦ ॥**
**ଦିବ୍ୟମାଲ୍ୟାମ୍ବରଧରଂ ଦିବ୍ୟଗନ୍ଧାନୁଲେପନମ୍ ।**
**ସର୍ବାଶ୍ଚର୍ଯ୍ୟମୟଂ ଦେବମନନ୍ତଂ ବିଶ୍ୱତୋମୁଖମ୍ ॥ ୧୧ ॥**

ଅନେକବକ୍ତ୍ରନୟନମ୍, ଅନେକାଦ୍ଭୁତଦର୍ଶନମ୍,
ଅନେକଦିବ୍ୟାଭରଣମ୍, ଦିବ୍ୟାନେକୋଦ୍ୟତାୟୁଧମ୍ ।।୧୦।।
ଦିବ୍ୟମାଲ୍ୟାମ୍ବରଧରମ୍, ଦିବ୍ୟଗନ୍ଧାନୁଲେପନମ୍,
ସର୍ବାଶ୍ଚର୍ଯ୍ୟମୟମ୍, ଦେବମ୍, ଅନନ୍ତମ୍, ବିଶ୍ୱତୋମୁଖମ୍ ।।୧୧।।

ଏବଂ—

| | | | |
|---|---|---|---|
| ଅନେକବକ୍ତ୍ରନୟନମ୍ | = ଅନେକ ମୁଖ ଓ ନେତ୍ରଯୁକ୍ତ, | | ଆଭରଣ ଯୁକ୍ତ (ଏବଂ) |
| ଅନେକାଦ୍ଭୁତଦର୍ଶନମ୍ | = ଅନେକ ଅଦ୍ଭୁତ ଦୃଶ୍ୟମୟ, | ଦିବ୍ୟାନେକୋ-ଦ୍ୟତାୟୁଧମ୍ | = ହାତରେ ଅନେକ ଦିବ୍ୟ ଶସ୍ତ୍ର ଧରି ପ୍ରସ୍ତୁତ ଥିବା, |
| ଅନେକଦିବ୍ୟାଭରଣମ୍ | = ଅନେକ ଦିବ୍ୟ | | |

* ବେଦବ୍ୟାସଙ୍କ ଠାରୁ ସଂଜୟଙ୍କୁ ମଧ୍ୟ ଦିବ୍ୟଦୃଷ୍ଟି ପ୍ରାପ୍ତ ହୋଇଥିଲା, ତେଣୁ ଅର୍ଜୁନଙ୍କ ସହିତ ସଂଜୟ ମଧ୍ୟ ଭଗବାନଙ୍କ ବିଶ୍ୱରୂପ ଦର୍ଶନ କରିଥିଲେ (ଗୀତା ୧୮/୭୭)। ବର୍ତ୍ତମାନ ସଂଜୟ ଧୃତରାଷ୍ଟ୍ରଙ୍କ ସମ୍ମୁଖରେ ସେହି ବିଶ୍ୱରୂପର ବର୍ଣ୍ଣନା କରୁଛନ୍ତି।

| | | | |
|---|---|---|---|
| ଦିବ୍ୟମାଲ୍ୟାମ୍ବରଧରମ୍ | = ଦିବ୍ୟମାଳା ଓ ବସ୍ତ୍ର ଧାରଣ କରିଥିବା, (ତଥା) | ସର୍ବାଶ୍ଚର୍ଯ୍ୟମୟମ୍ | = ଅତି ଆଶ୍ଚର୍ଯ୍ୟମୟ |
| ଦିବ୍ୟଗନ୍ଧାନୁଲେପନମ୍ | = ଯାହାଙ୍କର ସମସ୍ତ ଶରୀର ଦିବ୍ୟଗନ୍ଧରେ ଅନୁଲେପିତ ହୋଇଥିବା, | ଅନନ୍ତମ୍ | = ଅନନ୍ତରୂପଶାଳୀ (ତଥା) |
| | | ବିଶ୍ୱତୋମୁଖମ୍ | = ସକଳ ଦିଗକୁ ମୁଖ କରିଥିବା ଦିବ୍ୟ ଓ ବିରାଟ ସ୍ୱରୂପ |
| | | ଦେବମ୍ | = ଦେବ ଦେବ ପରମେଶ୍ୱରଙ୍କୁ (ଅର୍ଜୁନ) |
| | | (ଅପଶ୍ୟତ୍) | = ଦର୍ଶନ କଲେ । |

**ବିଶ୍ୱରୂପ ପ୍ରକାଶର ମହିମା**

**ଦିବି ସୂର୍ଯ୍ୟସହସ୍ରସ୍ୟ ଭବେଦ୍‌ଯୁଗପଦୁତ୍‌ଥିତା ।**
**ଯଦି ଭାଃ ସଦୃଶୀ ସା ସ୍ୟାଭାସସ୍ତସ୍ୟ ମହାତ୍ମନଃ ॥ ୧୨ ॥**

ଦିବି, ସୂର୍ଯ୍ୟସହସ୍ରସ୍ୟ, ଭବେତ୍, ଯୁଗପତ୍, ଉତ୍‌ଥିତା,
ଯଦି, ଭାଃ, ସଦୃଶୀ, ସା, ସ୍ୟାତ୍, ଭାସଃ, ତସ୍ୟ, ମହାତ୍ମନଃ ।।୧୨।।

**ଏବଂ ହେ ରାଜନ୍ !—**

| | | | |
|---|---|---|---|
| ଦିବି | = ଆକାଶରେ | ତସ୍ୟ | = ସେହି |
| ସୂର୍ଯ୍ୟସହସ୍ରସ୍ୟ | = ସହସ୍ରସଂଖ୍ୟକ ସୂର୍ଯ୍ୟଙ୍କର | ମହାତ୍ମନଃ | = ବିଶ୍ୱରୂପ ପରମାତ୍ମାଙ୍କର |
| ଯୁଗପତ୍ | = ଏକସଙ୍ଗେ | ଭାସଃ | = ଜ୍ୟୋତି |
| ଉତ୍‌ଥିତା | = ଉଦିତ ହୋଇଥିବା | ସଦୃଶୀ | = ସଦୃଶ |
| ଭାଃ | = (ଯେଉଁ) ଆଲୋକ ବା ଜ୍ୟୋତି | ଯଦି, ସ୍ୟାତ୍ | = ହେବ କି ନାହିଁ ସନ୍ଦେହ ଅର୍ଥାତ୍ ହୋଇପାରିବ ନାହିଁ । |
| ଭବେତ୍ | = ହେବ, | | |
| ସା | = ତାହା (ବି) | | |

ଅର୍ଜୁନ ସମ୍ପୂର୍ଣ୍ଣ ଜଗତକୁ ବିଶ୍ୱରୂପର ଗୋଟିଏ ସ୍ଥାନରେ ଦେଖିବା ।

**ତତ୍ରୈକସ୍ଥଂ ଜଗତ୍କୃତ୍ସ୍ନଂ ପ୍ରବିଭକ୍ତମନେକଧା ।**
**ଅପଶ୍ୟଦ୍ଦେବଦେବସ୍ୟ ଶରୀରେ ପାଣ୍ଡବସ୍ତଦା ॥ ୧୩ ॥**

ତତ୍ର, ଏକସ୍ଥମ୍, ଜଗତ୍, କୃତ୍ସ୍ନମ୍, ପ୍ରବିଭକ୍ତମ୍, ଅନେକଧା,
ଅପଶ୍ୟତ୍, ଦେବଦେବସ୍ୟ, ଶରୀରେ, ପାଣ୍ଡବଃ, ତଦା ।।୧୩।।

**ଏବଂ ଏପରି ଆଶ୍ଚର୍ଯ୍ୟମୟ ରୂପକୁ ଦେଖି—**

| | | | |
|---|---|---|---|
| ପାଣ୍ଡବଃ | = ପାଣ୍ଡୁପୁତ୍ର ଅର୍ଜୁନ | ଦେବଦେବସ୍ୟ | = ଦେବାଧିଦେବ ଶ୍ରୀକୃଷ୍ଣ ଭଗବାନଙ୍କର |
| ତଦା | = ସେହି ସମୟରେ | ତତ୍ର | = ସେହି |
| ଅନେକଧା | = ଅନେକ ପ୍ରକାରରେ | ଶରୀରେ | = ଶରୀରରେ |
| ପ୍ରବିଭକ୍ତମ୍ | = ଯଥାଯଥ ବିଭକ୍ତ ହୋଇ ପୃଥକ୍ ପୃଥକ୍ ରହିଥିବା | ଏକସ୍ଥମ୍ | = ଏକସ୍ଥାନରେ ଥିବାର |
| କୃତ୍ସ୍ନମ୍ | = ସମ୍ପୂର୍ଣ୍ଣ | ଅପଶ୍ୟତ୍ | = ଦେଖିଲେ । |
| ଜଗତ୍ | = ଜଗତକୁ | | |

ସେହି ରୂପକୁ ଦେଖି ଅର୍ଜୁନ ବିସ୍ମିତ ଓ ହର୍ଷିତ ହେବା ଏବଂ ଶ୍ରଦ୍ଧା ସହିତ ଭଗବାନଙ୍କୁ ପ୍ରଣାମ କରିବା ।

**ତତଃ ସ ବିସ୍ମୟାବିଷ୍ଟୋ ହୃଷ୍ଟରୋମା ଧନଞ୍ଜୟଃ ।**
**ପ୍ରଣମ୍ୟ ଶିରସା ଦେବଂ କୃତାଞ୍ଜଳିରଭାଷତ ॥ ୧୪ ॥**

ତତଃ, ସଃ, ବିସ୍ମୟାବିଷ୍ଟଃ, ହୃଷ୍ଟରୋମା, ଧନଞ୍ଜୟଃ,
ପ୍ରଣମ୍ୟ, ଶିରସା, ଦେବମ୍, କୃତାଞ୍ଜଳିଃ, ଅଭାଷତ ।।୧୪।।

**ଏବଂ—**

| | | | |
|---|---|---|---|
| ତତଃ | = ତା' ପରେ | ଧନଞ୍ଜୟଃ | = ଅର୍ଜୁନ |
| ବିସ୍ମୟାବିଷ୍ଟଃ | = ଆଶ୍ଚର୍ଯ୍ୟଚକିତ (ଓ) | ଦେବମ୍ | = ଜ୍ୟୋତିର୍ମୟ ବିଶ୍ୱରୂପ ପରମାତ୍ମାଙ୍କୁ |
| ହୃଷ୍ଟରୋମା | = ପୁଲକିତଶରୀର | | |
| ସଃ | = ସେହି | | |

| | | | |
|---|---|---|---|
| ଶିରସା | = (ଶ୍ରଦ୍ଧାଭକ୍ତି ସହିତ) ନତମସ୍ତକ ହୋଇ | କୃତାଞ୍ଜଳିଃ | = କରଯୋଡ଼ି |
| ପ୍ରଣମ୍ୟ | = ପ୍ରଣାମ କରି, | ଅଭାଷତ | = କହିଲେ - |

### ଅର୍ଜୁନ ଉବାଚ

ବିଶ୍ୱରୂପରେ ଦେବତା, ଋଷି ଆଦିଙ୍କୁ ଦର୍ଶନ କରିବା

ପଶ୍ୟାମି ଦେବାଂସ୍ତବ ଦେବ ଦେହେ
ସର୍ବାଂସ୍ତଥା ଭୂତବିଶେଷସଙ୍ଘାନ୍ ।
ବ୍ରହ୍ମାଣମୀଶଂ କମଳାସନସ୍ଥ-
ମୃଷୀଂଶ୍ଚ ସର୍ବାନୁରଗାଂଶ୍ଚ ଦିବ୍ୟାନ୍ ॥ ୧୫ ॥

ପଶ୍ୟାମି, ଦେବାନ୍, ତବ, ଦେବ, ଦେହେ,
ସର୍ବାନ୍, ତଥା, ଭୂତବିଶେଷସଂଘାନ୍,
ବ୍ରହ୍ମାଣମ୍, ଈଶମ୍, କମଳାସନସ୍ଥମ୍,
ଋଷୀନ୍, ଚ, ସର୍ବାନ୍, ଉରଗାନ୍, ଚ, ଦିବ୍ୟାନ୍ ।୧୫ ।।

### ଅର୍ଜୁନ କହିଲେ—

| | | | |
|---|---|---|---|
| ଦେବ | = ହେ ଦେବ ! (ମୁଁ) | | ବିରାଜିତ |
| ତବ | = ଆପଣଙ୍କ | ବ୍ରହ୍ମାଣମ୍ | = ବ୍ରହ୍ମାଙ୍କୁ, |
| ଦେହେ | = ଶରୀରରେ | ଈଶମ୍ | = ମହାଦେବଙ୍କୁ |
| ସର୍ବାନ୍ , | = ସକଳ | ଚ | = ଏବଂ |
| ଦେବାନ୍ | ଦେବତାଙ୍କୁ | ସର୍ବାନ୍ | = ସକଳ |
| ତଥା | = ତଥା | ଋଷୀନ୍ | = ଋଷିମାନଙ୍କୁ |
| ଭୂତବିଶେଷ-ସଂଘାନ୍ | = ଅନେକ ଭୂତଙ୍କ ସମୁଦାୟକୁ, | ଚ | = ତଥା |
| | | ଦିବ୍ୟାନ୍ | = ଦିବ୍ୟ |
| କମଳାସନସ୍ଥମ୍ | =କମଳ ଆସନରେ | ଉରଗାନ୍ | = ସର୍ପମାନଙ୍କୁ |
| | | ପଶ୍ୟାମି | = ଦେଖୁଛି । |

ବିଶ୍ୱରୂପଙ୍କୁ ଅନେକ ବାହୁ, ଉଦର ଆଦିରେ ଯୁକ୍ତ ହୋଇଥିବା ଦେଖିବା ।

**ଅନେକବାହୂଦରବକ୍ତ୍ରନେତ୍ରଂ**
**ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପମ୍ ।**
**ନାନ୍ତଂ ନ ମଧ୍ୟଂ ନ ପୁନସ୍ତବାଦିଂ**
**ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପ ॥ ୧୬ ॥**

ଅନେକବାହୂଦରବକ୍ତ୍ରନେତ୍ରମ୍,
ପଶ୍ୟାମି, ତ୍ୱାମ୍, ସର୍ବତଃ, ଅନନ୍ତରୂପମ୍,
ନ, ଅନ୍ତମ୍, ନ, ମଧ୍ୟମ୍, ନ, ପୁନଃ, ତବ, ଆଦିମ୍,
ପଶ୍ୟାମି, ବିଶ୍ୱେଶ୍ୱର,ବିଶ୍ୱରୂପ ।।୧୬।।

**ଏବଂ—**

| | | | |
|---|---|---|---|
| ବିଶ୍ୱେଶ୍ୱର | = ହେ ସକଳ ବିଶ୍ୱର ସ୍ୱାମୀ ! | ତବ | = ଆପଣଙ୍କର |
| ତ୍ୱାମ୍ | = (ମୁଁ ) ଆପଣଙ୍କୁ | ନ | = ନା |
| ଅନେକବାହୂଦର-ବକ୍ତ୍ରନେତ୍ରମ୍ | = ଅନେକ ଭୁଜ, ଉଦର, ମୁଖ ଓ ନେତ୍ର-ଯୁକ୍ତ(ତଥା) | ଅନ୍ତମ୍ | = ଅନ୍ତକୁ |
| ସର୍ବତଃ | = ସକଳ ଦିଗରେ (ବ୍ୟାପ୍ତ) | ପଶ୍ୟାମି | = ଦେଖୁଛି |
| ଅନନ୍ତରୂପମ୍ | = ଅନନ୍ତ ରୂପ ବିଶିଷ୍ଟ | ନ | = ନା |
| ପଶ୍ୟାମି | = ଦେଖୁଛି | ମଧ୍ୟମ୍ | = ମଧ୍ୟକୁ |
| ବିଶ୍ୱରୂପ | = ହେ ବିଶ୍ୱରୂପ !(ମୁଁ) | ପୁନଃ | = ଏବଂ |
| | | ନ | = ନା |
| | | ଆଦିମ୍ | = ଆଦିକୁ ହିଁ ଦେଖୁଛି (ଅର୍ଥାତ୍ କିଛି ବି ଦେଖିପାରୁ ନାହିଁ) । |

ବିଶ୍ୱରୂପରେ ମୁକୁଟ, ଗଦା, ଚକ୍ର ଆଦି ଯୁକ୍ତ ହୋଇଥିବା ଦେଖିବା ।

**କିରୀଟିନଂ ଗଦିନଂ ଚକ୍ରିଣଂ ଚ**
**ତେଜୋରାଶିଂ ସର୍ବତୋ ଦୀପ୍ତିମନ୍ତମ୍ ।**
**ପଶ୍ୟାମି ତ୍ୱାଂ ଦୁର୍ନିରୀକ୍ଷ୍ୟଂ ସମନ୍ତାଦ୍**
**ଦୀପ୍ତାନଳାର୍କଦ୍ୟୁତିମପ୍ରମେୟମ୍ ॥ ୧୭ ॥**

କିରୀଟିନମ୍, ଗଦିନମ୍, ଚକ୍ରିଣମ୍, ଚ,
ତେଜୋରାଶିମ୍, ସର୍ବତଃ, ଦୀପ୍ତିମନ୍ତମ୍,
ପଶ୍ୟାମି, ତ୍ୱାମ୍, ଦୁର୍ନିରୀକ୍ଷମ୍, ସମନ୍ତାତ୍,
ଦୀପ୍ତାନଳାର୍କଦ୍ୟୁତିମ୍, ଅପ୍ରମେୟମ୍ ।।୧୭ ।।

**ଏବଂ ହେ ବିଷ୍ଣୋ !—**

| | | | |
|---|---|---|---|
| ତ୍ୱାମ୍ | = ଆପଣଙ୍କୁ (ମୁଁ) | ଦ୍ୟୁତିମ୍ | ଏବଂ ସୂର୍ଯ୍ୟ ସଦୃଶ ଜ୍ୟୋତିଯୁକ୍ତ |
| କିରୀଟିନମ୍ | = ମୁକୁଟଯୁକ୍ତ, | ଦୁର୍ନିରୀକ୍ଷମ୍ | = ଦୁର୍ନିରୀକ୍ଷ (ଅର୍ଥାତ୍ ଦେଖାଯିବା ଅତ୍ୟନ୍ତ କଷ୍ଟକର) |
| ଗଦିନମ୍ | = ଗଦାଯୁକ୍ତ | | |
| ଚ | = ଓ | | |
| ଚକ୍ରିଣମ୍ | = ଚକ୍ରଯୁକ୍ତ (ତଥା) | | |
| ସର୍ବତଃ | = ସବୁଦିଗରୁ | | |
| ଦୀପ୍ତିମନ୍ତମ୍ | = ପ୍ରକାଶମାନ | ସମନ୍ତାତ୍ | = ( ଓ) ସବୁଦିଗରୁ |
| ତେଜୋରାଶିମ୍ | = ତେଜପୁଞ୍ଜ | ଅପ୍ରମେୟମ୍ | = ଅପ୍ରମେୟ ସ୍ୱରୂପ |
| ଦୀପ୍ତାନଳାର୍କ- | = ପ୍ରଜ୍ୱଳିତ ଅଗ୍ନି | ପଶ୍ୟାମି | = ଦେଖୁଛି । |

ବିଶ୍ୱରୂପଙ୍କର ସ୍ତୁତି

**ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ**
**ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।**
**ତ୍ୱମବ୍ୟୟଃ ଶାଶ୍ୱତଧର୍ମଗୋପ୍ତା**
**ସନାତନସ୍ତ୍ୱଂ ପୁରୁଷୋ ମତୋ ମେ ॥ ୧୮ ॥**

ତ୍ୱମ୍, ଅକ୍ଷରମ୍, ପରମମ୍, ବେଦିତବ୍ୟମ୍,
ତ୍ୱମ୍, ଅସ୍ୟ, ବିଶ୍ୱସ୍ୟ, ପରମ୍, ନିଧାନମ୍,
ତ୍ୱମ୍, ଅବ୍ୟୟଃ, ଶାଶ୍ୱତଧର୍ମଗୋପ୍ତା,
ସନାତନଃ, ତ୍ୱମ୍, ପୁରୁଷଃ, ମତଃ, ମେ ।।୧୮ ।

**ଏଥିପାଇଁ ହେ ଭଗବାନ !—**

ତ୍ୱମ୍ = ଆପଣ (ହିଁ)
ବେଦିତବ୍ୟମ୍ = ଜାଣିବା ଯୋଗ୍ୟ
ପରମମ୍ = ପରମ
ଅକ୍ଷରମ୍ = ଅକ୍ଷର ଅର୍ଥାତ୍ ପରବ୍ରହ୍ମ ପରମାତ୍ମା;
ତ୍ୱମ୍ = ଆପଣ (ହିଁ)
ଅସ୍ୟ = ଏହି
ବିଶ୍ୱସ୍ୟ = ଜଗତର
ପରମ୍ = ପରମ
ନିଧାନମ୍ = ଆଶ୍ରୟ;
ତ୍ୱମ୍ = ଆପଣ (ହିଁ)
ଶାଶ୍ୱତଧର୍ମଗୋପ୍ତା = ଅନାଦି ଧର୍ମର ରକ୍ଷକ (ଏବଂ)
ତ୍ୱମ୍ = ଆପଣ (ହିଁ)
ଅବ୍ୟୟଃ = ଅବିନାଶୀ
ସନାତନଃ = ସନାତନ
ପୁରୁଷଃ = ପୁରୁଷ ।
ମେ = (ଏହା) ମୋର
ମତଃ = ମତ ।

ଅନନ୍ତ ସାମର୍ଥ୍ୟ ଏବଂ ପ୍ରଭାବଯୁକ୍ତ ବିଶ୍ୱରୂପର ଦର୍ଶନ

**ଅନାଦିମଧ୍ୟାନ୍ତମନନ୍ତବୀର୍ଯ୍ୟ**
**ମନନ୍ତବାହୁଂ ଶଶିସୂର୍ଯ୍ୟନେତ୍ରମ୍ ।**
**ପଶ୍ୟାମି ତ୍ୱାଂ ଦୀପ୍ତହୁତାଶବକ୍ତ୍ରଂ**
**ସ୍ୱତେଜସା ବିଶ୍ୱମିଦଂ ତପନ୍ତମ୍ ॥ ୧୯ ॥**

ଅନାଦିମଧ୍ୟାନ୍ତମ୍, ଅନନ୍ତବୀର୍ଯ୍ୟମ୍,
ଅନନ୍ତବାହୁମ୍, ଶଶିସୂର୍ଯ୍ୟନେତ୍ରମ୍,
ପଶ୍ୟାମି, ତ୍ୱାମ୍, ଦୀପ୍ତହୁତାଶବକ୍ତ୍ରମ୍,
ସ୍ୱତେଜସା, ବିଶ୍ୱମ୍, ଇଦମ୍, ତପନ୍ତମ୍ ।। ୧୯ ।।

**ହେ ପରମେଶ୍ୱର ! ମୁଁ—**

ତ୍ୱାମ୍ = ଆପଣଙ୍କୁ (ମୁଁ)
ଅନାଦିମଧ୍ୟାନ୍ତମ୍ = ଆଦି, ମଧ୍ୟ ଓ ଅନ୍ତରହିତ,
ଅନନ୍ତବୀର୍ଯ୍ୟମ୍ = ଅନନ୍ତ ସାମର୍ଥ୍ୟଯୁକ୍ତ,
ଅନନ୍ତବାହୁମ୍ = ଅନନ୍ତଭୁଜଧାରୀ,
ଶଶିସୂର୍ଯ୍ୟନେତ୍ରମ୍= ଚନ୍ଦ୍ର ଓ ସୂର୍ଯ୍ୟ ରୂପକ ନେତ୍ରଧାରୀ,
ଦୀପ୍ତହୁତାଶବକ୍ତ୍ରମ୍ = ପ୍ରଜ୍ୱଳିତ ଅଗ୍ନିରୂପକ ମୁଖବିଶିଷ୍ଟ(ଏବଂ)

| | | | |
|---|---|---|---|
| ସ୍ୱତେଜସା | = ନିଜ ତେଜଦ୍ୱାରା | ତପନ୍ତମ୍ | = ସନ୍ତପ୍ତ କରୁଥିବା |
| ଇଦମ୍ | = ଏହି | ପଶ୍ୟାମି | = ଦେଖୁଛି । |
| ବିଶ୍ୱମ୍ | = ଜଗତକୁ | | |

ଅଦ୍ଭୁତ ବିରାଟ ରୂପ ସମ୍ପୂର୍ଣ୍ଣ ଜଗତରେ ବ୍ୟାପ୍ତ ଦେଖିବା

**ଦ୍ୟାବାପୃଥିବ୍ୟୋରିଦମନ୍ତରଂ ହି**
**ବ୍ୟାପ୍ତଂ ତ୍ୱୟୈକେନ ଦିଶଶ୍ଚ ସର୍ବାଃ ।**
**ଦୃଷ୍ଟ୍ୱାଦ୍ଭୁତଂ ରୂପମୁଗ୍ରଂ ତବେଦଂ**
**ଲୋକତ୍ରୟଂ ପ୍ରବ୍ୟଥିତଂ ମହାତ୍ମନ୍ ॥ ୨୦ ॥**

ଦ୍ୟାବାପୃଥିବ୍ୟୋଃ, ଇଦମ୍, ଅନ୍ତରମ୍, ହି,
ବ୍ୟାପ୍ତମ୍, ତ୍ୱୟା, ଏକେନ, ଦିଶଃ, ଚ, ସର୍ବାଃ,
ଦୃଷ୍ଟ୍ୱା, ଅଦ୍ଭୁତମ୍, ରୂପମ୍, ଉଗ୍ରମ୍, ତବ, ଇଦମ୍,
ଲୋକତ୍ରୟମ୍, ପ୍ରବ୍ୟଥିତମ୍, ମହାତ୍ମନ୍, ।।୨୦।।

**ଏବଂ—**

| | | | |
|---|---|---|---|
| ମହାତ୍ମନ୍ | = ହେ ମହାତ୍ମନ୍ ! | ବ୍ୟାପ୍ତମ୍ | = ପରିପୂର୍ଣ୍ଣ ହୋଇଛି (ତଥା) |
| ଇଦମ୍ | = ଏହି | ତବ | = ଆପଣଙ୍କର |
| ଦ୍ୟାବାପୃଥିବ୍ୟୋଃ, | = ସ୍ୱର୍ଗ ଓ ପୃଥିବୀ | ଇଦମ୍ | = ଏହି |
| ଅନ୍ତରମ୍ | ମଧ୍ୟରେ ଥିବା ସମ୍ପୂର୍ଣ୍ଣ ଆକାଶ | ଅଦ୍ଭୁତମ୍ | = ଅଲୌକିକ |
| ଚ | = ତଥା | ଉଗ୍ରମ୍ | = (ଓ)ଭୟଙ୍କର |
| ସର୍ବାଃ | = ସକଳ | ରୂପମ୍ | = ରୂପକୁ |
| ଦିଶଃ | = ଦିଗଗୁଡ଼ିକ | ଦୃଷ୍ଟ୍ୱା | = ଦେଖି |
| ଏକେନ | = ଏକମାତ୍ର | ଲୋକତ୍ରୟମ୍ | = ତ୍ରୈଲୋକ୍ୟ |
| ତ୍ୱୟା | = ଆପଣଙ୍କ ଦ୍ୱାରା | ପ୍ରବ୍ୟଥିତମ୍ | = ଅତ୍ୟନ୍ତ ଭୟରେ ଥରହର ହେଉଛି । |
| ହି | = ହିଁ | | |

ବିଶ୍ୱରୂପରେ ଦେବତାଙ୍କର ପ୍ରବେଶ ଓ ମହର୍ଷିମାନେ ସ୍ତୁତି କରୁଥିବାର ଦର୍ଶନ ।

**ଅମୀ ହି ତ୍ୱାଂ ସୁରସଙ୍ଘା ବିଶନ୍ତି**
**କେଚିଦ୍‌ଭୀତାଃ ପ୍ରାଞ୍ଜଲୟୋ ଗୃଣନ୍ତି ।**
**ସ୍ୱସ୍ତୀତ୍ୟୁକ୍ତ୍ୱା ମହର୍ଷିସିଦ୍ଧସଙ୍ଘାଃ**
**ସ୍ତୁବନ୍ତି ତ୍ୱାଂ ସ୍ତୁତିଭିଃ ପୁଷ୍କଲାଭିଃ ॥ ୨୧ ॥**

ଅମୀ, ହି, ତ୍ୱାମ୍, ସୁରସଙ୍ଘାଃ, ବିଶନ୍ତି,
କେଚିତ୍, ଭୀତାଃ, ପ୍ରାଞ୍ଜଳୟଃ, ଗୃଣନ୍ତି,
ସ୍ୱସ୍ତି, ଇତି, ଉକ୍ତ୍ୱା, ମହର୍ଷିସିଦ୍ଧସଙ୍ଘାଃ,
ସ୍ତୁବନ୍ତି, ତ୍ୱାମ୍, ସ୍ତୁତିଭିଃ, ପୁଷ୍କଲାଭିଃ ।।୨୧ ।।

**ଏବଂ ହେ ଗୋବିନ୍ଦ !—**

| | | | |
|---|---|---|---|
| ଅମୀ, | = (ଦେଖନ୍ତୁ ଯେ) | | କୀର୍ତ୍ତନ କରୁଛନ୍ତି |
| ସୁରସଙ୍ଘାଃ, ହି | ସେହି ଦେବ ସମୁଦାୟ ହିଁ | ମହର୍ଷିସିଦ୍ଧସଙ୍ଘାଃ | = (ତଥା) ମହର୍ଷି ଓ ସିଦ୍ଧ ସମୂହ |
| ତ୍ୱାମ୍ | = ଆପଣଙ୍କ ମଧ୍ୟରେ | ସ୍ୱସ୍ତି | = 'କଲ୍ୟାଣ ହେଉ', 'ମଙ୍ଗଳ ହେଉ' |
| ବିଶନ୍ତି | = ପ୍ରବେଶ କରୁଛନ୍ତି (ଏବଂ) | | |
| | | ଇତି | = ଏପରି |
| କେଚିତ୍ | = କେହି କେହି | ଉକ୍ତ୍ୱା | = କହି |
| ଭୀତାଃ | = ଭୟଭୀତ ହୋଇ | ପୁଷ୍କଲାଭିଃ | = ଉତ୍ତମ ଉତ୍ତମ |
| ପ୍ରାଞ୍ଜଳୟଃ | = କରପତ୍ର ଯୋଡ଼ି | ସ୍ତୁତିଭିଃ | = ସ୍ତୋତ୍ରମାନଙ୍କ ଦ୍ୱାରା |
| ଗୃଣନ୍ତି | = (ଆପଣଙ୍କର | ତ୍ୱାମ୍ | = ଆପଣଙ୍କୁ |
| | ନାମ ଓ ଗୁଣ) | ସ୍ତୁବନ୍ତି | = ସ୍ତୁତି କରୁଛନ୍ତି । |

ବିଶ୍ୱରୂପ ଦର୍ଶନ କରି ରୁଦ୍ରାଦି ଦେବତାଗଣ ବିସ୍ମିତ ହେବା ।

**ରୁଦ୍ରାଦିତ୍ୟା ବସବୋ ଯେ ଚ ସାଧ୍ୟା**
**ବିଶ୍ୱେଽଶ୍ୱିନୌ ମରୁତଶ୍ଚୋଷ୍ମପାଶ୍ଚ ।**
**ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘା**
**ବୀକ୍ଷନ୍ତେ ତ୍ୱାଂ ବିସ୍ମିତାଶ୍ଚୈବ ସର୍ବେ ॥ ୨୨ ॥**

ରୁଦ୍ରାଦିତ୍ୟାଃ, ବସବଃ, ଯେ, ଚ, ସାଧ୍ୟାଃ,
ବିଶ୍ୱେ, ଅଶ୍ୱିନୌ, ମରୁତଃ, ଚ, ଉଷ୍ମପାଃ, ଚ,
ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘାଃ,
ବୀକ୍ଷନ୍ତେ, ତ୍ୱାମ୍, ବିସ୍ମିତାଃ, ଚ, ଏବ, ସର୍ବେ ।। ୨୨ ।।

**ଏବଂ ହେ ପରମେଶ୍ୱର !—**

| | | | |
|---|---|---|---|
| ଯେ | = ଯେଉଁ | ଉଷ୍ମପାଃ | = ପିତୃ ସମୁଦାୟ |
| ରୁଦ୍ରାଦିତ୍ୟାଃ | = ଏକାଦଶ ରୁଦ୍ର ଓ ଦ୍ୱାଦଶ ଆଦିତ୍ୟ | ଚ | = ତଥା |
| ଚ | = ତଥା | ଗନ୍ଧର୍ବଯକ୍ଷା-ସୁରସିଦ୍ଧସଙ୍ଘାଃ | = ଗନ୍ଧର୍ବ, ଯକ୍ଷ, ରାକ୍ଷସ ଓ ସିଦ୍ଧଗଣ ଅଛନ୍ତି - |
| ବସବଃ | = ଅଷ୍ଟବସୁ, | | |
| ସାଧ୍ୟାଃ | = ସାଧ୍ୟଗଣ, | (ତେ) | = ସେମାନେ |
| ବିଶ୍ୱେ | = ବିଶ୍ୱେଦେବମାନେ (ଓ) | ସର୍ବେ | = ସମସ୍ତେ |
| ଅଶ୍ୱିନୌ | = ଅଶ୍ୱିନୀକୁମାରଦ୍ୱୟ | ଏବ | = ହିଁ |
| ଚ | = ତଥା | ବିସ୍ମିତାଃ | = ବିସ୍ମିତ ହୋଇ |
| ମରୁତଃ | = ମରୁତଗଣ | ତ୍ୱାମ୍ | = ଆପଣଙ୍କୁ |
| ଚ | = ଏବଂ | ବୀକ୍ଷନ୍ତେ | = ଚାହୁଁଛନ୍ତି । |

ଭଗବାନଙ୍କ ଭୟଙ୍କର ରୂପକୁ ଦେଖି ଅର୍ଜୁନ ଭୟଭୀତ ହେବା ।

**ରୂପଂ ମହତ୍ତେ ବହୁବକ୍ତ୍ରନେତ୍ରଂ**
**ମହାବାହୋ ବହୁବାହୂରୁପାଦମ୍ ।**
**ବହୂଦରଂ ବହୁଦଂଷ୍ଟ୍ରାକରାଳଂ**
**ଦୃଷ୍ଟ୍ୱା ଲୋକାଃ ପ୍ରବ୍ୟଥିତାସ୍ତଥାହମ୍ ॥ ୨୩ ॥**

ରୂପମ୍, ମହତ୍, ତେ, ବହୁବକ୍ତ୍ରନେତ୍ରମ୍,
ମହାବାହୋ, ବହୁବାହୂରୁପାଦମ୍,
ବହୂଦରମ୍, ବହୁଦଂଷ୍ଟ୍ରାକରାଳମ୍,
ଦୃଷ୍ଟ୍ୱା, ଲୋକାଃ, ପ୍ରବ୍ୟଥିତାଃ, ତଥା, ଅହମ୍ ।।୨୩।।

**ଏବଂ —**

| | | | |
|---|---|---|---|
| ମହାବାହୋ | = ହେ ମହାବାହୁ ! | ମହତ୍, | = ତଥା ଭୀଷଣ ରୂପକୁ |
| ତେ | = ଆପଣଙ୍କର | ରୂପମ୍ | |
| ବହୁବକ୍ତ୍ରନେତ୍ରମ୍ | = ବହୁମୁଖ ଓ ନେତ୍ରବିଶିଷ୍ଟ, | ଦୃଷ୍ଟ୍ୱା | = ଦେଖି |
| | | ଲୋକାଃ | = ସମସ୍ତ ପ୍ରାଣୀ |
| ବହୁବାହୂରୁପାଦମ୍ | = ବହୁବାହୁ, ଉରୁ ଓ ପାଦବିଶିଷ୍ଟ, | ପ୍ରବ୍ୟଥିତାଃ | = ଅତ୍ୟନ୍ତ ବ୍ୟଥିତ ହେଉଛନ୍ତି |
| ବହୂଦରମ୍ | = ବହୁ ଉଦର ବିଶିଷ୍ଟ, | ତଥା | = ଏବଂ |
| ବହୁଦଂଷ୍ଟ୍ରାକରାଳମ୍ | = ବହୁ ତୀକ୍ଷ୍ଣ ଦନ୍ତଯୁକ୍ତ ଅତ୍ୟନ୍ତ ଭୟଙ୍କର - | ଅହମ୍ | = ମୁଁ |
| | | (ଅପି) | = ବି (ବ୍ୟାକୁଳ ହେଉଛି) । |

ନଭଃସ୍ପୃଶଂ ଦୀପ୍ତମନେକବର୍ଣ୍ଣଂ
ବ୍ୟାତ୍ତାନନଂ ଦୀପ୍ତବିଶାଳନେତ୍ରମ୍ ।
ଦୃଷ୍ଟ୍ୱା ହି ତ୍ୱାଂ ପ୍ରବ୍ୟଥିତାନ୍ତରାତ୍ମା
ଧୃତିଂ ନ ବିନ୍ଦାମି ଶମଂ ଚ ବିଷ୍ଣୋ ॥ ୨୪ ॥

ନଭଃସ୍ପୃଶମ୍, ଦୀପ୍ତମ୍, ଅନେକବର୍ଣ୍ଣମ୍,
ବ୍ୟାତ୍ତାନନମ୍, ଦୀପ୍ତବିଶାଳନେତ୍ରମ୍,
ଦୃଷ୍ଟ୍ୱା, ହି, ତ୍ୱାମ୍, ପ୍ରବ୍ୟଥିତାନ୍ତରାତ୍ମା,
ଧୃତିମ୍, ନ, ବିନ୍ଦାମି, ଶମମ୍, ଚ, ବିଷ୍ଣୋ । ୨୪ ।।

| | | | |
|---|---|---|---|
| ହି | = କାରଣ | ଅନେକବର୍ଣ୍ଣମ୍ | = ବହୁବର୍ଣ୍ଣଯୁକ୍ତ (ତଥା) |
| ବିଷ୍ଣୋ | = ହେ ବିଷ୍ଣୋ ! | ବ୍ୟାତ୍ତାନନମ୍ | = ବିସ୍ତାରିତ ମୁଖଯୁକ୍ତ (ଓ) |
| ନଭଃସ୍ପୃଶମ୍ | = ଆକାଶକୁ ସ୍ପର୍ଶ କରୁଥିବା | ଦୀପ୍ତବିଶାଳ-ନେତ୍ରମ୍ | = ପ୍ରକାଶମୟ ବିଶାଳ ନେତ୍ରଯୁକ୍ତ |
| ଦୀପ୍ତମ୍ | = ଦେଦୀପ୍ୟମାନ | | |

| | |
|---|---|
| ତ୍ୱାମ୍ | = ଆପଣଙ୍କ ରୂପକୁ |
| ଦୃଷ୍ଟ୍ୱା | = ଦେଖି, |
| ପ୍ରବ୍ୟଥିତାନ୍ତରାତ୍ମା | = ଭୟଭୀତ ଅନ୍ତଃକରଣ ଯୋଗୁଁ (ମୁଁ) |
| ଧୃତିମ୍ | = ଧୈର୍ଯ୍ୟ |
| ଚ | = ଓ |
| ଶମମ୍ | = ଶାନ୍ତି |
| ନ, ବିନ୍ଦାମି | = ପାଇପାରୁ ନାହିଁ । |

ଦଂଷ୍ଟ୍ରାକରାଳାନି ଚ ତେ ମୁଖାନି
ଦୃଷ୍ଟ୍ୱୈବ କାଳାନଳସନ୍ନିଭାନି ।
ଦିଶୋ ନ ଜାନେ ନ ଲଭେ ଚ ଶର୍ମ
ପ୍ରସୀଦ ଦେବେଶ ଜଗନ୍ନିବାସ ॥ ୨୫ ॥

ଦଂଷ୍ଟ୍ରାକରାଳାନି, ଚ, ତେ, ମୁଖାନି
ଦୃଷ୍ଟ୍ୱା, ଏବ, କାଳାନଳସନ୍ନିଭାନି,
ଦିଶଃ, ନ, ଜାନେ, ନ, ଲଭେ, ଚ, ଶର୍ମ
ପ୍ରସୀଦ, ଦେବେଶ, ଜଗନ୍ନିବାସ ।।୨୫ ।।

**ଏବଂ ହେ ଭଗବାନ !—**

| | |
|---|---|
| ଦଂଷ୍ଟ୍ରାକରାଳାନି | = ବିକଟ ଦନ୍ତପାଟୀ ହେତୁ ଭୟଙ୍କର |
| ଚ | = ଓ |
| କାଳାନଳସନ୍ନିଭାନି | = ପ୍ରଳୟକାଳର ଅଗ୍ନିପରି ପ୍ରଜ୍ୱଳିତ |
| ତେ | = ଆପଣଙ୍କର |
| ମୁଖାନି | = ମୁଖମାନଙ୍କୁ |
| ଦୃଷ୍ଟ୍ୱା | = ଦେଖି (ମୁଁ) |
| ଦିଶଃ | = ଦିଗମାନଙ୍କୁ |
| ନ, ଜାନେ | = ଜାଣିପାରୁ ନାହିଁ |
| ଚ | = ଏବଂ |
| ଶର୍ମ,ଏବ | = ମାନସିକ ଶାନ୍ତି ମଧ୍ୟ |
| ନ, ଲଭେ | = ପାଉ ନାହିଁ । (ତେଣୁ) |
| ଦେବେଶ | = ହେ ଦେବେଶ ! |
| ଜଗନ୍ନିବାସ | = ହେ ଜଗନ୍ନିବାସ ! |
| ପ୍ରସୀଦ | = ଆପଣ ପ୍ରସନ୍ନ ହୁଅନ୍ତୁ । |

ଉଭୟ ସେନାଙ୍କ ଯୋଦ୍ଧାମାନେ ବିରାଟ ସ୍ୱରୂପର ମୁଖରେ ପ୍ରବେଶ କରି ନଷ୍ଟ ହେଉଥିବା ଦେଖିବା ।

ଅମୀ ଚ ତ୍ୱାଂ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ
ସର୍ବେ ସହୈବାବନିପାଳସଙ୍ଘୈଃ ।
ଭୀଷ୍ମୋ ଦ୍ରୋଣଃ ସୂତପୁତ୍ରସ୍ତଥାସୌ
ସହାସ୍ମଦୀୟୈରପି ଯୋଧମୁଖ୍ୟୈଃ ॥ ୨୬ ॥

ବକ୍ତ୍ରାଣି ତେ ତ୍ୱରମାଣା ବିଶନ୍ତି
ଦଂଷ୍ଟ୍ରାକରାଳାନି ଭୟାନକାନି ।
କେଚିଦ୍ୱିଲଗ୍ନା ଦଶନାନ୍ତରେଷୁ
ସନ୍ଦୃଶ୍ୟନ୍ତେ ଚୂର୍ଣ୍ଣିତୈରୁତ୍ତମାଙ୍ଗୈଃ ॥ ୨୭ ॥

ଅମୀ, ଚ, ତ୍ୱାମ୍, ଧୃତରାଷ୍ଟ୍ରସ୍ୟ, ପୁତ୍ରାଃ,
ସର୍ବେ, ସହ, ଏବ, ଅବନିପାଳସଂଘୈଃ,
ଭୀଷ୍ମଃ, ଦ୍ରୋଣଃ, ସୂତପୁତ୍ରଃ, ତଥା, ଅସୌ
ସହ, ଅସ୍ମଦୀୟୈଃ, ଅପି, ଯୋଧମୁଖ୍ୟୈଃ ।।୨୬।।

ବକ୍ତ୍ରାଣି, ତେ, ତ୍ୱରମାଣାଃ, ବିଶନ୍ତି
ଦଂଷ୍ଟ୍ରାକରାଳାନି, ଭୟାନକାନି,
କେଚିତ୍, ବିଲଗ୍ନାଃ, ଦଶନାନ୍ତରେଷୁ,
ସଂଦୃଶ୍ୟନ୍ତେ, ଚୂର୍ଣ୍ଣିତୈଃ, ଉତ୍ତମାଙ୍ଗୈଃ ।।୨୭।।

## ଏବଂ ମୁଁ ଦେଖୁଛି କି—

| | | | |
|---|---|---|---|
| ଅମୀ | = ସେହି | ତ୍ୱାମ୍ | = ଆପଣଙ୍କ ମଧ୍ୟରେ |
| ସର୍ବେ, ଏବ | = ସମସ୍ତ | (ପ୍ରବିଶନ୍ତି) | = ପ୍ରବେଶ କରୁଛନ୍ତି |
| ଧୃତରାଷ୍ଟ୍ରସ୍ୟ | = ଧୃତରାଷ୍ଟ୍ରଙ୍କର | ଚ | = ଓ |
| ପୁତ୍ରାଃ | = ପୁତ୍ରମାନେ | ଭୀଷ୍ମଃ | = ପିତାମହ ଭୀଷ୍ମ, |
| ଅବନିପାଳସଙ୍ଘୈଃ | = ରାଜାମାନଙ୍କ ସମୁଦାୟଙ୍କ | ଦ୍ରୋଣଃ | = ଦ୍ରୋଣାଚାର୍ଯ୍ୟ |
| | | ତଥା | = ତଥା |
| ସହ | = ସହିତ | ଅସୌ | = ସେହି |

| | |
|---|---|
| ସୂତପୁତ୍ରଃ | = କର୍ଣ୍ଣ |
| ଅପି | = ମଧ୍ୟ |
| ଅସ୍ମଦୀୟୈଃ | = ଆମ ପକ୍ଷର |
| ଯୋଧମୁଖ୍ୟୈଃ | = ପ୍ରଧାନ ଯୋଦ୍ଧାମାନଙ୍କ |
| ସହ | = ସହିତ (ସମସ୍ତେ) |
| ତେ | = ଆପଣଙ୍କ |
| ଦଂଷ୍ଟ୍ରାକରାଳାନି | = ତୀକ୍ଷ୍ଣଦନ୍ତ ହେତୁ ବିକରାଳ (ତଥା) |
| ଭୟାନକାନି | = ଭୟଙ୍କର |
| ବକ୍ତ୍ରାଣି | = ମୁଖମାନଙ୍କରେ |
| ତ୍ୱରମାଣାଃ | = ପ୍ରଖର ବେଗରେ ଧାଇଁ ଧାଇଁ ଆସି |
| ବିଶନ୍ତି | = ପ୍ରବେଶ କରୁଛନ୍ତି (ଓ) |
| କେଚିତ୍ | = କେହି କେହି |
| ଚୂର୍ଣ୍ଣିତୈଃ | = ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଥିବା |
| ଉତ୍ତମାଙ୍ଗୈଃ | = ଶିରମାନଙ୍କ ସହିତ |
| ଦଶନାନ୍ତରେଷୁ | = (ଆପଣଙ୍କ) ଦାନ୍ତସନ୍ଧି-ମାନଙ୍କରେ |
| ବିଲଗ୍ନାଃ | = ଲାଗି ରହିଥିବା |
| ସଂଦୃଶ୍ୟନ୍ତେ | = ଦେଖାଯାଉଛନ୍ତି । |

ନଦୀ ଏବଂ ସମୁଦ୍ରର ଦୃଷ୍ଟାନ୍ତ ଦ୍ୱାରା ପ୍ରବେଶ କରିବା ଦୃଶ୍ୟର ବର୍ଣ୍ଣନ ।

**ଯଥା ନଦୀନାଂ ବହବୋଽମ୍ବୁବେଗାଃ**
**ସମୁଦ୍ରମେବାଭିମୁଖା ଦ୍ରବନ୍ତି ।**
**ତଥା ତବାମୀ ନରଲୋକବୀରା**
**ବିଶନ୍ତି ବକ୍ତ୍ରାଣ୍ୟଭିବିଜ୍ୱଳନ୍ତି ॥ ୨୮ ॥**

ଯଥା, ନଦୀନାମ୍, ବହବଃ, ଅମ୍ବୁବେଗାଃ,
ସମୁଦ୍ରମ୍, ଏବ, ଅଭିମୁଖାଃ, ଦ୍ରବନ୍ତି,
ତଥା, ତବ, ଅମୀ, ନରଲୋକବୀରାଃ,
ବିଶନ୍ତି, ବକ୍ତ୍ରାଣି, ଅଭିବିଜ୍ୱଳନ୍ତି ।।୨୮।।

**ଏବଂ ହେ ବିଶ୍ୱମୂର୍ତ୍ତେ ! —**

| | | | |
|---|---|---|---|
| ଯଥା | = ଯେପରି | ତଥା | = ସେହିପରି |
| ନଦୀନାମ୍ | = ନଦୀମାନଙ୍କର | ଅମୀ | = ସେହି |
| ବହବଃ | = ବହୁ | ନରଲୋକବୀରାଃ | = ନରଲୋକର ବୀରମାନେ (ବି) |
| ଅମ୍ବୁବେଗାଃ | = ଜଳପ୍ରବାହଗୁଡ଼ିକ | ତବ | = ଆପଣଙ୍କର |
| ସମୁଦ୍ରମ୍,ଏବ, ଅଭିମୁଖାଃ | = ସ୍ୱଭାବତଃ ସମୁଦ୍ର ଅଭିମୁଖରେ ହିଁ | ଅଭିବିଜ୍ୱଳନ୍ତି | = ପ୍ରଜ୍ୱଳିତ ହେଉଥିବା |
| ଦ୍ରବନ୍ତି | = ଧାବମାନ ହୁଅନ୍ତି ଅର୍ଥାତ୍ ସମୁଦ୍ରରେ ପ୍ରବେଶ କରନ୍ତି | ବକ୍ତ୍ରାଣି | = ମୁଖମାନଙ୍କରେ |
| | | ବିଶନ୍ତି | = ପ୍ରବେଶ କରୁଛନ୍ତି । |

ପ୍ରଦୀପ ଏବଂ ପତଙ୍ଗର ଦୃଷ୍ଟାନ୍ତଦ୍ୱାରା ବିନାଶ ହେଉଥିବା ଦୃଶ୍ୟର କଥନ ।

**ଯଥା ପ୍ରଦୀପ୍ତଂ ଜ୍ୱଳନଂ ପତଙ୍ଗା**
**ବିଶନ୍ତି ନାଶାୟ ସମୃଦ୍ଧବେଗାଃ ।**
**ତଥୈବ ନାଶାୟ ବିଶନ୍ତି ଲୋକା-**
**ସ୍ତବାପି ବକ୍ତ୍ରାଣି ସମୃଦ୍ଧବେଗାଃ ॥ ୨୯ ॥**

ଯଥା, ପ୍ରଦୀପ୍ତମ୍, ଜ୍ୱଳନମ୍, ପତଙ୍ଗାଃ
ବିଶନ୍ତି, ନାଶାୟ, ସମୃଦ୍ଧବେଗାଃ,
ତଥା, ଏବ, ନାଶାୟ, ବିଶନ୍ତି, ଲୋକାଃ
ତବ, ଅପି, ବକ୍ତ୍ରାଣି, ସମୃଦ୍ଧବେଗାଃ ।।୨୯ ।।

**ଅଥବା—**

| | | | |
|---|---|---|---|
| ଯଥା | = ଯେପରି | ପ୍ରଦୀପ୍ତମ୍ | = ପ୍ରଜ୍ୱଳିତ |
| ପତଙ୍ଗାଃ | = ପତଙ୍ଗମାନେ | ଜ୍ୱଳନମ୍ | = ଅଗ୍ନିରେ |
| ନାଶାୟ | = ମୋହବଶ ହୋଇ ନଷ୍ଟ ହେବାପାଇଁ | ବିଶନ୍ତି | = ପ୍ରବେଶ କରନ୍ତି, |
| | | ତଥା | = ସେହିପରି |
| ସମୃଦ୍ଧବେଗାଃ | = ଅତ୍ୟନ୍ତ ବେଗରେ ଉଡ଼ିଆସି | ଏବ | = ହିଁ |
| | | ଲୋକାଃ | = ଏହି ଲୋକମାନେ |

| | | | |
|---|---|---|---|
| ଅପି | = ମଧ୍ୟ (ମୋହବଶତଃ) | | ଦଉଡ଼ି ଦଉଡ଼ି |
| ନାଶାୟ | = ନିଜର ବିନାଶ ନିମନ୍ତେ | ତବ | = ଆପଣଙ୍କର |
| ସମୃଦ୍ଧବେଗାଃ | = ଅତ୍ୟନ୍ତ ବେଗରେ | ବକ୍ତ୍ରାଣି | = ମୁଖମାନଙ୍କରେ |
| | | ବିଶନ୍ତି | = ପ୍ରବେଶ କରୁଛନ୍ତି । |

ସମସ୍ତ ଲୋକଙ୍କୁ ଗ୍ରାସ କରୁଥିବା ତେଜୋମୟ ଭୟାନକ ବିଶ୍ୱରୂପର ଦର୍ଶନ ।

**ଲେଲିହ୍ୟସେ ଗ୍ରସମାନଃ ସମନ୍ତା-**
**ଲ୍ଲୋକାନ୍ ସମଗ୍ରାନ୍ ବଦନୈର୍ଜ୍ୱଲଦ୍ଭିଃ ।**
**ତେଜୋଭିରାପୂର୍ଯ୍ୟ ଜଗତ୍ ସମଗ୍ରଂ**
**ଭାସସ୍ତବୋଗ୍ରାଃ ପ୍ରତପନ୍ତି ବିଷ୍ଣୋ ॥ ୩୦ ॥**

ଲେଲିହ୍ୟସେ, ଗ୍ରସମାନଃ, ସମନ୍ତାତ୍,
ଲୋକାନ୍, ସମଗ୍ରାନ୍, ବଦନୈଃ, ଜ୍ୱଲଦ୍‌ଭିଃ,
ତେଜୋଭିଃ, ଆପୂର୍ଯ୍ୟ, ଜଗତ୍, ସମଗ୍ରମ୍,
ଭାସଃ, ତବ, ଉଗ୍ରାଃ, ପ୍ରତପନ୍ତି,ବିଷ୍ଣୋ । ।୩୦ । ।

**ଏବଂ ଆପଣ ଏହି—**

| | | | |
|---|---|---|---|
| ସମଗ୍ରାନ୍ | = ସମ୍ପୂର୍ଣ୍ଣ | ତବ | = ଆପଣଙ୍କର |
| ଲୋକାନ୍ | = ଲୋକଙ୍କୁ | ଉଗ୍ରାଃ | = ଉଗ୍ର |
| ଜ୍ୱଲଦ୍‌ଭିଃ | = ଜ୍ୱଳନ୍ତ | ଭାସଃ | = ଜ୍ୟୋତି |
| ବଦନୈଃ | = ମୁଖମାନଙ୍କ ଦ୍ୱାରା | ସମଗ୍ରମ୍ | = ସମଗ୍ର |
| ଗ୍ରସମାନଃ | = କାଳସଦୃଶ କବଳିତ କରି | ଜଗତ୍ | = ଜଗତକୁ |
| ସମନ୍ତାତ୍ | = ସକଳ ଦିଗରୁ | ତେଜୋଭିଃ | = ନିଜର ତେଜଦ୍ୱାରା |
| ଲେଲିହ୍ୟସେ | = ବାରମ୍ବାର ଲେହନ କରୁଛନ୍ତି (ଚାଟୁଛନ୍ତି) । | ଆପୂର୍ଯ୍ୟ | = ପରିପୂର୍ଣ୍ଣ କରି |
| ବିଷ୍ଣୋ | = (ଏବଂ) ହେ ବିଷ୍ଣୁ ! | ପ୍ରତପନ୍ତି | = (ସମସ୍ତଙ୍କୁ) ସନ୍ତପ୍ତ କରୁଛି । |

ଉଗ୍ରରୂପଧାରୀ ଭଗବାନଙ୍କୁ ତତ୍ତ୍ୱତଃ ଜାଣିବା ପାଇଁ ଅର୍ଜୁନଙ୍କ ପ୍ରଶ୍ନ ।

ଆଖ୍ୟାହି ମେ କୋ ଭବାନୁଗ୍ରରୂପୋ
ନମୋଽସ୍ତୁ ତେ ଦେବବର ପ୍ରସୀଦ ।
ବିଜ୍ଞାତୁମିଚ୍ଛାମି ଭବନ୍ତମାଦ୍ୟଂ
ନ ହି ପ୍ରଜାନାମି ତବ ପ୍ରବୃତ୍ତିମ୍ ॥ ୩୧ ॥

ଆଖ୍ୟାହି, ମେ, କଃ, ଭବାନ୍, ଉଗ୍ରରୂପଃ,
ନମଃ, ଅସ୍ତୁ, ତେ, ଦେବବର, ପ୍ରସୀଦ,
ବିଜ୍ଞାତୁମ୍, ଇଚ୍ଛାମି, ଭବନ୍ତମ୍, ଆଦ୍ୟମ୍,
ନ, ହି, ପ୍ରଜାନାମି, ତବ, ପ୍ରବୃତ୍ତିମ୍ ।।୩୧ ।।

**ହେ ଭଗବାନ! କୃପାକରି ଆପଣ—**

| | | | |
|---|---|---|---|
| ମେ | = ମୋତେ | ଆଦ୍ୟମ୍ | = ଆଦିପୁରୁଷ |
| ଆଖ୍ୟାହି | = କହନ୍ତୁ ଯେ | ଭବନ୍ତମ୍ | = ଆପଣଙ୍କୁ (ମୁଁ) |
| ଉଗ୍ରରୂପଃ | = ଉଗ୍ରରୂପଧାରୀ | ବିଜ୍ଞାତୁମ୍ | = ବିଶେଷରୂପେ ଜାଣିବାକୁ |
| ଭବାନ୍ | = ଆପଣ | | |
| କଃ | = କିଏ ? | ଇଚ୍ଛାମି | = ଚାହୁଁଛି ; |
| ଦେବବର | = ହେ ଦେବଶ୍ରେଷ୍ଠ ! | ହି | = କାରଣ (ମୁଁ) |
| ତେ | = ଆପଣଙ୍କୁ | | |
| ନମଃ, ଅସ୍ତୁ | = ନମସ୍କାର । | ତବ | = ଆପଣଙ୍କ |
| ପ୍ରସୀଦ | = ଆପଣ ପ୍ରସନ୍ନ ହୁଅନ୍ତୁ । | ପ୍ରବୃତ୍ତିମ୍ | = ପ୍ରବୃତ୍ତିକୁ |
| | | ନ, ପ୍ରଜାନାମି | = ଜାଣିପାରୁ ନାହିଁ । |

*ଶ୍ରୀଭଗବାନ ଉବାଚ*

ଲୋକସମୂହକୁ ନଷ୍ଟ କରିବା ପାଇଁ ପ୍ରବୃତ୍ତ, 'ମୁଁ ମହାକାଳ ଅଟେ' ଇତ୍ୟାଦି ବାକ୍ୟଦ୍ୱାରା ଭଗବାନଙ୍କ ଉତ୍ତର ।

କାଲୋଽସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ
ଲୋକାନ୍ ସମାହର୍ତୁମିହ ପ୍ରବୃତ୍ତଃ ।
ଋତେଽପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ
ଯେଽବସ୍ଥିତାଃ ପ୍ରତ୍ୟନୀକେଷୁ ଯୋଧାଃ ॥ ୩୨ ॥

କାଳଃ, ଅସ୍ମି, ଲୋକକ୍ଷୟକୃତ୍, ପ୍ରବୃଦ୍ଧଃ,
ଲୋକାନ୍, ସମାହର୍ତ୍ତୁମ୍, ଇହ, ପ୍ରବୃତ୍ତଃ,
ଋତେ, ଅପି, ତ୍ୱାମ୍, ନ ଭବିଷ୍ୟନ୍ତି, ସର୍ବେ,
ଯେ, ଅବସ୍ଥିତାଃ, ପ୍ରତ୍ୟନୀକେଷୁ, ଯୋଧାଃ ।।୩୨ ।।

**ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଦେଇ ଭଗବାନ କହିଲେ,**
**ହେ ଅର୍ଜୁନ ! ମୁଁ —**

| | |
|---|---|
| ଲୋକକ୍ଷୟକୃତ୍ | = (ମୁଁ) ଲୋକମାନଙ୍କର ବିନାଶକାରୀ |
| ପ୍ରବୃଦ୍ଧଃ, କାଳଃ | = ପ୍ରବୃଦ୍ଧ ମହାକାଳ |
| ଅସ୍ମି | = ଅଟେ । |
| ଇହ | = ଏହି ସମୟରେ |
| ଲୋକାନ୍ | = ଲୋକମାନଙ୍କୁ |
| ସମାହର୍ତ୍ତୁମ୍ | = ବିନାଶ କରିବା ନିମନ୍ତେ |
| ପ୍ରବୃତ୍ତଃ | = ପ୍ରବୃତ୍ତ ହୋଇଛି । (ତେଣୁ) |
| ଯେ | = ଯେଉଁମାନେ |
| ପ୍ରତ୍ୟନୀକେଷୁ | = ଶତ୍ରୁପକ୍ଷର ସେନାରେ |
| ଅବସ୍ଥିତାଃ | = ସ୍ଥିତ |
| ଯୋଧାଃ | = ଯୋଦ୍ଧାମାନେ ଅଛନ୍ତି, |
| (ତେ) | = ସେହି |
| ସର୍ବେ | = ସମସ୍ତେ, |
| ତ୍ୱାମ୍, ଋତେ, ଅପି | = ତୁମେ ଯୁଦ୍ଧ ନ କଲେ ମଧ୍ୟ, |
| ନ, ଭବିଷ୍ୟନ୍ତି | = ରହିବେ ନାହିଁ ଅର୍ଥାତ୍ ସମସ୍ତଙ୍କର ବିନାଶ ହେବ । |

ନିମିତ୍ତମାତ୍ର ହୋଇ ଯୁଦ୍ଧ କରିବା ପାଇଁ ଅର୍ଜୁନଙ୍କୁ ଭଗବାନଙ୍କ ଆଜ୍ଞା ।

ତସ୍ମାତ୍ତ୍ୱମୁତ୍ତିଷ୍ଠ ଯଶୋ ଲଭସ୍ୱ
ଜିତ୍ୱା ଶତ୍ରୂନ୍ ଭୁଙ୍‌କ୍ଷ୍ୱ ରାଜ୍ୟଂ ସମୃଦ୍ଧମ୍ ।
ମୟୈବୈତେ ନିହତାଃ ପୂର୍ବମେବ
ନିମିତ୍ତମାତ୍ରଂ ଭବ ସବ୍ୟସାଚିନ୍ ॥ ୩୩ ॥

ତସ୍ମାତ୍, ତ୍ୱମ୍, ଉତ୍ତିଷ୍ଠ, ଯଶଃ, ଲଭସ୍ୱ,
ଜିତ୍ୱା, ଶତ୍ରୂନ୍, ଭୁଙ୍କ୍ଷ୍ୱ, ରାଜ୍ୟମ୍, ସମୃଦ୍ଧମ୍,
ମୟା, ଏବ, ଏତେ, ନିହତାଃ, ପୂର୍ବମ୍, ଏବ,
ନିମିତ୍ତମାତ୍ରମ୍, ଭବ, ସବ୍ୟସାଚିନ୍ । ।୩୩ । ।

| | | | |
|---|---|---|---|
| ତସ୍ମାତ୍ | = ଅତଏବ | ଏତେ | = ଏହି (ସବୁ ଶୂରବୀର) |
| ତ୍ୱମ୍ | = ତୁମେ | ପୂର୍ବମ୍ , ଏବ | = ପୂର୍ବରୁ ହିଁ |
| ଉତ୍ତିଷ୍ଠ | = ଉଠ ! | ମୟା | = ମୋ ଦ୍ୱାରା |
| ଯଶଃ | = ଯଶ | ନିହତାଃ | = ନିହତ ହୋଇ ସାରିଛନ୍ତି । |
| ଲଭସ୍ୱ | = ଲାଭ କର (ଓ) | ସବ୍ୟସାଚିନ୍ | = ହେ ସବ୍ୟସାଚୀ !* |
| ଶତ୍ରୂନ୍ | = ଶତ୍ରୁମାନଙ୍କୁ | ନିମିତ୍ତମାତ୍ରମ୍, ଏବ | = ତୁମେ କେବଳ ନିମିତ୍ତମାତ୍ର |
| ଜିତ୍ୱା | = ଜୟ କରି | ଭବ | = ହୋଇଯାଅ । |
| ସମୃଦ୍ଧମ୍ | = ଧନଧାନ୍ୟ ସମ୍ପନ୍ନ | | |
| ରାଜ୍ୟମ୍ | = ରାଜ୍ୟକୁ | | |
| ଭୁଙ୍କ୍ଷ୍ୱ | = ଭୋଗ କର । | | |

ଦ୍ରୋଣଂ ଚ ଭୀଷ୍ମଂ ଚ ଜୟଦ୍ରଥଂ ଚ
କର୍ଣ୍ଣଂ ତଥାନ୍ୟାନପି ଯୋଧବୀରାନ୍ ।
ମୟା ହତାଂସ୍ତ୍ୱଂ ଜହି ମା ବ୍ୟଥିଷ୍ଠା
ଯୁଧ୍ୟସ୍ୱ ଜେତାସି ରଣେ ସପତ୍ନାନ୍ ॥ ୩୪ ॥

ଦ୍ରୋଣମ୍, ଚ, ଭୀଷ୍ମମ୍, ଚ, ଜୟଦ୍ରଥମ୍, ଚ,
କର୍ଣ୍ଣମ୍, ତଥା, ଅନ୍ୟାନ୍, ଅପି, ଯୋଧବୀରାନ୍,
ମୟା, ହତାନ୍, ତ୍ୱମ୍, ଜହି, ମା, ବ୍ୟଥିଷ୍ଠାଃ,
ଯୁଧ୍ୟସ୍ୱ, ଜେତାସି, ରଣେ, ସପତ୍ନାନ୍ । ।୩୪ । ।

* ବାମ ହାତରେ ମଧ୍ୟ ବାଣ ଚଳାଇ ପାରୁଥିବା ଅଭ୍ୟାସ ଥିବାହେତୁ ଅର୍ଜ୍ଜୁନଙ୍କ ନାମ 'ସବ୍ୟସାଚୀ' ହୋଇଛି ।

**ତଥା ଏହି—**

| | | | |
|---|---|---|---|
| ଦ୍ରୋଣମ୍ | = ଦ୍ରୋଣାଚାର୍ଯ୍ୟ | | ମଧ୍ୟ |
| ଚ | = ଓ | ତ୍ୱମ୍ | = ତୁମେ |
| ଭୀଷ୍ମମ୍ | = ଭୀଷ୍ମ ପିତାମହ | ଜହି | = ମାର । |
| ଚ | = ତଥା | | |
| ଜୟଦ୍ରଥମ୍ | = ଜୟଦ୍ରଥ | ମା, ବ୍ୟଥିଷ୍ଠାଃ | = ଭୟ କରନାହିଁ । |
| ଚ | = ଏବଂ | | (ନିଃସନ୍ଦେହରେ |
| କର୍ଣ୍ଣମ୍ | = କର୍ଣ୍ଣ | | ତୁମେ) |
| ତଥା | = ତଥା | ରଣେ | = ଯୁଦ୍ଧରେ |
| ମୟା | = ମୋ ଦ୍ୱାରା | ସପତ୍ନାନ୍ | = ଶତ୍ରୁମାନଙ୍କୁ |
| ହତାନ୍ | = ନିହତ ହୋଇଥିବା | ଜେତାସି | = ଜିତିବ । |
| ଅନ୍ୟାନ୍, ଅପି, | = ଅନ୍ୟାନ୍ୟ ଶୂରବୀର | ଯୁଧ୍ୟସ୍ୱ | = (ତେଣୁ) ଯୁଦ୍ଧ |
| ଯୋଧବୀରାନ୍ | ଯୋଦ୍ଧାମାନଙ୍କୁ | | କର । |

*ସଞ୍ଜୟ ଉବାଚ*

ଭଗବାନଙ୍କ ବାକ୍ୟ ଶୁଣି କରି ଅର୍ଜୁନଙ୍କ ଭୟଭୀତ ଏବଂ ଗଦ୍‌ଗଦ ଭାବ ହେଲା ।

**ଏତଚ୍ଛ୍ରୁତ୍ୱା ବଚନଂ କେଶବସ୍ୟ**
**କୃତାଞ୍ଜଳିର୍ବେପମାନଃ କିରୀଟୀ ।**
**ନମସ୍କୃତ୍ୱା ଭୂୟ ଏବାହ କୃଷ୍ଣଂ**
**ସଗଦ୍‌ଗଦଂ ଭୀତଭୀତଃ ପ୍ରଣମ୍ୟ ॥ ୩୫ ॥**

ଏତତ୍, ଶ୍ରୁତ୍ୱା, ବଚନମ୍, କେଶବସ୍ୟ,
କୃତାଞ୍ଜଳିଃ, ବେପମାନଃ, କିରୀଟୀ,
ନମସ୍କୃତ୍ୱା, ଭୂୟଃ, ଏବ, ଆହ, କୃଷ୍ଣମ୍,
ସଗଦ୍‌ଗଦମ୍, ଭୀତଭୀତଃ, ପ୍ରଣମ୍ୟ । ।୩୫ । ।

**ଏହାପରେ ସଞ୍ଜୟ କହିଲେ, ହେ ରାଜନ୍ !—**

| | | | |
|---|---|---|---|
| କେଶବସ୍ୟ | = ଭଗବାନ୍ କେଶବଙ୍କର | ନମସ୍କୃତ୍ୱା | = ନମସ୍କାର କରି, |
| ଏତତ୍ | = ଏହି | ଭୀତଭୀତଃ | = ଅତ୍ୟନ୍ତ ଭୟଭୀତ ହୋଇଥିଲେ ହିଁ , |
| ବଚନମ୍ | = କଥାକୁ | ଭୂୟଃ, ଏବ | = ପୁଣି ଥରେ |
| ଶ୍ରୁତ୍ୱା | = ଶୁଣି | ପ୍ରଣମ୍ୟ | = ପ୍ରଣାମ କରି |
| କିରୀଟୀ | = ଅର୍ଜୁନ | କୃଷମ୍ | = ଭଗବାନ୍ ଶ୍ରୀକୃଷ୍ଣଙ୍କୁ |
| କୃତାଞ୍ଜଳିଃ | = ଯୋଡ଼ହସ୍ତ ପୂର୍ବକ | ସଗଦ୍‌ଗଦମ୍ | = ଗଦ୍‌ଗଦ କଣ୍ଠରେ |
| ବେପମାନଃ | = ଥରି ଥରି, | ଆହ | = କହିଲେ -- |

*ଅର୍ଜୁନ ଉବାଚ*

ଭଗବାନଙ୍କ ମହତ୍ତ୍ୱର ବର୍ଣ୍ଣନ ।

ସ୍ଥାନେ ହୃଷୀକେଶ ତବ ପ୍ରକୀର୍ତ୍ତ୍ୟା
ଜଗତ୍ ପ୍ରହୃଷ୍ୟତ୍ୟନୁରଜ୍ୟତେ ଚ ।
ରକ୍ଷାଂସି ଭୀତାନି ଦିଶୋ ଦ୍ରବନ୍ତି
ସର୍ବେ ନମସ୍ୟନ୍ତି ଚ ସିଦ୍ଧସଙ୍ଘାଃ ॥ ୩୬ ॥

ସ୍ଥାନେ, ହୃଷୀକେଶ, ତବ, ପ୍ରକୀର୍ତ୍ତ୍ୟା,
ଜଗତ୍, ପ୍ରହୃଷ୍ୟତି, ଅନୁରଜ୍ୟତେ, ଚ,
ରକ୍ଷାଂସି, ଭୀତାନି, ଦିଶଃ, ଦ୍ରବନ୍ତି,
ସର୍ବେ, ନମସ୍ୟନ୍ତି, ଚ, ସିଦ୍ଧସଂଘାଃ ।।୩୬।।

**ଅର୍ଜୁନ କହିଲେ—**

| | | | |
|---|---|---|---|
| ହୃଷୀକେଶ | = ହେ ଅନ୍ତର୍ଯ୍ୟାମୀ ! | ପ୍ରକୀର୍ତ୍ତ୍ୟା | = ନାମ-ଗୁଣ ଓ ପ୍ରଭାବ କୀର୍ତ୍ତନ କରିବାରୁ |
| ସ୍ଥାନେ | = ଏହା ଉଚିତ୍ ଯେ, | | |
| ତବ | = ଆପଣଙ୍କର | | |

ଜଗତ୍ = ଜଗତ
ପ୍ରହୃଷ୍ୟତି = ଅତ୍ୟନ୍ତ ଆନନ୍ଦିତ ହେଉଛି
ଚ = ଏବଂ
ଅନୁରଜ୍ୟତେ = ଆପଣଙ୍କ ପ୍ରତି ଅନୁରକ୍ତ ହେଉଛି ।
ଭୀତାନି = ଭୟଭୀତ
ରକ୍ଷାଂସି = ରାକ୍ଷସମାନେ
ଦିଶଃ = ବିଭିନ୍ନ ଦିଗକୁ
ଦ୍ରବନ୍ତି = ଧାଇଁ ପଳାଉଛନ୍ତି
ଚ = ଓ
ସର୍ବେ = ସମସ୍ତ
ସିଦ୍ଧସଂଘାଃ = ସିଦ୍ଧମାନଙ୍କ ସମୁଦାୟ
ନମସ୍ୟନ୍ତି = ନମସ୍କାର କରୁଛନ୍ତି ।

**କସ୍ମାଚ୍ଚ ତେ ନ ନମେରନ୍ମହାତ୍ମନ୍**
**ଗରୀୟସେ ବ୍ରହ୍ମଣୋଽପ୍ୟାଦିକର୍ତ୍ରେ ।**
**ଅନନ୍ତ ଦେବେଶ ଜଗନ୍ନିବାସ**
**ତ୍ୱମକ୍ଷରଂ ସଦସତ୍ତତ୍ପରଂ ଯତ୍ ॥ ୩୭ ॥**

କସ୍ମାତ୍, ଚ, ତେ, ନ, ନମେରନ୍, ମହାତ୍ମନ୍,
ଗରୀୟସେ, ବ୍ରହ୍ମଣଃ, ଅପି, ଆଦିକର୍ତ୍ରେ,
ଅନନ୍ତ, ଦେବେଶ, ଜଗନ୍ନିବାସ,
ତ୍ୱମ୍, ଅକ୍ଷରମ୍, ସତ୍, ଅସତ୍, ତତ୍ପରମ୍, ଯତ୍ ।।୩୭ ।।

ମହାତ୍ମନ୍ = ହେ ମହାତ୍ମନ୍ !
ବ୍ରହ୍ମଣଃ = ବ୍ରହ୍ମାଙ୍କର
ଅପି = ମଧ୍ୟ
ଆଦିକର୍ତ୍ରେ = ଆଦିକର୍ତ୍ତା
ଚ = ଓ
ଗରୀୟସେ = ସମସ୍ତଙ୍କଠାରୁ ଶ୍ରେଷ୍ଠ
ତେ = ଆପଣଙ୍କୁ
କସ୍ମାତ୍ = କାହିଁକି
ନ, ନମେରନ୍ = ନମସ୍କାର ନ କରିବେ ? (କାରଣ),
ଅନନ୍ତ = ହେ ଅନନ୍ତ !
ଦେବେଶ = ହେ ଦେବେଶ !

| | | | |
|---|---|---|---|
| ଜଗନ୍ନିବାସ | = ହେ ଜଗନ୍ନିବାସ ! | ଅକ୍ଷରମ୍ | = ଅକ୍ଷର ଅର୍ଥାତ୍ ସଚ୍ଚିଦାନନ୍ଦଘନ ବ୍ରହ୍ମ, |
| ଯତ୍ | = ଯେଉଁ | (ତତ୍) ତ୍ୱମ୍ | = (ସେ) ମଧ୍ୟ ଆପଣ ହିଁ ଅଟନ୍ତି । |
| ସତ୍ | = ସତ୍, | | |
| ଅସତ୍ | = ଅସତ୍ (ଓ) | | |
| ତତ୍ପରମ୍ | = ତା'ଠାରୁ ଊର୍ଦ୍ଧ୍ୱରେ ସ୍ଥିତ | | |

ଅନନ୍ତରୂପ ପରମେଶ୍ୱରଙ୍କୁ ସ୍ତୁତି ଏବଂ ବାରମ୍ବାର ନମସ୍କାର ।

ତ୍ୱମାଦିଦେବଃ ପୁରୁଷଃ ପୁରାଣଃ-
ସ୍ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।
ବେତ୍ତାସି ବେଦ୍ୟଂ ଚ ପରଂ ଚ ଧାମ
ତ୍ୱୟା ତତଂ ବିଶ୍ୱମନନ୍ତରୂପ ॥ ୩୮ ॥

ତ୍ୱମ୍, ଆଦିଦେବଃ, ପୁରୁଷଃ, ପୁରାଣଃ,
ତ୍ୱମ୍, ଅସ୍ୟ, ବିଶ୍ୱସ୍ୟ, ପରମ୍, ନିଧାନମ୍,
ବେତ୍ତା, ଅସି, ବେଦ୍ୟମ୍, ଚ, ପରମ୍, ଚ, ଧାମ,
ତ୍ୱୟା, ତତମ୍, ବିଶ୍ୱମ୍, ଅନନ୍ତରୂପ । ।୩୮ । ।

**ହେ ପ୍ରଭୋ !—**

| | | | |
|---|---|---|---|
| ତ୍ୱମ୍ | = ଆପଣ | ନିଧାନମ୍ | = ଆଶ୍ରୟ |
| ଆଦିଦେବଃ | = ଆଦିଦେବ (ଓ) | ଚ | = ଓ |
| ପୁରାଣଃ | = ସନାତନ | ବେତ୍ତା | = ଜ୍ଞାତା (ଜାଣିଥିବା ଲୋକ), |
| ପୁରୁଷଃ | = ପୁରୁଷ ଅଟନ୍ତି, | ବେଦ୍ୟମ୍ | = ଜ୍ଞେୟ (ଜାଣିବାର ଯୋଗ୍ୟ) |
| ତ୍ୱମ୍ | = ଆପଣ | ଚ | = ତଥା |
| ଅସ୍ୟ | = ଏହି | ପରମ୍ | = ପରମ |
| ବିଶ୍ୱସ୍ୟ | = ଜଗତର | | |
| ପରମ୍ | = ପରମ | | |

| | | | |
|---|---|---|---|
| ଧାମ | = ଧାମ | ବିଶ୍ୱମ୍ | = ଜଗତ |
| ଅସି | = ଅଟନ୍ତି । | ତତମ୍ | = ବ୍ୟାପ୍ତ ଅର୍ଥାତ୍ ପରିପୂର୍ଣ୍ଣ ହୋଇଛି । |
| ଅନନ୍ତରୂପ | = ହେ ଅନନ୍ତରୂପ ! | | |
| ତ୍ୱୟା | = ଆପଣଙ୍କ ଦ୍ୱାରା (ଏହି ସମସ୍ତ) | | |

**ବାୟୁର୍ଯମୋଽଗ୍ନିର୍ବରୁଣଃ ଶଶାଙ୍କଃ**
**ପ୍ରଜାପତିସ୍ତ୍ୱଂ ପ୍ରପିତାମହଶ୍ଚ ।**
**ନମୋ ନମସ୍ତେଽସ୍ତୁ ସହସ୍ରକୃତ୍ୱଃ**
**ପୁନଶ୍ଚ ଭୂୟୋଽପି ନମୋ ନମସ୍ତେ ॥ ୩୯ ॥**

ବାୟୁଃ, ଯମଃ, ଅଗ୍ନିଃ, ବରୁଣଃ, ଶଶାଙ୍କଃ,
ପ୍ରଜାପତିଃ, ତ୍ୱମ୍, ପ୍ରପିତାମହଃ, ଚ,
ନମଃ, ନମଃ, ତେ, ଅସ୍ତୁ, ସହସ୍ରକୃତ୍ୱଃ,
ପୁନଃ, ଚ, ଭୂୟଃ, ଅପି, ନମଃ, ନମଃ, ତେ ।।୩୯ ।।

**ଏବଂ ହେ ହରେ !—**

| | | | |
|---|---|---|---|
| ତ୍ୱମ୍ | = ଆପଣ | ତେ | = ଆପଣଙ୍କୁ |
| ବାୟୁଃ | = ବାୟୁ, | ସହସ୍ରକୃତ୍ୱଃ | = ସହସ୍ରବାର |
| ଯମଃ | = ଯମରାଜ, | ନମଃ, ନମଃ, | = ନମସ୍କାର ! ନମସ୍କାର ! |
| ଅଗ୍ନିଃ | = ଅଗ୍ନି, | ଅସ୍ତୁ | ହେଉ ! ! |
| ବରୁଣଃ | = ବରୁଣ, | ତେ | = ଆପଣଙ୍କୁ |
| ଶଶାଙ୍କଃ | = ଚନ୍ଦ୍ର, | ଭୂୟଃ | = ଆହୁରି |
| ପ୍ରଜାପତିଃ | = ପ୍ରଜାମାନଙ୍କର ସ୍ୱାମୀ ବ୍ରହ୍ମା | ଅପି | = ବି |
| ଚ | = ଓ | ପୁନଃ,ଚ | = ବାରମ୍ବାର |
| ପ୍ରପିତାମହଃ | = ବ୍ରହ୍ମାଙ୍କର ବି ପିତା ଅଟନ୍ତି । | ନମଃ, ନମଃ | = ନମସ୍କାର ! ନମସ୍କାର ! ! |

ସବୁଦିଗରୁ ଭଗବାନଙ୍କୁ ନମସ୍କାର ।

ନମଃ ପୁରସ୍ତାଦଥ ପୃଷ୍ଠତସ୍ତେ
ନମୋଽସ୍ତୁ ତେ ସର୍ବତ ଏବ ସର୍ବ ।
ଅନନ୍ତବୀର୍ଯ୍ୟାମିତବିକ୍ରମସ୍ତ୍ୱଂ
ସର୍ବଂ ସମାପ୍ନୋଷି ତତୋଽସି ସର୍ବଃ ॥ ୪୦ ॥

ନମଃ, ପୁରସ୍ତାତ୍, ଅଥ, ପୃଷ୍ଠତଃ, ତେ,
ନମଃ, ଅସ୍ତୁ, ତେ, ସର୍ବତଃ, ଏବ, ସର୍ବ,
ଅନନ୍ତବୀର୍ଯ୍ୟ, ଅମିତବିକ୍ରମଃ, ତ୍ୱମ୍,
ସର୍ବମ୍, ସମାପ୍ନୋଷି, ତତଃ, ଅସି, ସର୍ବଃ ।।୪୦।।

ଏବଂ—

| | | | |
|---|---|---|---|
| ଅନନ୍ତବୀର୍ଯ୍ୟ | = ହେ ଅନନ୍ତ ସାମର୍ଥ୍ୟବାନ୍ ! | ଅସ୍ତୁ | = ହେଉ । (କାହିଁକି ନା) |
| ତେ | = ଆପଣଙ୍କୁ | ଅମିତବିକ୍ରମଃ | = ଅନନ୍ତ ପରାକ୍ରମଶାଳୀ |
| ପୁରସ୍ତାତ୍ | = ସମ୍ମୁଖଭାଗରୁ | | |
| ଅଥ | = ଓ | ତ୍ୱମ୍ | = ଆପଣ |
| ପୃଷ୍ଠତଃ | = ପଶ୍ଚାତ୍ ଭାଗରୁ | ସର୍ବମ୍ | = ସକଳ ସଂସାରକୁ |
| ନମଃ | = ନମସ୍କାର । | ସମାପ୍ନୋଷି | = ସମାବେଶିତ କରି ରଖିଛନ୍ତି; |
| ସର୍ବ | = ହେ ସର୍ବାତ୍ମନ୍ ! | | |
| ତେ | = ଆପଣଙ୍କୁ | | |
| ସର୍ବତଃ | = ସକଳ ଦିଗରୁ | ତତଃ | = ତେଣୁ |
| ଏବ | = ହିଁ | ସର୍ବଃ, ଅସି | = ଆପଣ ହିଁ ସବୁକିଛି । |
| ନମଃ | = ନମସ୍କାର | | |

ଅପରାଧ ପାଇଁ ଅର୍ଜୁନଙ୍କ କ୍ଷମାପ୍ରାର୍ଥନା ।

ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ
ହେ କୃଷ୍ଣ ହେ ଯାଦବ ହେ ସଖେତି ।
ଅଜାନତା ମହିମାନଂ ତବେଦଂ
ମୟା ପ୍ରମାଦାତ୍ ପ୍ରଣୟେନ ବାପି ॥ ୪୧ ॥

ଯଚ୍ଚାବହାସାର୍ଥମସତ୍‌କୃତୋଽସି
ବିହାରଶଯ୍ୟାସନଭୋଜନେଷୁ ।
ଏକୋଽଥବାପ୍ୟଚ୍ୟୁତ ତତ୍ସମକ୍ଷଂ
ତତ୍‌କ୍ଷାମୟେ ତ୍ୱାମହମପ୍ରମେୟମ୍ ॥ ୪୨ ॥

ସଖା, ଇତି, ମତ୍ୱା, ପ୍ରସଭମ୍, ଯତ୍, ଉକ୍ତମ୍,
ହେ କୃଷ୍ଣ, ହେ ଯାଦବ, ହେ ସଖେ, ଇତି,
ଅଜାନତା, ମହିମାନମ୍, ତବ, ଇଦମ୍,
ମୟା, ପ୍ରମାଦାତ୍, ପ୍ରଣୟେନ, ବା, ଅପି ।।୪୧ ।।

ଯତ୍, ଚ, ଅବହାସାର୍ଥମ୍, ଅସତ୍‌କୃତଃ, ଅସି,
ବିହାରଶଯ୍ୟାସନଭୋଜନେଷୁ,
ଏକଃ, ଅଥବା, ଅପି, ଅଚ୍ୟୁତ, ତତ୍‌ସମକ୍ଷମ୍,
ତତ୍, କ୍ଷାମୟେ, ତ୍ୱାମ୍, ଅହମ୍, ଅପ୍ରମେୟମ୍ ।।୪୨ ।।

**ହେ ପରମେଶ୍ୱର !—**

| | |
|---|---|
| ତବ | = ଆପଣଙ୍କର |
| ଇଦମ୍ | = ଏହି |
| ମହିମାନମ୍ | = ଅଚିନ୍ତ୍ୟ ପ୍ରଭାବକୁ |
| ଅଜାନତା | = ଜାଣିନଥିବାରୁ, |
| ସଖା, ଇତି | = ଆପଣ ମୋର ସଖା ବୋଲି |
| ମତ୍ୱା | = ମନେ କରି, |
| ପ୍ରଣୟେନ | = ପ୍ରେମ ବଶତଃ |
| ବା | = ଅଥବା |
| ପ୍ରମାଦାତ୍ | = ଭୁଲ ବଶତଃ |
| ଅପି | = ବି |
| ମୟା | = ମୁଁ |
| ହେ କୃଷ୍ଣ | = 'ହେ କୃଷ୍ଣ !' |
| ହେ ଯାଦବ | = 'ହେ ଯାଦବ !' |
| ହେ ସଖେ | = 'ହେ ସଖେ !', |
| ଇତି | = ଏପରି |
| ଯତ୍ | = ଯାହା କିଛି (ବିନା ବୁଝିବିଚାରି) |
| ପ୍ରସଭମ୍ | = ହଠାତ୍ |
| ଉକ୍ତମ୍ | = କହିଛି |

| | |
|---|---|
| ଚ | = ଏବଂ |
| ଅଚ୍ୟୁତ | = ହେ ଅଚ୍ୟୁତ ! (ଆପଣ) |
| ଯତ୍ | = ଯେଉଁ (ମୋ ଦ୍ୱାରା) |
| ଅବହାସାର୍ଥମ୍ | = ପରିହାସ ଅଭିପ୍ରାୟରେ |
| ବିହାରଶଯ୍ୟାସନ-ଭୋଜନେଷୁ | = ବିହାର, ଶଯ୍ୟା, ଆସନ ଓ ଭୋଜନାଦି କରିବା ବେଳେ |
| ଏକଃ | = ଏକାକୀ (ଥିବାବେଳେ) |
| ଅଥବା | = ଅଥବା |
| ତତ୍ସମକ୍ଷମ୍ | = (ସେହି) ସଖାମାନଙ୍କ ସମକ୍ଷରେ |
| ଅପି | = ମଧ୍ୟ |
| ଅସତ୍କୃତଃ, ଅସି | = ଅପମାନିତ ହୋଇଛନ୍ତି- |
| ତତ୍ | = ସେହି (ସବୁ ଅପରାଧ ପାଇଁ) |
| ଅପ୍ରମେୟମ୍ | = ଅପ୍ରମେୟ ସ୍ୱରୂପ ଅର୍ଥାତ୍ ଅଚିନ୍ତ୍ୟ ପ୍ରଭାବଶାଳୀ |
| ତ୍ୱାମ୍ | = ଆପଣଙ୍କୁ |
| ଅହମ୍ | = ମୁଁ |
| କ୍ଷାମୟେ | = କ୍ଷମା ପ୍ରାର୍ଥନା କରୁଛି । |

ଭଗବାନଙ୍କ ଅତିଶୟ ପ୍ରଭାବର କଥନ ।

**ପିତାସି ଲୋକସ୍ୟ ଚରାଚରସ୍ୟ**
**ତ୍ୱମସ୍ୟ ପୂଜ୍ୟଶ୍ଚ ଗୁରୁର୍ଗରୀୟାନ୍ ।**
**ନ ତ୍ୱତ୍ସମୋଽସ୍ତ୍ୟଭ୍ୟଧିକଃ କୁତୋଽନ୍ୟୋ**
**ଲୋକତ୍ରୟେଽପ୍ୟପ୍ରତିମପ୍ରଭାବ ॥ ୪୩ ॥**

ପିତା, ଅସି, ଲୋକସ୍ୟ, ଚରାଚରସ୍ୟ,
ତ୍ୱମ୍, ଅସ୍ୟ, ପୂଜ୍ୟଃ, ଚ, ଗୁରୁଃ, ଗରୀୟାନ୍,
ନ, ତ୍ୱତ୍ସମଃ, ଅସ୍ତି, ଅଭ୍ୟଧିକଃ, କୁତଃ, ଅନ୍ୟଃ,
ଲୋକତ୍ରୟେ, ଅପି, ଅପ୍ରତିମପ୍ରଭାବ ।।୪୩।।

**ହେ ବିଶ୍ୱେଶ୍ୱର !—**

ତ୍ୱମ୍ = ଆପଣ (ହିଁ)
ଅସ୍ୟ = ଏହି
ଚରାଚରସ୍ୟ = ଚରାଚର
ଲୋକସ୍ୟ = ଜଗତର
ପିତା = ପିତା
ଚ = ଓ
ଗରୀୟାନ୍ = ସର୍ବଶ୍ରେଷ୍ଠ
ଗୁରୁଃ ଗୁରୁ (ଏବଂ)
ପୂଜ୍ୟଃ = ପରମ ପୂଜନୀୟ
ଅସି = ଅଟନ୍ତି ।

ଅପ୍ରତିମପ୍ରଭାବ= ହେ ଅନୁପମ ପ୍ରଭାବଶାଳୀ !
ଲୋକତ୍ରୟେ = ତ୍ରିଲୋକରେ
ତ୍ୱତ୍‌ସମଃ = ଆପଣଙ୍କ ସମାନ
ଅପି = ମଧ୍ୟ
ଅନ୍ୟଃ = ଅନ୍ୟ କେହି
ନ, ଅସ୍ତି = ନାହାନ୍ତି; (ପୁଣି ଆପଣଙ୍କ ଠାରୁ)
ଅଭ୍ୟଧିକଃ = ଅଧିକ (ବା ହେବେ)
କୁତଃ = କାହୁଁ ?

ପ୍ରସନ୍ନ ହେବା ପାଇଁ ଏବଂ ଅପରାଧ ସହନ କରିବା ପାଇଁ ପ୍ରାର୍ଥନା ।

**ତସ୍ମାତ୍ ପ୍ରଣମ୍ୟ ପ୍ରଣିଧାୟ କାୟଂ**
**ପ୍ରସାଦୟେ ତ୍ୱାମହମୀଶମୀଡ୍ୟମ୍ ।**
**ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ**
**ପ୍ରିୟଃ ପ୍ରିୟାୟାର୍ହସି ଦେବ ସୋଢୁମ୍ ॥ ୪୪ ॥**

ତସ୍ମାତ୍, ପ୍ରଣମ୍ୟ, ପ୍ରଣିଧାୟ, କାୟମ୍,
ପ୍ରସାଦୟେ, ତ୍ୱାମ୍, ଅହମ୍, ଈଶମ୍, ଈଡ୍ୟମ୍,
ପିତା, ଇବ, ପୁତ୍ରସ୍ୟ, ସଖା, ଇବ, ସଖ୍ୟୁଃ,
ପ୍ରିୟଃ, ପ୍ରିୟାୟାଃ, ଅର୍ହସି, ଦେବ, ସୋଢୁମ୍ । ।୪୪ । ।

ତସ୍ମାତ୍ = ତେଣୁ (ହେ ପ୍ରଭୁ !)
ଅହମ୍ = ମୁଁ
କାୟମ୍ = ଶରୀରକୁ
ପ୍ରଣିଧାୟ = ଆପଣଙ୍କ ଚରଣରେ ନିବେଦିତ କରି,

ପ୍ରଣମ୍ୟ = ପ୍ରଣାମ କରି,
ଈଡ୍ୟମ୍ = ସ୍ତୁତି ଯୋଗ୍ୟ
ତ୍ୱାମ୍, ଈଶମ୍= ସର୍ବେଶ୍ୱର ଆପଣଙ୍କୁ
ପ୍ରସାଦୟେ = ପ୍ରସନ୍ନ ହେବା ପାଇଁ ପ୍ରାର୍ଥନା କରୁଛି ।

| | | | |
|---|---|---|---|
| ଦେବ | = ହେ ଦେବ ! | ପ୍ରିୟାୟାଃ | = ପ୍ରିୟତମା ପତ୍ନୀର (ଅପରାଧ ସହ୍ୟ କରନ୍ତି, ଆପଣ ବି ସେହିପରି ମୋର ଅପରାଧକୁ ) |
| ପିତା, ଇବ | = ପିତା ଯେପରି | ସୋଢୁମ୍ | = ସହିବାକୁ |
| ପୁତ୍ରସ୍ୟ | = ପୁତ୍ରର, | ଅର୍ହସି | = ଯୋଗ୍ୟ ଅଟନ୍ତି । |
| ସଖା, ଇବ | = ସଖା ଯେପରି | | |
| ସଖ୍ୟୁଃ | = ସଖାର (ଏବଂ) | | |
| ପ୍ରିୟଃ (ଇବ) | = ପତି ଯେପରି | | |

ଚତୁର୍ଭୁଜ ରୂପ ଦେଖାଇବା ପାଇଁ ଅର୍ଜୁନଙ୍କ ପ୍ରାର୍ଥନା ।

**ଅଦୃଷ୍ଟପୂର୍ବଂ ହୃଷିତୋଽସ୍ମି ଦୃଷ୍ଟ୍ୱା**
**ଭୟେନ ଚ ପ୍ରବ୍ୟଥିତଂ ମନୋ ମେ ।**
**ତଦେବ ମେ ଦର୍ଶୟ ଦେବରୂପଂ**
**ପ୍ରସୀଦ ଦେବେଶ ଜଗନ୍ନିବାସ ॥ ୪୫ ॥**

ଅଦୃଷ୍ଟପୂର୍ବମ୍, ହୃଷିତଃ, ଅସ୍ମି, ଦୃଷ୍ଟ୍ୱା,
ଭୟେନ, ଚ, ପ୍ରବ୍ୟଥିତମ୍, ମନଃ, ମେ,
ତତ୍ ଏବ, ମେ, ଦର୍ଶୟ, ଦେବରୂପମ୍,
ପ୍ରସୀଦ, ଦେବେଶ, ଜଗନ୍ନିବାସ । ।୪୫ । ।

**ହେ ବିଶ୍ୱମୂର୍ତ୍ତେ ! ମୁଁ —**

| | | | |
|---|---|---|---|
| ଅଦୃଷ୍ଟପୂର୍ବମ୍ | = ପୂର୍ବରୁ କେବେ ଦେଖା ନଥିବା ଆପଣଙ୍କର ଏହି ଆଶ୍ଚର୍ଯ୍ୟମୟ ରୂପକୁ | ମେ | = ମୋର |
| ଦୃଷ୍ଟ୍ୱା | = ଦେଖି | ମନଃ | = ମନ |
| ହୃଷିତଃ, ଅସ୍ମି | = (ମୁଁ) ହର୍ଷିତ ହେଉଛି | ଭୟେନ | = ଭୟରେ |
| ଚ | = ଓ | ପ୍ରବ୍ୟଥିତମ୍ | = ଅତ୍ୟନ୍ତ ବ୍ୟାକୁଳ ହେଉଛି (ତେଣୁ ଆପଣ) |
| | | ତତ୍ | = (ନିଜର) ସେହି |

| | | | |
|---|---|---|---|
| ଦେବରୂପମ୍ | = ଚତୁର୍ଭୁଜ ବିଷ୍ଣୁ ରୂପକୁ | ଦେବେଶ | = ହେ ଦେବେଶ ! |
| ଏବ | = ହିଁ | ଜଗନ୍ନିବାସ | = ହେ ଜଗନ୍ନିବାସ ! (ଆପଣ) |
| ମେ | = ମୋତେ | | |
| ଦର୍ଶୟ | = ଦେଖାନ୍ତୁ । | ପ୍ରସୀଦ | = ପ୍ରସନ୍ନ ହୁଅନ୍ତୁ । |

**କିରୀଟିନଂ ଗଦିନଂ ଚକ୍ରହସ୍ତ-**
**ମିଚ୍ଛାମି ତ୍ୱାଂ ଦ୍ରଷ୍ଟୁମହଂ ତଥୈବ ।**
**ତେନୈବ ରୂପେଣ ଚତୁର୍ଭୁଜେନ**
**ସହସ୍ରବାହୋ ଭବ ବିଶ୍ୱମୂର୍ତ୍ତେ ॥ ୪୬ ॥**

କିରୀଟିନମ୍, ଗଦିନମ୍, ଚକ୍ରହସ୍ତମ୍,
ଇଚ୍ଛାମି, ତ୍ୱାମ୍, ଦ୍ରଷ୍ଟୁମ୍, ଅହମ୍, ତଥା,ଏବ,
ତେନ, ଏବ, ରୂପେଣ, ଚତୁର୍ଭୁଜେନ,
ସହସ୍ରବାହୋ, ଭବ, ବିଶ୍ୱମୂର୍ତ୍ତେ ।।୪୬ ।।

**ଏବଂ ହେ ବିଷ୍ଣୋ ।—**

| | | | |
|---|---|---|---|
| ଅହମ୍ | = ମୁଁ | ଇଚ୍ଛାମି | = ଚାହେଁ । |
| ତଥା, ଏବ | = ସେହିପରି ହିଁ | (ଅତଃ) | = ଏଣୁ |
| | | ବିଶ୍ୱମୂର୍ତ୍ତେ | = ହେ ବିଶ୍ୱରୂପ ! |
| ତ୍ୱାମ୍ | = ଆପଣଙ୍କୁ | ସହସ୍ରବାହୋ | = ହେ ସହସ୍ରବାହୁ ! (ଆପଣ) |
| କିରୀଟିନମ୍ | = ମୁକୁଟ ଧାରଣ କରିଥିବା(ତଥା) | ତେନ, ଏବ | = ସେହି |
| ଗଦିନମ୍, ଚକ୍ରହସ୍ତମ୍ | = ହାତରେ ଗଦା ଓ ଚକ୍ର ଧରିଥିବା | ଚତୁର୍ଭୁଜେନ, ରୂପେଣ | = ଚତୁର୍ଭୁଜ ରୂପରେ |
| ଦ୍ରଷ୍ଟୁମ୍ | = ଦେଖିବାକୁ | ଭବ | = (ପ୍ରକଟ) ହୁଅନ୍ତୁ । |

ଭଗବାନଙ୍କ ଦ୍ୱାରା ନିଜ ବିଶ୍ୱରୂପର ପ୍ରଶଂସା ।

### ଶ୍ରୀଭଗବାନ ଉବାଚ

ମୟା ପ୍ରସନ୍ନେନ ତବାର୍ଜୁନେଦଂ
ରୂପଂ ପରଂ ଦର୍ଶିତମାତ୍ମଯୋଗାତ୍ ।
ତେଜୋମୟଂ ବିଶ୍ୱମନନ୍ତମାଦ୍ୟଂ
ଯନ୍ମେ ତ୍ୱଦନ୍ୟେନ ନ ଦୃଷ୍ଟପୂର୍ବମ୍ ॥ ୪୭ ॥

ମୟା, ପ୍ରସନ୍ନେନ, ତବ, ଅର୍ଜୁନ, ଇଦମ୍,
ରୂପମ୍, ପରମ୍, ଦର୍ଶିତମ୍, ଆତ୍ମଯୋଗାତ୍,
ତେଜୋମୟମ୍, ବିଶ୍ୱମ୍, ଅନନ୍ତମ୍, ଆଦ୍ୟମ୍,
ଯତ୍, ମେ, ତ୍ୱଦନ୍ୟେନ, ନ, ଦୃଷ୍ଟପୂର୍ବମ୍ । ।୪୭ । ।

**ଏହିପରି ଅର୍ଜୁନଙ୍କ ପ୍ରାର୍ଥନା ଶୁଣି**
**ଶ୍ରୀ ଭଗବାନ କହିଲେ—**

| | | | |
|---|---|---|---|
| ଅର୍ଜୁନ | = ହେ ଅର୍ଜୁନ ! | ଅନନ୍ତମ୍ | = ଅନନ୍ତ |
| ପ୍ରସନ୍ନେନ | = ଅନୁଗ୍ରହ ପୂର୍ବକ | ବିଶ୍ୱମ୍ | = ବିରାଟ |
| ମୟା | = ମୋ'ଦ୍ୱାରା | ରୂପମ୍ | = ରୂପ |
| ଆତ୍ମଯୋଗାତ୍ | = ନିଜ ଯୋଗଶକ୍ତିର ପ୍ରଭାବରୁ | ତବ | = ତୁମପାଇଁ |
| | | ଦର୍ଶିତମ୍ | = ଦେଖାଇ ଦିଆଗଲା; |
| ଇଦମ୍ | = ଏହି | ଯତ୍ | = ଯାହା |
| ମେ | = ମୋର | ତ୍ୱଦନ୍ୟେନ | = ତୁମ ଭିନ୍ନ ଅନ୍ୟ କାହାଦ୍ୱାରା |
| ପରମ୍ | = ଅତ୍ୟନ୍ତ ଶ୍ରେଷ୍ଠ, | | |
| ତେଜୋମୟମ୍ | = ତେଜୋମୟ, | ନ, ଦୃଷ୍ଟପୂର୍ବମ୍ | = ପୂର୍ବରୁ କେବେ ଦେଖାଯାଇ ନ ଥିଲା । |
| ଆଦ୍ୟମ୍ | = ସମସ୍ତଙ୍କର ଆଦି (ତଥା) | | |

ନ ବେଦଯଜ୍ଞାଧ୍ୟୟନୈର୍ନ ଦାନୈ-
ର୍ନ ଚ କ୍ରିୟାଭିର୍ନ ତପୋଭିରୁଗ୍ରୈଃ ।
ଏବଂରୂପଃ ଶକ୍ୟ ଅହଂ ନୃଲୋକେ
ଦ୍ରଷ୍ଟୁଂ ତ୍ୱଦନ୍ୟେନ କୁରୁପ୍ରବୀର ॥ ୪୮ ॥

ନ, ବେଦଯଜ୍ଞାଧ୍ୟୟନୈଃ, ନ, ଦାନୈଃ,
ନ, ଚ, କ୍ରିୟାଭିଃ, ନ, ତପୋଭିଃ, ଉଗ୍ରୈଃ,
ଏବଂରୂପଃ, ଶକ୍ୟଃ, ଅହମ୍, ନୃଲୋକେ,
ଦ୍ରଷ୍ଟୁମ୍, ତ୍ୱଦନ୍ୟେନ, କୁରୁପ୍ରବୀର ।।୪୮ ।।

କୁରୁପ୍ରବୀର = ହେ ଅର୍ଜୁନ !
ନୃଲୋକେ = ମନୁଷ୍ୟ ଲୋକରେ
ଏବଂ ରୂପଃ = ଏହିପରି ବିଶ୍ୱରୂପରେ
ଅହମ୍ = ମୁଁ
ନ, = ନା ବେଦ ଓ
ବେଦ-ଯଜ୍ଞାଧ୍ୟୟନୈଃ ଯଜ୍ଞମାନଙ୍କ ଅଧ୍ୟୟନ ଦ୍ୱାରା,
ନ, ଦାନୈଃ = ନା ଦାନମାନଙ୍କ ଦ୍ୱାରା,
ନ, କ୍ରିୟାଭିଃ = ନା କ୍ରିୟାମାନଙ୍କ ଦ୍ୱାରା
ଚ = ଓ
ନ, ଉଗ୍ରୈଃ, ତପୋଭିଃ = ନା ଉଗ୍ର ତପମାନଙ୍କ ଦ୍ୱାରା
ତ୍ୱଦନ୍ୟେନ = ତୁମ ଛଡ଼ା ଅନ୍ୟ କାହାକୁ
ଦ୍ରଷ୍ଟୁମ୍ = ଦେଖାଯାଇ
ଶକ୍ୟଃ = ପାରିବି ।

ଅର୍ଜୁନଙ୍କୁ ଧୈର୍ଯ୍ୟ ପ୍ରଦାନ କରି ନିଜର ଚତୁର୍ଭୁଜ ରୂପ ଦେଖାଇବା ।

ମା ତେ ବ୍ୟଥା ମା ଚ ବିମୂଢ଼ଭାବୋ
ଦୃଷ୍ଟ୍ୱା ରୂପଂ ଘୋରମୀଦୃଙ୍‌ମମେଦମ୍ ।
ବ୍ୟପେତଭୀଃ ପ୍ରୀତମନାଃ ପୁନସ୍ତ୍ୱଂ
ତଦେବ ମେ ରୂପମିଦଂ ପ୍ରପଶ୍ୟ ॥ ୪୯ ॥

ମା, ତେ, ବ୍ୟଥା, ମା, ଚ, ବିମୂଢ଼ଭାବଃ,
ଦୃଷ୍ଟ୍ୱା, ରୂପମ୍, ଘୋରମ୍, ଈଦୃକ୍, ମମ, ଇଦମ୍,
ବ୍ୟପେତଭୀଃ, ପ୍ରୀତମନାଃ, ପୁନଃ, ତ୍ୱମ୍,
ତତ୍, ଏବ, ମେ, ରୂପମ୍, ଇଦମ୍, ପ୍ରପଶ୍ୟ । ।୪୯ । ।

| | | | |
|---|---|---|---|
| ମମ | = ମୋର | ତ୍ୱମ୍ | = ତୁମେ |
| ଈଦୃକ୍ | = ଏହିପରି | ବ୍ୟପେତଭୀଃ | = ଏବେ ନିର୍ଭୀକ (ଓ) |
| ଇଦମ୍ | = ଏହି | ପ୍ରୀତମନାଃ | = ପ୍ରସନ୍ନଚିତ୍ତ ହୋଇ |
| ଘୋରମ୍ | = ବିକରାଳ | ତତ୍, ଏବ | = ସେହି |
| ରୂପମ୍ | = ରୂପକୁ | ମେ | = ମୋର |
| ଦୃଷ୍ଟ୍ୱା | = ଦେଖି | ଇଦମ୍ | = ଏହି (ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଚତୁର୍ଭୁଜ) |
| ତେ | = ତୁମେ | ରୂପମ୍ | = ରୂପକୁ |
| ବ୍ୟଥା | = ବ୍ୟାକୁଳ | ପୁନଃ, ପ୍ରପଶ୍ୟ | = ପୁନର୍ବାର ଦେଖ । |
| ମା | = ହେବା ଉଚିତ ନୁହେଁ | | |
| ଚ | = ଏବଂ | | |
| ବିମୂଢ଼ଭାବଃ | = (ତୁମଠାରେ) ମୂଢ଼ଭାବ (ମଧ୍ୟ) | | |
| ମା | = ଆସିବା ଉଚିତ ନୁହେଁ । | | |

*ସଞ୍ଜୟ ଉବାଚ*

ଚତୁର୍ଭୁଜରୂପ ଦର୍ଶନ କରାଇବା ପରେ ପୁଣି ମାନବରୂପ ଧାରଣ କରିବା ପାଇଁ ଅର୍ଜୁନଙ୍କ ପ୍ରାର୍ଥନା ।

ଇତ୍ୟର୍ଜୁନଂ ବାସୁଦେବସ୍ତଥୋକ୍ତ୍ୱା
ସ୍ୱକଂ ରୂପଂ ଦର୍ଶୟାମାସ ଭୂୟଃ ।
ଆଶ୍ୱାସୟାମାସ ଚ ଭୀତମେନଂ
ଭୂତ୍ୱା ପୁନଃ ସୌମ୍ୟବପୁର୍ମହାତ୍ମା ॥ ୫୦ ॥

ଇତି, ଅର୍ଜୁନମ୍, ବାସୁଦେବଃ, ତଥା, ଉକ୍ତ୍ୱା,
ସ୍ୱକମ୍, ରୂପମ୍, ଦର୍ଶୟାମାସ, ଭୂୟଃ,
ଆଶ୍ୱାସୟାମାସ, ଚ, ଭୀତମ୍, ଏନମ୍,
ଭୂତ୍ୱା, ପୁନଃ, ସୌମ୍ୟବପୁଃ, ମହାତ୍ମା ।୫୦ । ।

**ଏହାପରେ ସଞ୍ଜୟ କହିଲେ, ହେ ରାଜନ !—**

| | | | |
|---|---|---|---|
| ବାସୁଦେବଃ | = ବାସୁଦେବ ଭଗବାନ | ଚ | = ଓ |
| ଅର୍ଜୁନମ୍ | = ଅର୍ଜୁନଙ୍କୁ | ପୁନଃ | = ତଦନନ୍ତର |
| ଇତି | = ଏପରି | ମହାତ୍ମା | = ମହାତ୍ମା ଶ୍ରୀକୃଷ୍ଣ |
| ଉକ୍ତ୍ୱା | = କହି | ସୌମ୍ୟବପୁଃ | = ସୌମ୍ୟମୂର୍ତ୍ତି (ଦ୍ୱିଭୁଜରୂପ) |
| ଭୂୟଃ | = ପୁନର୍ବାର | ଭୂତ୍ୱା | = ଧାରଣ କରି |
| ତଥା | = ସେହିପରି | ଭୀତମ୍,ଏନମ୍ | = ଭୟଭୀତ ହୋଇଥିବା ଅର୍ଜୁନଙ୍କୁ |
| ସ୍ୱକମ୍ | = ନିଜର | | |
| ରୂପମ୍ | = ଚତୁର୍ଭୁଜ ରୂପ | | |
| ଦର୍ଶୟାମାସ | = ଦେଖାଇଲେ | ଆଶ୍ୱାସୟାମାସ | = ଆଶ୍ୱାସନା ଦେଲେ । |

## *ଅର୍ଜୁନ ଉବାଚ*

ଭଗବାନଙ୍କ ସୌମ୍ୟ ମାନବରୂପ ଦର୍ଶନ କରି ଅର୍ଜୁନଙ୍କ ସଚେତ ତଥା ପ୍ରକୃତିସ୍ଥ ହେବା ।

**ଦୃଷ୍ଟ୍ୱେଦଂ ମାନୁଷଂ ରୂପଂ ତବ ସୌମ୍ୟଂ ଜନାର୍ଦନ ।**
**ଇଦାନୀମସ୍ମି ସଂବୃତ୍ତଃ ସଚେତାଃ ପ୍ରକୃତିଂ ଗତଃ ॥ ୫୧ ॥**

ଦୃଷ୍ଟ୍ୱା, ଇଦମ୍, ମାନୁଷମ୍, ରୂପମ୍, ତବ, ସୌମ୍ୟମ୍, ଜନାର୍ଦନ,
ଇଦାନୀମ୍, ଅସ୍ମି, ସଂବୃତ୍ତଃ, ସଚେତାଃ, ପ୍ରକୃତିମ୍, ଗତଃ ।।୫୧ ।।

**ଏହାପରେ ଅର୍ଜୁନ କହିଲେ—**

| | | | |
|---|---|---|---|
| ଜନାର୍ଦନ | = ହେ ଜନାର୍ଦନ ! | ଇଦମ୍ | = ଏହି |
| ତବ | = ଆପଣଙ୍କର | ସୌମ୍ୟମ୍ | = ଅତି ଶାନ୍ତ |

| | | | |
|---|---|---|---|
| ମାନୁଷମ୍, | = ମନୁଷ୍ୟ | ସଚେତାଃ | = ସ୍ଥିରଚିତ୍ତ |
| ରୂପମ୍ | ରୂପକୁ | ସଂବୃତ୍ତଃ, ଅସ୍ମି | = ହୋଇଗଲି (ଓ) |
| ଦୃଷ୍ଟ୍ୱା | = ଦେଖି | ପ୍ରକୃତିମ୍ | = ସହଜସ୍ଥିତିକୁ |
| ଇଦାନୀମ୍ | = ଏଥର (ମୁଁ) | ଗତଃ | = ପ୍ରାପ୍ତ ହେଲି । |

ଚତୁର୍ଭୁଜରୂପ ଦର୍ଶନର ଦୁର୍ଲଭତା ତଥା ଏହାର ପ୍ରଭାବର କଥନ ।

*ଶ୍ରୀଭଗବାନ ଉବାଚ*

**ସୁଦୁର୍ଦର୍ଶମିଦଂ ରୂପଂ ଦୃଷ୍ଟବାନସି ଯନ୍ମମ ।**
**ଦେବା ଅପ୍ୟସ୍ୟ ରୂପସ୍ୟ ନିତ୍ୟଂ ଦର୍ଶନକାଂକ୍ଷିଣଃ ॥ ୫୨ ॥**

ସୁଦୁର୍ଦର୍ଶମ୍, ଇଦମ୍, ରୂପମ୍, ଦୃଷ୍ଟବାନ୍, ଅସି, ଯତ୍, ମମ,
ଦେବାଃ, ଅପି, ଅସ୍ୟ, ରୂପସ୍ୟ, ନିତ୍ୟମ୍, ଦର୍ଶନକାଙ୍‌କ୍ଷିଣଃ ।।୫୨।।

**ଏହି ପ୍ରକାରେ ଅର୍ଜୁନଙ୍କ ବଚନକୁ ଶୁଣି ଶ୍ରୀ ଭଗବାନ କହିଲେ,**
**ହେ ଅର୍ଜୁନ !—**

| | | | |
|---|---|---|---|
| ମମ | = ମୋର | ଦେବାଃ | = ଦେବତାମାନେ |
| ଯତ୍ | = ଯେଉଁ | ଅପି | = ମଧ୍ୟ |
| ରୂପମ୍ | = ଚତୁର୍ଭୁଜରୂପ | ନିତ୍ୟମ୍ | = ସଦା |
| ଦୃଷ୍ଟବାନ୍, ଅସି | = ଦେଖିଲ | ଅସ୍ୟ | = ଏହି |
| ଇଦମ୍ | = ଏହା | ରୂପସ୍ୟ | = ରୂପର |
| ସୁଦୁର୍ଦର୍ଶମ୍ | = ସୁଦୁର୍ଦର୍ଶ ଅର୍ଥାତ୍ ଏହାର ଦର୍ଶନ ପାଇବା ଅତ୍ୟନ୍ତ ଦୁର୍ଲଭ । | ଦର୍ଶନକାଙ୍‌କ୍ଷିଣଃ | = ଦର୍ଶନାକାଙ୍‌କ୍ଷୀ ହୋଇଥାନ୍ତି । |

**ନାହଂ ବେଦୈର୍ନ ତପସା ନ ଦାନେନ ନ ଚେଜ୍ୟୟା ।**
**ଶକ୍ୟ ଏବଂବିଧୋ ଦ୍ରଷ୍ଟୁଂ ଦୃଷ୍ଟବାନସି ମାଂ ଯଥା ॥ ୫୩ ॥**

ନ, ଅହମ୍, ବେଦୈଃ, ନ, ତପସା, ନ, ଦାନେନ, ନ, ଚ, ଇଜ୍ୟୟା
ଶକ୍ୟଃ, ଏବଂବିଧଃ, ଦ୍ରଷ୍ଟୁମ୍, ଦୃଷ୍ଟବାନ୍, ଅସି, ମାମ୍, ଯଥା ।।୫୩।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଯଥା | = (ତୁମେ) ଯେଉଁପରି | ନ, ବେଦୈଃ | = ନା ବେଦମାନଙ୍କ ଦ୍ୱାରା, |
| ମାମ୍ | = ମୋତେ | ନ, ତପସା | = ନା ତପସ୍ୟାଦ୍ୱାରା, |
| ଦୃଷ୍ଟବାନ୍, ଅସି | = ଦେଖିବାକୁ ପାଇଲ, | ନ, ଦାନେନ | = ନା ଦାନଦ୍ୱାରା |
| ଏବଂବିଧଃ | = ସେହିପରି ଚତୁର୍ଭୁଜରୂପ | ଚ,ନ, ଇଜ୍ୟୟା | = ଏବଂ ନା ଯଜ୍ଞଦ୍ୱାରା |
| | | ଦ୍ରଷ୍ଟୁମ୍ | = ଦେଖାଯାଇ |
| ଅହମ୍ | = ମୁଁ | ଶକ୍ୟଃ | = ପାରିବ । |

ଅନନ୍ୟ ଭକ୍ତି ଦ୍ୱାରା ଏହି ରୂପର ଦର୍ଶନ, ଜ୍ଞାନ ଏବଂ ପ୍ରାପ୍ତି ହୋଇଥାଏ ବୋଲି କଥନ ।

**ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟ ଅହମେବଂବିଧୋଽର୍ଜୁନ ।**
**ଜ୍ଞାତୁଂ ଦ୍ରଷ୍ଟୁଂ ଚ ତତ୍ତ୍ୱେନ ପ୍ରବେଷ୍ଟୁଂ ଚ ପରନ୍ତପ ॥ ୫୪ ॥**

ଭକ୍ତ୍ୟା, ତୁ, ଅନନ୍ୟୟା, ଶକ୍ୟଃ, ଅହମ୍, ଏବଂବିଧଃ, ଅର୍ଜୁନ,
ଜ୍ଞାତୁମ୍, ଦ୍ରଷ୍ଟୁମ୍, ଚ, ତତ୍ତ୍ୱେନ, ପ୍ରବେଷ୍ଟୁମ୍, ଚ, ପରନ୍ତପ ।।୫୪।।

| | | | |
|---|---|---|---|
| ତୁ | = କିନ୍ତୁ | ଜ୍ଞାତୁମ୍ (ଶକ୍ୟଃ) | = ଜାଣି ହୋଇପାରେ |
| ପରନ୍ତପ, ଅର୍ଜୁନ | = ହେ ଶତ୍ରୁତାପନ ଅର୍ଜୁନ ! | ଚ | = ଓ |
| ଏବଂବିଧଃ | = ଏହିପରି | ଦ୍ରଷ୍ଟୁମ୍ (ଶକ୍ୟଃ) | = (ସାକାର ରୂପରେ) ଦେଖି ହୋଇପାରେ |
| ଅହମ୍ | = (ଚତୁର୍ଭୁଜ ରୂପଧାରୀ) ମୁଁ | | |
| ଅନନ୍ୟୟା | = (କେବଳ) ଅନନ୍ୟ ଭକ୍ତିଦ୍ୱାରା | ଚ | = ତଥା |
| | | ପ୍ରବେଷ୍ଟୁମ୍ | = ପ୍ରାପ୍ତ |
| ତତ୍ତ୍ୱେନ | = ତତ୍ତ୍ୱତଃ | ଶକ୍ୟଃ | = ହୋଇପାରେ । |

ଅନନ୍ୟ ଭକ୍ତିର ସ୍ୱରୂପ ଏବଂ ଏହାର ଫଳର କଥନ ।

**ମତ୍କର୍ମକୃନ୍ମତ୍ପରମୋ ମଦ୍ଭକ୍ତଃ ସଙ୍ଗବର୍ଜିତଃ ।**
**ନିର୍ବୈରଃ ସର୍ବଭୂତେଷୁ ଯଃ ସ ମାମେତି ପାଣ୍ଡବ ॥ ୫୫ ॥**

ମତ୍‌କର୍ମକୃତ୍, ମତ୍‌ପରମଃ, ମଦ୍‌ଭକ୍ତଃ, ସଙ୍ଗବର୍ଜିତଃ,
ନିର୍ବୈରଃ, ସର୍ବଭୂତେଷୁ, ଯଃ, ସଃ, ମାମ୍, ଏତି, ପାଣ୍ଡବ ।।୫୫ ।।

| | |
|---|---|
| ପାଣ୍ଡବ | =ହେ ଅର୍ଜୁନ ! |
| ଯଃ | =ଯେଉଁ ପୁରୁଷ |
| ମତ୍‌କର୍ମକୃତ୍ | =(କେବଳ) ମୋରି ପାଇଁ ହିଁ ସକଳ କର୍ତ୍ତବ୍ୟ କର୍ମ କରନ୍ତି, |
| ମତ୍‌ପରମଃ | =ମୋର ପରାୟଣ, |
| ମଦ୍‌ଭକ୍ତଃ | =ମୋର ଭକ୍ତ, |
| ସଙ୍ଗବର୍ଜିତଃ | =ଆସକ୍ତି ରହିତ (ଓ) |
| ସର୍ବଭୂତେଷୁ | =ସକଳ ପ୍ରାଣୀଙ୍କଠାରେ |
| ନିର୍ବୈରଃ | =ବୈରଭାବ ଶୂନ୍ୟ*- |
| ସଃ | =ସେହି (ଅନନ୍ୟ ଭକ୍ତିଯୁକ୍ତ ପୁରୁଷ) |
| ମାମ୍ | =ମୋତେ |
| ଏତି | =ପ୍ରାପ୍ତ ହୁଅନ୍ତି । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ*
*ଶ୍ରୀକୃଷ୍ଣାର୍ଜୁନସଂବାଦେ ବିଶ୍ୱରୂପଦର୍ଶନଯୋଗୋ ନାମ*
*ଏକାଦଶୋଽଧ୍ୟାୟଃ ॥ ୧୧ ॥*

❂❂❂

**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ବିଶ୍ୱରୂପଦର୍ଶନଯୋଗ' ନାମକ ଏକାଦଶ ଅଧ୍ୟାୟ ପୂର୍ଣ୍ଣ ହେଲା ।।୧୧ ।।**

**ହରିଃ ଓଁ ତତ୍‌ସତ୍   ହରିଃ ଓଁ ତତ୍‌ସତ୍   ହରିଃ ଓଁ ତତ୍‌ସତ୍**

---

* ସର୍ବତ୍ର ଭଗବଦ୍ ବୁଦ୍ଧି ହୋଇଯିବା ପରେ ସେହି ପୁରୁଷର ସମସ୍ତ ଅପରାଧ କରିବା ଲୋକଙ୍କ ପ୍ରତି ବି କୌଣସି ବୈର ଭାବ ରହେନାହିଁ, ଅନ୍ୟମାନଙ୍କ କଥା କ'ଣ କହିବା ?

ଓଁ ଶ୍ରୀପରମାତ୍ମନେ ନମଃ

# ଦ୍ୱାଦଶ ଅଧ୍ୟାୟ

## ଭକ୍ତିଯୋଗ

**ପ୍ରଧାନ ବିଷୟ**

୧ ରୁ ୧୨- ସାକାର ଏବଂ ନିରାକାର ଉପାସକଙ୍କ ଶ୍ରେଷ୍ଠତାର ନିର୍ଣ୍ଣୟ ଓ ଭଗବତ୍ ପ୍ରାପ୍ତିର ଉପାୟ,

୧୩ ରୁ ୨୦- ଭଗବତ୍ ପ୍ରାପ୍ତି କରିଥିବା ପୁରୁଷଙ୍କ ଲକ୍ଷଣ ।

*ଅର୍ଜୁନ ଉବାଚ*

ସାକାର ଏବଂ ନିରାକାର ଉପାସକମାନଙ୍କ ମଧ୍ୟରେ କିଏ ଶ୍ରେଷ୍ଠ ଜାଣିବା ପାଇଁ ଅର୍ଜୁନଙ୍କ ପ୍ରଶ୍ନ ।

**ଏବଂ ସତତଯୁକ୍ତା ଯେ ଭକ୍ତାସ୍ତ୍ୱାଂ ପର୍ଯ୍ୟୁପାସତେ ।**
**ଯେ ଚାପ୍ୟକ୍ଷରମବ୍ୟକ୍ତଂ ତେଷାଂ କେ ଯୋଗବିତ୍ତମାଃ ॥ ୧ ॥**

ଏବମ୍, ସତତଯୁକ୍ତାଃ, ଯେ, ଭକ୍ତାଃ, ତ୍ୱାମ୍, ପର୍ଯ୍ୟୁପାସତେ,
ଯେ, ଚ, ଅପି, ଅକ୍ଷରମ୍, ଅବ୍ୟକ୍ତମ୍, ତେଷାମ୍, କେ, ଯୋଗବିତ୍ତମାଃ ।।୧ ।।

**ଏହି ପ୍ରକାର ଭଗବାନଙ୍କ ବଚନ ଶୁଣି, ଅର୍ଜୁନ କହିଲେ, ହେ ମନମୋହନ !—**

| | | | |
|---|---|---|---|
| ଯେ | = ଯେଉଁ | ସତତଯୁକ୍ତାଃ | = ନିରନ୍ତର ଆପଣଙ୍କ ଭଜନ-ଧ୍ୟାନରେ ଲାଗିରହି |
| ଭକ୍ତାଃ | = ଅନନ୍ୟପ୍ରେମୀ ଭକ୍ତମାନେ | ତ୍ୱାମ୍ | = ଆପଣଙ୍କୁ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ (ଭଜନ କରନ୍ତି) |
| ଏବମ୍ | = ଏହି ପରି (ଏକାଦଶ ଅଧ୍ୟାୟର ୫୫ ଶ୍ଲୋକ ଅନୁସାରେ) | | |

| | | | | |
|---|---|---|---|---|
| ଚ | = ଓ | | | ଭଜନ କରନ୍ତି - |
| ଯେ | = ଅନ୍ୟ ଯେଉଁମାନେ (କେବଳ) | | ତେଷାମ୍ | = ସେହି ଦୁଇପ୍ରକାର ଉପାସକଙ୍କ ମଧ୍ୟରେ |
| ଅକ୍ଷରମ୍ | = ଅବିନାଶୀ ସଚ୍ଚିଦାନନ୍ଦଘନ | | | |
| ଅବ୍ୟକ୍ତମ୍ | = ନିରାକାର ବ୍ରହ୍ମଙ୍କୁ | | ଯୋଗବିତ୍ତମାଃ | = ଅତି ଉତ୍ତମ ଯୋଗବେତ୍ତା |
| ଅପି | = ହିଁ | | | |
| ପର୍ଯ୍ୟୁପାସତେ | = ଅତି ଶ୍ରେଷ୍ଠ ଭାବରେ | | କେ (ସନ୍ତି) | = କେଉଁମାନେ ଅଟନ୍ତି ? |

### *ଶ୍ରୀଭଗବାନ ଉବାଚ*

ଭଗବାନଙ୍କୁ ସଗୁଣ ରୂପରେ ଉପାସନା କରିବା ମନୁଷ୍ୟଙ୍କୁ ଶ୍ରେଷ୍ଠ ବୋଲି କଥନ ।

**ମଯ୍ୟାବେଶ୍ୟ ମନୋ ଯେ ମାଂ ନିତ୍ୟଯୁକ୍ତା ଉପାସତେ ।**
**ଶ୍ରଦ୍ଧୟା ପରୟୋପେତାସ୍ତେ ମେ ଯୁକ୍ତତମା ମତାଃ ॥ ୨ ॥**

ମୟି, ଆବେଶ୍ୟ, ମନଃ, ଯେ, ମାମ୍, ନିତ୍ୟଯୁକ୍ତାଃ, ଉପାସତେ,
ଶ୍ରଦ୍ଧୟା, ପରୟା, ଉପେତାଃ, ତେ, ମେ, ଯୁକ୍ତତମାଃ, ମତାଃ ।।୨ ।।

**ଏହି ପ୍ରକାର ଅର୍ଜୁନଙ୍କ ପ୍ରଶ୍ନର ଉତ୍ତରରେ ଭଗବାନ୍ କହିଲେ, ହେ ଅର୍ଜୁନ ।—**

| | | | | |
|---|---|---|---|---|
| ମୟି | = ମୋଠାରେ | | ମାମ୍ | = ମୋତେ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ |
| ମନଃ | = ମନକୁ | | | |
| ଆବେଶ୍ୟ | = ଏକାଗ୍ର କରି | | | |
| ନିତ୍ୟଯୁକ୍ତାଃ | = ନିରନ୍ତର ମୋର ଭଜନ-ଧ୍ୟାନରେ ଲାଗି ରହିଥିବା | | ଉପାସତେ | = ଉପାସନା କରନ୍ତି, |
| | | | ତେ | = ସେମାନେ |
| | | | ମେ,ଯୁକ୍ତତମାଃ, ମତାଃ | = ମୋ ମତରେ ଯୋଗୀଙ୍କ ମଧ୍ୟରେ ଅତି ଉତ୍ତମ ଯୋଗୀ ଅଟନ୍ତି । |
| ଯେ | = ଯେଉଁ ଭକ୍ତମାନେ | | | |
| ପରୟା,ଶ୍ରଦ୍ଧୟା, ଉପେତାଃ | = ପରମ ଶ୍ରଦ୍ଧାର ସହିତ | | | |

ନିରାକାର ବ୍ରହ୍ମଙ୍କ ସ୍ୱରୂପର କଥନ ଏବଂ ଏହି ଉପାସନା ଦ୍ୱାରା ଭଗବତ୍ ପ୍ରାପ୍ତିର କଥନ ।

ଯେ ତ୍ୱକ୍ଷରମନିର୍ଦ୍ଦେଶ୍ୟମବ୍ୟକ୍ତଂ ପର୍ଯ୍ୟୁପାସତେ ।
ସର୍ବତ୍ରଗମଚିନ୍ତ୍ୟଂ ଚ କୂଟସ୍ଥମଚଳଂ ଧ୍ରୁବମ୍ ॥ ୩ ॥

ସନ୍ନିୟମ୍ୟେନ୍ଦ୍ରିୟଗ୍ରାମଂ ସର୍ବତ୍ର ସମବୁଦ୍ଧୟଃ ।
ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ ॥ ୪ ॥

ଯେ, ତୁ, ଅକ୍ଷରମ୍, ଅନିର୍ଦ୍ଦେଶ୍ୟମ୍, ଅବ୍ୟକ୍ତମ୍, ପର୍ଯ୍ୟୁପାସତେ,
ସର୍ବତ୍ରଗମ୍, ଅଚିନ୍ତ୍ୟମ୍, ଚ, କୂଟସ୍ଥମ୍, ଅଚଳମ୍, ଧ୍ରୁବମ୍, ।।୩।।

ସନ୍ନିୟମ୍ୟ, ଇନ୍ଦ୍ରିୟଗ୍ରାମମ୍, ସର୍ବତ୍ର, ସମବୁଦ୍ଧୟଃ,
ତେ, ପ୍ରାପ୍ନୁବନ୍ତି, ମାମ୍, ଏବ, ସର୍ବଭୂତହିତେ, ରତାଃ ।।୪।।

ତୁ = କିନ୍ତୁ
ଯେ = ଯେଉଁ ପୁରୁଷମାନେ
ଇନ୍ଦ୍ରିୟଗ୍ରାମମ୍ = ଇନ୍ଦ୍ରିୟ ସମୁଦାୟକୁ
ସନ୍ନିୟମ୍ୟ = ଭଲରୂପେ ବଶ କରି
ଅଚିନ୍ତ୍ୟମ୍ = ମନ-ବୁଦ୍ଧିର ଅତୀତ,
ସର୍ବତ୍ରଗମ୍ = ସର୍ବବ୍ୟାପୀ,
ଅନିର୍ଦ୍ଦେଶ୍ୟମ୍ = ଅନିର୍ବଚନୀୟ ସ୍ୱରୂପ
ଚ = ଓ
କୂଟସ୍ଥମ୍ = ସଦା ଏକରସ ହୋଇ ରହୁଥିବା,
ଧ୍ରୁବମ୍ = ନିତ୍ୟ,
ଅଚଳମ୍ = ଅଚଳ,
ଅବ୍ୟକ୍ତମ୍ = ନିରାକାର,
ଅକ୍ଷରମ୍ = ଅବିନାଶୀ ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ
ପର୍ଯ୍ୟୁପାସତେ = ନିରନ୍ତର ଏକୀଭାବରେ ଧ୍ୟାନରତ ହୋଇ ଭଜନ୍ତି,
ତେ = ସେହି
ସର୍ବଭୂତହିତେ = ସକଳ ଭୂତଙ୍କ ହିତରେ
ରତାଃ = ରତ (ଓ)
ସର୍ବତ୍ର = ସବୁଠାରେ

| | | | |
|---|---|---|---|
| ସମବୁଦ୍ଧୟଃ | = ସମାନ ଭାବ ରଖୁଥିବା ଯୋଗୀମାନେ | ମାମ୍, ଏବ | = ମୋତେ ହିଁ |
| | | ପ୍ରାପ୍ନୁବନ୍ତି | = ପ୍ରାପ୍ତ ହୁଅନ୍ତି । |

ନିରାକାରଙ୍କ ଉପାସନାରେ କଠିନତାର କଥନ ।

**କ୍ଲେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାମ୍ ।**
**ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ ॥ ୫ ॥**

କ୍ଲେଶଃ, ଅଧିକତରଃ, ତେଷାମ୍, ଅବ୍ୟକ୍ତାସକ୍ତଚେତସାମ୍, ଅବ୍ୟକ୍ତା, ହି, ଗତିଃ, ଦୁଃଖମ୍, ଦେହବଦ୍ଭିଃ, ଅବାପ୍ୟତେ ।।୫।।

**କିନ୍ତୁ—**

| | | | |
|---|---|---|---|
| ତେଷାମ୍ | = ସେହି | ହି | = କାରଣ |
| ଅବ୍ୟକ୍ତାସକ୍ତ-ଚେତସାମ୍ | = ସଚ୍ଚିଦାନନ୍ଦଘନ ନିରାକାର ବ୍ରହ୍ମରେ ଆସକ୍ତଚିତ୍ତ ପୁରୁଷମାନଙ୍କର (ସାଧନାରେ) | ଦେହବଦ୍ଭିଃ | = ଦେହାଭିମାନୀଙ୍କ ଦ୍ୱାରା |
| | | ଅବ୍ୟକ୍ତା | = ଅବ୍ୟକ୍ତ ବିଷୟକ |
| | | ଗତିଃ | = ଗତି |
| | | ଦୁଃଖମ୍ | = ଦୁଃଖପୂର୍ବକ |
| ଅଧିକତରଃ | = ବିଶେଷ | | |
| କ୍ଲେଶଃ | = ପରିଶ୍ରମ (ହୁଏ); | ଅବାପ୍ୟତେ | = ପ୍ରାପ୍ତ କରାଯାଏ । |

ଭଗବାନଙ୍କ ସଗୁଣରୂପ ଉପାସନାର କଥନ ।

**ଯେ ତୁ ସର୍ବାଣି କର୍ମାଣି ମୟି ସଂନ୍ୟସ୍ୟ ମତ୍ପରାଃ ।**
**ଅନନ୍ୟେନୈବ ଯୋଗେନ ମାଂ ଧ୍ୟାୟନ୍ତ ଉପାସତେ ॥ ୬ ॥**

ଯେ, ତୁ, ସର୍ବାଣି, କର୍ମାଣି, ମୟି, ସନ୍ନ୍ୟସ୍ୟ, ମତ୍ପରାଃ, ଅନନ୍ୟେନ, ଏବ, ଯୋଗେନ, ମାମ୍, ଧ୍ୟାୟନ୍ତଃ, ଉପାସତେ ।।୬।।

| | | | |
|---|---|---|---|
| ତୁ | = କିନ୍ତୁ | ମାମ୍ | = ମୋତେ ଅର୍ଥାତ୍ ସଗୁଣରୂପ ପରମେଶ୍ୱରଙ୍କୁ |
| ଯେ, ମତ୍ପରାଃ | = ମୋର ପରାୟଣ ହୋଇଥିବା ଯେଉଁ ଭକ୍ତମାନେ | ଏବ | = ହିଁ |
| ସର୍ବାଣି | = ସମସ୍ତ | ଅନନ୍ୟେନ | = ଅନନ୍ୟ |
| କର୍ମାଣି | = କର୍ମମାନଙ୍କୁ | ଯୋଗେନ | = ଭକ୍ତି ଯୋଗଦ୍ୱାରା |
| ମୟି | = ମୋଠାରେ | ଧ୍ୟାୟନ୍ତଃ | = ନିରନ୍ତର ଚିନ୍ତନ କରି କରି |
| ସନ୍ନ୍ୟସ୍ୟ | = ଅର୍ପଣ କରିଦେଇ | ଉପାସତେ | = ଭଜନ କରନ୍ତି*- |

ନିଜର ଭକ୍ତମାନଙ୍କୁ ଶୀଘ୍ର ଉଦ୍ଧାର କରିବା ପାଇଁ ଭଗବାନଙ୍କ ପ୍ରତିଜ୍ଞା ।

**ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାରସାଗରାତ୍ ।**
**ଭବାମି ନଚିରାତ୍ ପାର୍ଥ ମୟ୍ୟାବେଶିତଚେତସାମ୍ ॥ ୭ ॥**

ତେଷାମ୍, ଅହମ୍, ସମୁଦ୍ଧର୍ତ୍ତା, ମୃତ୍ୟୁସଂସାରସାଗରାତ୍,
ଭବାମି, ନଚିରାତ୍, ପାର୍ଥ, ମୟି, ଆବେଶିତଚେତସାମ୍ ।।୭।।

| | | | |
|---|---|---|---|
| ପାର୍ଥ | = ହେ ଅର୍ଜୁନ ! | ମୃତ୍ୟୁସଂସାର- ସାଗରାତ୍ | = ମୃତ୍ୟୁରୂପୀ ସଂସାର ସାଗରରୁ |
| ମୟି | = ମୋ ଠାରେ | ସମୁଦ୍ଧର୍ତ୍ତା, | = ଉଦ୍ଧାରକର୍ତ୍ତା |
| ଆବେଶିତ- ଚେତସାମ୍, ତେଷାମ୍ | = ଚିତ୍ତ ନିବେଶ କରିଥିବା ସେହି ପ୍ରେମୀ ଭକ୍ତମାନଙ୍କର | ଭବାମି | ହୋଇଯାଏ ଅର୍ଥାତ୍ ଉଦ୍ଧାର କରିଦିଏ । |
| ଅହମ୍ | = ମୁଁ | | |
| ନଚିରାତ୍ | = ଶୀଘ୍ର ହିଁ | | |

* ଏହି ଶ୍ଳୋକର ବିଶେଷ ଭାବ ଜାଣିବା ପାଇଁ ଗୀତା ଅଧ୍ୟାୟ ୧୧ ଶ୍ଳୋକ ୫୫ ଦେଖିବା ଉଚିତ ।

ଧ୍ୟାନଦ୍ୱାରା ଭଗବତ୍‌ପ୍ରାପ୍ତି ।

**ମୟ୍ୟେବ ମନ ଆଧତ୍ସ୍ୱ ମୟି ବୁଦ୍ଧିଂ ନିବେଶୟ ।**
**ନିବସିଷ୍ୟସି ମୟ୍ୟେବ ଅତ ଊର୍ଦ୍ଧ୍ୱଂ ନ ସଂଶୟଃ ॥ ୮ ॥**

ମୟି, ଏବ, ମନଃ, ଆଧତ୍ସ୍ୱ, ମୟି, ବୁଦ୍ଧିମ୍, ନିବେଶୟ,
ନିବସିଷ୍ୟସି, ମୟି, ଏବ, ଅତଃ, ଊର୍ଦ୍ଧ୍ୱମ୍, ନ, ସଂଶୟଃ ।।୮।।

**ଏଥିପାଇଁ ହେ ଅର୍ଜୁନ ! ତୁମେ—**

| | | | |
|---|---|---|---|
| ମୟି | = ମୋ'ଠାରେ | ଅତଃ, ଊର୍ଦ୍ଧ୍ୱମ୍ | = ତା'ପରେ ଯେ (ତୁମେ) |
| ଏବ | = ହିଁ | ମୟି, ଏବ | = ମୋ'ଠାରେ ହିଁ |
| ମନଃ | = ମନକୁ | ନିବସିଷ୍ୟସି | = ନିବାସ କରିବ, |
| ଆଧତ୍ସ୍ୱ | = ଲଗାଅ (ଓ); | | |
| ମୟି, (ଏବ) | = ମୋଠାରେ ହିଁ | ସଂଶୟଃ, ନ | = ଏଥିରେ କୌଣସି ସନ୍ଦେହ ନାହିଁ । |
| ବୁଦ୍ଧିମ୍ | = ବୁଦ୍ଧିକୁ | | |
| ନିବେଶୟ | = ଲଗାଇଦିଅ । | | |

ଅଭ୍ୟାସଦ୍ୱାରା ଭଗବତ୍‌ପ୍ରାପ୍ତି ।

**ଅଥ ଚିତ୍ତଂ ସମାଧାତୁଂ ନ ଶକ୍ନୋଷି ମୟି ସ୍ଥିରମ୍ ।**
**ଅଭ୍ୟାସଯୋଗେନ ତତୋ ମାମିଚ୍ଛାପ୍ତୁଂ ଧନଞ୍ଜୟ ॥ ୯ ॥**

ଅଥ, ଚିତ୍ତମ୍, ସମାଧାତୁମ୍, ନ, ଶକ୍ନୋଷି, ମୟି, ସ୍ଥିରମ୍,
ଅଭ୍ୟାସଯୋଗେନ, ତତଃ, ମାମ୍, ଇଚ୍ଛ, ଆପ୍ତୁମ୍, ଧନଞ୍ଜୟ ।।୯।।

**ଏବଂ—**

| | | | |
|---|---|---|---|
| ଅଥ | = ଯଦି (ତୁମେ) | ସମାଧାତୁମ୍ | = ସ୍ଥାପନ କରିବାକୁ |
| ଚିତ୍ତମ୍ | = ଚିତ୍ତକୁ | ନ, ଶକ୍ନୋଷି | = ସମର୍ଥ ନ ହେଉଛ, |
| ମୟି | = ମୋ'ଠାରେ | ତତଃ | = ତେବେ |
| ସ୍ଥିରମ୍ | = ସ୍ଥିର ରୂପେ | ଧନଞ୍ଜୟ | = ହେ ଅର୍ଜୁନ ! |

| | | | |
|---|---|---|---|
| ଅଭ୍ୟାସ-ଯୋଗେନ | = ଅଭ୍ୟାସରୂପୀ ଯୋଗଦ୍ୱାରା[୧] | ଆପ୍ତୁମ୍ | = ପାଇବାକୁ |
| ମାମ୍ | = ମୋତେ | ଇଚ୍ଛ | = ଇଚ୍ଛା କର । |

ଭଗବଦର୍ଥ କର୍ମ କରିବା ଦ୍ୱାରା ଭଗବତ୍ ପ୍ରାପ୍ତି ।

**ଅଭ୍ୟାସେଽପ୍ୟସମର୍ଥୋଽସି ମତ୍କର୍ମପରମୋ ଭବ ।**
**ମଦର୍ଥମପି କର୍ମାଣି କୁର୍ବନ୍ ସିଦ୍ଧିମବାପ୍ସ୍ୟସି ॥ ୧୦ ॥**

ଅଭ୍ୟାସେ, ଅପି, ଅସମର୍ଥଃ, ଅସି, ମତ୍‌କର୍ମପରମଃ, ଭବ,
ମଦର୍ଥମ୍, ଅପି, କର୍ମାଣି, କୁର୍ବନ୍, ସିଦ୍ଧିମ୍, ଅବାପ୍ସ୍ୟସି ।।୧୦।।

**ଏବଂ ଯଦି ତୁମେ ଉପର୍ଯ୍ୟୁକ୍ତ—**

| | | | |
|---|---|---|---|
| ଅଭ୍ୟାସେ | = (ଯଦି ତୁମେ) ଅଭ୍ୟାସରେ | ଭବ | = ହୁଅ । (ଏପରିଭାବରେ) |
| ଅପି | = ମଧ୍ୟ | ମଦର୍ଥମ୍ | = ମୋ ପାଇଁ |
| ଅସମର୍ଥଃ | = ଅସମର୍ଥ | କର୍ମାଣି | = କର୍ମମାନଙ୍କୁ |
| ଅସି | = ଅଟ | କୁର୍ବନ୍ | = କରୁ କରୁ |
| ମତ୍‌କର୍ମ-ପରମଃ | = (ତେବେ କେବଳ) ମୋ ପାଇଁ କର୍ମ କରିବାରେ ହିଁ ପରାୟଣ[୨] | ଅପି | = ମଧ୍ୟ (ତୁମେ) |
| | | ସିଦ୍ଧିମ୍ | = ମୋତ ପାଇବା ରୂପକ ସିଦ୍ଧି |
| | | ଅବାପ୍ସ୍ୟସି | = ଲାଭ କରିପାରିବ । |

---

୧- ଭଗବାନଙ୍କ ନାମ ଏବଂ ଗୁଣର ଶ୍ରବଣ, କୀର୍ତ୍ତନ, ମନନ ତଥା ଶ୍ୱାସ ଦ୍ୱାରା ଜପ ଏବଂ ଭଗବତ୍ ପ୍ରାପ୍ତି ବିଷୟକ ଶାସ୍ତ୍ରମାନଙ୍କ ପଠନ-ପାଠନ ଇତ୍ୟାଦି ଚେଷ୍ଟାମାନଙ୍କୁ ଭଗବତ୍ ପ୍ରାପ୍ତି ପାଇଁ ବାରମ୍ବାର କରିବାର ନାମ 'ଅଭ୍ୟାସ' ଅଟେ ।

୨- ସ୍ୱାର୍ଥ ତ୍ୟାଗ କରି ପରମେଶ୍ୱରଙ୍କୁ ହିଁ ପରମ ଆଶ୍ରୟ ଏବଂ ପରମ ଗତି ବୋଲି ମାନି ନିଷ୍କାମ ପ୍ରେମଭାବ ସହ ସତୀ-ଶିରୋମଣି ପତିବ୍ରତା ସ୍ତ୍ରୀ ଭଳି ମନ, ବାଣୀ ଏବଂ ଶରୀର ଦ୍ୱାରା ପରମେଶ୍ୱରଙ୍କ ପାଇଁ ହିଁ ଯଜ୍ଞ, ଦାନ ଏବଂ ତପ ଆଦି ସମ୍ପୂର୍ଣ୍ଣ କର୍ତ୍ତବ୍ୟକର୍ମ କରିବାର ନାମ 'ଭଗବଦର୍ଥ କର୍ମ କରିବାରେ ପରାୟଣ ହେବା' ଅଟେ ।

ସକଳ କର୍ମର ଫଳତ୍ୟାଗରେ ଭଗବତ୍ ପ୍ରାପ୍ତି ।

**ଅଥୈତଦପ୍ୟଶକ୍ତୋଽସି କର୍ତ୍ତୁଂ ମଦ୍‌ଯୋଗମାଶ୍ରିତଃ ।**
**ସର୍ବକର୍ମଫଳତ୍ୟାଗଂ ତତଃ କୁରୁ ଯତାତ୍ମବାନ୍ ॥ ୧୧ ॥**

ଅଥ, ଏତତ୍, ଅପି, ଅଶକ୍ତଃ, ଅସି, କର୍ତ୍ତୁମ୍, ମଦ୍‌ଯୋଗମ୍, ଆଶ୍ରିତଃ, ସର୍ବକର୍ମଫଳତ୍ୟାଗମ୍, ତତଃ, କୁରୁ, ଯତାତ୍ମବାନ୍ ।।୧୧।।

ଏବଂ—

| | | | |
|---|---|---|---|
| ଅଥ | = ଯଦି | ଅସି | = ଅଟ |
| ମଦ୍‌ଯୋଗମ୍ | = ମୋର ପ୍ରାପ୍ତିରୂପକ ଯୋଗର | ତତଃ | = ତେବେ |
| ଆଶ୍ରିତଃ | = ଆଶ୍ରିତ ହୋଇ | ଯତାତ୍ମବାନ୍ | = ମନ, ବୁଦ୍ଧି ଆଦି ଉପରେ ବିଜୟ ଲାଭ କରି |
| ଏତତ୍ | = ଏହି ଉପରୋକ୍ତ ସାଧନା | | |
| କର୍ତ୍ତୁମ୍ | = କରିବାକୁ | ସର୍ବକର୍ମ ଫଳ-ତ୍ୟାଗମ୍ | = ସକଳ କର୍ମର ଫଳତ୍ୟାଗ* |
| ଅପି | = ମଧ୍ୟ (ତୁମେ) | | |
| ଅଶକ୍ତଃ | = ଅସମର୍ଥ | କୁରୁ | = କର । |

ସର୍ବକର୍ମଫଳ ତ୍ୟାଗ କରିଥିବା ମନୁଷ୍ୟର ପ୍ରଶଂସା ।

**ଶ୍ରେୟୋ ହି ଜ୍ଞାନମଭ୍ୟାସାଜ୍‌ଜ୍ଞାନାଦ୍ଧ୍ୟାନଂ ବିଶିଷ୍ୟତେ ।**
**ଧ୍ୟାନାତ୍ କର୍ମଫଳତ୍ୟାଗସ୍ତ୍ୟାଗାଚ୍ଛାନ୍ତିରନନ୍ତରମ୍ ॥ ୧୨ ॥**

ଶ୍ରେୟଃ, ହି, ଜ୍ଞାନମ୍, ଅଭ୍ୟାସାତ୍, ଜ୍ଞାନାତ୍, ଧ୍ୟାନମ୍, ବିଶିଷ୍ୟତେ, ଧ୍ୟାନାତ୍, କର୍ମଫଳତ୍ୟାଗଃ, ତ୍ୟାଗାତ୍, ଶାନ୍ତିଃ, ଅନନ୍ତରମ୍ ।।୧୨।।

* ଗୀତା ଅଧ୍ୟାୟ ୯ ଶ୍ଳୋକ ୨୭ ରେ ଏହାର ବିସ୍ତୃତ ବିବରଣୀ ଦ୍ରଷ୍ଟବ୍ୟ ।

| | |
|---|---|
| ଅଭ୍ୟାସାତ୍ | = ମର୍ମ ନଜାଣି କରୁଥିବା ଅଭ୍ୟାସ ଅପେକ୍ଷା |
| ଜ୍ଞାନମ୍ | = ଜ୍ଞାନ [୧] |
| ଶ୍ରେୟଃ | = ଶ୍ରେଷ୍ଠ; |
| ଜ୍ଞାନାତ୍ | = ଜ୍ଞାନଠାରୁ |
| ଧ୍ୟାନମ୍ | = ମୋର (ଅର୍ଥାତ୍ ପରମେଶ୍ୱରଙ୍କ) ସ୍ୱରୂପର ଧ୍ୟାନ |
| ବିଶିଷ୍ୟତେ | = ଶ୍ରେଷ୍ଠ ଅଟେ; (ଓ) |
| ଧ୍ୟାନାତ୍ | = ଧ୍ୟାନ ଅପେକ୍ଷା |
| କର୍ମଫଳତ୍ୟାଗଃ | = ସର୍ବକର୍ମର [୨] ଫଳତ୍ୟାଗ (ଶ୍ରେଷ୍ଠ ଅଟେ); |
| ହି | = କାରଣ |
| ତ୍ୟାଗାତ୍ | = ତ୍ୟାଗ ଦ୍ୱାରା |
| ଅନନ୍ତରମ୍ | = ତତ୍‌କାଳ ହିଁ |
| ଶାନ୍ତିଃ | = ପରମ ଶାନ୍ତି ପ୍ରାପ୍ତି ହୋଇଥାଏ । |

ସର୍ବଭୂତରେ ଦ୍ୱେଷଭାବ ରହିତ ଓ ମୈତ୍ରୀ ପ୍ରଭୃତି ଗୁଣଯୁକ୍ତ ପ୍ରିୟ ଭକ୍ତଗଣଙ୍କ ଲକ୍ଷଣ ।

**ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃ କରୁଣ ଏବ ଚ ।**
**ନିର୍ମମୋ ନିରହଙ୍କାରଃ ସମଦୁଃଖସୁଖଃ କ୍ଷମୀ ॥ ୧୩ ॥**

**ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢନିଶ୍ଚୟଃ ।**
**ମୟ୍ୟର୍ପିତମନୋବୁଦ୍ଧିର୍ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ ॥ ୧୪ ॥**

ଅଦ୍ୱେଷ୍ଟା, ସର୍ବଭୂତାନାମ୍, ମୈତ୍ରଃ, କରୁଣଃ, ଏବ, ଚ,
ନିର୍ମମଃ, ନିରହଂକାରଃ, ସମଦୁଃଖସୁଖଃ, କ୍ଷମୀ।।୧୩।।

ସନ୍ତୁଷ୍ଟଃ, ସତତମ୍, ଯୋଗୀ, ଯତାତ୍ମା, ଦୃଢନିଶ୍ଚୟଃ,
ମୟି, ଅର୍ପିତମନୋବୁଦ୍ଧିଃ, ଯଃ, ମଦ୍ଭକ୍ତଃ, ସଃ, ମେ, ପ୍ରିୟଃ।।୧୪।।

---

୧- ଶ୍ରବଣ ତଥା ଶାସ୍ତ୍ର-ପଠନ ଦ୍ୱାରା ପରମେଶ୍ୱରଙ୍କ ସ୍ୱରୂପର ଯେଉଁ ଅନୁଭବ ଜ୍ଞାନ ହୁଏ, ତାହାକୁ ଏଠାରେ 'ଜ୍ଞାନ' ନାମରେ ଜାଣିବା ଉଚିତ।

୨- କେବଳ ଭଗବଦର୍ଥ କର୍ମ କରୁଥିବା ପୁରୁଷଙ୍କର ଭଗବାନଙ୍କଠାରେ ପ୍ରେମ, ଶ୍ରଦ୍ଧା ତଥା ଭଗବତ୍ ଚିନ୍ତନ ବି ସ୍ଥାୟୀ ଭାବେ ରହେ, ଏଥିପାଇଁ ଧ୍ୟାନଠାରୁ କର୍ମଫଳର ତ୍ୟାଗକୁ ଶ୍ରେଷ୍ଠ କୁହାଯାଇଛି।

## ଏହି ପ୍ରକାର ଶାନ୍ତିକୁ ପ୍ରାପ୍ତ ହୋଇଥିବା—

| | |
|---|---|
| ଯଃ | = ଯେଉଁ ପୁରୁଷ |
| ସର୍ବଭୂତାନାମ୍ | = ସକଳଭୂତଙ୍କ ଠାରେ |
| ଅଦ୍ୱେଷ୍ଟା | = ଦ୍ୱେଷ ରହିତ, |
| ମୈତ୍ରଃ | = ନିଃସ୍ୱାର୍ଥପର ଭାବରେ ସମସ୍ତଙ୍କର ପ୍ରେମୀ |
| ଚ | = ଓ |
| କରୁଣଃ | = ଅହେତୁକ ଦୟାଳୁ |
| ଏବ* | = ତଥା |
| ନିର୍ମମଃ | = ମମତା ରହିତ, |
| ନିରହଙ୍କାରଃ | = ଅହଙ୍କାର ରହିତ, |
| ସମଦୁଃଖସୁଖଃ | = ସୁଖଦୁଃଖପ୍ରାପ୍ତିରେ ସମ (ଓ) |
| କ୍ଷମୀ | = କ୍ଷମାଶୀଳ ଅର୍ଥାତ୍ ଅପରାଧୀକୁ ମଧ୍ୟ ଅଭୟ ଦେବା ଲୋକ (ତଥା ଯେଉଁ) |
| ଯୋଗୀ | = ଯୋଗୀ |
| ସତତମ୍ | = ନିରନ୍ତର |
| ସନ୍ତୁଷ୍ଟଃ | = ସନ୍ତୁଷ୍ଟ (ରହନ୍ତି), |
| ଯତାତ୍ମା | = ମନ-ଇନ୍ଦ୍ରିୟମାନଙ୍କ ସହିତ ଶରୀରକୁ ବଶ କରି ରଖିଥିବା (ଓ) |
| ଦୃଢ଼ନିଶ୍ଚୟଃ | = (ମୋଠାରେ) ଦୃଢ଼ ନିଶ୍ଚୟ କରିଥିବା, |
| ମୟି | = ମୋ'ଠାରେ |
| ଅର୍ପିତମନୋବୁଦ୍ଧିଃ | = ମନ-ବୁଦ୍ଧି ଅର୍ପଣ କରିଥିବା |
| ସଃ, ମଦ୍ଭକ୍ତଃ | = ମୋର ସେହି ଭକ୍ତ |
| ମେ | = ମୋତେ |
| ପ୍ରିୟଃ | = ପ୍ରିୟ । |

ହର୍ଷାଦି ବିକାରରହିତ ଏବଂ ସମସ୍ତଙ୍କୁ ଅଭୟ ଦେଉଥିବା ପ୍ରିୟ ଭକ୍ତଙ୍କ ଲକ୍ଷଣ ।

ଯସ୍ମାନ୍ନୋଦ୍ୱିଜତେ ଲୋକୋ ଲୋକାନ୍ନୋଦ୍ୱିଜତେ ଚ ଯଃ ।
ହର୍ଷାମର୍ଷଭୟୋଦ୍ୱେଗୈର୍ମୁକ୍ତୋ ଯଃ ସ ଚ ମେ ପ୍ରିୟଃ ॥ ୧୫ ॥

ଯସ୍ମାତ୍, ନ, ଉଦ୍‌ବିଜତେ, ଲୋକଃ, ଲୋକାତ୍, ନ, ଉଦ୍‌ବିଜତେ, ଚ, ଯଃ, ହର୍ଷାମର୍ଷଭୟୋଦ୍‌ବେଗୈଃ, ମୁକ୍ତଃ, ଯଃ, ସଃ, ଚ, ମେ, ପ୍ରିୟଃ ।।୧୫।।

* 'ଏବ' ଶବ୍ଦକୁ ଏଠାରେ ସମସ୍ତ ଗୁଣର ପ୍ରତିପାଦକ ବୋଲି ବୁଝିବା ଉଚିତ ।

**ତଥା—**

| | | | |
|---|---|---|---|
| ଯସ୍ମାତ୍ | = ଯାହାଙ୍କ ଦ୍ୱାରା | ଚ | = ତଥା |
| ଲୋକଃ | = କୌଣସି ବି ଜୀବ | ଯଃ | = ଯେ |
| ନ, ଉଦ୍‌ବିଜତେ | = ଉଦ୍‌ବିଗ୍ନ ହୁଅନ୍ତି ନାହିଁ | ହର୍ଷାମର୍ଷ-ଭୟୋଦ୍‌ବେଗୈଃ | = ହର୍ଷ, ଅମର୍ଷ [୧], ଭୟ ଏବଂ ଉଦ୍‌ବେଗ ଆଦିରୁ |
| ଚ | = ଓ | | |
| ଯଃ | = ଯେ ନିଜେ ମଧ୍ୟ | | |
| ଲୋକାତ୍ | = କୌଣସି ଜୀବ ହେତୁ | ମୁକ୍ତଃ | = ରହିତ ଅଟନ୍ତି, |
| | | ସଃ | = ସେହି ଭକ୍ତ |
| ନ, ଉଦ୍‌ବିଜତେ | = ଉଦ୍‌ବିଗ୍ନ ହୁଅନ୍ତି ନାହିଁ | ମେ | = ମୋର |
| | | ପ୍ରିୟଃ | = ପ୍ରିୟ ଅଟେ । |

ନିସ୍ପୃହାଦି ଗୁଣଯୁକ୍ତ ସର୍ବତ୍ୟାଗୀ ପ୍ରିୟଭକ୍ତଙ୍କ ଲକ୍ଷଣ ।

**ଅନପେକ୍ଷଃ ଶୁଚିର୍ଦକ୍ଷ ଉଦାସୀନୋ ଗତବ୍ୟଥଃ ।**
**ସର୍ବାରମ୍ଭପରିତ୍ୟାଗୀ ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ ॥ ୧୬ ॥**

ଅନପେକ୍ଷଃ, ଶୁଚିଃ, ଦକ୍ଷଃ, ଉଦାସୀନଃ, ଗତବ୍ୟଥଃ,
ସର୍ବାରମ୍ଭପରିତ୍ୟାଗୀ, ଯଃ, ମଦ୍‌ଭକ୍ତଃ, ସଃ, ମେ, ପ୍ରିୟଃ ।।୧୬।।

**ଏବଂ—**

| | | | |
|---|---|---|---|
| ଯଃ | = ଯେ | ଦକ୍ଷଃ | = ଦକ୍ଷ, |
| ଅନପେକ୍ଷଃ | = ଆକାଙ୍କ୍ଷା ରହିତ, | ଉଦାସୀନଃ | = ପକ୍ଷପାତ ରହିତ (ଓ) |
| ଶୁଚିଃ | = ବାହାରେ ଓ ଭିତରେ ଶୁଦ୍ଧ, [୨] | ଗତବ୍ୟଥଃ | = ଦୁଃଖରୁ ମୁକ୍ତ, |

୧- ଅନ୍ୟର ଉନ୍ନତିକୁ ଦେଖି ସନ୍ତାପିତ ହେବାର ନାମ 'ଅମର୍ଷ' ଅଟେ ।
୨- ଗୀତା ଅଧ୍ୟାୟ ୧୩ ଶ୍ଳୋକ ୭ ର ଟିପ୍ପଣୀ ଦ୍ରଷ୍ଟବ୍ୟ ।

| | | | |
|---|---|---|---|
| ସଃ | = ସେହି | ମଦ୍‌ଭକ୍ତଃ | = ମୋର ଭକ୍ତ |
| ସର୍ବାରମ୍ଭ-ପରିତ୍ୟାଗୀ | = ସର୍ବାରମ୍ଭ - ପରିତ୍ୟାଗୀ* | ମେ | = ମୋତେ |
| | | ପ୍ରିୟଃ | = ପ୍ରିୟ ଲାଗେ |

ହର୍ଷ-ଶୋକାଦି ବିକାର ରହିତ ନିଷ୍କାମୀ ପ୍ରିୟ ଭକ୍ତଙ୍କ ଲକ୍ଷଣ ।

**ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି ନ ଶୋଚତି ନ କାଂକ୍ଷତି ।**
**ଶୁଭାଶୁଭପରିତ୍ୟାଗୀ ଭକ୍ତିମାନ୍ ଯଃ ସ ମେ ପ୍ରିୟଃ ॥ ୧୭ ॥**

ଯଃ, ନ, ହୃଷ୍ୟତି, ନ, ଦ୍ୱେଷ୍ଟି, ନ, ଶୋଚତି, ନ, କାଙ୍‌କ୍ଷତି, ଶୁଭାଶୁଭପରିତ୍ୟାଗୀ, ଭକ୍ତିମାନ୍, ଯଃ, ସଃ, ମେ, ପ୍ରିୟଃ ।।୧୭।।

ଏବଂ—

| | | | |
|---|---|---|---|
| ଯଃ | = ଯେ | ଯଃ | = (ତଥା) ଯେ |
| ନ, ହୃଷ୍ୟତି | = (କେବେ) ହର୍ଷିତ ହୁଅନ୍ତି ନାହିଁ, | ଶୁଭାଶୁଭ-ପରିତ୍ୟାଗୀ | = କି ଶୁଭ, କି ଅଶୁଭ ସକଳ କର୍ମର ତ୍ୟାଗୀ- |
| ନ, ଦ୍ୱେଷ୍ଟି | = ଦ୍ୱେଷ କରନ୍ତି ନାହିଁ, | | |
| ନ, ଶୋଚତି | = ଶୋକ କରନ୍ତି ନାହିଁ, | ସଃ | = ସେହି |
| ନ,କାଙ୍‌କ୍ଷତି | = (କି) କାମନା କରନ୍ତି ନାହିଁ | ଭକ୍ତିମାନ୍ | = ଭକ୍ତିମାନ୍ ପୁରୁଷ |
| | | ମେ, ପ୍ରିୟଃ | = ମୋର ପ୍ରିୟ । |

ଶତ୍ରୁ ମିତ୍ରାଦିରେ ସମଭାବ ରଖୁଥିବା ସ୍ଥିରବୁଦ୍ଧି ପ୍ରିୟ ଭକ୍ତଙ୍କ ଲକ୍ଷଣ ।

**ସମଃ ଶତ୍ରୌ ଚ ମିତ୍ରେ ଚ ତଥା ମାନାପମାନୟୋଃ ।**
**ଶୀତୋଷ୍ଣସୁଖଦୁଃଖେଷୁ ସମଃ ସଙ୍ଗବିବର୍ଜିତଃ ॥ ୧୮ ॥**

ସମଃ, ଶତ୍ରୌ, ଚ, ମିତ୍ରେ, ଚ, ତଥା, ମାନାପମାନୟୋଃ, ଶୀତୋଷ୍ଣସୁଖଦୁଃଖେଷୁ, ସମଃ, ସଙ୍ଗବିବର୍ଜିତଃ ।।୧୮।।

* ଅର୍ଥାତ୍ ମନବାଣୀ ଏବଂ ଶରୀର ଦ୍ୱାରା ପ୍ରାରବ୍ଧରୁ ହେଉଥିବା ସମ୍ପୂର୍ଣ୍ଣ ସ୍ୱାଭାବିକ କର୍ମରେ କର୍ତାପଣର ଅଭିମାନକୁ ତ୍ୟାଗ କରୁଥିବା ପୁରୁଷ ।

### ଏବଂ ଯେଉଁମାନେ—

| | | | | | |
|---|---|---|---|---|---|
| ଶତ୍ରୌ, ମିତ୍ରେ | = | (ଯେ) ଶତ୍ରୁଠାରେ ଏବଂ ମିତ୍ରଠାରେ | ସୁଖଦୁଃଖେଷୁ | | (ଶରୀରର ଅନୁକୂଳତା-ପ୍ରତିକୂଳତା) ତଥା ସୁଖ-ଦୁଃଖାଦି ଦ୍ୱନ୍ଦ୍ୱରେ |
| ଚ | = | ଓ | | | |
| ମାନାପମାନୟୋଃ | = | ମାନ-ଅପମାନରେ | | | |
| ସମଃ | = | ସମ | ସମଃ | = | ସମ |
| ତଥା | = | ତଥା | ଚ | = | ଓ |
| ଶୀତୋଷ୍ଣ- | = | ଶୀତ-ଉଷ୍ଣ | ସଙ୍ଗବିବର୍ଜ୍ଜିତଃ | = | ଆସକ୍ତି ରହିତ- |

**ତୁଲ୍ୟନିନ୍ଦାସ୍ତୁତିର୍ମୌନୀ ସନ୍ତୁଷ୍ଟୋ ଯେନ କେନଚିତ୍ ।**
**ଅନିକେତଃ ସ୍ଥିରମତିର୍ଭକ୍ତିମାନ୍ମେ ପ୍ରିୟୋ ନରଃ ॥ ୧୯ ॥**

ତୁଲ୍ୟନିନ୍ଦାସ୍ତୁତିଃ, ମୌନୀ, ସନ୍ତୁଷ୍ଟଃ, ଯେନ, କେନଚିତ୍,
ଅନିକେତଃ, ସ୍ଥିରମତିଃ, ଭକ୍ତିମାନ୍, ମେ, ପ୍ରିୟଃ, ନରଃ ।।୧୯।।

### ତଥା ଯେଉଁମାନେ—

| | | | | | |
|---|---|---|---|---|---|
| ତୁଲ୍ୟନିନ୍ଦାସ୍ତୁତିଃ | = | ଯେ ନିନ୍ଦା ଓ ସ୍ତୁତିକୁ ସମାନ ଦେଖନ୍ତି, | | | (ଏବଂ) |
| ମୌନୀ | = | ଯେ ମନନଶୀଳ* ଅଟନ୍ତି | ଯେନ, କେନଚିତ୍ | = | ଯେ କୌଣସି ପ୍ରକାରେ ଶରୀର ନିର୍ବାହ କରିବାରେ |

* ମନନଶୀଳ ଅର୍ଥାତ୍ ପରମେଶ୍ୱରଙ୍କ ସ୍ୱରୂପକୁ ନିରନ୍ତର ମନନ କରିବା ପୁରୁଷ ।

| | | | |
|---|---|---|---|
| ସନ୍ତୁଷ୍ଟଃ | = ସଦା ହିଁ ସନ୍ତୁଷ୍ଟ (ଏବଂ) | | (ସେହି) |
| ଅନିକେତଃ | = ବାସସ୍ଥାନ ପ୍ରତି ମମତ୍ୱ ଓ ଆସକ୍ତିରୁ ରହିତ, | ସ୍ଥିରମତିଃ | = ସ୍ଥିରବୁଦ୍ଧି |
| | | ଭକ୍ତିମାନ୍ | = ଭକ୍ତିମାନ୍ |
| | | ନରଃ | = ପୁରୁଷ |
| | | ମେ, ପ୍ରିୟଃ | = ମୋର ପ୍ରିୟ । |

ଉପରୋକ୍ତ ଗୁଣମାନଙ୍କ ସେବନ କରୁଥିବା ଭକ୍ତଙ୍କ ମହିମା ।

**ଯେ ତୁ ଧର୍ମ୍ୟାମୃତମିଦଂ ଯଥୋକ୍ତଂ ପର୍ଯ୍ୟୁପାସତେ ।**
**ଶ୍ରଦ୍ଦଧାନା ମତ୍ପରମା ଭକ୍ତାସ୍ତେଽତୀବ ମେ ପ୍ରିୟାଃ ॥ ୨୦ ॥**

ଯେ, ତୁ, ଧର୍ମ୍ୟାମୃତମ୍, ଇଦମ୍, ଯଥା, ଉକ୍ତମ୍, ପର୍ଯ୍ୟୁପାସତେ, ଶ୍ରଦ୍ଦଧାନାଃ, ମତ୍ପରମାଃ, ଭକ୍ତାଃ, ତେ, ଅତୀବ, ମେ, ପ୍ରିୟାଃ ।।୨୦।।

| | | | |
|---|---|---|---|
| ତୁ | = କିନ୍ତୁ | ଯଥା, ଉକ୍ତମ୍ | = ଉପରୋକ୍ତ ପ୍ରକାରେ କଥିତ |
| ଯେ | = ଯେଉଁ | ଧର୍ମ୍ୟାମୃତମ୍ | = ଧର୍ମମୟ ଅମୃତକୁ |
| ଶ୍ରଦ୍ଦଧାନାଃ | = ଶ୍ରଦ୍ଧାଯୁକ୍ତ ପୁରୁଷମାନେ[୧] | ପର୍ଯ୍ୟୁପାସତେ | = ନିଷ୍କାମ ପ୍ରେମ ଭାବରେ ସେବନ କରନ୍ତି, |
| ମତ୍ପରମାଃ | = ମୋର ପରାୟଣ ହୋଇ[୨] | | |
| ଇଦମ୍ | = ଏହି | | |

୧ – ବେଦ, ଶାସ୍ତ୍ର, ମହାତ୍ମା ଏବଂ ଗୁରୁଜନ ତଥା ପରମେଶ୍ୱରଙ୍କ ବଚନକୁ ପ୍ରତ୍ୟକ୍ଷ ମନେକରିବାର ନାମ 'ଶ୍ରଦ୍ଧା' ଅଟେ ।

୨ – ଅର୍ଥାତ୍ ପରମେଶ୍ୱରଙ୍କୁ ହିଁ ପରମାଶ୍ରୟ, ପରମଗତି ଏବଂ ସକଳ ଜୀବଙ୍କର ଆତ୍ମରୂପ, ସବୁରି ଊର୍ଦ୍ଧ୍ୱରେ ସ୍ଥିତ ପରମପୂଜ୍ୟ ବୋଲି ଜାଣି ବିଶୁଦ୍ଧ ପ୍ରେମ ସହ ପରମେଶ୍ୱରଙ୍କ ପ୍ରାପ୍ତି ପାଇଁ 'ତତ୍ପର' ହେବା ।

| | | | |
|---|---|---|---|
| ତେ | = ସେହି | ମେ, ଅତୀବ, | = ମୋର ଅତିଶୟ |
| ଭକ୍ତାଃ | = ଭକ୍ତମାନେ | ପ୍ରିୟାଃ | ପ୍ରିୟ ଅଟନ୍ତି । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଭକ୍ତିଯୋଗୋ ନାମ ଦ୍ୱାଦଶୋଽଧ୍ୟାୟଃ ॥ ୧୨ ॥*



**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ଭକ୍ତିଯୋଗ' ନାମକ ଦ୍ୱାଦଶ ଅଧ୍ୟାୟ ପୂର୍ଣ୍ଣ ହେଲା । ।୧୨ । ।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

ଓଁ ଶ୍ରୀପରମାତ୍ମନେ ନମଃ

# ତ୍ରୟୋଦଶ ଅଧ୍ୟାୟ

## କ୍ଷେତ୍ରକ୍ଷେତ୍ରଜ୍ଞବିଭାଗଯୋଗ

**ପ୍ରଧାନ ବିଷୟ**

୧ ରୁ ୧୮- ଜ୍ଞାନସହିତ କ୍ଷେତ୍ର-କ୍ଷେତ୍ରଜ୍ଞର ବିଷୟ,
୧୯ ରୁ ୩୪- ଜ୍ଞାନ ସହିତ ପ୍ରକୃତି-ପୁରୁଷର ବିଷୟ ।

*ଶ୍ରୀଭଗବାନ ଉବାଚ*

କ୍ଷେତ୍ର ଏବଂ କ୍ଷେତ୍ରଜ୍ଞର ଲକ୍ଷଣ ।

ଇଦଂ ଶରୀରଂ କୌନ୍ତେୟ କ୍ଷେତ୍ରମିତ୍ୟଭିଧୀୟତେ ।
ଏତଦ୍ୟୋ ବେତ୍ତି ତଂ ପ୍ରାହୁଃ କ୍ଷେତ୍ରଜ୍ଞ ଇତି ତଦ୍ବିଦଃ ॥ ୧ ॥

ଇଦମ୍, ଶରୀରମ୍, କୌନ୍ତେୟ, କ୍ଷେତ୍ରମ୍, ଇତି, ଅଭିଧୀୟତେ,
ଏତତ୍, ଯଃ, ବେତ୍ତି, ତମ୍, ପ୍ରାହୁଃ, କ୍ଷେତ୍ରଜ୍ଞଃ, ଇତି, ତଦ୍ବିଦଃ ।।୧ ।।

**ଏହାପରେ ଶ୍ରୀକୃଷ୍ଣଭଗବାନ୍ କହିଲେ—**

| | | | |
|---|---|---|---|
| କୌନ୍ତେୟ | = ହେ କୁନ୍ତୀପୁତ୍ର ଅର୍ଜୁନ ! | କ୍ଷେତ୍ରମ୍ | = 'କ୍ଷେତ୍ର'* |
| | | ଇତି | = ବୋଲି |
| ଇଦମ୍ | = 'ଏହି' ରୂପରେ ସୂଚିତ କରାଯାଉଥିବା | ଅଭିଧୀୟତେ | = କୁହାଯାଏ (ଏବଂ) |
| | | ଏତତ୍ | = ଏହି କ୍ଷେତ୍ରକୁ |
| | | ଯଃ | = ଯିଏ |
| ଶରୀରମ୍ | = ଶରୀରକୁ | ବେତ୍ତି | = ଜାଣେ, |

* ଯେପରି ଖେତରେ ବୁଣା ଯାଇଥିବା ବୀଜର ଅନୁରୂପ ଫଳ ଉଚିତ ସମୟରେ ପ୍ରକଟ ହୁଏ, ସେହିପରି ଏଥିରେ ବୁଣାଯାଇଥିବା କର୍ମ-ସଂସ୍କାର ରୂପକ ଫଳ ଉଚିତ ସମୟରେ ପ୍ରକଟ ହୁଏ। ଏଥିପାଇଁ ଶରୀରକୁ 'କ୍ଷେତ୍ର' ବୋଲି କୁହାଯାଏ ।

| | | | |
|---|---|---|---|
| ତମ୍ | = ତାହାକୁ | ଇତି | = ବୋଲି |
| ତଦ୍ୱିଦଃ | = ଜ୍ଞାନୀଲୋକେ | | |
| କ୍ଷେତ୍ରଜ୍ଞଃ | = 'କ୍ଷେତ୍ରଜ୍ଞ' | ପ୍ରାହୁଃ | = କହନ୍ତି । |

ଜୀବାତ୍ମା ଏବଂ ପରମାତ୍ମାଙ୍କ ଏକତା ନିରୂପଣ ।

କ୍ଷେତ୍ରଜ୍ଞଂ ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ ।
କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଜ୍ଞାନଂ ଯତ୍ତଜ୍ଜ୍ଞାନଂ ମତଂ ମମ ॥ ୨ ॥

କ୍ଷେତ୍ରଜ୍ଞମ୍, ଚ, ଅପି, ମାମ୍, ବିଦ୍ଧି, ସର୍ବକ୍ଷେତ୍ରେଷୁ, ଭାରତ, କ୍ଷେତ୍ରକ୍ଷେତ୍ରଜ୍ଞୟୋଃ, ଜ୍ଞାନମ୍, ଯତ୍, ତତ୍, ଜ୍ଞାନମ୍, ମତମ୍, ମମ ।।୨ ।।

| | | | |
|---|---|---|---|
| ଭାରତ | = ହେ ଅର୍ଜୁନ ! | | ସହିତ ପ୍ରକୃତି |
| ସର୍ବକ୍ଷେତ୍ରେଷୁ | = ସମସ୍ତ କ୍ଷେତ୍ରରେ | | ଓ ପୁରୁଷର |
| କ୍ଷେତ୍ରଜ୍ଞମ୍ | = କ୍ଷେତ୍ରଜ୍ଞ ଅର୍ଥାତ୍ | ଯତ୍ | = ଯେଉଁ |
| | ଜୀବାତ୍ମା | ଜ୍ଞାନମ୍ | = ତତ୍ତ୍ୱତଃ[2] ଜାଣିବା |
| ଅପି | = ମଧ୍ୟ | | ବିଷୟ ଅଛି |
| ମାମ୍ | = ମୋତେ (ହିଁ) | ତତ୍ | = ତାହା (ହିଁ) |
| ବିଦ୍ଧି | = (ବୋଲି) ଜାଣ;[1] | ଜ୍ଞାନମ୍ | = ଜ୍ଞାନ- |
| ଚ | = ଏବଂ | (ଇତି) | = ଏହା |
| କ୍ଷେତ୍ର- | = କ୍ଷେତ୍ର ଓ କ୍ଷେତ୍ରଜ୍ଞର | ମମ | = ମୋର |
| କ୍ଷେତ୍ରଜ୍ଞୟୋଃ | ଅର୍ଥାତ୍ ବିକାର | ମତମ୍ | = ମତ । |

ବିକାରସହିତ କ୍ଷେତ୍ରର ସ୍ୱରୂପ ଏବଂ ପ୍ରଭାବ ସହିତ କ୍ଷେତ୍ରଜ୍ଞର ବର୍ଣ୍ଣନ କରିବା ପାଇଁ ପ୍ରତିଜ୍ଞା ।

ତତ୍‌କ୍ଷେତ୍ରଂ ଯଚ୍ଚ ଯାଦୃକ୍ ଚ ଯଦ୍‌ବିକାରି ଯତଶ୍ଚ ଯତ୍ ।
ସ ଚ ଯୋ ଯତ୍ ପ୍ରଭାବଶ୍ଚ ତତ୍ସମାସେନ ମେ ଶୃଣୁ ॥ ୩ ॥

ତତ୍, କ୍ଷେତ୍ରମ୍, ଯତ୍, ଚ, ଯାଦୃକ୍, ଚ, ଯଦ୍‌ବିକାରି, ଯତଃ, ଚ, ଯତ୍, ସଃ, ଚ, ଯଃ, ଯତ୍‌ପ୍ରଭାବଃ, ଚ, ତତ୍, ସମାସେନ, ମେ, ଶୃଣୁ ।।୩।।

୧- ଗୀତା ଅଧ୍ୟାୟ ୧୫ ଶ୍ଳୋକ ୭ ଏବଂ ତାହାର ଟିପ୍ପଣୀ ଦ୍ରଷ୍ଟବ୍ୟ ।
୨- ଗୀତା ଅଧ୍ୟାୟ ୧୩ ଶ୍ଳୋକ ୨୩ ଏବଂ ତାହାର ଟିପ୍ପଣୀ ଦ୍ରଷ୍ଟବ୍ୟ ।

**ଏଥିପାଇଁ —**

| | | | |
|---|---|---|---|
| ତତ୍ | = ସେହି | ଚ | = ତଥା |
| କ୍ଷେତ୍ରମ୍ | = କ୍ଷେତ୍ର | ସଃ | = ସେହି (କ୍ଷେତ୍ରଜ୍ଞ ବି) |
| ଯତ୍ | = ଯାହା | ଯଃ | = ଯିଏ |
| ଚ | = ଓ | ଚ | = ଓ |
| ଯାଦୃକ୍ | = ଯେପରି | ଯତ୍ପ୍ରଭାବଃ | = ଯେଉଁ ପ୍ରଭାବଯୁକ୍ତ |
| ଚ | = ତଥା | ତତ୍ | = ସେହିସବୁ |
| ଯଦ୍ବିକାରି | = ଯେଉଁ ଯେଉଁ ବିକାରଯୁକ୍ତ | ସମାସେନ | = ସଂକ୍ଷେପରେ |
| ଚ | = ଓ | ମେ | = ମୋ'ଠାରୁ |
| ଯତଃ | = ଯେଉଁଥିରୁ | ଶୃଣୁ | = ଶୁଣ । |
| ଯତ୍ | = ଯାହା ଉତ୍ପନ୍ନ (ହୋଇଛି) | | |

କ୍ଷେତ୍ର ଏବଂ କ୍ଷେତ୍ରଜ୍ଞ ବିଷୟରେ ଋଷି, ବେଦ ଏବଂ ବ୍ରହ୍ମସୂତ୍ରର ପ୍ରମାଣ ।

**ଋଷିଭିର୍ବହୁଧା ଗୀତଂ ଛନ୍ଦୋଭିର୍ବିବିଧୈଃ ପୃଥକ୍ ।**
**ବ୍ରହ୍ମସୂତ୍ରପଦୈଶ୍ଚୈବ ହେତୁମଦ୍ଭିର୍ବିନିଶ୍ଚିତୈଃ ॥ ୪ ॥**

ଋଷିଭିଃ, ବହୁଧା, ଗୀତମ୍, ଛନ୍ଦୋଭିଃ, ବିବିଧୈଃ, ପୃଥକ୍
ବ୍ରହ୍ମସୂତ୍ରପଦୈଃ, ଚ, ଏବ, ହେତୁମଦ୍ଭିଃ, ବିନିଶ୍ଚିତୈଃ ।।୪।।

**ଏହି କ୍ଷେତ୍ର ଏବଂ କ୍ଷେତ୍ରଜ୍ଞର ତତ୍ତ୍ୱ—**

| | | | |
|---|---|---|---|
| ଋଷିଭିଃ | = ଋଷିମାନଙ୍କ ଦ୍ୱାରା | ପୃଥକ୍ | = ବିଭାଗପୂର୍ବକ |
| ବହୁଧା | = ବହୁପ୍ରକାରେ | (ଗୀତମ୍) | = କୁହାଯାଇଛି |
| ଗୀତମ୍ | = କୁହାଯାଇଛି (ଏବଂ) | ଚ | = ତଥା |
| ବିବିଧୈଃ | = ବିବିଧ | ବିନିଶ୍ଚିତୈଃ | = ଭଲଭାବରେ ନିଶ୍ଚୟ କରାଯାଇଥିବା |
| ଛନ୍ଦୋଭିଃ | = ବେଦମନ୍ତ୍ରମାନଙ୍କ ଦ୍ୱାରା (ବି) | | |

| | | | |
|---|---|---|---|
| ହେତୁମଦ୍‌ଭିଃ | = ଯୁକ୍ତିଯୁକ୍ତ | ଏବ | = ମଧ୍ୟ |
| ବ୍ରହ୍ମସୂତ୍ରପଦୈଃ | = ବ୍ରହ୍ମସୂତ୍ରର ପଦମାନଙ୍କ ଦ୍ୱାରା | (ଗୀତମ୍) | = କୁହାଯାଇଛି । |

କ୍ଷେତ୍ରର ସ୍ୱରୂପ ।

ମହାଭୂତାନ୍ୟହଙ୍କାରୋ ବୁଦ୍ଧିରବ୍ୟକ୍ତମେବ ଚ ।
ଇନ୍ଦ୍ରିୟାଣି ଦଶୈକଂ ଚ ପଞ୍ଚ ଚେନ୍ଦ୍ରିୟଗୋଚରାଃ ॥ ୫ ॥

ମହାଭୂତାନି, ଅହଙ୍କାରଃ, ବୁଦ୍ଧିଃ, ଅବ୍ୟକ୍ତମ୍, ଏବ, ଚ,
ଇନ୍ଦ୍ରିୟାଣି, ଦଶ, ଏକମ୍, ଚ, ପଞ୍ଚ, ଚ, ଇନ୍ଦ୍ରିୟଗୋଚରାଃ ।।୫ ।।

**ଏବଂ ହେ ଅର୍ଜୁନ ! ସେହି ସବୁ ମୁଁ ତୁମରି ପାଇଁ କହୁଛି କି—**

| | | | |
|---|---|---|---|
| ମହାଭୂତାନି | = ପଞ୍ଚମହାଭୂତ, [୧] | ଇନ୍ଦ୍ରିୟାଣି | = ଇନ୍ଦ୍ରିୟମାନେ, [୨] |
| ଅହଂକାରଃ | = ଅହଂକାର, | ଏକମ୍ | = ଏକ ମନ |
| ବୁଦ୍ଧିଃ | = ବୁଦ୍ଧି | ଚ | = ଓ |
| ଚ | = ଓ | ପଞ୍ଚ | = ପାଞ୍ଚ |
| ଅବ୍ୟକ୍ତମ୍ | = ମୂଳପ୍ରକୃତି | ଇନ୍ଦ୍ରିୟଗୋଚରାଃ | = ଇନ୍ଦ୍ରିୟମାନଙ୍କର ବିଷୟ ଅର୍ଥାତ୍ (ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ) - |
| ଏବ | = ବି, | | |
| ଚ | = ତଥା | | |
| ଦଶ | = ଦଶ | | |

କ୍ଷେତ୍ରର ବିକାରମାନଙ୍କ କଥନ ।

ଇଚ୍ଛା ଦ୍ୱେଷଃ ସୁଖଂ ଦୁଃଖଂ ସଂଘାତଶ୍ଚେତନା ଧୃତିଃ ।
ଏତତ୍ କ୍ଷେତ୍ରଂ ସମାସେନ ସବିକାରମୁଦାହୃତମ୍ ॥ ୬ ॥

୧- ଅର୍ଥାତ୍ ଆକାଶ, ବାୟୁ, ଅଗ୍ନି, ଜଳ ଏବଂ ପୃଥିବୀର ସୂକ୍ଷ୍ମଭାବ ।

୨- ଅର୍ଥାତ୍ ଶ୍ରୋତ୍ର, ନେତ୍ର, ରସନା, ତ୍ୱଚା ଓ ଘ୍ରାଣ ଏବଂ ବାକ୍, ପାଦ, ହସ୍ତ, ଉପସ୍ଥ (ଜନନେନ୍ଦ୍ରିୟ) ଓ ପାୟୁ (ମଳଦ୍ୱାର) ।

ଇଚ୍ଛା, ଦ୍ୱେଷଃ, ସୁଖମ୍, ଦୁଃଖମ୍, ସଂଘାତଃ, ଚେତନା, ଧୃତିଃ,
ଏତତ୍, କ୍ଷେତ୍ରମ୍, ସମାସେନ, ସବିକାରମ୍, ଉଦାହୃତମ୍ ।।୬।।

**ତଥା —**

| | | | | |
|---|---|---|---|---|
| ଇଚ୍ଛା | = ଇଚ୍ଛା, | | ସବିକାରମ୍ | = ବିକାରମାନଙ୍କ ସହିତ [3] |
| ଦ୍ୱେଷଃ | = ଦ୍ୱେଷ, | | ଏତତ୍, କ୍ଷେତ୍ରମ୍ | = ଏହି କ୍ଷେତ୍ର ବିଷୟରେ |
| ସୁଖମ୍ | = ସୁଖ, | | | |
| ଦୁଃଖମ୍ | = ଦୁଃଖ, | | | |
| ସଂଘାତଃ | = ସ୍ଥୂଳଦେହର ପିଣ୍ଡ, | | | |
| ଚେତନା | = ଚେତନା (ଏବଂ)[1] | | ସମାସେନ | = ସଂକ୍ଷେପରେ |
| ଧୃତିଃ | = ଧୃତି (ଏପରି)[2] | | ଉଦାହୃତମ୍ | = କୁହାଗଲା । |

ଜ୍ଞାନ ସାଧନାରେ ଅମାନିତ୍ୱ ଆଦି ନଅଟି ଗୁଣର କଥନ ।

**ଅମାନିତ୍ୱମଦମ୍ଭିତ୍ୱମହିଂସା କ୍ଷାନ୍ତିରାର୍ଜବମ୍ ।**
**ଆଚାର୍ଯ୍ୟୋପାସନଂ ଶୌଚଂ ସ୍ଥୈର୍ଯ୍ୟମାତ୍ମବିନିଗ୍ରହଃ ॥ ୭ ॥**

ଅମାନିତ୍ୱମ୍, ଅଦମ୍ଭିତ୍ୱମ୍, ଅହିଂସା, କ୍ଷାନ୍ତିଃ, ଆର୍ଜବମ୍,
ଆଚାର୍ଯ୍ୟୋପାସନମ୍, ଶୌଚମ୍, ସ୍ଥୈର୍ଯ୍ୟମ୍, ଆତ୍ମବିନିଗ୍ରହଃ ।।୭।।

**ଏବଂ ହେ ଅର୍ଜୁନ !—**

| | | | | |
|---|---|---|---|---|
| ଅମାନିତ୍ୱମ୍ | = ନିଜଠାରେ ଶ୍ରେଷ୍ଠତା ଅଭିମାନର ଅଭାବ, | | ଅଦମ୍ଭିତ୍ୱମ୍ | = ଦମ୍ଭାଚରଣର ଅଭାବ, |

୧-ଶରୀର ଏବଂ ଅନ୍ତଃକରଣର ଏକପ୍ରକାର ଚେତନଶକ୍ତି ।

୨-ଗୀତା ଅଧ୍ୟାୟ ୧୮ ଶ୍ଳୋକ ୩୩, ୩୪, ୩୫ ଦ୍ରଷ୍ଟବ୍ୟ ।

୩-ଏହି ଅଧ୍ୟାୟର ପଞ୍ଚମ ଶ୍ଳୋକରେ କୁହାଯାଇଥିବା କ୍ଷେତ୍ରର ସ୍ୱରୂପ ବୋଲି ବୁଝିବାକୁ ହେବ ଏବଂ ଏହି ଶ୍ଳୋକରେ କୁହାଯାଇଥିବା ଇଚ୍ଛାଦି କ୍ଷେତ୍ରର ବିକାର ବୋଲି ବୁଝିବାକୁ ହେବ ।

| | | | |
|---|---|---|---|
| ଅହିଂସା | = ପ୍ରାଣୀ ମାତ୍ରକେ କାହାରିକୁ କୌଣସି ପ୍ରକାର ଦୁଃଖ ନ ଦେବା, | ଆଚାର୍ଯୋପାସନମ୍ | = ଶ୍ରଦ୍ଧା ଭକ୍ତି ସହିତ ଗୁରୁସେବା, |
| କ୍ଷାନ୍ତିଃ | = କ୍ଷମାଶୀଳତା, | ଶୌଚମ୍ | = ଅନ୍ତଃ-ବାହ୍ୟ ଶୁଦ୍ଧି,* |
| ଆର୍ଜବମ୍ | = ମନ, ବଚନ ଆଦିରେ ସରଳତା, | ସ୍ଥୈର୍ଯ୍ୟମ୍ | = ଅନ୍ତଃକରଣର ସ୍ଥିରତା (ଏବଂ) |
| | | ଆତ୍ମବିନିଗ୍ରହଃ | = ମନ-ଇନ୍ଦ୍ରିୟମାନଙ୍କ ସହିତ ଶରୀରର ନିଗ୍ରହ । |

ଜ୍ଞାନର ସାଧନାରେ ଅହଂକାରର ଅଭାବ ଏବଂ ବୈରାଗ୍ୟର କଥନ ।

**ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟମନହଙ୍କାର ଏବ ଚ ।**
**ଜନ୍ମମୃତ୍ୟୁଜରାବ୍ୟାଧିଦୁଃଖଦୋଷାନୁଦର୍ଶନମ୍ ॥ ୮ ॥**

ଇନ୍ଦ୍ରିୟାର୍ଥେଷୁ, ବୈରାଗ୍ୟମ୍, ଅନହଙ୍କାରଃ, ଏବ, ଚ,
ଜନ୍ମମୃତ୍ୟୁଜରାବ୍ୟାଧିଦୁଃଖଦୋଷାନୁଦର୍ଶନମ୍ ।।୮।।

**ତଥା—**

| | | | |
|---|---|---|---|
| ଇନ୍ଦ୍ରିୟାର୍ଥେଷୁ | = ଇହଲୋକ ଓ ପରଲୋକର ସକଳ ପ୍ରକାର ଭୋଗରେ | ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି-ଦୁଃଖ-ଦୋଷାନୁଦର୍ଶନମ୍ | = ଜନ୍ମ, ମୃତ୍ୟୁ, ଜରା, ବ୍ୟାଧି, ଦୁଃଖ ଓ ଦୋଷକୁ ବାରମ୍ବାର ବିବେଚନା କରିବା ବା ଦୁଃଖ ରୂପକ ଦୋଷ ଦର୍ଶନ କରିବା- |
| ବୈରାଗ୍ୟମ୍ | = ଆସକ୍ତିର ଅଭାବ | | |
| ଚ | = ଏବଂ | | |
| ଅନହଂକାରଃ, ଏବ | = ଅହଂକାରର ବି ଅଭାବ (ତଥା) | | |

* ସତ୍ୟତାପୂର୍ବକ ଶୁଦ୍ଧ ବ୍ୟବହାର ଦ୍ୱାରା ଦ୍ରବ୍ୟର ଏବଂ ସେହି ଅନ୍ନର ଆହାରରେ ତଥା ଯଥାଯୋଗ୍ୟ ବ୍ୟବହାର ଏବଂ ଆଚରଣ ଦ୍ୱାରା ତଥା ଜଳ ଓ ମୃତ୍ତିକାଦି ଦ୍ୱାରା ଶରୀରର ଶୁଦ୍ଧିକୁ 'ବାହ୍ୟ ଶୁଦ୍ଧି' କୁହାଯାଏ। ରାଗ-ଦ୍ୱେଷ ଓ ଛନ୍ଦ-କପଟ ଆଦି ବିକାରର ବିନାଶ ହୋଇ ଅନ୍ତଃକରଣର ସ୍ୱଚ୍ଛ ଓ ନିର୍ମଳ ହେବାକୁ 'ଅନ୍ତଃଶୁଦ୍ଧିଃ' କୁହାଯାଏ। ଏହି ଉଭୟ ଶୁଦ୍ଧିର ନାମ 'ଶୌଚ' ଅଟେ।

ଜ୍ଞାନର ସାଧନାରେ ଆସକ୍ତିର ଅଭାବକୁ ଏବଂ ଚିତ୍ତର ସମତାର କଥନ ।

**ଅସକ୍ତିରନଭିଷ୍ୱଙ୍ଗଃ ପୁତ୍ରଦାରଗୃହାଦିଷୁ ।**
**ନିତ୍ୟଂ ଚ ସମଚିତ୍ତତ୍ୱମିଷ୍ଟାନିଷ୍ଟୋପପତ୍ତିଷୁ ॥ ୯ ॥**

ଅସକ୍ତିଃ, ଅନଭିଷ୍ୱଙ୍ଗଃ, ପୁତ୍ରଦାରଗୃହାଦିଷୁ,
ନିତ୍ୟମ୍, ଚ, ସମଚିତ୍ତତ୍ୱମ୍, ଇଷ୍ଟାନିଷ୍ଟୋପପତ୍ତିଷୁ ।।୯ ।।

**ତଥା—**

| | | | |
|---|---|---|---|
| ପୁତ୍ରଦାର-ଗୃହାଦିଷୁ | = ପୁତ୍ର-ସ୍ତ୍ରୀ-ଗୃହ ଏବଂ ଧନ ଆଦିରେ | ଇଷ୍ଟାନିଷ୍ଟୋ-ପପତ୍ତିଷୁ | = ପ୍ରିୟ ଓ ଅପ୍ରିୟ ପ୍ରାପ୍ତିରେ |
| ଅସକ୍ତିଃ | = ଆସକ୍ତିର ଅଭାବ | ନିତ୍ୟମ୍ | = ସର୍ବଦା |
| ଅନଭିଷ୍ୱଙ୍ଗଃ | = ମମତ୍ୱର ଅଭାବ | ସମଚିତ୍ତତ୍ୱମ୍ | = ସମଚିତ୍ତ ହୋଇ - |
| ଚ | = ତଥା | | |

ଜ୍ଞାନର ସାଧନାରେ ଅବ୍ୟଭିଚାରିଣୀ ଭକ୍ତି ଏବଂ ଏକାନ୍ତ ଦେଶର ସେବନର କଥନ ।

**ମୟି ଚାନନ୍ୟଯୋଗେନ ଭକ୍ତିରବ୍ୟଭିଚାରିଣୀ ।**
**ବିବିକ୍ତଦେଶସେବିତ୍ୱମରତିର୍ଜନସଂସଦି ॥ ୧୦ ॥**

ମୟି, ଚ, ଅନନ୍ୟଯୋଗେନ, ଭକ୍ତିଃ, ଅବ୍ୟଭିଚାରିଣୀ,
ବିବିକ୍ତଦେଶସେବିତ୍ୱମ୍, ଅରତିଃ, ଜନସଂସଦି ।।୧୦ ।।

**ଏବଂ—**

| | | | |
|---|---|---|---|
| ମୟି | = ମୋ ଠାରେ (ଅର୍ଥାତ୍) ପରମେଶ୍ୱରଙ୍କ ଠାରେ | ଅନନ୍ୟଯୋଗେନ | = ଅନନ୍ୟ ଯୋଗଦ୍ୱାରା |
| | | ଅବ୍ୟଭିଚାରିଣୀ | = ଅବ୍ୟଭିଚାରିଣୀ |
| | | ଭକ୍ତିଃ | = ଭକ୍ତି (କରିବା)* |

* କେବଳ ଏକ ସର୍ବଶକ୍ତିମାନ୍ ପରମେଶ୍ୱରଙ୍କୁ ହିଁ ନିଜର ସ୍ୱାମୀ ମାନି ସ୍ୱାର୍ଥ ଏବଂ ଅଭିମାନ ତ୍ୟାଗ କରି ଶ୍ରଦ୍ଧାଭାବ ସହିତ ପରମ ପ୍ରେମରେ ଭଗବାନଙ୍କୁ ନିରନ୍ତର ଚିନ୍ତନ କରିବା "ଅବ୍ୟଭିଚାରିଣୀ ଭକ୍ତି" ଅଟେ ।

| | | | |
|---|---|---|---|
| ଚ | = ତଥା | ଜନସଂସଦି | = ବିଷୟାସକ୍ତ ଲୋକମାନଙ୍କ ସମୁଦାୟରେ |
| ବିବିକ୍ତଦେଶସେବିତ୍ୱମ୍ | = ଏକାନ୍ତ ଓ ଶୁଦ୍ଧ ସ୍ଥାନରେ ରହିବାର ସ୍ୱଭାବ (ଏବଂ) | ଅରତିଃ | = ବିରାଗ - |

ଜ୍ଞାନ ସାଧନାରେ ନିଦିଧ୍ୟାସନର କଥନ ଏବଂ ବିପରୀତ ଗୁଣମାନଙ୍କୁ ଅଜ୍ଞାନ ବୋଲି ବୁଝାଇବା ।

**ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ ତତ୍ତ୍ୱଜ୍ଞାନାର୍ଥଦର୍ଶନମ୍ ।**
**ଏତଜ୍ଜ୍ଞାନମିତି ପ୍ରୋକ୍ତମଜ୍ଞାନଂ ଯଦତୋଽନ୍ୟଥା ॥ ୧୧ ॥**

ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ, ତତ୍ତ୍ୱଜ୍ଞାନାର୍ଥଦର୍ଶନମ୍,
ଏତତ୍, ଜ୍ଞାନମ୍, ଇତି, ପ୍ରୋକ୍ତମ୍, ଅଜ୍ଞାନମ୍, ଯତ୍, ଅତଃ, ଅନ୍ୟଥା ।।୧୧।।

**ତଥା—**

| | | | |
|---|---|---|---|
| ଅଧ୍ୟାତ୍ମଜ୍ଞାନ-ନିତ୍ୟତ୍ୱମ୍ | = ଅଧ୍ୟାତ୍ମଜ୍ଞାନରେ[୧] ନିତ୍ୟସ୍ଥିତ ହେବା, | ଜ୍ଞାନମ୍ | = ଜ୍ଞାନ ଅଟେ ।[୨] |
| ତତ୍ତ୍ୱଜ୍ଞାନାର୍ଥ-ଦର୍ଶନମ୍ | = ତତ୍ତ୍ୱଜ୍ଞାନର ଅର୍ଥସ୍ୱରୂପ ପରମାତ୍ମାଙ୍କୁ ହିଁ ସର୍ବତ୍ର ଦର୍ଶନ କରିବା- | ଯତ୍ | = ଯାହା |
| | | ଅତଃ | = ଏହାଠାରୁ |
| | | ଅନ୍ୟଥା | = ବିପରୀତ ଅଟେ |
| | | (ତତ୍) ଅଜ୍ଞାନମ୍ | = (ତାହା) ଅଜ୍ଞାନ[୩] |
| | | ଇତି | ବୋଲି |
| ଏତତ୍ | = ଏସବୁ | ପ୍ରୋକ୍ତମ୍ | = କୁହାଯାଇଛି । |

୧-ଯେଉଁ ଜ୍ଞାନ ଦ୍ୱାରା ଆତ୍ମବସ୍ତୁ ଏବଂ ଅନାତ୍ମବସ୍ତୁ ଜଣାଯାଏ ସେହି ଜ୍ଞାନର ନାମ " ଅଧ୍ୟାତ୍ମଜ୍ଞାନ" ଅଟେ ।

୨-ଏହି ଅଧ୍ୟାୟର ୭ ଶ୍ଳୋକରୁ ୧୧ ଶ୍ଳୋକ ଯାଏଁ ଯେଉଁ ସାଧନ କୁହାଯାଇଛି ସେ ସବୁ ତତ୍ତ୍ୱଜ୍ଞାନର ପ୍ରାପ୍ତିରେ ହେତୁ ହେବାରୁ "ଜ୍ଞାନ" ନାମରେ କୁହାଯାଇଛି ।

୩-ଉପରେ କୁହାଯାଇଥିବା ଜ୍ଞାନସାଧନାର ବିପରୀତ ଯେଉଁସବୁ ମାନ, ଦମ୍ଭ, ହିଂସା, ଆଦି ଅଛି, ସେ ସବୁ ଅଜ୍ଞାନର ହେତୁ ହୋଇଥିବାରୁ 'ଅଜ୍ଞାନ' ନାମରେ କୁହାଯାଇଛି ।

ଜାଣିବାଯୋଗ୍ୟ ପରମାତ୍ମାଙ୍କ ସ୍ୱରୂପର ତଥା ନିର୍ଗୁଣସ୍ୱରୂପର ବର୍ଣ୍ଣନା ।

**ଜ୍ଞେୟଂ ଯତ୍ତତ୍ ପ୍ରବକ୍ଷ୍ୟାମି ଯଜ୍‌ଜ୍ଞାତ୍ୱାମୃତମଶ୍ନୁତେ ।**
**ଅନାଦିମତ୍ପରଂ ବ୍ରହ୍ମ ନ ସତ୍ତନ୍ନାସଦୁଚ୍ୟତେ ॥ ୧୨ ॥**

ଜ୍ଞେୟମ୍, ଯତ୍, ତତ୍, ପ୍ରବକ୍ଷ୍ୟାମି, ଯତ୍, ଜ୍ଞାତ୍ୱା, ଅମୃତମ୍, ଅଶ୍ନୁତେ,
ଅନାଦିମତ୍, ପରମ୍, ବ୍ରହ୍ମ, ନ, ସତ୍, ତତ୍, ନ, ଅସତ୍, ଉଚ୍ୟତେ ।।୧୨।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଯତ୍ | = ଯାହା | ଅନାଦିମତ୍ | = (ସେହି ଜ୍ଞେୟ ତତ୍ତ୍ୱ) ଅନାଦି |
| ଜ୍ଞେୟମ୍ | = ଜାଣିବାର ଯୋଗ୍ୟ | ପରଂ | = (ଓ) ପରମ |
| ଯତ୍ | = (ତଥା) ଯାହାକୁ | ବ୍ରହ୍ମ | = ବ୍ରହ୍ମ |
| ଜ୍ଞାତ୍ୱା | = ଜାଣି (ମନୁଷ୍ୟ) | ତତ୍ | = ତାହାକୁ |
| ଅମୃତମ୍ | = ପରମାନନ୍ଦକୁ | ନ, ସତ୍, ଉଚ୍ୟତେ | = ସତ୍ ବୋଲି କୁହାଯାଇ ପାରେ ନାହିଁ |
| ଅଶ୍ନୁତେ | = ପ୍ରାପ୍ତ ହୁଏ, | ନ, ଅସତ୍ (ଉଚ୍ୟତେ) | = (କି) ଅସତ୍ ବୋଲି ବି କୁହାଯାଇ ପାରେ ନାହିଁ । |
| ତତ୍ | = ସେହି ପରମାତ୍ମ ତତ୍ତ୍ୱ ସମ୍ପର୍କରେ | | |
| ପ୍ରବକ୍ଷ୍ୟାମି | = ମୁଁ ଭଲରୂପେ ବୁଝାଇଦେବି । | | |

ପରମାତ୍ମାଙ୍କ ବିଶ୍ୱରୂପର କଥନ ।

**ସର୍ବତଃପାଣିପାଦଂ ତତ୍ସର୍ବତୋଽକ୍ଷିଶିରୋମୁଖମ୍ ।**
**ସର୍ବତଃଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ॥ ୧୩ ॥**

ସର୍ବତଃପାଣିପାଦମ୍, ତତ୍, ସର୍ବତୋଽକ୍ଷିଶିରୋମୁଖମ୍,
ସର୍ବତଃଶ୍ରୁତିମତ୍, ଲୋକେ, ସର୍ବମ୍, ଆବୃତ୍ୟ, ତିଷ୍ଠତି ।।୧୩।।

**କିନ୍ତୁ—**

| | | | |
|---|---|---|---|
| ତତ୍ | = ତାଙ୍କର (ପରମାତ୍ମାଙ୍କର) | ସର୍ବତଃପାଣି-ପାଦମ୍ | = ସବୁ ସ୍ଥାନରେ ହସ୍ତ ଓ ପଦ ରହିଛି, |

| | | | |
|---|---|---|---|
| ସର୍ବତୋଽକ୍ଷି-ଶିରୋମୁଖମ୍ | = ସକଳ ଦିଗରେ ନେତ୍ର, ଶିର ଓ ମୁଖ ରହିଛି, | (ଯତଃ) | = କାରଣ (ସେ) |
| ସର୍ବତଃଶ୍ରୁତିମତ୍ | = ସବୁଦିଗରେ କର୍ଣ୍ଣ ରହିଛି; | ଲୋକେ | = ସଂସାରରେ |
| | | ସର୍ବମ୍ | = ସମସ୍ତଙ୍କୁ |
| | | ଆବୃତ୍ୟ | = ବ୍ୟାପ୍ତ କରି |
| | | ତିଷ୍ଠତି | = ସ୍ଥିତ ହୋଇଛନ୍ତି ।* |

ପରମେଶ୍ବରଙ୍କ ସଗୁଣ ଏବଂ ନିର୍ଗୁଣ ସ୍ୱରୂପର ଏକତାର କଥନ ।

**ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍ ।**
**ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ ॥ ୧୪ ॥**

ସର୍ବେନ୍ଦ୍ରିୟଗୁଣାଭାସମ୍, ସର୍ବେନ୍ଦ୍ରିୟବିବର୍ଜିତମ୍,
ଅସକ୍ତମ୍, ସର୍ବଭୃତ୍, ଚ, ଏବ, ନିର୍ଗୁଣମ୍, ଗୁଣଭୋକ୍ତୃ, ଚ ।।୧୪।।

**ଏବଂ ସେହି ପରମାତ୍ମା—**

| | | | |
|---|---|---|---|
| ସର୍ବେନ୍ଦ୍ରିୟ-ଗୁଣାଭାସମ୍ | = (ସେ) ସକଳ ଇନ୍ଦ୍ରିୟଗ୍ରାହ୍ୟ ବିଷୟର ଜ୍ଞାତା; | | ହୋଇ ମଧ୍ୟ |
| ସର୍ବେନ୍ଦ୍ରିୟ-ବିବର୍ଜିତମ୍ | = (ଅଥଚ ବାସ୍ତବରେ ସେ) ସକଳ ଇନ୍ଦ୍ରିୟରୁ ରହିତ | ସର୍ବଭୃତ୍ | = ସମସ୍ତଙ୍କର ଧାରଣ ପୋଷଣକାରୀ |
| ଚ | = ତଥା | ଚ | = ଏବଂ |
| ଅସକ୍ତମ୍, ଏବ | = ଆସକ୍ତି ରହିତ | ନିର୍ଗୁଣମ୍ | = ନିର୍ଗୁଣ ହୋଇ (ମଧ୍ୟ) |
| | | ଗୁଣଭୋକ୍ତୃ | = ଗୁଣମାନଙ୍କର ଭୋକ୍ତା । |

---

* ଆକାଶ ଯେପରି ବାୟୁ, ଅଗ୍ନି, ଜଳ ଓ ପୃଥିବୀର କାରଣ ହୋଇଥିବାରୁ ସେହି ସମସ୍ତଙ୍କୁ ବ୍ୟାପି ରହିଛି, ସେହି ଜ୍ଞେୟସ୍ୱରୂପ ପରମାତ୍ମା ମଧ୍ୟ ସେହିପରି ଚରାଚର ଜୀବସମୂହ ସହିତ ସମସ୍ତ ଜଗତର କାରଣ ହୋଇଥିବାରୁ ସମସ୍ତଙ୍କୁ ବ୍ୟାପି ରହିଛନ୍ତି । ଅତଏବ ସବୁକିଛି ତାଙ୍କରି ଦ୍ୱାରା ପରିପୂର୍ଣ୍ଣ ହୋଇ ରହିଛି । ଏହାକୁ ହିଁ 'ସ୍ଥିତ' କୁହାଯାଏ ।

ସର୍ବାତ୍ମ ରୂପରେ ପରମାତ୍ମାଙ୍କ ବ୍ୟାପକତାର କଥନ ।

**ବହିରନ୍ତଶ୍ଚ ଭୂତାନାମଚରଂ ଚରମେବ ଚ ।**
**ସୂକ୍ଷ୍ମତ୍ୱାତ୍ତଦବିଜ୍ଞେୟଂ ଦୂରସ୍ଥଂ ଚାନ୍ତିକେ ଚ ତତ୍ ॥ ୧୫ ॥**

ବହିଃ, ଅନ୍ତଃ, ଚ, ଭୂତାନାମ୍, ଅଚରମ୍, ଚରମ୍, ଏବ, ଚ,
ସୂକ୍ଷ୍ମତ୍ୱାତ୍, ତତ୍, ଅବିଜ୍ଞେୟମ୍, ଦୂରସ୍ଥମ୍, ଚ, ଅନ୍ତିକେ, ଚ, ତତ୍ ।।୧୫।।

**ତଥା ସେହି ପରମାତ୍ମା—**

| | | | | | |
|---|---|---|---|---|---|
| ଭୂତାନାମ୍ | = | (ସେହି ପରମାତ୍ମା) ଚରାଚର ସକଳ ଭୂତଙ୍କର | ଚ | = | ଏବଂ (ପୁଣି) |
| ବହିଃ, ଅନ୍ତଃ | = | ବାହାରେ ଓ ଭିତରେ (ପରିପୂର୍ଣ୍ଣ ହୋଇ ଅଛନ୍ତି) | ତତ୍ | = | ସେ |
| ଚ | = | ଏବଂ | ସୂକ୍ଷ୍ମତ୍ୱାତ୍ | = | ସୂକ୍ଷ୍ମ ହୋଇଥିବାରୁ |
| ଚରମ୍, ଅଚରମ୍ | = | ଚର-ଅଚର (ପ୍ରାଣୀଙ୍କ ରୂପରେ) | ଅବିଜ୍ଞେୟମ୍ | = | ଜାଣିହେବାର ବିଷୟ ନୁହଁନ୍ତି [୧] |
| ଏବ | = | ମଧ୍ୟ (ସେ ହିଁ ଅଛନ୍ତି), | ଚ | = | ତଥା |
| | | | ଅନ୍ତିକେ | = | ସେ ଅତ୍ୟନ୍ତ [୨] ନିକଟରେ (ଅଛନ୍ତି) |
| | | | ଚ | = | ଓ |
| | | | ଦୂରସ୍ଥମ୍ | = | ଦୂରରେ ମଧ୍ୟ ସେ ହିଁ ଅଛନ୍ତି । [୩] |

୧- ଯେପରି ସୂର୍ଯ୍ୟଙ୍କ କିରଣରେ ସ୍ଥିତ ପରମାଣୁରୂପୀ ଜଳକୁ ସାଧାରଣ ମନୁଷ୍ୟ ଜାଣିପାରେ ନାହିଁ, ଠିକ୍ ସେହିପରି ସର୍ବବ୍ୟାପୀ ପରବ୍ରହ୍ମ ପରମାତ୍ମା ପରମାଣୁ ରୂପେ ଜଳଠାରୁ ମଧ୍ୟ ଅତ୍ୟନ୍ତ ସୂକ୍ଷ୍ମ ହୋଇଥିବାରୁ ସାଧାରଣ ମନୁଷ୍ୟ ତାହାଙ୍କୁ ଜାଣିପାରେ ନାହିଁ । ତେଣୁ ସେ 'ଅବିଜ୍ଞେୟ' ଅଟନ୍ତି ।

୨- ସେହି ପରମାତ୍ମା ସର୍ବତ୍ର ପରିପୂର୍ଣ୍ଣ ତଥା ସମସ୍ତଙ୍କର ଆତ୍ମା ହୋଇଥିବାରୁ 'ଅନ୍ତିକେ' ଅର୍ଥାତ୍ 'ଅତ୍ୟନ୍ତ ନିକଟରେ' ଅଛନ୍ତି ।

୩- ଶ୍ରଦ୍ଧାରହିତ ଅଜ୍ଞାନୀ ପୁରୁଷ ଜାଣି ନପାରିବା କାରଣରୁ 'ଦୂରସ୍ଥମ୍' ଅର୍ଥାତ୍ ଦୂରରେ ରହିଥିବା ଭଳି ପ୍ରତୀତ ହୁଅନ୍ତି ।

ଉତ୍ପତ୍ତି, ପାଳନ ଏବଂ ସଂହାରକର୍ତ୍ତା ପରମାତ୍ମାଙ୍କ ସର୍ବବ୍ୟାପୀ ସ୍ୱରୂପର କଥନ ।

**ଅବିଭକ୍ତଂ ଚ ଭୂତେଷୁ ବିଭକ୍ତମିବ ଚ ସ୍ଥିତମ୍ ।**
**ଭୂତଭର୍ତ୍ତୃ ଚ ତଜ୍ଜ୍ଞେୟଂ ଗ୍ରସିଷ୍ଣୁ ପ୍ରଭବିଷ୍ଣୁ ଚ ॥ ୧୬ ॥**

ଅବିଭକ୍ତମ୍, ଚ, ଭୂତେଷୁ, ବିଭକ୍ତମ୍, ଇବ, ଚ, ସ୍ଥିତମ୍, ଭୂତଭର୍ତ୍ତୃ, ଚ, ତତ୍, ଜ୍ଞେୟମ୍, ଗ୍ରସିଷ୍ଣୁ, ପ୍ରଭବିଷ୍ଣୁ, ଚ ।।୧୬।।

**ତଥା, ସେହି ପରମାତ୍ମା—**

ଅବିଭକ୍ତମ୍ = (ସେ) ଅବିଭକ୍ତ ରୂପରେ (ଆକାଶ ସଦୃଶ ପରିପୂର୍ଣ୍ଣ ହୋଇଥିଲେ)
ଚ = ମଧ୍ୟ
ଭୂତେଷୁ = ଚରାଚର ସମସ୍ତ ଭୂତରେ
ବିଭକ୍ତମ୍, ଇବ,=ବିଭକ୍ତପରି ହୋଇ
ସ୍ଥିତମ୍ ସ୍ଥିତ ରହିଥିବା* ପ୍ରତୀତ ହୁଅନ୍ତି
ଚ = ତଥା (ପୁଣି)
ତତ୍ = ସେହି
ଜ୍ଞେୟମ୍ = ଜ୍ଞେୟସ୍ୱରୂପ (ପରମାତ୍ମା)
ଭୂତଭର୍ତ୍ତୃ = ବିଷ୍ଣୁରୂପରେ ଭୂତମାନଙ୍କର ଧାରଣ ପୋଷଣକାରୀ
ଚ = ଏବଂ
ଗ୍ରସିଷ୍ଣୁ = ରୁଦ୍ର ରୂପରେ ସଂହାରକାରୀ
ଚ = ତଥା
ପ୍ରଭବିଷ୍ଣୁ = ବ୍ରହ୍ମା ରୂପରେ ସମସ୍ତଙ୍କର ସୃଷ୍ଟିକର୍ତ୍ତା ଅଟନ୍ତି ।

ଜ୍ଞାନଦ୍ୱାରା ପ୍ରାପ୍ତ ହେବାଯୋଗ୍ୟ ପରମ ପ୍ରକାଶମୟ ସ୍ୱରୂପର କଥନ ।

**ଜ୍ୟୋତିଷାମପି ତଜ୍ଜ୍ୟୋତିସ୍ତମସଃ ପରମୁଚ୍ୟତେ ।**
**ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ ହୃଦି ସର୍ବସ୍ୟ ବିଷ୍ଠିତମ୍ ॥ ୧୭ ॥**

* ଯେପରି ବିଭାଗରହିତ ମହାକାଶ ଶୂନ୍ୟ ମାଠିଆମାନଙ୍କରେ ଭିନ୍ନ-ଭିନ୍ନ ସଦୃଶ ପ୍ରତୀତ ହୁଏ, ସେହିପରି ପରମାତ୍ମା ସକଳ ଭୂତରେ ଏକ-ରୂପରେ ସ୍ଥିତ ହୋଇ ମଧ୍ୟ ପୃଥକ୍-ପୃଥକ୍ ଭଳି ପ୍ରତୀତ ହୁଅନ୍ତି ।

ଜ୍ୟୋତିଷାମ୍, ଅପି, ତତ୍, ଜ୍ୟୋତିଃ, ତମସଃ, ପରମ୍, ଉଚ୍ୟତେ,
ଜ୍ଞାନମ୍, ଜ୍ଞେୟମ୍, ଜ୍ଞାନଗମ୍ୟମ୍, ହୃଦି, ସର୍ବସ୍ୟ, ବିଷ୍ଠିତମ୍ ।।୧୭।।

ଏବଂ—

| | | | | | |
|---|---|---|---|---|---|
| ତତ୍ | = | ସେହି ପରବ୍ରହ୍ମଙ୍କୁ | ଜ୍ଞେୟମ୍ | = | ଜ୍ଞେୟ (ଜାଣିବାର ଯୋଗ୍ୟ), |
| ଜ୍ୟୋତିଷାମ୍ | = | ସମସ୍ତ ଜ୍ୟୋତିମାନଙ୍କର | ଜ୍ଞାନଗମ୍ୟମ୍ | = | ତତ୍ତ୍ୱଜ୍ଞାନ ଦ୍ୱାରା ପ୍ରାପ୍ତବ୍ୟ |
| ଅପି | = | ବି | ସର୍ବସ୍ୟ | = | (ତଥା) ସମସ୍ତଙ୍କର |
| ଜ୍ୟୋତିଃ | = | ଜ୍ୟୋତି [୧] | ହୃଦି | = | ହୃଦୟରେ |
| ତମସଃ | = | (ଏବଂ) ମାୟାରୁ | | | |
| ପରମ୍ | = | ସମ୍ପୂର୍ଣ୍ଣ ଅତୀତ | | | |
| ଉଚ୍ୟତେ | = | (ବୋଲି) କୁହାଯାଏ । | ବିଷ୍ଠିତମ୍ | = | ବିଶେଷରୂପେ ଅବସ୍ଥିତ । |
| ଜ୍ଞାନମ୍ | = | (ସେ) ବୋଧସ୍ୱରୂପ | | | |

କ୍ଷେତ୍ର, ଜ୍ଞାନ ଏବଂ ଜ୍ଞେୟର ତତ୍ତ୍ୱ ଜାଣିବା ଦ୍ୱାରା ଭଗବତ୍ ପ୍ରାପ୍ତି ।

**ଇତି କ୍ଷେତ୍ରଂ ତଥା ଜ୍ଞାନଂ ଜ୍ଞେୟଂ ଚୋକ୍ତଂ ସମାସତଃ ।**
**ମଦ୍ଭକ୍ତ ଏତଦ୍ବିଜ୍ଞାୟ ମଦ୍ଭାବାୟୋପପଦ୍ୟତେ ॥ ୧୮ ॥**

ଇତି, କ୍ଷେତ୍ରମ୍, ତଥା, ଜ୍ଞାନମ୍, ଜ୍ଞେୟମ୍, ଚ, ଉକ୍ତମ୍, ସମାସତଃ,
ମଦ୍ଭକ୍ତଃ, ଏତତ୍, ବିଜ୍ଞାୟ, ମଦ୍ଭାବାୟ, ଉପପଦ୍ୟତେ ।।୧୮।।

**ହେ ଅର୍ଜୁନ !—**

| | | | | | |
|---|---|---|---|---|---|
| ଇତି | = | ଏହି ପ୍ରକାରେ | ତଥା | = | ତଥା |
| କ୍ଷେତ୍ରମ୍ | = | କ୍ଷେତ୍ର [୨] | ଜ୍ଞାନମ୍ | = | ଜ୍ଞାନ [୩] |

୧- ଗୀତା ଅଧ୍ୟାୟ ୧୫ ଶ୍ଳୋକ ୧୨ ଦ୍ରଷ୍ଟବ୍ୟ ।
୨- ଶ୍ଳୋକ ୫-୬ରେ ବିକାର ସହିତ କ୍ଷେତ୍ରର ସ୍ୱରୂପ ଦ୍ରଷ୍ଟବ୍ୟ ।
୩- ଶ୍ଳୋକ ୭ ରୁ ୧୧ ରେ ଜ୍ଞାନ ଅର୍ଥାତ୍ ଜ୍ଞାନର ସାଧନ ବିଷୟରେ କୁହାଯାଇଛି ।

| | | | |
|---|---|---|---|
| ଚ | = ଓ | ମଦ୍‌ଭକ୍ତଃ | = ମୋର ଭକ୍ତ |
| ଜ୍ଞେୟମ୍ | = ଜାଣିବା ଯୋଗ୍ୟ | ଏତତ୍ | = ଏହାକୁ |
| | ପରମାତ୍ମାଙ୍କ | ବିଜ୍ଞାୟ | = ତତ୍ତ୍ୱତଃ ଜାଣି |
| | ସ୍ୱରୂପ* | | |
| ସମାସତଃ | = ସଂକ୍ଷେପରେ | ମଦ୍‌ଭାବାୟ | = ମୋର ସ୍ୱରୂପକୁ |
| ଉକ୍ତମ୍ | = କୁହାଗଲା । | ଉପପଦ୍ୟତେ | = ପ୍ରାପ୍ତ ହୁଅନ୍ତି । |

ପ୍ରକୃତି-ପୁରୁଷର ଅନାଦିତା ପ୍ରତିପାଦନ କରି ପ୍ରକୃତିରୁ ହିଁ ସକଳ ଗୁଣ ଓ ବିକାର ଜାତ ହୁଏ ବୋଲି କଥନ ।

**ପ୍ରକୃତିଂ ପୁରୁଷଂ ଚୈବ ବିଦ୍ଧ୍ୟନାଦୀ ଉଭାବପି ।**
**ବିକାରାଂଶ୍ଚ ଗୁଣାଂଶ୍ଚୈବ ବିଦ୍ଧି ପ୍ରକୃତିସମ୍ଭବାନ୍ ॥ ୧୯ ॥**

ପ୍ରକୃତିମ୍, ପୁରୁଷମ୍, ଚ, ଏବ, ବିଦ୍ଧି, ଅନାଦୀ, ଉଭୌ, ଅପି,
ବିକାରାନ୍, ଚ, ଗୁଣାନ୍, ଚ, ଏବ, ବିଦ୍ଧି, ପ୍ରକୃତିସଂଭବାନ୍ ।।୧୯ ।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ପ୍ରକୃତିମ୍ | = ପ୍ରକୃତି | ବିକାରାନ୍ | = ରାଗଦ୍ୱେଷାଦି |
| ଚ | = ଏବଂ | | ବିକାରଗୁଡ଼ିକୁ |
| ପୁରୁଷମ୍ | = ପୁରୁଷ | ଚ | = ତଥା |
| ଉଭୌ, | = ଏହି ଉଭୟଙ୍କୁ | ଗୁଣାନ୍ | = ତ୍ରିଗୁଣାତ୍ମକ ସମସ୍ତ |
| ଏବ | ହିଁ (ତୁମେ) | | ପଦାର୍ଥକୁ |
| ଅନାଦୀ | = ଅନାଦୀ | ଅପି | = ବି |
| | | ପ୍ରକୃତିସଂଭବାନ୍, | = ପ୍ରକୃତିରୁ ହିଁ |
| ବିଦ୍ଧି | = (ବୋଲି) ଜାଣ | ଏବ | ଉତ୍ପନ୍ନ ବୋଲି |
| ଚ | = ଏବଂ | ବିଦ୍ଧି | = ଜାଣ । |

କାର୍ଯ୍ୟ-କରଣର ଉତ୍ପତ୍ତିରେ ପ୍ରକୃତିକୁ ଏବଂ

**କାର୍ଯ୍ୟକରଣକର୍ତ୍ତୃତ୍ୱେ ହେତୁଃ ପ୍ରକୃତିରୁଚ୍ୟତେ ।**
**ପୁରୁଷଃ ସୁଖଦୁଃଖାନାଂ ଭୋକ୍ତୃତ୍ୱେ ହେତୁରୁଚ୍ୟତେ ॥ ୨୦ ॥**

* ଶ୍ଳୋକ ୧୨ ରୁ ୧୭ ଯାଏଁ 'ଜ୍ଞେୟ' ସ୍ୱରୂପର ବ୍ୟାଖ୍ୟା କରାଯାଇଛି ।

ସୁଖ-ଦୁଃଖ ଭୋଗିବାରେ ପୁରୁଷକୁ ହେତୁ ବୋଲି କଥନ ।

କାର୍ଯ୍ୟକରଣକର୍ତ୍ତୃତ୍ୱେ, ହେତୁଃ, ପ୍ରକୃତିଃ, ଉଚ୍ୟତେ,
ପୁରୁଷଃ, ସୁଖଦୁଃଖାନାମ୍, ଭୋକ୍ତୃତ୍ୱେ, ହେତୁଃ, ଉଚ୍ୟତେ ।।୨୦।।

**କାହିଁକି ନା—**

| | | | |
|---|---|---|---|
| କାର୍ଯ୍ୟକରଣ-କର୍ତ୍ତୃତ୍ୱେ | = କାର୍ଯ୍ୟ ଓ କରଣ* ଦ୍ୱାରା ହେଉଥିବା କ୍ରିୟାଗୁଡ଼ିକୁ ଉତ୍ପନ୍ନ କରିବାରେ | ଉଚ୍ୟତେ | = କୁହାଯାଏ (ଏବଂ) |
| | | ସୁଖଦୁଃଖାନାମ୍ | = ସୁଖ-ଦୁଃଖ |
| | | ଭୋକ୍ତୃତ୍ୱେ | = ଭୋଗିବାରେ |
| | | ପୁରୁଷଃ | = ପୁରୁଷକୁ |
| ପ୍ରକୃତିଃ | = ପ୍ରକୃତିକୁ | ହେତୁଃ | = ହେତୁ |
| ହେତୁଃ | = ହେତୁ | ଉଚ୍ୟତେ | = କୁହାଯାଏ । |

ପ୍ରକୃତିର ସଙ୍ଗ ଦ୍ୱାରା ହିଁ ପୁରୁଷକୁ ଭୋଗ ତଥା ଉଚ୍ଚ-ନୀଚ ଯୋନି ପ୍ରାପ୍ତି ।

**ପୁରୁଷଃ ପ୍ରକୃତିସ୍ଥୋ ହି ଭୁଙ୍କ୍ତେ ପ୍ରକୃତିଜାନ୍ ଗୁଣାନ୍ ।**
**କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍‌ଯୋନିଜନ୍ମସୁ ॥ ୨୧ ॥**

ପୁରୁଷଃ, ପ୍ରକୃତିସ୍ଥଃ, ହି, ଭୁଙ୍କ୍ତେ, ପ୍ରକୃତିଜାନ୍, ଗୁଣାନ୍,
କାରଣମ୍, ଗୁଣସଙ୍ଗଃ, ଅସ୍ୟ, ସଦସଦ୍‌ଯୋନିଜନ୍ମସୁ ।।୨୧।।

**ପରନ୍ତୁ—**

* ଆକାଶ, ବାୟୁ, ଅଗ୍ନି, ଜଳ ଓ ପୃଥିବୀ ଏହି ପାଞ୍ଚଟି ସୂକ୍ଷ୍ମମହାଭୂତ ତଥା ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଏହି ପାଞ୍ଚଟି ଇନ୍ଦ୍ରିୟର ବିଷୟ—ଏହି ଦଶଟିର ନାମ 'କାର୍ଯ୍ୟ' । ବୁଦ୍ଧି, ଅହଂକାର ଓ ମନ—ଏହି ତିନିଟି ଅନ୍ତଃକରଣର; ଶ୍ରୋତ୍ର, ତ୍ୱକ୍, ନେତ୍ର, ରସନା ଓ ଘ୍ରାଣ—ଏହି ପାଞ୍ଚଟି ଜ୍ଞାନେନ୍ଦ୍ରିୟର ଏବଂ ବାକ୍, ପାଣି, ପାଦ, ଉପସ୍ଥ ଓ ପାୟୁ—ଏହି ପାଞ୍ଚଟି କର୍ମେନ୍ଦ୍ରିୟର—ଏହିପରି ତେରଟିର ନାମ 'କରଣ' ଅଟେ । ଏପରି ସମସ୍ତ ତେଇଶି ତତ୍ତ୍ୱ ପ୍ରକୃତିରୁ ହିଁ ଉତ୍ପନ୍ନ ହୁଅନ୍ତି ।

| | | | |
|---|---|---|---|
| ପ୍ରକୃତିସ୍ଥଃ | = ପ୍ରକୃତିରେ[୧] ସ୍ଥିତ | ଗୁଣସଙ୍ଗଃ | = (ଏବଂ ଏହି ସବୁ) ଗୁଣମାନଙ୍କ ସଙ୍ଗ (ହିଁ) |
| ପୁରୁଷଃ | = ପୁରୁଷ | | |
| ହି | = ହିଁ | ଅସ୍ୟ | = ଏହି ଜୀବାତ୍ମାର |
| ପ୍ରକୃତିଜାନ୍ | = ପ୍ରକୃତିରୁ ଉତ୍ପନ୍ନ | ସଦସଦ୍-ଯୋନି-ଜନ୍ମସୁ | = ଭଲ-ମନ୍ଦ ଯୋନି-ମାନଙ୍କରେ ଜନ୍ମ ନେବାରେ |
| ଗୁଣାନ୍ | = ତ୍ରିଗୁଣାତ୍ମକ ପଦାର୍ଥଗୁଡ଼ିକୁ | | |
| ଭୁଙ୍‌କ୍ତେ | = ଭୋଗ କରେ | କାରଣମ୍ | = କାରଣ ଅଟେ ।[୨] |

ପରମାତ୍ମା ଏବଂ ଜୀବାତ୍ମା ମଧ୍ୟରେ ଏକତ୍ୱର ପ୍ରତିପାଦନ ।

**ଉପଦ୍ରଷ୍ଟାନୁମନ୍ତା ଚ ଭର୍ତ୍ତା ଭୋକ୍ତା ମହେଶ୍ୱରଃ ।**
**ପରମାତ୍ମେତି ଚାପ୍ୟୁକ୍ତୋ ଦେହେଽସ୍ମିନ୍ ପୁରୁଷଃ ପରଃ ॥ ୨୨ ॥**

ଉପଦ୍ରଷ୍ଟା, ଅନୁମନ୍ତା, ଚ, ଭର୍ତ୍ତା, ଭୋକ୍ତା, ମହେଶ୍ୱରଃ,
ପରମାତ୍ମା, ଇତି, ଚ, ଅପି, ଉକ୍ତଃ, ଦେହେ, ଅସ୍ମିନ୍, ପୁରୁଷଃ, ପରଃ ।।୨୨ ।।

| | | | |
|---|---|---|---|
| ଅସ୍ମିନ୍ | = ଏହି | ଉପଦ୍ରଷ୍ଟା | = (ସେ ହିଁ) ସାକ୍ଷୀ ହୋଇଥିବାରୁ ଉପଦ୍ରଷ୍ଟା |
| ଦେହେ(ସ୍ଥିତଃ), | = ଦେହରେ ଅବସ୍ଥିତ | | |
| ଅପି | ହୋଇ ମଧ୍ୟ | | |
| ପୁରୁଷଃ | = ଏହି ଆତ୍ମା | ଚ | = ଏବଂ |
| ପରଃ, (ଏବ) | = ପ୍ରକୃତରେ ପରମାତ୍ମା[୩] ହିଁ ଅଟନ୍ତି । | ଅନୁମନ୍ତା | = ଯଥାର୍ଥ ସମ୍ମତିଦାତା ହୋଇଥିବାରୁ ଅନୁମନ୍ତା, |

---

୧- ପ୍ରକୃତି ଶବ୍ଦର ଅର୍ଥ ଗୀତା ଅଧ୍ୟାୟ ୭ ଶ୍ଳୋକ ୧୪ରେ କୁହାଯାଇଥିବା ଭଗବାନଙ୍କ ତ୍ରିଗୁଣମୟୀ ମାୟା ବୋଲି ଜାଣିବା ଉଚିତ।

୨- ସତ୍ତ୍ୱଗୁଣର ସଙ୍ଗ ଦ୍ୱାରା ଦେବଯୋନିରେ, ରଜୋଗୁଣର ସଙ୍ଗଦ୍ୱାରା ମନୁଷ୍ୟଯୋନିରେ ଏବଂ ତମୋଗୁଣର ସଙ୍ଗଦ୍ୱାରା ପଶୁ-ପକ୍ଷୀ ଆଦି ନୀଚଯୋନିରେ ଜନ୍ମ ହୋଇଥାଏ।

୩- ଅର୍ଥାତ୍ ତ୍ରିଗୁଣମୟୀ ମାୟାଠାରୁ ସର୍ବଥା ଅତୀତ।

| | | | |
|---|---|---|---|
| ଭର୍ତ୍ତା | = ସମସ୍ତଙ୍କର ଧାରଣ-ପୋଷଣକାରୀ ହୋଇଥିବାରୁ ଭର୍ତ୍ତା, | ଚ | = ଏବଂ |
| ଭୋକ୍ତା | = ଜୀବରୂପ ହୋଇଥିବାରୁ ଭୋକ୍ତା, | ପରମାତ୍ମା | = ଶୁଦ୍ଧସଚ୍ଚିଦାନନ୍ଦଘନ ହୋଇଥିବାରୁ ପରମାତ୍ମା |
| ମହେଶ୍ୱରଃ | = ବ୍ରହ୍ମା ପ୍ରଭୃତିଙ୍କର ସ୍ୱାମୀ ହୋଇଥିବାରୁ ମହେଶ୍ୱର | ଇତି | = ବୋଲି |
| | | ଉକ୍ତଃ | = କୁହାଯାଇଛି । |

ଗୁଣମାନଙ୍କ ସହିତ ପ୍ରକୃତି ଏବଂ ପୁରୁଷକୁ ତତ୍ତ୍ୱତଃ ଜାଣିବାର ଫଳ ।

**ଯ ଏବଂ ବେତ୍ତି ପୁରୁଷଂ ପ୍ରକୃତିଂ ଚ ଗୁଣୈଃ ସହ ।**
**ସର୍ବଥା ବର୍ତ୍ତମାନୋଽପି ନ ସ ଭୂୟୋଽଭିଜାୟତେ ॥ ୨୩ ॥**

ଯଃ, ଏବମ୍, ବେତ୍ତି, ପୁରୁଷମ୍, ପ୍ରକୃତିମ୍, ଚ, ଗୁଣୈଃ, ସହ, ସର୍ବଥା, ବର୍ତ୍ତମାନଃ, ଅପି, ନ, ସଃ, ଭୂୟଃ, ଅଭିଜାୟତେ ।।୨୩।।

| | | | |
|---|---|---|---|
| ଏବମ୍ | = ଏହି ପ୍ରକାରେ | ସର୍ବଥା | = ସକଳ ପ୍ରକାରେ |
| ପୁରୁଷମ୍ | = ପୁରୁଷକୁ | ବର୍ତ୍ତମାନଃ, ଅପି | = କର୍ତ୍ତବ୍ୟ କର୍ମ କରୁଥିଲେ ମଧ୍ୟ |
| ଚ | = ଏବଂ | | |
| ଗୁଣୈଃ | = ଗୁଣମାନଙ୍କ | | |
| ସହ | = ସହିତ | ଭୂୟଃ | = ପୁନର୍ବାର |
| ପ୍ରକୃତିମ୍ | = ପ୍ରକୃତିକୁ | ନ, ଅଭିଜାୟତେ | = ଜାତ ହୁଏ ନାହିଁ ଅର୍ଥାତ୍ ପୁନର୍ଜନ୍ମ ପ୍ରାପ୍ତ ହୁଏ ନାହିଁ । |
| ଯଃ | = ଯେଉଁ ମନୁଷ୍ୟ | | |
| ବେତ୍ତି | = ତତ୍ତ୍ୱତଃ ଜାଣେ, | | |
| ସଃ | = ସେ | | |

ଧ୍ୟାନଯୋଗ, ଜ୍ଞାନଯୋଗ ଏବଂ କର୍ମଯୋଗ ଦ୍ୱାରା ଭଗବତ୍ ପ୍ରାପ୍ତି ।

**ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନମାତ୍ମନା ।**
**ଅନ୍ୟେ ସାଙ୍ଖ୍ୟେନ ଯୋଗେନ କର୍ମଯୋଗେନ ଚାପରେ ॥ ୨୪ ॥**

ଧ୍ୟାନେନ, ଆତ୍ମନି, ପଶ୍ୟନ୍ତି, କେଚିତ୍, ଆତ୍ମାନମ୍, ଆତ୍ମନା,
ଅନ୍ୟେ, ସାଂଖ୍ୟେନ, ଯୋଗେନ, କର୍ମଯୋଗେନ, ଚ, ଅପରେ ।।୨୪।।

**ହେ ଅର୍ଜୁନ ! ସେହି ପରମପୁରୁଷ—**

| | | | |
|---|---|---|---|
| ଆତ୍ମାନମ୍ | = ସେହି ପରମପୁରୁଷ ପରମାତ୍ମାଙ୍କୁ | ଯୋଗେନ | ଦ୍ୱାରା[2] (ସାଂଖ୍ୟଯୋଗ ଦ୍ୱାରା) |
| କେଚିତ୍ | = କେତେକ ମନୁଷ୍ୟ | ଚ | = ଏବଂ |
| ଆତ୍ମନା | = ଶୁଦ୍ଧ ହୋଇଥିବା ସୂକ୍ଷ୍ମବୁଦ୍ଧି ବଳରେ | ଅପରେ | = ଆହୁରି (କେତେକ) |
| ଧ୍ୟାନେନ | = ଧ୍ୟାନ ଦ୍ୱାରା[1] | କର୍ମଯୋଗେନ | = କର୍ମଯୋଗ ଦ୍ୱାରା |
| ଆତ୍ମନି | = ହୃଦୟରେ | ପଶ୍ୟନ୍ତି | = ଦର୍ଶନ କରନ୍ତି[3] ଅର୍ଥାତ୍ ପ୍ରାପ୍ତ କରନ୍ତି । |
| ପଶ୍ୟନ୍ତି | = ଦର୍ଶନ କରନ୍ତି | | |
| ଅନ୍ୟେ | = (ତଥା) ଅନ୍ୟ କେତେକ | | |
| ସାଂଖ୍ୟେନ, | = ଜ୍ଞାନଯୋଗ | | |

ମହାନ୍ ପୁରୁଷଙ୍କ ଆଜ୍ଞାନୁସାରେ ଉପାସନା କରିବା ଦ୍ୱାରା ଭଗବତ୍ ପ୍ରାପ୍ତି ।

**ଅନ୍ୟେ ତ୍ୱେବମଜାନନ୍ତଃ ଶ୍ରୁତ୍ୱାନ୍ୟେଭ୍ୟ ଉପାସତେ ।**
**ତେଽପି ଚାତିତରନ୍ତ୍ୟେବ ମୃତ୍ୟୁଂ ଶ୍ରୁତିପରାୟଣାଃ ॥ ୨୫ ॥**

ଅନ୍ୟେ, ତୁ, ଏବମ୍, ଅଜାନନ୍ତଃ, ଶ୍ରୁତ୍ୱା, ଅନ୍ୟେଭ୍ୟଃ, ଉପାସତେ,
ତେ, ଅପି, ଚ, ଅତିତରନ୍ତି, ଏବ, ମୃତ୍ୟୁମ୍, ଶ୍ରୁତିପରାୟଣାଃ ।।୨୫।।

---

୧-ଯାହାର ବର୍ଣ୍ଣନା ଗୀତା ଅଧ୍ୟାୟ ୬ ଶ୍ଲୋକ ୧୧ ରୁ ୩୨ ଯାଏଁ ବିସ୍ତାରପୂର୍ବକ କୁହାଯାଇଛି ।
୨-ଯାହାର ବର୍ଣ୍ଣନା ଗୀତା ଅଧ୍ୟାୟ ୨ ଶ୍ଲୋକ ୧୧ ରୁ ୩୦ ଯାଏଁ ବିସ୍ତାରପୂର୍ବକ କୁହାଯାଇଛି ।
୩-ଯାହାର ବର୍ଣ୍ଣନା ଗୀତା ଅଧ୍ୟାୟ ୨ ଶ୍ଲୋକ ୪୦ ରୁ ଅଧ୍ୟାୟ ସମାପ୍ତି ଯାଏଁ କୁହାଯାଇଛି ।

ତୁ = କିନ୍ତୁ
ଅନ୍ୟେ = ଏମାନଙ୍କଠାରୁ ଭିନ୍ନ ଅନ୍ୟମାନେ ଅର୍ଥାତ୍ ଯେଉଁମାନେ ଅଳ୍ପବୁଦ୍ଧି ମନୁଷ୍ୟ, ସେମାନେ (ସ୍ୱୟଂ)
ଏବମ୍ = ଏହିପରି
ଅଜାନନ୍ତଃ = ଜାଣୁନଥିବାରୁ
ଅନ୍ୟେଭ୍ୟଃ = ଅନ୍ୟମାନଙ୍କଠାରୁ ଅର୍ଥାତ୍ ତତ୍ତ୍ୱ ଜାଣିଥିବା ପୁରୁଷଙ୍କଠାରୁ
ଶ୍ରୁତ୍ୱା = ଶୁଣି ହିଁ
ଉପାସତେ = ଉପାସନା କରନ୍ତି *
ଚ = ଓ
ତେ = ସେହି
ଶ୍ରୁତି-ପରାୟଣାଃ = ଶ୍ରବଣ ପରାୟଣ ପୁରୁଷ
ଅପି = ମଧ୍ୟ
ମୃତ୍ୟୁମ୍ = ମୃତ୍ୟୁରୂପକ ସଂସାର ସାଗରକୁ
ଅତିତରନ୍ତି, ଏବ = ନିଃସନ୍ଦେହରେ ତରିଯାଆନ୍ତି ।

କ୍ଷେତ୍ର ଏବଂ କ୍ଷେତ୍ରଜ୍ଞର ସଂଯୋଗରେ ହିଁ ଚରାଚର ପ୍ରାଣୀମାନଙ୍କ ଉତ୍ପତ୍ତି ବୋଲି ଉକ୍ତି ।

**ଯାବତ୍ ସଂଜାୟତେ କିଞ୍ଚିତ୍ ସତ୍ତ୍ୱଂ ସ୍ଥାବରଜଙ୍ଗମମ୍ ।**
**କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍ ତଦ୍ବିଦ୍ଧି ଭରତର୍ଷଭ ॥ ୨୬ ॥**

ଯାବତ୍, ସଞ୍ଜାୟତେ, କିଞ୍ଚିତ୍, ସତ୍ତ୍ୱମ୍, ସ୍ଥାବରଜଙ୍ଗମମ୍,
କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍, ତତ୍, ବିଦ୍ଧି, ଭରତର୍ଷଭ ।।୨୬।।

ଭରତର୍ଷଭ = ହେ ଅର୍ଜୁନ !
ଯାବତ୍ = ଯେତେ
କିଞ୍ଚିତ୍ = କିଛି ବି
ସ୍ଥାବରଜଙ୍ଗମମ୍ = ସ୍ଥାବର-ଜଙ୍ଗମ
ସତ୍ତ୍ୱମ୍ = ପ୍ରାଣୀ
ସଂଜାୟତେ = ଉତ୍ପନ୍ନ ହୁଅନ୍ତି,
ତତ୍ = ସେହି ସମସ୍ତଙ୍କୁ (ତୁମେ)
କ୍ଷେତ୍ରକ୍ଷେତ୍ରଜ୍ଞ-ସଂଯୋଗାତ୍ = କ୍ଷେତ୍ର ଓ କ୍ଷେତ୍ରଜ୍ଞର ସଂଯୋଗରୁ ହିଁ (ଉତ୍ପନ୍ନ ହୁଅନ୍ତି ବୋଲି)
ବିଦ୍ଧି = ଜାଣ ।

* ଅର୍ଥାତ୍ ସେହି ମହାନ୍ ପୁରୁଷଙ୍କ କହିବା ଅନୁସାରେ ହିଁ ଶ୍ରଦ୍ଧାପୂର୍ବକ ତତ୍ପର ହୋଇ ସାଧନା କରନ୍ତି ।

ଅବିନାଶୀ ପରମେଶ୍ୱରଙ୍କୁ ସର୍ବତ୍ର ସମଭାବରେ ସ୍ଥିତ ଦେଖିବା ମନୁଷ୍ୟଙ୍କୁ ପ୍ରଶଂସା ।

**ସମଂ ସର୍ବେଷୁ ଭୂତେଷୁ ତିଷ୍ଠନ୍ତଂ ପରମେଶ୍ୱରମ୍ ।**
**ବିନଶ୍ୟତ୍ସ୍ୱବିନଶ୍ୟନ୍ତଂ ଯଃ ପଶ୍ୟତି ସ ପଶ୍ୟତି ॥ ୨୭ ॥**

ସମମ୍, ସର୍ବେଷୁ, ଭୂତେଷୁ, ତିଷ୍ଠନ୍ତମ୍, ପରମେଶ୍ୱରମ୍,
ବିନଶ୍ୟତ୍ସୁ, ଅବିନଶ୍ୟନ୍ତମ୍, ଯଃ, ପଶ୍ୟତି, ସଃ, ପଶ୍ୟତି ।।୨୭।।

**ଏହିପରି ଜାଣି—**

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | ଅବିନଶ୍ୟନ୍ତମ୍ | = ନାଶ ରହିତ (ଓ) |
| ବିନଶ୍ୟତ୍ସୁ | = ବିନଷ୍ଟ ହେଉଥିବା | ସମମ୍ | = ସମଭାବରେ |
| ସର୍ବେଷୁ | = ସକଳ | ତିଷ୍ଠନ୍ତମ୍ | = ସ୍ଥିତ |
| ଭୂତେଷୁ | = ଚରାଚର ଭୂତଗଣଙ୍କ ମଧ୍ୟରେ | ପଶ୍ୟତି | = ଦେଖେ, |
| | | ସଃ | = ସେ ହିଁ |
| ପରମେଶ୍ୱରମ୍ | = ପରମେଶ୍ୱରଙ୍କୁ | ପଶ୍ୟତି | = (ଯଥାର୍ଥ) ଦେଖେ । |

ପରମେଶ୍ୱରଙ୍କୁ ସର୍ବତ୍ର ସମଭାବରେ ଦେଖିବାର ଫଳ ।

**ସମଂ ପଶ୍ୟନ୍ ହି ସର୍ବତ୍ର ସମବସ୍ଥିତମୀଶ୍ୱରମ୍ ।**
**ନ ହିନସ୍ତ୍ୟାତ୍ମନାତ୍ମାନଂ ତତୋ ଯାତି ପରାଂ ଗତିମ୍ ॥ ୨୮ ॥**

ସମମ୍, ପଶ୍ୟନ୍, ହି, ସର୍ବତ୍ର, ସମବସ୍ଥିତମ୍, ଈଶ୍ୱରମ୍,
ନ, ହିନସ୍ତି, ଆତ୍ମନା, ଆତ୍ମାନମ୍, ତତଃ, ଯାତି, ପରାମ୍, ଗତିମ୍।।୨୮।।

| | | | |
|---|---|---|---|
| ହି | = କାରଣ (ଯେଉଁ ପୁରୁଷ) | ସମମ୍ | = ସମାନ ରୂପରେ |
| | | ପଶ୍ୟନ୍ | = ଦର୍ଶନ କରୁଥିବା ମନୁଷ୍ୟ |
| ସର୍ବତ୍ର | = ସର୍ବତ୍ର | ଆତ୍ମନା | = ନିଜ ଦ୍ୱାରା |
| ସମବସ୍ଥିତମ୍ | = ସମଭାବରେ ଅବସ୍ଥିତ | ଆତ୍ମାନମ୍ | = ନିଜକୁ |
| ଈଶ୍ୱରମ୍ | = ପରମେଶ୍ୱରଙ୍କୁ | ନ, ହିନସ୍ତି | = ନଷ୍ଟକରେ ନାହିଁ * |

* ଅର୍ଥାତ୍ ଶରୀର ନାଶ ହେଲେ ଆତ୍ମାର ନାଶ ହେଲା ବୋଲି ମାନନ୍ତି ନାହିଁ ।

| | | | |
|---|---|---|---|
| ତତଃ | = ତାହା ଦ୍ୱାରା (ସେ) | ଗତିମ୍ | = ଗତିକୁ |
| ପରାମ୍ | = ପରମ | ଯାତି | = ପ୍ରାପ୍ତ ହୁଏ । |

ଆତ୍ମାକୁ ଅକର୍ତ୍ତା ଭାବେ ଦେଖୁଥିବା ଲୋକଙ୍କୁ ପ୍ରଶଂସା ।

**ପ୍ରକୃତ୍ୟୈବ ଚ କର୍ମାଣି କ୍ରିୟମାଣାନି ସର୍ବଶଃ ।**
**ଯଃ ପଶ୍ୟତି ତଥାତ୍ମାନମକର୍ତ୍ତାରଂ ସ ପଶ୍ୟତି ॥ ୨୯ ॥**

ପ୍ରକୃତ୍ୟା, ଏବ, ଚ, କର୍ମାଣି, କ୍ରିୟମାଣାନି, ସର୍ବଶଃ, ଯଃ, ପଶ୍ୟତି, ତଥା, ଆତ୍ମାନମ୍, ଅକର୍ତ୍ତାରମ୍, ସଃ, ପଶ୍ୟତି ।।୨୯।।

| | | | |
|---|---|---|---|
| ଚ | = ଏବଂ | ତଥା | = ତଥା |
| ଯଃ | = ଯେଉଁ ପୁରୁଷ | ଆତ୍ମାନମ୍ | = ଆତ୍ମାକୁ |
| କର୍ମାଣି | = କର୍ମମାନଙ୍କୁ | ଅକର୍ତ୍ତାରମ୍ | = ଅକର୍ତ୍ତା (ବୋଲି) |
| ସର୍ବଶଃ | = ସବୁପ୍ରକାରେ | | |
| ପ୍ରକୃତ୍ୟା | = ପ୍ରକୃତି ଦ୍ୱାରା | ପଶ୍ୟତି | = ଦେଖେ |
| ଏବ | = ହିଁ | ସଃ | = ସେ ହିଁ |
| କ୍ରିୟମାଣାନି | = କରାଯାଉଥିବା | ପଶ୍ୟତି | = (ଯଥାର୍ଥ) ଦେଖେ । |
| ପଶ୍ୟତି | = ଦେଖେ* | | |

ସଂସାରକୁ ପରମାତ୍ମାରେ ସ୍ଥିତ ଏବଂ ପରମାତ୍ମାଙ୍କ ଠାରୁ ଉତ୍ପନ୍ନ ହୋଇଛି ବୋଲି ଦେଖିବାର ଫଳ ।

**ଯଦା ଭୂତପୃଥଗ୍‌ଭାବମେକସ୍ଥମନୁପଶ୍ୟତି ।**
**ତତ ଏବ ଚ ବିସ୍ତାରଂ ବ୍ରହ୍ମ ସମ୍ପଦ୍ୟତେ ତଦା ॥ ୩୦ ॥**

ଯଦା, ଭୂତପୃଥଗ୍‌ଭାବମ୍, ଏକସ୍ଥମ୍, ଅନୁପଶ୍ୟତି, ତତଃ, ଏବ,ଚ, ବିସ୍ତାରମ୍, ବ୍ରହ୍ମ, ସଂପଦ୍ୟତେ, ତଦା ।।୩୦।।

ଏବଂ—

* ଅର୍ଥାତ୍ ଏହି କଥାକୁ ତତ୍ତ୍ୱତଃ ଜାଣିଯାଏ କି ପ୍ରକୃତିରୁ ଉତ୍ପନ୍ନ ସମ୍ପୂର୍ଣ୍ଣ ଗୁଣ ହିଁ ଗୁଣମାନଙ୍କରେ ପ୍ରବୃତ୍ତ ହୁଏ ।

| | | | |
|---|---|---|---|
| ଯଦା | = (ସେହି ପୁରୁଷ) ଯେଉଁକ୍ଷଣି | ଏବ | = ହିଁ |
| ଭୂତପୃଥଗ୍-ଭାବମ୍ | = ଭୂତମାନଙ୍କର ଭିନ୍ନ-ଭିନ୍ନ ଭାବକୁ | ବିସ୍ତାରମ୍ | = ସକଳ ଭୂତଙ୍କର ବିସ୍ତାର (ହୋଇଥିବା) |
| ଏକସ୍ଥମ୍ | = ଏକ ପରମାତ୍ମାଙ୍କ ଠାରେ ହିଁ ଅବସ୍ଥିତ | (ପଶ୍ୟତି) | = ଦେଖେ |
| ଅନୁପଶ୍ୟତି | = ଦେଖେ | ତଦା | = ସେହିକ୍ଷଣି |
| ଚ | = ତଥା | ବ୍ରହ୍ମ | = ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କୁ |
| ତତଃ | = ସେହି ପରମାତ୍ମାଙ୍କ ଠାରୁ | ସଂପଦ୍ୟତେ | = ପ୍ରାପ୍ତ ହୋଇଯାଏ । |

ଅବିନାଶୀ ପରମାତ୍ମା ଗୁଣାତୀତ ହୋଇଥିବା ହେତୁ ସେ କର୍ତ୍ତା ନୁହଁନ୍ତି ଏବଂ ସମସ୍ତ କ୍ରିୟାରେ ନିର୍ଲିପ୍ତ ରହନ୍ତି ବୋଲି କଥନ ।

**ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍ ପରମାତ୍ମାୟମବ୍ୟୟଃ ।**
**ଶରୀରସ୍ଥୋଽପି କୌନ୍ତେୟ ନ କରୋତି ନ ଲିପ୍ୟତେ ॥ ୩୧ ॥**

ଅନାଦିତ୍ୱାତ୍, ନିର୍ଗୁଣତ୍ୱାତ୍, ପରମାତ୍ମା, ଅୟମ୍, ଅବ୍ୟୟଃ,
ଶରୀରସ୍ଥଃ, ଅପି, କୌନ୍ତେୟ, ନ, କରୋତି, ନ, ଲିପ୍ୟତେ ।।୩୧ ।।

| | | | |
|---|---|---|---|
| କୌନ୍ତେୟ | = ହେ ଅର୍ଜୁନ ! | ପରମାତ୍ମା | = ପରମାତ୍ମା |
| ଅନାଦିତ୍ୱାତ୍ | = ସ୍ୱୟଂ ଅନାଦି ହୋଇଥିବାରୁ | ଶରୀରସ୍ଥଃ | = ଶରୀରରେ ରହି |
| ନିର୍ଗୁଣତ୍ୱାତ୍ | = (ଓ) ଗୁଣାତୀତ ହୋଇଥିବାରୁ | ଅପି | = ମଧ୍ୟ |
| ଅୟମ୍ | = ଏହି | ନ, କରୋତି | = (ବାସ୍ତବରେ କିଛି) କରେନାହିଁ (କି) |
| ଅବ୍ୟୟଃ | = ଅବିନାଶୀ | ନ, ଲିପ୍ୟତେ | = (କୌଣସିଥିରେ) ଲିପ୍ତ ହୁଏ ନାହିଁ । |

ଆକାଶର ଦୃଷ୍ଟାନ୍ତ ଦେଇ ଆତ୍ମାର ନିର୍ଲିପ୍ତତା ସିଦ୍ଧ କରାଯାଇଛି ।

**ଯଥା ସର୍ବଗତଂ ସୌକ୍ଷ୍ମ୍ୟାଦାକାଶଂ ନୋପଲିପ୍ୟତେ ।**
**ସର୍ବତ୍ରାବସ୍ଥିତୋ ଦେହେ ତଥାତ୍ମା ନୋପଲିପ୍ୟତେ ॥ ୩୨ ॥**

ଯଥା, ସର୍ବଗତମ୍, ସୌକ୍ଷ୍ମ୍ୟାତ୍, ଆକାଶମ୍, ନ, ଉପଲିପ୍ୟତେ,
ସର୍ବତ୍ର, ଅବସ୍ଥିତଃ, ଦେହେ, ତଥା, ଆତ୍ମା, ନ, ଉପଲିପ୍ୟତେ ।।୩୨ ।।

| | |
|---|---|
| ଯଥା | = ଯେପରି |
| ସର୍ବଗତମ୍ | = ସର୍ବତ୍ର ବ୍ୟାପ୍ତ |
| ଆକାଶମ୍ | = ଆକାଶ |
| ସୌକ୍ଷ୍ମ୍ୟାତ୍ | = ସୂକ୍ଷ୍ମ ହୋଇଥିବାରୁ |
| ନ, ଉପଲିପ୍ୟତେ | = ଲିପ୍ତ ହୁଏ ନାହିଁ |
| ତଥା | = ସେପରି |
| ଦେହେ | = ଦେହରେ |
| ସର୍ବତ୍ର | = ସର୍ବତ୍ର |
| ଅବସ୍ଥିତଃ | = ଅବସ୍ଥିତ |
| ଆତ୍ମା | = ଆତ୍ମା |
| ନ, ଉପଲିପ୍ୟତେ | = (ନିର୍ଗୁଣ ହୋଇଥିବାରୁ ଦେହର ଗୁଣମାନଙ୍କ ଦ୍ୱାରା) ଲିପ୍ତ ହୁଏ ନାହିଁ । |

ସୂର୍ଯ୍ୟଙ୍କ ଦୃଷ୍ଟାନ୍ତ ଦେଇ ପ୍ରକାଶସ୍ୱରୂପ ଆତ୍ମାର ଅକର୍ତ୍ତାପଣର କଥନ ।

**ଯଥା ପ୍ରକାଶୟତ୍ୟେକଃ କୃତ୍ସ୍ନଂ ଲୋକମିମଂ ରବିଃ ।**
**କ୍ଷେତ୍ରଂ କ୍ଷେତ୍ରୀ ତଥା କୃତ୍ସ୍ନଂ ପ୍ରକାଶୟତି ଭାରତ ॥ ୩୩ ॥**

ଯଥା, ପ୍ରକାଶୟତି, ଏକଃ, କୃତ୍ସ୍ନମ୍, ଲୋକମ୍, ଇମମ୍, ରବିଃ,
କ୍ଷେତ୍ରମ୍, କ୍ଷେତ୍ରୀ, ତଥା, କୃତ୍ସ୍ନମ୍, ପ୍ରକାଶୟତି, ଭାରତ ।।୩୩।।

| | |
|---|---|
| ଭାରତ | = ହେ ଅର୍ଜୁନ ! |
| ଯଥା | = ଯେପରି |
| ଏକଃ | = ଏକ ହିଁ |
| ରବିଃ | = ସୂର୍ଯ୍ୟ |
| ଇମମ୍ | = ଏହି |
| କୃତ୍ସ୍ନମ୍ | = ସମସ୍ତ |
| ଲୋକମ୍ | = ବ୍ରହ୍ମାଣ୍ଡକୁ |
| ପ୍ରକାଶୟତି | = ପ୍ରକାଶିତ କରେ |
| ତଥା | = ସେହିପରି |
| କ୍ଷେତ୍ରୀ | = ଏକ ହିଁ ଆତ୍ମା |
| କୃତ୍ସ୍ନମ୍ | = ସମସ୍ତ |
| କ୍ଷେତ୍ରମ୍ | = କ୍ଷେତ୍ରକୁ |
| ପ୍ରକାଶୟତି | = ପ୍ରକାଶିତ କରେ । |

କ୍ଷେତ୍ର ଏବଂ କ୍ଷେତ୍ରଜ୍ଞର ପ୍ରଭେଦକୁ ଜାଣିବାର ଫଳ ପରମାତ୍ମପ୍ରାପ୍ତି ବୋଲି ବୁଝେଇବା ।

**କ୍ଷେତ୍ରକ୍ଷେତ୍ରଜ୍ଞୟୋରେବମନ୍ତରଂ ଜ୍ଞାନଚକ୍ଷୁଷା ।**
**ଭୂତପ୍ରକୃତିମୋକ୍ଷଂ ଚ ଯେ ବିଦୁର୍ଯାନ୍ତି ତେ ପରମ୍ ॥ ୩୪ ॥**

କ୍ଷେତ୍ରକ୍ଷେତ୍ରଜ୍ଞୟୋଃ, ଏବମ୍, ଅନ୍ତରମ୍, ଜ୍ଞାନଚକ୍ଷୁଷା,
ଭୂତପ୍ରକୃତିମୋକ୍ଷମ୍, ଚ, ଯେ, ବିଦୁଃ, ଯାନ୍ତି, ତେ, ପରମ୍ । ।୩୪ । ।

| | | | |
|---|---|---|---|
| ଏବମ୍ | = ଏହିପରି | ଯେ | = ଯେଉଁ ପୁରୁଷମାନେ |
| କ୍ଷେତ୍ର-କ୍ଷେତ୍ରଜ୍ଞୟୋଃ | = କ୍ଷେତ୍ର ଓ କ୍ଷେତ୍ରଜ୍ଞର | ଜ୍ଞାନଚକ୍ଷୁଷା | = ଜ୍ଞାନନେତ୍ର ଦ୍ୱାରା |
| ଅନ୍ତରମ୍ | = ପ୍ରଭେଦକୁ* | ବିଦୁଃ | = ତତ୍ତ୍ୱତଃ ଜାଣନ୍ତି |
| ଚ | = ତଥା | ତେ | = ସେହି ମହାତ୍ମାମାନେ |
| ଭୂତପ୍ରକୃତି - ମୋକ୍ଷମ୍ | = କାର୍ଯ୍ୟ-କାରଣ ସମେତ ପ୍ରକୃତି ଠାରୁ ସ୍ୱୟଂକୁ ପୃଥକ୍ (ବୋଲି) | ପରମ୍ | = ପରବ୍ରହ୍ମ ପରମାତ୍ମାଙ୍କୁ |
| | | ଯାନ୍ତି | = ପ୍ରାପ୍ତ ହୁଅନ୍ତି । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ କ୍ଷେତ୍ରକ୍ଷେତ୍ରଜ୍ଞବିଭାଗଯୋଗୋ ନାମ ତ୍ରୟୋଦଶୋଽଧ୍ୟାୟଃ ॥ ୧୩ ॥*

ତତତ

**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'କ୍ଷେତ୍ରକ୍ଷେତ୍ରଜ୍ଞବିଭାଗଯୋଗ' ନାମକ ତ୍ରୟୋଦଶ ଅଧ୍ୟାୟ ପୂର୍ଣ୍ଣ ହେଲା । ।୧୩ । ।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

* କ୍ଷେତ୍ରକୁ ଜଡ଼, ବିକାରୀ, କ୍ଷଣିକ ଓ ନାଶବାନ୍ ଏବଂ କ୍ଷେତ୍ରଜ୍ଞକୁ ନିତ୍ୟ, ଚେତନ, ଅବିକାରୀ ଓ ଅବିନାଶୀ ବୋଲି ଜାଣିବା ହେଲା ଏହାଙ୍କ ଭିତରେ ଥିବା 'ପ୍ରଭେଦକୁ' ଜାଣିବା ।

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଚତୁର୍ଦ୍ଦଶ ଅଧ୍ୟାୟ

## ଗୁଣତ୍ରୟବିଭାଗଯୋଗ

**ପ୍ରଧାନ ବିଷୟ**

୧ ରୁ ୪ - ଜ୍ଞାନର ମହିମା ଏବଂ ପ୍ରକୃତି-ପୁରୁଷ ଦ୍ୱାରା ଜଗତର ଉତ୍ପତ୍ତି,
୫ ରୁ ୧୮ - ସତ୍ତ୍ୱ, ରଜ, ତମ ଏହି ତିନି ଗୁଣମାନଙ୍କର ବିଷୟ,
୧୯ ରୁ ୨୭ - ଭଗବତ୍ ପ୍ରାପ୍ତିର ଉପାୟ ଏବଂ ଗୁଣାତୀତ ପୁରୁଷଙ୍କ ଲକ୍ଷଣ ।

*ଶ୍ରୀଭଗବାନ ଉବାଚ*

ଅତି ଉତ୍ତମ ପରମଜ୍ଞାନ କହିବା ପାଇଁ ଶ୍ରୀଭଗବାନଙ୍କ ପ୍ରତିଜ୍ଞା ତଥା ତାହାର ମହିମା ।

ପରଂ ଭୂୟଃ ପ୍ରବକ୍ଷ୍ୟାମି ଜ୍ଞାନାନାଂ ଜ୍ଞାନମୁତ୍ତମମ୍ ।
ଯଜ୍ଜ୍ଞାତ୍ୱା ମୁନୟଃ ସର୍ବେ ପରାଂ ସିଦ୍ଧିମିତୋ ଗତାଃ ॥ ୧ ॥

ପରମ୍, ଭୂୟଃ, ପ୍ରବକ୍ଷ୍ୟାମି, ଜ୍ଞାନାନାମ୍, ଜ୍ଞାନମ୍, ଉତ୍ତମମ୍,
ଯତ୍, ଜ୍ଞାତ୍ୱା, ମୁନୟଃ, ସର୍ବେ, ପରାମ୍, ସିଦ୍ଧିମ୍, ଇତଃ, ଗତାଃ ॥୧॥

**ଏହାପରେ ଶ୍ରୀଭଗବାନ କହିଲେ, ହେ ଅର୍ଜୁନ!—**

| | | | |
|---|---|---|---|
| ଜ୍ଞାନାନାମ୍ | =ଜ୍ଞାନମାନଙ୍କ ମଧ୍ୟରେ | ଯତ୍ | =ଯାହା |
| ଉତ୍ତମମ୍ (ତତ୍) | =ଅତି ଉତ୍ତମ (ସେହି) | ଜ୍ଞାତ୍ୱା | =ଜାଣି |
| ପରମ୍ | =ପରମ | ସର୍ବେ | =ସକଳ |
| ଜ୍ଞାନମ୍ | =ଜ୍ଞାନକୁ | ମୁନୟଃ | =ମୁନିମାନେ |
| ଭୂୟଃ | =(ମୁଁ) ପୁନର୍ବାର | ଇତଃ | =ଏହି ସଂସାରରୁ (ମୁକ୍ତ ହୋଇ) |
| ପ୍ରବକ୍ଷ୍ୟାମି | =(ତୁମକୁ) କହିବି, | | |

| | | | |
|---|---|---|---|
| ପରାମ୍ | =ପରମ | ଗତାଃ | =ପ୍ରାପ୍ତ ହୋଇଛନ୍ତି । |
| ସିଦ୍ଧିମ୍ | =ସିଦ୍ଧିକୁ | | |

ଇଦଂ ଜ୍ଞାନମୁପାଶ୍ରିତ୍ୟ ମମ ସାଧର୍ମ୍ୟମାଗତାଃ ।
ସର୍ଗେଽପି ନୋପଜାୟନ୍ତେ ପ୍ରଳୟେ ନ ବ୍ୟଥନ୍ତି ଚ ॥ ୨ ॥

ଇଦମ୍, ଜ୍ଞାନମ୍, ଉପାଶ୍ରିତ୍ୟ, ମମ, ସାଧର୍ମ୍ୟମ୍, ଆଗତାଃ,
ସର୍ଗେ, ଅପି, ନ, ଉପଜାୟନ୍ତେ, ପ୍ରଳୟେ, ନ, ବ୍ୟଥନ୍ତି, ଚ ।।୨।।

ହେ ଅର୍ଜୁନ !—

| | | | |
|---|---|---|---|
| ଇଦମ୍ | = ଏହି | ସର୍ଗେ | = ସୃଷ୍ଟିର ଆରମ୍ଭରେ |
| ଜ୍ଞାନମ୍ | = ଜ୍ଞାନକୁ | ନ, | = ପୁନଶ୍ଚ ଉତ୍ପନ୍ନ |
| ଉପାଶ୍ରିତ୍ୟ | = ଆଶ୍ରୟ କରି ଅର୍ଥାତ୍ ଧାରଣ କରି | ଉପଜାୟନ୍ତେ | ହୁଅନ୍ତି ନାହିଁ |
| | | ଚ | = ଓ |
| ମମ | = ମୋର | ପ୍ରଳୟେ | = ପ୍ରଳୟ କାଳରେ |
| ସାଧର୍ମ୍ୟମ୍ | = ସ୍ୱରୂପକୁ | ଅପି | = ବି |
| ଆଗତାଃ | = ପ୍ରାପ୍ତ ହୋଇଥିବା ପୁରୁଷ | ନ, ବ୍ୟଥନ୍ତି | = ବ୍ୟଥିତ ହୁଅନ୍ତି ନାହିଁ । |

ପ୍ରକୃତି-ପୁରୁଷର ସଂଯୋଗରେ ସମସ୍ତ ଭୂତଙ୍କ ଉତ୍ପତ୍ତିର କଥନ ।

ମମ ଯୋନିର୍ମହଦ୍‌ବ୍ରହ୍ମ ତସ୍ମିନ୍ ଗର୍ଭଂ ଦଧାମ୍ୟହମ୍ ।
ସମ୍ଭବଃ ସର୍ବଭୂତାନାଂ ତତୋ ଭବତି ଭାରତ ॥ ୩ ॥

ମମ, ଯୋନିଃ, ମହତ୍, ବ୍ରହ୍ମ, ତସ୍ମିନ୍, ଗର୍ଭମ୍, ଦଧାମି, ଅହମ୍,
ସମ୍ଭବଃ, ସର୍ବଭୂତାନାମ୍, ତତଃ, ଭବତି, ଭାରତ ।।୩।।

| | | | |
|---|---|---|---|
| ଭାରତ | = ହେ ଅର୍ଜୁନ ! | | ବ୍ରହ୍ମସ୍ୱରୂପ ମୂଳ |
| ମମ | = ମୋର | | ପ୍ରକୃତି ଅର୍ଥାତ୍ |
| ମହତ୍, ବ୍ରହ୍ମ | = ମହତ୍ | | ତ୍ରିଗୁଣମୟୀ ମାୟା |

| | | | |
|---|---|---|---|
| ଯୋନିଃ | = (ସକଳ ଭୂତଙ୍କର) ଯୋନି ଅର୍ଥାତ୍ ଗର୍ଭାଧାନର ସ୍ଥାନ ଏବଂ | | ରୂପକ ଗର୍ଭକୁ |
| ଅହମ୍ | = ମୁଁ | ଦଧାମି | = ସ୍ଥାପନ କରେ । |
| ତସ୍ମିନ୍ | = ସେହି ଯୋନିରେ | ତତଃ | = ସେହି ଜଡ଼-ଚେତନର ସଂଯୋଗରୁ |
| ଗର୍ଭମ୍ | = ଚେତନସମୁଦାୟ | ସର୍ବଭୂତାନାମ୍ | = ସକଳ ଭୂତଙ୍କର |
| | | ସମ୍ଭବଃ | = ଉତ୍ପତ୍ତି |
| | | ଭବତି | = ହୁଏ । |

**ସର୍ବଯୋନିଷୁ କୌନ୍ତେୟ ମୂର୍ତ୍ତୟଃ ସମ୍ଭବନ୍ତି ଯାଃ ।**
**ତାସାଂ ବ୍ରହ୍ମ ମହଦ୍‌ଯୋନିରହଂ ବୀଜପ୍ରଦଃ ପିତା ॥ ୪ ॥**

ସର୍ବଯୋନିଷୁ, କୌନ୍ତେୟ, ମୂର୍ତ୍ତୟଃ, ସମ୍ଭବନ୍ତି, ଯାଃ,
ତାସାମ୍, ବ୍ରହ୍ମ, ମହତ୍, ଯୋନିଃ, ଅହମ୍, ବୀଜପ୍ରଦଃ, ପିତା ।।୪ ।।

**ତଥା—**

| | | | |
|---|---|---|---|
| କୌନ୍ତେୟ | = ହେ ଅର୍ଜ୍ଜୁନ ! | ତାସାମ୍ | = ସେହି ସମସ୍ତଙ୍କର |
| ସର୍ବଯୋନିଷୁ | = (ନାନାପ୍ରକାର) ସକଳ ଯୋନିରେ | ଯୋନିଃ | = ଗର୍ଭଧାରଣ କରୁଥିବା ମାତା (ଏବଂ) |
| ଯାଃ | = ଯେତେସବୁ | | |
| ମୂର୍ତ୍ତୟଃ | = ଶରୀରଧାରୀ ପ୍ରାଣୀମାନେ | ଅହମ୍ | = ମୁଁ |
| | | ବୀଜପ୍ରଦଃ | = ବୀଜ ପ୍ରଦାନକାରୀ |
| ସମ୍ଭବନ୍ତି | = ଉତ୍ପନ୍ନ ହୁଅନ୍ତି, | | |
| ମହତ୍, ବ୍ରହ୍ମ | = ମୂଳ ପ୍ରକୃତି (ତ) | ପିତା | = ପିତା ଅଟେ । |

ପ୍ରକୃତିରୁ ଉତ୍ପନ୍ନ ତିନିଗୁଣ ଦ୍ୱାରା ଜୀବାତ୍ମା ବାନ୍ଧିହୁଏ ।

**ସତ୍ତ୍ୱଂ ରଜସ୍ତମ ଇତି ଗୁଣାଃ ପ୍ରକୃତିସମ୍ଭବାଃ ।**
**ନିବଧ୍ନନ୍ତି ମହାବାହୋ ଦେହେ ଦେହିନମବ୍ୟୟମ୍ ॥ ୫ ॥**

ସତ୍ତ୍ୱମ୍, ରଜଃ, ତମଃ, ଇତି, ଗୁଣାଃ, ପ୍ରକୃତିସମ୍ଭବାଃ,
ନିବଧ୍ନନ୍ତି, ମହାବାହୋ, ଦେହେ, ଦେହିନମ୍, ଅବ୍ୟୟମ୍ ।।୫ ।।

ତଥା—

| | | | |
|---|---|---|---|
| ମହାବାହୋ | = ହେ ଅର୍ଜୁନ ! | | ହୋଇଥିବା |
| ସତ୍ତ୍ୱମ୍ | = ସତ୍ତ୍ୱଗୁଣ, | ଗୁଣାଃ | = (ଏହି) ତିନି ଗୁଣ |
| ରଜଃ | = ରଜୋଗୁଣ, | ଅବ୍ୟୟମ୍ | = ଅବିନାଶୀ |
| ତମଃ | = ତମୋଗୁଣ- | ଦେହିନମ୍ | = ଜୀବାତ୍ମାକୁ |
| ଇତି | = ଏହି | ଦେହେ | = ଶରୀରରେ |
| ପ୍ରକୃତିସମ୍ଭବାଃ | = ପ୍ରକୃତିରୁ ଉତ୍ପନ୍ନ | ନିବଧ୍ନନ୍ତି | = ବାନ୍ଧି ରଖନ୍ତି । |

ସତ୍ତ୍ୱଗୁଣଦ୍ୱାରା ଜୀବାତ୍ମା ବାନ୍ଧି ହେବାର ପ୍ରକାର ।

**ତତ୍ର ସତ୍ତ୍ୱଂ ନିର୍ମଳତ୍ୱାତ୍ ପ୍ରକାଶକମନାମୟମ୍ ।**
**ସୁଖସଙ୍ଗେନ ବଧ୍ନାତି ଜ୍ଞାନସଙ୍ଗେନ ଚାନଘ ॥ ୬ ॥**

ତତ୍ର, ସତ୍ତ୍ୱମ୍, ନିର୍ମଳତ୍ୱାତ୍, ପ୍ରକାଶକମ୍, ଅନାମୟମ୍,
ସୁଖସଙ୍ଗେନ, ବଧ୍ନାତି, ଜ୍ଞାନସଙ୍ଗେନ, ଚ, ଅନଘ ।।୬।।

| | | | |
|---|---|---|---|
| ଅନଘ | = ହେ ନିଷ୍ପାପ ! | ସୁଖସଙ୍ଗେନ | = (କିନ୍ତୁ ତାହା) ସୁଖାସକ୍ତି |
| ତତ୍ର | = ସେହି ତିନି ଗୁଣ ମଧ୍ୟରୁ | ଚ | = ଓ |
| ସତ୍ତ୍ୱମ୍ | = ସତ୍ତ୍ୱଗୁଣ | ଜ୍ଞାନସଙ୍ଗେନ | = ଜ୍ଞାନାସକ୍ତି ଦ୍ୱାରା ଅର୍ଥାତ୍ ଜ୍ଞାନର ଅଭିମାନ ଦ୍ୱାରା |
| ନିର୍ମଳତ୍ୱାତ୍ | = ନିର୍ମଳ ହୋଇଥିବାରୁ | ବଧ୍ନାତି | = (ଦେହୀକୁ) ବନ୍ଧନ କରେ । |
| ପ୍ରକାଶକମ୍ | = ପ୍ରକାଶକ (ଏବଂ) | | |
| ଅନାମୟମ୍ | = ବିକାର ରହିତ ଅଟେ; | | |

ରଜୋଗୁଣ ଦ୍ୱାରା ଜୀବାତ୍ମାର ବାନ୍ଧିହେବାର ପ୍ରକାର ।

**ରଜୋ ରାଗାତ୍ମକଂ ବିଦ୍ଧି ତୃଷ୍ଣାସଙ୍ଗସମୁଦ୍ଭବମ୍ ।**
**ତନ୍ନିବଧ୍ନାତି କୌନ୍ତେୟ କର୍ମସଙ୍ଗେନ ଦେହିନମ୍ ॥ ୭ ॥**

ରଜଃ, ରାଗାତ୍ମକମ୍, ବିଦ୍ଧି, ତୃଷ୍ଣାସଙ୍ଗସମୁଦ୍ଭବମ୍,
ତତ୍, ନିବଧ୍ନାତି, କୌନ୍ତେୟ, କର୍ମସଙ୍ଗେନ, ଦେହିନମ୍ ।।୭।।

ତଥା—

| | | | |
|---|---|---|---|
| କୌନ୍ତେୟ | = ହେ ଅର୍ଜୁନ ! | ତତ୍ | = ତାହା |
| ରାଗାତ୍ମକମ୍ | = ରାଗରୂପୀ | ଦେହିନମ୍ | = ଜୀବାତ୍ମାକୁ |
| ରଜଃ | = ରଜୋଗୁଣକୁ | କର୍ମସଙ୍ଗେନ | = କର୍ମ ତଥା କର୍ମଫଳ ସହିତ ଥିବା ସମ୍ବନ୍ଧଦ୍ୱାରା |
| ତୃଷ୍ଣାସଙ୍ଗ-ସମୁଦ୍ଭବମ୍ | = କାମନା ଓ ଆସକ୍ତିରୁ ଉତ୍ପନ୍ନ ବୋଲି | | |
| ବିଦ୍ଧି | = ଜାଣ । | ନିବଧ୍ନାତି | = ବନ୍ଧନ କରେ । |

ତମୋଗୁଣ ଦ୍ୱାରା ଜୀବାତ୍ମା ବାନ୍ଧି ହେବାର ପ୍ରକାର ।

**ତମସ୍ତ୍ୱଜ୍ଞାନଜଂ ବିଦ୍ଧି ମୋହନଂ ସର୍ବଦେହିନାମ୍ ।**
**ପ୍ରମାଦାଲସ୍ୟନିଦ୍ରାଭିସ୍ତନ୍ନିବଧ୍ନାତି ଭାରତ ॥ ୮ ॥**

ତମଃ, ତୁ, ଅଜ୍ଞାନଜମ୍, ବିଦ୍ଧି, ମୋହନମ୍, ସର୍ବଦେହିନାମ୍,
ପ୍ରମାଦାଲସ୍ୟନିଦ୍ରାଭିଃ, ତତ୍, ନିବଧ୍ନାତି, ଭାରତ ।।୮।।

| | | | |
|---|---|---|---|
| ତୁ | = କିନ୍ତୁ | ବିଦ୍ଧି | = (ବୋଲି) ଜାଣ । |
| ଭାରତ | = ହେ ଅର୍ଜୁନ ! | ତତ୍ | = ତାହା |
| ସର୍ବଦେହିନାମ୍ | = ସମସ୍ତ ଦେହାଭିମାନୀଙ୍କୁ | (ଦେହିନମ୍) | = ଜୀବାତ୍ମାକୁ |
| ମୋହନମ୍ | = ମୋହିତ କରୁଥିବା | ପ୍ରମାଦାଲସ୍ୟ-ନିଦ୍ରାଭିଃ | = ପ୍ରମାଦ,[1] ଆଳସ୍ୟ,[2] ଓ ନିଦ୍ରାଦ୍ୱାରା |
| ତମଃ | = ତମୋଗୁଣ | | |
| ଅଜ୍ଞାନଜମ୍ | = ଅଜ୍ଞାନରୁ ଉତ୍ପନ୍ନ | ନିବଧ୍ନାତି | = ବନ୍ଧନ କରେ । |

ଗୁଣତ୍ରୟ-ସୁଖ, କର୍ମ ଏବଂ ପ୍ରମାଦ ଦ୍ୱାରା ଜୀବାତ୍ମାକୁ ଯୋଡ଼ାଯିବା ।

**ସତ୍ତ୍ୱଂ ସୁଖେ ସଂଜୟତି ରଜଃ କର୍ମଣି ଭାରତ ।**
**ଜ୍ଞାନମାବୃତ୍ୟ ତୁ ତମଃ ପ୍ରମାଦେ ସଂଜୟତ୍ୟୁତ ॥ ୯ ॥**

ସତ୍ତ୍ୱମ୍, ସୁଖେ, ସଞ୍ଜୟତି, ରଜଃ, କର୍ମଣି, ଭାରତ,
ଜ୍ଞାନମ୍, ଆବୃତ୍ୟ, ତୁ, ତମଃ, ପ୍ରମାଦେ, ସଞ୍ଜୟତି, ଉତ ।।୯।।

---

୧-ଇନ୍ଦ୍ରିୟମାନଙ୍କର ଏବଂ ଅନ୍ତଃକରଣର ସମସ୍ତ ବ୍ୟର୍ଥ ଚେଷ୍ଟାମାନଙ୍କ ନାମ 'ପ୍ରମାଦ' ଅଟେ ।
୨-କର୍ତ୍ତବ୍ୟ କର୍ମରେ ଅପ୍ରବୃତ୍ତିରୂପ ନିରୁଦ୍ୟମତାର ନାମ 'ଆଳସ୍ୟ' ଅଟେ ।

କାହିଁକି ନା—

| | | | |
|---|---|---|---|
| ଭାରତ | = ହେ ଅର୍ଜୁନ ! | ଜ୍ଞାନମ୍ | = ଜ୍ଞାନକୁ |
| ସତ୍ତ୍ୱମ୍ | = ସତ୍ତ୍ୱଗୁଣ | ଆବୃତ୍ୟ | = ଆଚ୍ଛାଦନ କରି |
| ସୁଖେ | = ସୁଖରେ | ଉତ | = ଓ |
| ସଂଜୟତି | = ଲଗାଏ (ଏବଂ) | ପ୍ରମାଦେ | = ପ୍ରମାଦରେ ଲିପ୍ତ କରାଇ (ମନୁଷ୍ୟ ଉପରେ) |
| ରଜଃ | = ରଜୋଗୁଣ | | |
| କର୍ମଣି | = କର୍ମରେ (ଲଗାଏ) | | |
| ତମଃ | = (ତଥା) ତମୋଗୁଣ | ସଂଜୟତି | = ବିଜୟ ପ୍ରାପ୍ତ କରେ । |
| ତୁ | = ତ | | |

ଗୋଟିଏ ଗୁଣ ଅନ୍ୟ ଦୁଇଟି ଗୁଣକୁ ଦମନ କରି କିପରି ବର୍ଦ୍ଧିତ ହୁଏ ତାହାର କଥନ ।

**ରଜସ୍ତମଶ୍ଚାଭିଭୂୟ ସତ୍ତ୍ୱଂ ଭବତି ଭାରତ ।**
**ରଜଃ ସତ୍ତ୍ୱଂ ତମଶ୍ଚୈବ ତମଃ ସତ୍ତ୍ୱଂ ରଜସ୍ତଥା ॥ ୧୦ ॥**

ରଜଃ, ତମଃ, ଚ, ଅଭିଭୂୟ, ସତ୍ତ୍ୱମ୍, ଭବତି, ଭାରତ, ରଜଃ, ସତ୍ତ୍ୱମ୍, ତମଃ, ଚ, ଏବ, ତମଃ, ସତ୍ତ୍ୱମ୍, ରଜଃ, ତଥା ।।୧୦।।

| | | | |
|---|---|---|---|
| ଭାରତ | = ହେ ଅର୍ଜୁନ ! | ତମଃ | = ତମୋଗୁଣକୁ (ଦମନକରି) |
| ରଜଃ | = ରଜୋଗୁଣ | | |
| ଚ | = ଓ | ରଜଃ | = ରଜୋଗୁଣ (ବୃଦ୍ଧିପାଏ); |
| ତମଃ | = ତମୋଗୁଣକୁ | | |
| ଅଭିଭୂୟ | = ଦମନକରି | ତଥା, ଏବ | = ସେହିପରି |
| ସତ୍ତ୍ୱମ୍ | = ସତ୍ତ୍ୱଗୁଣ (ବୃଦ୍ଧିପାଏ); | ସତ୍ତ୍ୱମ୍, ରଜଃ | = ସତ୍ତ୍ୱ ଓ ରଜୋକୁ ଦମନକରି |
| ସତ୍ତ୍ୱମ୍ | = ସତ୍ତ୍ୱଗୁଣକୁ | ତମଃ, ଭବତି | = ତମୋଗୁଣ ବୃଦ୍ଧିପାଏ । |
| ଚ | = ଓ | | |

ସତ୍ତ୍ୱଗୁଣ ବୃଦ୍ଧିର ଲକ୍ଷଣ ।

**ସର୍ବଦ୍ୱାରେଷୁ ଦେହେଽସ୍ମିନ୍ ପ୍ରକାଶ ଉପଜାୟତେ ।**
**ଜ୍ଞାନଂ ଯଦା ତଦା ବିଦ୍ୟାଦ୍ ବିବୃଦ୍ଧଂ ସତ୍ତ୍ୱମିତ୍ୟୁତ ॥ ୧୧ ॥**

ସର୍ବଦ୍ୱାରେଷୁ, ଦେହେ, ଅସ୍ମିନ୍, ପ୍ରକାଶଃ, ଉପଜାୟତେ,
ଜ୍ଞାନମ୍, ଯଦା, ତଦା, ବିଦ୍ୟାତ୍, ବିବୃଦ୍ଧମ୍, ସତ୍ତ୍ୱମ୍, ଇତି, ଉତ ।।୧୧।।

**ଏଥିପାଇଁ —**

| | | | |
|---|---|---|---|
| ଯଦା | = ଯେତେବେଳେ | ଉପଜାୟତେ | = ଉତ୍ପନ୍ନ ହୁଏ, |
| ଅସ୍ମିନ୍ | = ଏହି | ତଦା | = ସେତେବେଳେ |
| ଦେହେ | = ଦେହରେ (ତଥା) | ଇତି | = ଏପରି |
| ସର୍ବଦ୍ୱାରେଷୁ | = ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କରେ | ବିଦ୍ୟାତ୍ | = ଜାଣିବା ଉଚିତ |
| | | ଉତ | = ଯେ |
| ପ୍ରକାଶଃ | = ଚେତନା | | |
| (ଚ) | = ଓ | ସତ୍ତ୍ୱମ୍ | = ସତ୍ତ୍ୱଗୁଣ |
| ଜ୍ଞାନମ୍ | = ବିବେକ | ବିବୃଦ୍ଧମ୍ | = ବଢ଼ିଛି । |

ରଜୋଗୁଣ ବୃଦ୍ଧିର ଲକ୍ଷଣ ।

**ଲୋଭଃ ପ୍ରବୃତ୍ତିରାରମ୍ଭଃ କର୍ମଣାମଶମଃ ସ୍ପୃହା ।**
**ରଜସ୍ୟେତାନି ଜାୟନ୍ତେ ବିବୃଦ୍ଧେ ଭରତର୍ଷଭ ॥ ୧୨ ॥**

ଲୋଭଃ, ପ୍ରବୃତ୍ତିଃ, ଆରମ୍ଭଃ, କର୍ମଣାମ୍, ଅଶମଃ, ସ୍ପୃହା,
ରଜସି, ଏତାନି, ଜାୟନ୍ତେ, ବିବୃଦ୍ଧେ, ଭରତର୍ଷଭ ।।୧୨।।

**ଏବଂ—**

| | | | |
|---|---|---|---|
| ଭରତର୍ଷଭ | = ହେ ଅର୍ଜୁନ ! | ଆରମ୍ଭଃ | = କର୍ମାରମ୍ଭ, |
| ରଜସି, ବିବୃଦ୍ଧେ | = ରଜୋଗୁଣର ବୃଦ୍ଧି ଘଟିଲେ | ଅଶମଃ | = ଅଶାନ୍ତି ଅର୍ଥାତ୍ ମନର ଚଞ୍ଚଳତା (ଏବଂ) |
| ଲୋଭଃ | = ଲୋଭ, | | |
| ପ୍ରବୃତ୍ତିଃ | = ପ୍ରବୃତ୍ତି ଅର୍ଥାତ୍ (ସ୍ୱାର୍ଥ ବୁଦ୍ଧିରେ) | ସ୍ପୃହା | = ବିଷୟଭୋଗର ଲାଳସା- |
| କର୍ମଣାମ୍ | = କର୍ମମାନଙ୍କରେ (ସକାମ ଭାବଯୁକ୍ତ) | ଏତାନି | = ଏହିସବୁ ବୃତ୍ତି |
| | | ଜାୟନ୍ତେ | = ଉତ୍ପନ୍ନ ହୁଅନ୍ତି । |

ତମୋଗୁଣ ବୃଦ୍ଧିର ଲକ୍ଷଣ ।

**ଅପ୍ରକାଶୋଽପ୍ରବୃତ୍ତିଶ୍ଚ ପ୍ରମାଦୋ ମୋହ ଏବ ଚ ।**
**ତମସ୍ୟେତାନି ଜାୟନ୍ତେ ବିବୃଦ୍ଧେ କୁରୁନନ୍ଦନ ॥ ୧୩ ॥**

ଅପ୍ରକାଶଃ, ଅପ୍ରବୃତ୍ତିଃ, ଚ, ପ୍ରମାଦଃ, ମୋହଃ, ଏବ, ଚ,
ତମସି, ଏତାନି, ଜାୟନ୍ତେ, ବିବୃଦ୍ଧେ, କୁରୁନନ୍ଦନ ।।୧୩।।

**ତଥା—**

| | | | |
|---|---|---|---|
| କୁରୁନନ୍ଦନ | = ହେ ଅର୍ଜୁନ ! | ଚ | = ଓ |
| ତମସି, ବିବୃଦ୍ଧେ | = ତମୋଗୁଣର ବୃଦ୍ଧିରେ (ଅନ୍ତଃକରଣରେ ଓ ଇନ୍ଦ୍ରିୟମାନଙ୍କରେ) | ପ୍ରମାଦଃ | = ପ୍ରମାଦ ଅର୍ଥାତ୍ ବ୍ୟର୍ଥ ଚେଷ୍ଟା |
| | | ଚ | = ଓ |
| | | ମୋହଃ | = ନିଦ୍ରାଦି ଅନ୍ତଃକରଣର ମୋହିନୀ ବୃତ୍ତି- |
| ଅପ୍ରକାଶଃ | = ଅପ୍ରକାଶ | | |
| ଅପ୍ରବୃତ୍ତିଃ | = (ଏବଂ) କର୍ତ୍ତବ୍ୟ କର୍ମରେ ପ୍ରବୃତ୍ତିର ଅଭାବ | ଏତାନି, ଏବ | = ଏସବୁ ହିଁ |
| | | ଜାୟନ୍ତେ | = ଉତ୍ପନ୍ନ ହୁଅନ୍ତି । |

ସତ୍ତ୍ୱଗୁଣର ବୃଦ୍ଧି ସମୟରେ ମରିବା ଲୋକର କେଉଁ ଗତି ହୁଏ— ତାର କଥନ ।

**ଯଦା ସତ୍ତ୍ୱେ ପ୍ରବୃଦ୍ଧେ ତୁ ପ୍ରଳୟଂ ଯାତି ଦେହଭୃତ୍ ।**
**ତଦୋତ୍ତମବିଦାଂ ଲୋକାନମଳାନ୍ ପ୍ରତିପଦ୍ୟତେ ॥ ୧୪ ॥**

ଯଦା, ସତ୍ତ୍ୱେ, ପ୍ରବୃଦ୍ଧେ, ତୁ, ପ୍ରଳୟମ୍, ଯାତି, ଦେହଭୃତ୍,
ତଦା, ଉତ୍ତମବିଦାମ୍, ଲୋକାନ୍, ଅମଳାନ୍, ପ୍ରତିପଦ୍ୟତେ ।।୧୪।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଯଦା | = ଯେତେବେଳେ | ସତ୍ତ୍ୱେ, ପ୍ରବୃଦ୍ଧେ | = ସତ୍ତ୍ୱଗୁଣର ବୃଦ୍ଧିରେ |
| ଦେହଭୃତ୍ | = ଏହି ମନୁଷ୍ୟ | ପ୍ରଳୟମ୍ | = ମୃତ୍ୟୁକୁ |

| | | | |
|---|---|---|---|
| ଯାତି | = ପ୍ରାପ୍ତ ହୁଏ, | | ପୁରୁଷମାନଙ୍କର |
| ତଦା | = ସେତେବେଳେ | ଅମଳାନ୍ | = ନିର୍ମଳ ଦିବ୍ୟ ସ୍ୱର୍ଗାଦି |
| ତୁ | = ତ | ଲୋକାନ୍ | = ଲୋକମାନଙ୍କୁ |
| ଉତ୍ତମବିଦାମ୍ | = ଉତ୍ତମ କର୍ମ କରୁଥିବା | ପ୍ରତିପଦ୍ୟତେ | = ପ୍ରାପ୍ତ ହୁଏ । |

ରଜୋଗୁଣ ଓ ତମୋଗୁଣର ବୃଦ୍ଧି ସମୟରେ ମୃତ୍ୟୁ ହେଲେ ମନୁଷ୍ୟ କେଉଁ ଗତି ପ୍ରାପ୍ତ ହୁଏ, ତାହାର କଥନ ।

**ରଜସି ପ୍ରଳୟଂ ଗତ୍ୱା କର୍ମସଙ୍ଗିଷୁ ଜାୟତେ ।**
**ତଥା ପ୍ରଲୀନସ୍ତମସି ମୂଢ଼ଯୋନିଷୁ ଜାୟତେ ॥ ୧୫ ॥**

ରଜସି, ପ୍ରଳୟମ୍, ଗତ୍ୱା, କର୍ମସଙ୍ଗିଷୁ, ଜାୟତେ,
ତଥା, ପ୍ରଲୀନଃ, ତମସି, ମୂଢ଼ଯୋନିଷୁ, ଜାୟତେ ।।୧୫।।

ଏବଂ—

| | | | |
|---|---|---|---|
| ରଜସି | =ରଜୋଗୁଣ ବୃଦ୍ଧିରେ* | ତଥା | =ତଥା |
| ପ୍ରଳୟମ୍ | =ମୃତ୍ୟୁକୁ | ତମସି | =ତମୋଗୁଣ ବୃଦ୍ଧିରେ |
| ଗତ୍ୱା | =ପ୍ରାପ୍ତ ହେଲେ | ପ୍ରଲୀନଃ | =ମରୁଥିବା ମନୁଷ୍ୟ |
| କର୍ମସଙ୍ଗିଷୁ | =କର୍ମାସକ୍ତ ମନୁଷ୍ୟମାନଙ୍କ ମଧ୍ୟରେ | ମୂଢ଼ଯୋନିଷୁ | =ମୂଢ଼ ଯୋନିମାନଙ୍କରେ ଅର୍ଥାତ୍ ପଶୁ, କୀଟ ଆଦି ଯୋନିରେ |
| ଜାୟତେ | =ଜନ୍ମ ହୁଏ | ଜାୟତେ | =ଜନ୍ମ ହୁଏ । |

ସାତ୍ତ୍ୱିକ, ରାଜସ ଏବଂ ତାମସ କର୍ମର ଫଳ ।

**କର୍ମଣଃ ସୁକୃତସ୍ୟାହୁଃ ସାତ୍ତ୍ୱିକଂ ନିର୍ମଳଂ ଫଳମ୍ ।**
**ରଜସସ୍ତୁ ଫଳଂ ଦୁଃଖମଜ୍ଞାନଂ ତମସଃ ଫଳମ୍ ॥ ୧୬ ॥**

କର୍ମଣଃ, ସୁକୃତସ୍ୟ, ଆହୁଃ, ସାତ୍ତ୍ୱିକମ୍, ନିର୍ମଳମ୍, ଫଳମ୍,
ରଜସଃ, ତୁ, ଫଳମ୍, ଦୁଃଖମ୍, ଅଜ୍ଞାନମ୍, ତମସଃ, ଫଳମ୍ ।।୧୬।।

* ଅର୍ଥାତ୍ ଯେଉଁ କାଳରେ ରଜୋଗୁଣର ବୃଦ୍ଧି ହୁଏ, ସେହି କାଳରେ ।

## କାହିଁକି ନା—

| | |
|---|---|
| ସୁକୃତସ୍ୟ,କର୍ମଣଃ | = ଶ୍ରେଷ୍ଠ କର୍ମର ତ |
| ସାତ୍ତ୍ୱିକମ୍ | = ସାତ୍ତ୍ୱିକ ଅର୍ଥାତ୍ ସୁଖ, ଜ୍ଞାନ ଓ ବୈରାଗ୍ୟାଦି |
| ନିର୍ମଳମ୍ | = ନିର୍ମଳ |
| ଫଳମ୍ | = ଫଳ (ବୋଲି) |
| ଆହୁଃ | = କହିଛନ୍ତି, |
| ତୁ | = କିନ୍ତୁ |
| ରଜସଃ, ଫଳମ୍ | = ରାଜସ କର୍ମର ଫଳ |
| ଦୁଃଖମ୍ | = ଦୁଃଖ (ଏବଂ) |
| ତମସଃ | = ତାମସ କର୍ମର |
| ଫଳମ୍ | = ଫଳ |
| ଅଜ୍ଞାନମ୍ | = ଅଜ୍ଞାନ (ବୋଲି କହିଛନ୍ତି) । |

ସତ୍ତ୍ୱଗୁଣରୁ ଜ୍ଞାନ, ରଜୋଗୁଣରୁ ଲୋଭ ଓ ତମୋଗୁଣରୁ ପ୍ରମାଦ, ମୋହ ଓ ଅଜ୍ଞାନର ଉତ୍ପତ୍ତି ।

**ସତ୍ତ୍ୱାତ୍ ସଂଜାୟତେ ଜ୍ଞାନଂ ରଜସୋ ଲୋଭ ଏବ ଚ ।**
**ପ୍ରମାଦମୋହୌ ତମସୋ ଭବତୋଽଜ୍ଞାନମେବ ଚ ॥ ୧୭ ॥**

ସତ୍ତ୍ୱାତ୍, ସଂଜାୟତେ, ଜ୍ଞାନମ୍, ରଜସଃ, ଲୋଭଃ, ଏବ, ଚ,
ପ୍ରମାଦମୋହୌ, ତମସଃ, ଭବତଃ, ଅଜ୍ଞାନମ୍, ଏବ, ଚ ।।୧୭।।

## ତଥା—

| | |
|---|---|
| ସତ୍ତ୍ୱାତ୍ | = ସତ୍ତ୍ୱଗୁଣରୁ |
| ଜ୍ଞାନମ୍ | = ଜ୍ଞାନ |
| ସଂଜାୟତେ | = ଉତ୍ପନ୍ନ ହୁଏ |
| ଚ | = ଏବଂ |
| ରଜସଃ | = ରଜୋଗୁଣରୁ |
| ଏବ | = ନିଃସନ୍ଦେହରେ |
| ଲୋଭଃ | = ଲୋଭ |
| ଚ | = ତଥା |
| ତମସଃ | = ତମୋଗୁଣରୁ |
| ପ୍ରମାଦମୋହୌ | = ପ୍ରମାଦ [୧] ଓ ମୋହ [୨] |
| ଭବତଃ | = ଉତ୍ପନ୍ନ ହୁଅନ୍ତି (ଏବଂ) |
| ଅଜ୍ଞାନମ୍ | = ଅଜ୍ଞାନ |
| ଏବ | = ମଧ୍ୟ (ଉତ୍ପନ୍ନ ହୁଏ) । |

୧-୨- ଏହି ଅଧ୍ୟାୟର ୧୩ ଶ୍ଳୋକ ଦେଖିବା ଉଚିତ ।

ସାତ୍ତ୍ୱିକ, ରାଜସ ଏବଂ ତାମସ ପୁରୁଷଙ୍କ ଗତି ।

ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା ମଧ୍ୟେ ତିଷ୍ଠନ୍ତି ରାଜସାଃ ।
ଜଘନ୍ୟଗୁଣବୃତ୍ତିସ୍ଥା ଅଧୋ ଗଚ୍ଛନ୍ତି ତାମସାଃ ॥ ୧୮ ॥

ଊର୍ଦ୍ଧ୍ୱମ୍, ଗଚ୍ଛନ୍ତି, ସତ୍ତ୍ୱସ୍ଥାଃ, ମଧ୍ୟେ, ତିଷ୍ଠନ୍ତି, ରାଜସାଃ, ଜଘନ୍ୟଗୁଣବୃତ୍ତିସ୍ଥାଃ, ଅଧଃ, ଗଚ୍ଛନ୍ତି, ତାମସାଃ ।।୧୮।।

ଏଥିପାଇଁ—

| | | | |
|---|---|---|---|
| ସତ୍ତ୍ୱସ୍ଥାଃ | = ସତ୍ତ୍ୱଗୁଣରେ ସ୍ଥିତ ପୁରୁଷମାନେ | ଜଘନ୍ୟଗୁଣ-ବୃତ୍ତିସ୍ଥାଃ | = ତମୋଗୁଣର କାର୍ଯ୍ୟରୂପ ନିଦ୍ରା, ପ୍ରମାଦ ଓ ଆଳସ୍ୟାଦିରେ ସ୍ଥିତ ହୋଇଥିବା |
| ଊର୍ଦ୍ଧ୍ୱମ୍ | = ସ୍ୱର୍ଗାଦି ଉଚ୍ଚ ଲୋକକୁ | | |
| ଗଚ୍ଛନ୍ତି | = ଯାଆନ୍ତି; | | |
| ରାଜସାଃ | = ରଜୋଗୁଣରେ ସ୍ଥିତ ରାଜସ ପୁରୁଷମାନେ | ତାମସାଃ | = ତାମସ ପୁରୁଷମାନେ |
| | | ଅଧଃ | = ଅଧୋଗତିକୁ ଅର୍ଥାତ୍ କୀଟ, ପଶୁ ଆଦି ନୀଚ ଯୋନିମାନଙ୍କୁ ତଥା ନରକକୁ |
| ମଧ୍ୟେ | = ମଧ୍ୟରେ ଅର୍ଥାତ୍ ମନୁଷ୍ୟଲୋକରେ (ହିଁ) | | |
| ତିଷ୍ଠନ୍ତି | = ରହନ୍ତି (ଏବଂ) | ଗଚ୍ଛନ୍ତି | = ପ୍ରାପ୍ତ ହୁଅନ୍ତି । |

ଆତ୍ମାକୁ ଅକର୍ତ୍ତା ଏବଂ ଗୁଣାତୀତ ଜାଣିବାରେ ଭଗବତ୍ ପ୍ରାପ୍ତି ।

ନାନ୍ୟଂ ଗୁଣେଭ୍ୟଃ କର୍ତ୍ତାରଂ ଯଦା ଦ୍ରଷ୍ଟାନୁପଶ୍ୟତି ।
ଗୁଣେଭ୍ୟଶ୍ଚ ପରଂ ବେତ୍ତି ମଦ୍ଭାବଂ ସୋଽଧିଗଚ୍ଛତି ॥ ୧୯ ॥

ନ, ଅନ୍ୟମ୍, ଗୁଣେଭ୍ୟଃ, କର୍ତ୍ତାରମ୍, ଯଦା, ଦ୍ରଷ୍ଟା, ଅନୁପଶ୍ୟତି, ଗୁଣେଭ୍ୟଃ, ଚ, ପରମ୍, ବେତ୍ତି, ମଦ୍ଭାବମ୍, ସଃ, ଅଧିଗଚ୍ଛତି ।।୧୯।।

**ଏବଂ ହେ ଅର୍ଜୁନ !—**

ଯଦା = ଯେତେବେଳେ
ଦ୍ରଷ୍ଟା = ସାକ୍ଷୀରୂପେ ସ୍ଥିତ ଦ୍ରଷ୍ଟା[୧] (ବିବେକୀ ପୁରୁଷ)
ଗୁଣେଭ୍ୟଃ = ତିନିଗୁଣରୁ ଭିନ୍ନ
ଅନ୍ୟମ୍ = ଅନ୍ୟ କାହାକୁ
କର୍ତାରମ୍ = କର୍ତା (ବୋଲି)
ନ, ଅନୁପଶ୍ୟତି= ଦେଖେ ନାହିଁ
ଚ = ଏବଂ
ଗୁଣେଭ୍ୟଃ = ତିନି ଗୁଣଠାରୁ
ପରମ୍ = ଅତ୍ୟନ୍ତ ଊର୍ଦ୍ଧ୍ୱରେ ସ୍ଥିତ ସଚ୍ଚିଦାନନ୍ଦଘନସ୍ୱରୂପ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ
ବେତ୍ତି = ତତ୍ତ୍ୱତଃ ଜାଣେ,
(ତଦା) = ସେତେବେଳେ
ସଃ = ସେ
ମଦ୍‌ଭାବମ୍ = ମୋର ସ୍ୱରୂପକୁ
ଅଧିଗଚ୍ଛତି = ପ୍ରାପ୍ତ ହୁଏ ।

**ଗୁଣାନେତାନତୀତ୍ୟ ତ୍ରୀନ୍ ଦେହୀ ଦେହସମୁଦ୍‌ଭବାନ୍ ।**
**ଜନ୍ମମୃତ୍ୟୁଜରାଦୁଃଖୈର୍ବିମୁକ୍ତୋଽମୃତମଶ୍ନୁତେ ॥ ୨୦ ॥**

ଗୁଣାନ୍, ଏତାନ୍, ଅତୀତ୍ୟ, ତ୍ରୀନ୍, ଦେହୀ, ଦେହସମୁଦ୍‌ଭବାନ୍, ଜନ୍ମମୃତ୍ୟୁଜରାଦୁଃଖୈଃ, ବିମୁକ୍ତଃ, ଅମୃତମ୍, ଅଶ୍ନୁତେ ।।୨୦।।

**ତଥା ଏହି—**

ଦେହୀ = (ସେହି) ପୁରୁଷ
ଦେହସମୁଦ୍‌ଭବାନ୍ = ସ୍ଥୂଳଶରୀରର[୨] ଉତ୍ପତ୍ତିର କାରଣସ୍ୱରୂପ
ଏତାନ୍ = ଏହି
ତ୍ରୀନ୍ = ତିନି
ଗୁଣାନ୍ = ଗୁଣମାନଙ୍କୁ
ଅତୀତ୍ୟ = ଅତିକ୍ରମ କରି,

---

୧- ଅର୍ଥାତ୍ ସମଷ୍ଟି ଚେତନରେ ଏକୀ ଭାବରେ ସ୍ଥିତ ହୋଇଥିବା ସାକ୍ଷୀ ପୁରୁଷ ।

୨- ବୁଦ୍ଧି, ଅହଂକାର ଓ ମନ ତଥା ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ମହାଭୂତ ଓ ପଞ୍ଚ ଇନ୍ଦ୍ରିୟର ବିଷୟ—ଏହି ତେଇଶି ତତ୍ତ୍ୱର ପିଣ୍ଡରୂପ ଏହି ସ୍ଥୂଳ ଶରୀରଟି ପ୍ରକୃତିଜାତ ଗୁଣମାନଙ୍କର ହିଁ କାର୍ଯ୍ୟ । ତେଣୁ ଏହା ସହିତ ନିଜର ସମ୍ବନ୍ଧ ଅଛି ବୋଲି ମାନିବାହିଁ ଗୁଣମାନଙ୍କରେ ଲିପ୍ତ ହୋଇ ରହିବା ।

| | | | |
|---|---|---|---|
| ଜନ୍ମମୃତ୍ୟୁଜରା-ଦୁଃଖୈଃ | = ଜନ୍ମ, ମୃତ୍ୟୁ, ବୃଦ୍ଧାବସ୍ଥା ଓ ସକଳପ୍ରକାର ଦୁଃଖରୁ | ବିମୁକ୍ତଃ | = ମୁକ୍ତ ହୋଇ |
| | | ଅମୃତମ୍ | = ପରମାନନ୍ଦକୁ |
| | | ଅଶ୍ନୁତେ | = ପ୍ରାପ୍ତ ହୁଏ । |

## *ଅର୍ଜୁନ ଉବାଚ*

ଗୁଣାତୀତ ପୁରୁଷଙ୍କ ବିଷୟରେ ଅର୍ଜୁନଙ୍କ ତିନୋଟି ପ୍ରଶ୍ନ ।

କୈର୍ଲିଙ୍ଗୈସ୍ତ୍ରୀନ୍ ଗୁଣାନେତାନତୀତୋ ଭବତି ପ୍ରଭୋ ।
କିମାଚାରଃ କଥଂ ଚୈତାଂସ୍ତ୍ରୀନ୍‌ଗୁଣାନତିବର୍ତ୍ତତେ ॥ ୨୧ ॥

କୈଃ, ଲିଙ୍ଗୈଃ, ତ୍ରୀନ୍, ଗୁଣାନ୍, ଏତାନ୍, ଅତୀତଃ, ଭବତି, ପ୍ରଭୋ,
କିମାଚାରଃ, କଥମ୍, ଚ, ଏତାନ୍, ତ୍ରୀନ୍, ଗୁଣାନ୍, ଅତିବର୍ତ୍ତତେ ।।୨୧ ।।

**ଏହି ପ୍ରକାରେ ଭଗବାନଙ୍କ ରହସ୍ୟଯୁକ୍ତ ବଚନକୁ ଶୁଣି ଅର୍ଜୁନ ପଚାରିଲେ, ହେ ପୁରୁଷୋତ୍ତମ !—**

| | | | |
|---|---|---|---|
| ଏତାନ୍ | = ଏହି (ସବୁ) | (ଭବତି) | = ହୁଏ ? |
| ତ୍ରୀନ୍ | = ତିନି | ପ୍ରଭୋ | = (ତଥା) ହେ ପ୍ରଭୁ ! |
| ଗୁଣାନ୍ | = ଗୁଣମାନଙ୍କରୁ | | |
| ଅତୀତଃ | = ଅତୀତ ହୋଇଥିବା ପୁରୁଷ | କଥମ୍ | = (ମନୁଷ୍ୟ) କେଉଁ ଉପାୟରେ |
| କୈଃ, ଲିଙ୍ଗୈଃ | = କେଉଁ କେଉଁ ଲକ୍ଷଣରେ (ଯୁକ୍ତ) | ଏତାନ୍ | = ଏହି |
| ଭବତି | = ହୁଏ | | |
| ଚ | = ଏବଂ | ତ୍ରୀନ୍ | = ତିନି |
| କିମାଚାରଃ | = କେଉଁପ୍ରକାର ଆଚରଣଯୁକ୍ତ | ଗୁଣାନ୍ | = ଗୁଣମାନଙ୍କରୁ |
| | | ଅତିବର୍ତ୍ତତେ | = ଅତୀତ ହୁଏ ? |

ପ୍ରଥମ ଓ ଦ୍ୱିତୀୟ ପ୍ରଶ୍ନର ଉତ୍ତରରେ ଭଗବାନ ଗୁଣାତୀତ ପୁରୁଷଙ୍କ ଲକ୍ଷଣ ଏବଂ ଆଚରଣର ବର୍ଣ୍ଣନା କରୁଛନ୍ତି ।

ଶ୍ରୀଭଗବାନ ଉବାଚ

**ପ୍ରକାଶଂ ଚ ପ୍ରବୃତ୍ତିଂ ଚ ମୋହମେବ ଚ ପାଣ୍ଡବ ।**
**ନ ଦ୍ୱେଷ୍ଟି ସମ୍ପ୍ରବୃତ୍ତାନି ନ ନିବୃତ୍ତାନି କାଂକ୍ଷତି ॥ ୨୨ ॥**

ପ୍ରକାଶମ୍, ଚ, ପ୍ରବୃତ୍ତିମ୍, ଚ, ମୋହମ୍, ଏବ, ଚ, ପାଣ୍ଡବ,
ନ, ଦ୍ୱେଷ୍ଟି, ସମ୍ପ୍ରବୃତ୍ତାନି, ନ, ନିବୃତ୍ତାନି, କାଙ୍କ୍ଷତି ।।୨୨।।

**ଏହି ପ୍ରକାରେ ଅର୍ଜୁନଙ୍କ ପ୍ରଶ୍ନର ଉତ୍ତରରେ ଶ୍ରୀକୃଷ୍ଣଭଗବାନ କହିଲେ—**

| | |
|---|---|
| ପାଣ୍ଡବ | = ହେ ଅର୍ଜୁନ ! |
| ପ୍ରକାଶମ୍ | = ଯେଉଁ ପୁରୁଷ ସତ୍ତ୍ୱଗୁଣର କାର୍ଯ୍ୟରୂପୀ ପ୍ରକାଶକୁ [1] |
| ଚ | = ଏବଂ |
| ପ୍ରବୃତ୍ତିମ୍ | = ରଜୋଗୁଣର କାର୍ଯ୍ୟରୂପୀ ପ୍ରବୃତ୍ତିକୁ |
| ଚ | = ତଥା |
| ମୋହମ୍ | = ତମୋଗୁଣର କାର୍ଯ୍ୟରୂପୀ ମୋହ [2] |
| ସମ୍ପ୍ରବୃତ୍ତାନି | = ପ୍ରବୃତ୍ତ ହେଲେ (ଆସିଗଲେ) |
| ଏବ | = ମଧ୍ୟ (ଗୁଣାତୀତ ପୁରୁଷ ସେ ସବୁରେ) |
| ନ, ଦ୍ୱେଷ୍ଟି | = ଦ୍ୱେଷ କରେ ନାହିଁ |
| ଚ | = ଏବଂ |

୧- ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କରେ ଆଳସ୍ୟର ଅଭାବ ହୋଇ ଯେଉଁ ଏକ ପ୍ରକାର ଚେତନା ହୁଏ, ତାହାର ନାମ " ପ୍ରକାଶ" ଅଟେ ।

୨- ନିଦ୍ରା ଓ ଆଳସ୍ୟାଦିର ବହୁଳତା ଦ୍ୱାରା ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କରେ ଚେତନଶକ୍ତିର ଲୋପ ହେବାକୁ ଏଠାରେ "ମୋହ" ନାମରେ ଜାଣିବା ଉଚିତ ।

| | | | |
|---|---|---|---|
| ନିବୃତ୍ତାନି | = ନିବୃତ୍ତ ହୋଇଗଲେ ମଧ୍ୟ (ସେ ସବୁର) | ନ, କାଙ୍କ୍ଷତି | = ଆକାଙ୍କ୍ଷା [୧] କରେ ନାହିଁ- |

ଉଦାସୀନବଦାସୀନୋ ଗୁଣୈର୍ଯୋ ନ ବିଚାଲ୍ୟତେ ।
ଗୁଣା ବର୍ତ୍ତନ୍ତ ଇତ୍ୟେବ ଯୋଽବତିଷ୍ଠତି ନେଙ୍ଗତେ ॥ ୨୩ ॥

ଉଦାସୀନବତ୍, ଆସୀନଃ, ଗୁଣୈଃ, ଯଃ, ନ, ବିଚାଲ୍ୟତେ,
ଗୁଣାଃ, ବର୍ତ୍ତନ୍ତେ, ଇତି, ଏବ, ଯଃ, ଅବତିଷ୍ଠତି, ନ, ଇଙ୍ଗତେ ।।୨୩।।

**ତଥା—**

| | | | |
|---|---|---|---|
| ଯଃ | = ଯେ | ଇତି | = ଏପରି ବୁଝି |
| ଉଦାସୀନବତ୍ | = ସାକ୍ଷୀସଦୃଶ | ଯଃ, | = ଯେ |
| ଆସୀନଃ | = ସ୍ଥିତହୋଇ (ରହି) | ଅବତିଷ୍ଠତି | (ସଚ୍ଚିଦାନନ୍ଦଘନ) ପରମାତ୍ମାଙ୍କ ଠାରେ ଏକୀଭାବରେ) ସ୍ଥିତ ରହେ (ଏବଂ) |
| ଗୁଣୈଃ | = ଗୁଣମାନଙ୍କ ଦ୍ୱାରା | | |
| ନ, ବିଚାଲ୍ୟତେ | = ବିଚଳିତ ହୁଏ ନାହିଁ (ଏବଂ) | | |
| ଗୁଣାଃ, ଏବ | = ଗୁଣମାନେ ହିଁ ଗୁଣମାନଙ୍କରେ | ନ, ଇଙ୍ଗତେ | = ସେହି ସ୍ଥିତିରୁ କଦାପି ବିଚଳିତ ହୁଏ ନାହିଁ- |
| ବର୍ତ୍ତନ୍ତେ | = ପ୍ରବୃତ୍ତ ହୁଅନ୍ତି [୨] | | |

୧ - ଯେଉଁପୁରୁଷ ଏକ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ହିଁ ନିତ୍ୟ ଏକୀଭାବରେ ସ୍ଥିତ ହୋଇ ତ୍ରିଗୁଣମୟୀ ମାୟାର ପ୍ରପଞ୍ଚରୂପ ସଂସାରରୁ ସର୍ବଥା ଅତୀତ ହୋଇସାରିଛନ୍ତି, ସେହି ଗୁଣାତୀତ ପୁରୁଷଙ୍କ ଅଭିମାନରହିତ ଅନ୍ତଃକରଣରେ ତିନି ଗୁଣର କାର୍ଯ୍ୟରୂପ ପ୍ରକାଶ, ପ୍ରବୃତ୍ତି ଓ ମୋହାଦି ବୃତ୍ତିମାନଙ୍କର ପ୍ରକଟ ହେବାରେ ତଥା ନହେବାରେ ସେହି ପୁରୁଷଙ୍କର କୌଣସି କାଳରେ ମଧ୍ୟ ଇଚ୍ଛା, ଦ୍ୱେଷ ଆଦି ବିକାର ହୁଏ ନାହିଁ। ଏହାହିଁ ସେହି ପୁରୁଷଙ୍କର ଗୁଣରୁ ଅତୀତ ହେବାର ପ୍ରଧାନ ଲକ୍ଷଣ ଅଟେ।

୨ - ତ୍ରିଗୁଣମୟୀ ମାୟାରୁ ଉତ୍ପନ୍ନ ହୋଇ ଅନ୍ତଃକରଣ ସହିତ ଇନ୍ଦ୍ରିୟମାନଙ୍କ ନିଜ-ନିଜ ବିଷୟରେ ବିଚରଣ କରିବା ହିଁ ଗୁଣମାନଙ୍କର " ଗୁଣରେ ପ୍ରବୃତ୍ତ " ହେବା ଅଟେ।

**ସମଦୁଃଖସୁଖଃ ସ୍ୱସ୍ଥଃ ସମଲୋଷ୍ଟାଶ୍ମକାଞ୍ଚନଃ ।**
**ତୁଲ୍ୟପ୍ରିୟାପ୍ରିୟୋ ଧୀରସ୍ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ ॥ ୨୪ ॥**

ସମଦୁଃଖସୁଖଃ, ସ୍ୱସ୍ଥଃ, ସମଲୋଷ୍ଟାଶ୍ମକାଞ୍ଚନଃ,
ତୁଲ୍ୟପ୍ରିୟାପ୍ରିୟଃ, ଧୀରଃ, ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ ।।୨୪।।

**ଏବଂ—**

| | |
|---|---|
| ସ୍ୱସ୍ଥଃ | = ଯେ ନିରନ୍ତର ଆତ୍ମଭାବରେ ସ୍ଥିତ, |
| ସମଦୁଃଖସୁଖଃ | = ଯେ ଦୁଃଖ ଓ ସୁଖକୁ ସମାନ ବୋଲି ବୁଝେ, |
| ସମଲୋଷ୍ଟାଶ୍ମ-କାଞ୍ଚନଃ | = ଯେ ମାଟି, ପଥର ଓ ସୁବର୍ଣ୍ଣକୁ ସମାନ ବୋଲି ମଣେ, |
| ଧୀରଃ | = (ଯେ) ଜ୍ଞାନୀ, |
| ତୁଲ୍ୟପ୍ରିୟାପ୍ରିୟଃ | = ଯେ ପ୍ରିୟ ଓ ଅପ୍ରିୟକୁ ସମାନ ବୋଲି ବୁଝେ (ଏବଂ) |
| ତୁଲ୍ୟନିନ୍ଦାତ୍ମ-ସଂସ୍ତୁତିଃ | = ଯେ ନିଜର ନିନ୍ଦା ଓ ସ୍ତୁତିକୁ ସମାନ ବୋଲି ବୁଝେ- |

**ମାନାପମାନୟୋସ୍ତୁଲ୍ୟସ୍ତୁଲ୍ୟୋ ମିତ୍ରାରିପକ୍ଷୟୋଃ ।**
**ସର୍ବାରମ୍ଭପରିତ୍ୟାଗୀ ଗୁଣାତୀତଃ ସ ଉଚ୍ୟତେ ॥ ୨୫ ॥**

ମାନାପମାନୟୋଃ, ତୁଲ୍ୟଃ, ତୁଲ୍ୟଃ, ମିତ୍ରାରିପକ୍ଷୟୋଃ,
ସର୍ବାରମ୍ଭପରିତ୍ୟାଗୀ, ଗୁଣାତୀତଃ, ସଃ, ଉଚ୍ୟତେ ।।୨୫।।

**ତଥା—**

ମାନାପମାନୟୋଃ = (ଯେ) ମାନ ଓ ଅପମାନରେ
ତୁଲ୍ୟଃ = ସମ ରହେ,
ମିତ୍ରାରିପକ୍ଷୟୋଃ = ମିତ୍ର ଓ ଶତ୍ରୁ ପକ୍ଷରେ (ବି)
ତୁଲ୍ୟଃ = ସମ ରହେ,
ସର୍ବାରମ୍ଭପରିତ୍ୟାଗୀ= ସମସ୍ତ କର୍ମରେ କର୍ତ୍ତାପଣ-ଅଭିମାନରୁ ରହିତ ଅଟେ;
ସଃ = ସେହି ପୁରୁଷ
ଗୁଣାତୀତଃ = ଗୁଣାତୀତ
ଉଚ୍ୟତେ = ବୋଲି କଥିତ ହୁଏ ।

ତୃତୀୟ ପ୍ରଶ୍ନର ଉତ୍ତରରେ ଭଗବାନ ଗୁଣାତୀତ ହେବାର ଉପାୟ ତଥା ତାହାର ଫଳ ବିଷୟରେ କହୁଛନ୍ତି ।

**ମାଂ ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ ।**
**ସ ଗୁଣାନ୍ ସମତୀତ୍ୟୈତାନ୍ ବ୍ରହ୍ମଭୂୟାୟ କଳ୍ପତେ ॥ ୨୬ ॥**

ମାମ୍, ଚ, ଯଃ, ଅବ୍ୟଭିଚାରେଣ, ଭକ୍ତିଯୋଗେନ, ସେବତେ,
ସଃ, ଗୁଣାନ୍, ସମତୀତ୍ୟ, ଏତାନ୍, ବ୍ରହ୍ମଭୂୟାୟ, କଳ୍ପତେ ।।୨୬।।

ଚ = ଏବଂ
ଯଃ = ଯେଉଁ ପୁରୁଷ
ଅବ୍ୟଭିଚାରେଣ, = ଅବ୍ୟଭିଚାରୀ*
ଭକ୍ତିଯୋଗେନ ଭକ୍ତିଯୋଗ ଦ୍ୱାରା
ମାମ୍ = ମୋତେ
ସେବତେ = ନିରନ୍ତର ଭଜନ କରେ,
ସଃ = ସେ (ବି)
ଏତାନ୍, ଗୁଣାନ୍= ଏହି ତିନି ଗୁଣକୁ
ସମତୀତ୍ୟ = ଭଲଭାବେ ଅତିକ୍ରମ କରି
ବ୍ରହ୍ମଭୂୟାୟ = ସଚ୍ଚିଦାନନ୍ଦଘନ ବ୍ରହ୍ମକୁ ପ୍ରାପ୍ତ ହେବା ନିମନ୍ତେ
କଳ୍ପତେ = ଯୋଗ୍ୟ ହୋଇଯାଏ ।

* କେବଳ ଏକ ସର୍ବଶକ୍ତିମାନ୍ ପରମେଶ୍ୱର ବାସୁଦେବ ଭଗବାନଙ୍କୁ ହିଁ ସ୍ୱାମୀ ମାନି ସ୍ୱାର୍ଥ ଓ ଅଭିମାନକୁ ତ୍ୟାଗ କରି ଶ୍ରଦ୍ଧା ଓ ଭାବ ସହିତ ପରମ ପ୍ରେମରେ ନିରନ୍ତର ଚିନ୍ତନ କରିବାକୁ 'ଅବ୍ୟଭିଚାରୀ ଭକ୍ତିଯୋଗ' ବୋଲି କୁହାଯାଏ ।

ଭଗବତ୍ ସ୍ୱରୂପର ମହିମା ।

ବ୍ରହ୍ମଣୋ ହି ପ୍ରତିଷ୍ଠାହମମୃତସ୍ୟାବ୍ୟୟସ୍ୟ ଚ ।
ଶାଶ୍ୱତସ୍ୟ ଚ ଧର୍ମସ୍ୟ ସୁଖସ୍ୟୈକାନ୍ତିକସ୍ୟ ଚ ॥ ୨୭ ॥

ବ୍ରହ୍ମଣଃ, ହି, ପ୍ରତିଷ୍ଠା, ଅହମ୍, ଅମୃତସ୍ୟ, ଅବ୍ୟୟସ୍ୟ, ଚ,
ଶାଶ୍ୱତସ୍ୟ, ଚ, ଧର୍ମସ୍ୟ, ସୁଖସ୍ୟ, ଐକାନ୍ତିକସ୍ୟ, ଚ ।।୨୭।।

**ହେ ଅର୍ଜୁନ !—**

| | | | |
|---|---|---|---|
| ହି | = କାରଣ | ଚ | = ଓ |
| ଅବ୍ୟୟସ୍ୟ | = ଅବିନାଶୀ | ଐକାନ୍ତିକସ୍ୟ, | = ଅଖଣ୍ଡ ଏକରସ |
| ବ୍ରହ୍ମଣଃ | = ପରମବ୍ରହ୍ମଙ୍କର | ସୁଖସ୍ୟ | ଆନନ୍ଦର |
| ଚ | = ଓ | ପ୍ରତିଷ୍ଠା | = ଆଶ୍ରୟ |
| ଅମୃତସ୍ୟ | = ଅମୃତର | ଅହମ୍ | = ମୁଁ |
| ଚ | = ତଥା | | |
| ଶାଶ୍ୱତସ୍ୟ, ଧର୍ମସ୍ୟ | = ନିତ୍ୟ ଧର୍ମର | (ହି) | = ହିଁ ଅଟେ । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଗୁଣତ୍ରୟବିଭାଗଯୋଗୋ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥ ୧୪ ॥*

ଓଓଓ

**ଏହି ପ୍ରକାରେ 'ଓଁ, ତତ୍ , ସତ୍' —ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ଗୁଣତ୍ରୟବିଭାଗଯୋଗ' ନାମକ ଚତୁର୍ଦ୍ଦଶ ଅଧ୍ୟାୟ ପୂର୍ଣ୍ଣ ହେଲା ।।୧୪।।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ପଞ୍ଚଦଶ ଅଧ୍ୟାୟ

## ପୁରୁଷୋତ୍ତମଯୋଗ

**ପ୍ରଧାନ ବିଷୟ**

୧ ରୁ ୬ - ସଂସାର ବୃକ୍ଷର କଥନ ଏବଂ ଭଗବତ୍ ପ୍ରାପ୍ତିର ଉପାୟ,
୭ ରୁ ୧୧ - ଜୀବାତ୍ମାର ବିଷୟ,
୧୨ ରୁ ୧୫ - ପ୍ରଭାବ ସହିତ ପରମେଶ୍ୱରଙ୍କ ସ୍ୱରୂପର ବିଷୟ,
୧୬ ରୁ ୨୦ - କ୍ଷର, ଅକ୍ଷର ଓ ପୁରୁଷୋତ୍ତମଙ୍କ ବିଷୟ ।

*ଶ୍ରୀଭଗବାନ ଉବାଚ*

ଅଶ୍ୱତ୍ଥ ବୃକ୍ଷର ରୂପକ ଦେଇ ସଂସାରର ବର୍ଣ୍ଣନ ଏବଂ ତାହା ଜାଣିବା ଲୋକଙ୍କ ମହିମା ।

**ଊର୍ଦ୍ଧ୍ୱମୂଳମଧଃଶାଖମଶ୍ୱତ୍ଥଂ ପ୍ରାହୁରବ୍ୟୟମ୍ ।**
**ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂ ବେଦ ସ ବେଦବିତ୍ ॥ ୧ ॥**

ଊର୍ଦ୍ଧ୍ୱମୂଳମ୍, ଅଧଃଶାଖମ୍, ଅଶ୍ୱତ୍ଥମ୍, ପ୍ରାହୁଃ, ଅବ୍ୟୟମ୍,
ଛନ୍ଦାଂସି, ଯସ୍ୟ, ପର୍ଣ୍ଣାନି, ଯଃ, ତମ୍, ବେଦ, ସଃ, ବେଦବିତ୍ ।। ୧ ।।

**ଏହାପରେ ଶ୍ରୀଭଗବାନ୍ ପୁଣି କହିଲେ,**
**ହେ ଅର୍ଜୁନ ।—**

| | | |
|---|---|---|
| ଊର୍ଦ୍ଧ୍ୱମୂଳମ୍ | = ଆଦିପୁରୁଷ ପରମେଶ୍ୱର | ରୂପକ ମୂଳବିଶିଷ୍ଟ (ଏବଂ) * |

---

* **ଊର୍ଦ୍ଧ୍ୱମୂଳମ୍ :** ଆଦିପୁରୁଷ ନାରାୟଣ ବାସୁଦେବ ଭଗବାନ ହିଁ ନିତ୍ୟ, ଅନନ୍ତ ଓ ସମସ୍ତଙ୍କର ଆଧାର ଏବଂ ସେ ସଗୁଣରୂପରେ ସମସ୍ତଙ୍କ ଉପରେ ନିତ୍ୟଧାମରେ ନିବାସ କରନ୍ତି । ତେଣୁ ସେ ଊର୍ଦ୍ଧ୍ୱ ନାମରେ କୁହାଯା'ନ୍ତି । ଏହି ସଂସାର ବୃକ୍ଷ ସେହି ମାୟାପତି ସର୍ବଶକ୍ତିମାନ୍ ପରମେଶ୍ୱରଙ୍କ ଠାରୁ ହିଁ ଉତ୍ପନ୍ନ ହୋଇଛି । ତେଣୁ ଏହାକୁ ଊର୍ଦ୍ଧ୍ୱମୂଳ ଅର୍ଥାତ୍ ଉପର ଆଡ଼କୁ ଥିବା ମୂଳ ବିଶିଷ୍ଟ ବୋଲି କହନ୍ତି ।

| | | | |
|---|---|---|---|
| ଅଧଃଶାଖମ୍ | = ବ୍ରହ୍ମାରୂପୀ ଯାହାର ମୁଖ୍ୟ ଶାଖା [୧] | ପର୍ଣ୍ଣାନି | = ପତ୍ର (ବୋଲି କୁହାଯାଇଛି) |
| ଅଶ୍ୱତ୍ଥମ୍ | = (ଯେଉଁ) ସଂସାର ରୂପକଅଶ୍ୱତ୍ଥ ବୃକ୍ଷକୁ | ତମ୍ | = ସେହି ସଂସାର ରୂପକ ବୃକ୍ଷକୁ |
| | | ଯଃ | = ଯେଉଁ ପୁରୁଷ (ମୂଳ ସହିତ) |
| ଅବ୍ୟୟମ୍ | = ଅବିନାଶୀ (ବୋଲି) [୨] | ବେଦ | = ତତ୍ତ୍ୱତଃ ଜାଣେ |
| ପ୍ରାହୁଃ | = କହନ୍ତି (ତଥା) | ସଃ | = ସେ |
| | | ବେଦବିତ୍ | = ବେଦର ତାତ୍ପର୍ଯ୍ୟ ଜାଣେ । [୪] |
| ଛନ୍ଦାଂସି | = ବେଦମାନେ [୩] | | |
| ଯସ୍ୟ | = ଯାହାର | | |

୧ -**ଅଧଃଶାଖମ୍** : ସେହି ଆଦିପୁରୁଷ ପରମେଶ୍ୱରଙ୍କ ଠାରୁ ଉତ୍ପନ୍ନ ହୋଇଥିବା କାରଣରୁ ତଥା ନିତ୍ୟଧାମ ଠାରୁ ତଳେ ଥିବା ବ୍ରହ୍ମଲୋକରେ ବାସ କରୁଥିବା କାରଣରୁ ହିରଣ୍ୟଗର୍ଭ ବ୍ରହ୍ମାଙ୍କୁ ପରମେଶ୍ୱରଙ୍କ ଅପେକ୍ଷା ଅଧଃ କୁହାଯାଇଛି ଏବଂ ସେ ହିଁ ଏହି ସଂସାରର ବିସ୍ତାର କରିଥିବା ହେତୁ ତାହାଙ୍କୁ ମୁଖ୍ୟ ଶାଖା କହନ୍ତି । ଏହି କାରଣରୁ ଏହି ସଂସାର ବୃକ୍ଷକୁ 'ତଳଆଡ଼କୁ ଶାଖା ମେଲିଥିବା ବୃକ୍ଷ' ବୋଲି କୁହାଯାଇଛି ।

୨ -**ଅବ୍ୟୟମ୍** : ଏହି ବୃକ୍ଷର ମୂଳ କାରଣ ପରମାତ୍ମା ଅବିନାଶୀ ଅଟନ୍ତି ତଥା ଅନାଦିକାଳରୁ ଏହା ରହିଆସିଛି । ସେଥିପାଇଁ ଏହି ସଂସାରବୃକ୍ଷକୁ 'ଅବ୍ୟୟମ୍' (ଅବିନାଶୀ) କହନ୍ତି ।

୩ -**ବେଦ (ଛନ୍ଦାଂସି)** : ବୃକ୍ଷର ପତ୍ରମାନେ ବୃକ୍ଷର ଶାଖାରୁ ଉତ୍ପନ୍ନ ହୁଅନ୍ତି ଏବଂ ବୃକ୍ଷର ରକ୍ଷା ତଥା ବୃଦ୍ଧି କରନ୍ତି । ବେଦମାନେ ମଧ୍ୟ ଏହି ସଂସାରରୂପକ ବୃକ୍ଷର ମୁଖ୍ୟଶାଖାରୂପୀ ବ୍ରହ୍ମାଙ୍କଠାରୁ ପ୍ରକଟ ହୁଅନ୍ତି ଏବଂ ବେଦବିହିତ ଯଜ୍ଞାଦି କର୍ମମାନଙ୍କ ଦ୍ୱାରା ହିଁ ସଂସାରର ବୃଦ୍ଧି ଏବଂ ରକ୍ଷା ହୁଏ । ତେଣୁ ବେଦମାନଙ୍କୁ 'ଛନ୍ଦାଂସି' ଅର୍ଥାତ୍ ସଂସାର ବୃକ୍ଷର ପତ୍ର ବୋଲି କୁହାଯାଇଛି ।

୪- **ବେଦବିତ୍** : ଭଗବାନଙ୍କ ଯୋଗମାୟାରୁ ଉତ୍ପନ୍ନ ଏହି ସଂସାର କ୍ଷଣଭଙ୍ଗୁର, ନାଶବାନ୍ ଏବଂ ଦୁଃଖରୂପ ଅଟେ । ତେଣୁ ଏହି ସଂସାରର ଚିନ୍ତନ ତ୍ୟାଗ କରି କେବଳ ପରମେଶ୍ୱରଙ୍କୁ ହିଁ ନିତ୍ୟ-ନିରନ୍ତର ଅନନ୍ୟ ପ୍ରେମ ସହ ଚିନ୍ତା କରିବା ଏବଂ ବେଦର ତାତ୍ପର୍ଯ୍ୟକୁ ଜାଣିବା ମନୁଷ୍ୟମାନଙ୍କୁ 'ବେଦବିତ୍' କହନ୍ତି ।

ସଂସାର ବୃକ୍ଷର ବିସ୍ତାର ଏବଂ ଅସଙ୍ଗ ଶସ୍ତ୍ର ଦ୍ୱାରା ତାହାର ଛେଦନ କରିବା ।

ଅଧଶ୍ଚୋର୍ଦ୍ଧ୍ୱଂ ପ୍ରସୃତାସ୍ତସ୍ୟ ଶାଖା
ଗୁଣପ୍ରବୃଦ୍ଧା ବିଷୟପ୍ରବାଳାଃ ।
ଅଧଶ୍ଚ ମୂଳାନ୍ୟନୁସନ୍ତତାନି
କର୍ମାନୁବନ୍ଧୀନି ମନୁଷ୍ୟଲୋକେ ॥ ୨ ॥

ଅଧଃ, ଚ, ଊର୍ଦ୍ଧ୍ୱମ୍, ପ୍ରସୃତାଃ, ତସ୍ୟ, ଶାଖାଃ,
ଗୁଣପ୍ରବୃଦ୍ଧାଃ, ବିଷୟପ୍ରବାଳାଃ,
ଅଧଃ, ଚ, ମୂଳାନି, ଅନୁସନ୍ତତାନି,
କର୍ମାନୁବନ୍ଧୀନି, ମନୁଷ୍ୟଲୋକେ ।।୨ ।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ତସ୍ୟ | = ସେହି ସଂସାର ବୃକ୍ଷର | ଶାଖାଃ | = ଦେବ, ମନୁଷ୍ୟ ଓ ତିର୍ଯ୍ୟକ୍ ଆଦି ଯୋନିରୂପକ[2] ଶାଖାମାନ |
| ଗୁଣପ୍ରବୃଦ୍ଧାଃ | = ତ୍ରିଗୁଣରୂପକ ଜଳଦ୍ୱାରା ବୃଦ୍ଧିପ୍ରାପ୍ତ ହୋଇଥିବା (ଏବଂ) | ଅଧଃ | = ତଳକୁ |
| ବିଷୟପ୍ରବାଳାଃ | = ବିଷୟଭୋଗ ରୂପକ[1] କୋମଳ ପତ୍ର ଥିବା | ଚ | = ଓ |
| | | ଊର୍ଦ୍ଧ୍ୱମ୍ | = ଉପରକୁ |

୧– ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ—ଏ ପାଞ୍ଚଟି ସ୍ଥୂଳଦେହ ଓ ଇନ୍ଦ୍ରିୟମାନଙ୍କ ଅପେକ୍ଷା ସୂକ୍ଷ୍ମ ହେବା କାରଣରୁ ସେହି ଶାଖାମାନଙ୍କର କୋମଳପତ୍ର ବୋଲି କୁହାଯାଇଛି ।

୨– ଶାଖାଃ: ମୁଖ୍ୟ ଶାଖା ରୂପକ ବ୍ରହ୍ମାଙ୍କଠାରୁ ସମ୍ପୂର୍ଣ୍ଣ ଲୋକମାନଙ୍କ ସହିତ ଦେବ, ମନୁଷ୍ୟ ଏବଂ ତିର୍ଯ୍ୟକ୍ ଆଦି ଯୋନିମାନଙ୍କର ଉତ୍ପତ୍ତି ଓ ବିସ୍ତାର ହୋଇଛି । ତେଣୁ ଏହାକୁ ଏଠାରେ "ଶାଖା" ରୂପରେ ବର୍ଣ୍ଣନା କରାଯାଇଛି ।

| | | | |
|---|---|---|---|
| ପ୍ରସୃତାଃ | = ସର୍ବତ୍ର ପ୍ରସାରିତ ହୋଇଛି (ତଥା) | | ମୂଳମାନେ |
| ମନୁଷ୍ୟଲୋକେ | = ମନୁଷ୍ୟଯୋନିରେ * | (ଅପି) | = ମଧ୍ୟ |
| କର୍ମାନୁବନ୍ଧୀନି | = କର୍ମ ଅନୁସାରେ ବନ୍ଧନ କରୁଥିବା | ଅଧଃ | = ତଳକୁ |
| | | ଚ | = ଓ |
| | | (ଊର୍ଦ୍ଧ୍ୱମ୍) | = ଉପରକୁ |
| ମୂଳାନି | = ଅହଂତ୍ୱ, ମମତ୍ୱ ଓ ବାସନାରୂପକ | ଅନୁସନ୍ତତାନି | = ସକଳଲୋକରେ ବ୍ୟାପ୍ତ ହୋଇଛନ୍ତି । |

ନ ରୂପମସ୍ୟେହ ତଥୋପଲଭ୍ୟତେ
ନାନ୍ତୋ ନ ଚାଦିର୍ନ ଚ ସମ୍ପ୍ରତିଷ୍ଠା ।
ଅଶ୍ୱତ୍ଥମେନଂ ସୁବିରୂଢମୂଳ-
ମସଙ୍ଗଶସ୍ତ୍ରେଣ ଦୃଢେନ ଛିତ୍ତ୍ୱା ॥ ୩ ॥

ନ, ରୂପମ୍, ଅସ୍ୟ, ଇହ, ତଥା, ଉପଲଭ୍ୟତେ,
ନ, ଅନ୍ତଃ, ନ,ଚ, ଆଦିଃ, ନ, ଚ, ସଂପ୍ରତିଷ୍ଠା,
ଅଶ୍ୱତ୍ଥମ୍, ଏନମ୍, ସୁବିରୂଢମୂଳମ୍,
ଅସଙ୍ଗଶସ୍ତ୍ରେଣ, ଦୃଢେନ, ଛିତ୍ତ୍ୱା । ।୩ । ।

ପରନ୍ତୁ—

| | | | |
|---|---|---|---|
| ଅସ୍ୟ | = ଏହି ସଂସାର ବୃକ୍ଷର | ରୂପମ୍ | = ସ୍ୱରୂପକୁ (ଯେପରି ବର୍ଣ୍ଣନା କରାଯାଇଛି), |

* ମନୁଷ୍ୟଲୋକେ: ଅହଂତା, ମମତା ତଥା ବାସନାରୂପ ମୂଳମାନଙ୍କୁ କେବଳ ମନୁଷ୍ୟଯୋନିରେ କର୍ମାନୁସାରେ ବାନ୍ଧିବା କହିବାର କାରଣ ଏହିକି ଯେ ଅନ୍ୟ ସବୁ ଯୋନିମାନଙ୍କରେ କେବଳ ପୂର୍ବକୃତ କର୍ମର ଫଳକୁ ହିଁ ଭୋଗ କରିବାର ଅଧିକାର ଅଛି ଏବଂ ମନୁଷ୍ୟଯୋନିରେ ନବୀନ କର୍ମ କରିବା ପାଇଁ ମଧ୍ୟ ଅଧିକାର ଦିଆଯାଇଛି ।

| | |
|---|---|
| ତଥା | = ସେପରି |
| ଇହ | = ଏଠାରେ (ବିଚାର କାଳରେ) |
| ନ, ଉପଲଭ୍ୟତେ | = ମିଳେ ନାହିଁ; [୧] |
| (ଯତଃ) | = କାରଣ, (ଏହାର) |
| ନ, ଆଦିଃ | = ଆଦି ନାହିଁ [୨] |
| ଚ | = କି |
| ନ, ଅନ୍ତଃ | = ଅନ୍ତ ନାହିଁ [୩] |
| ଚ | = ତଥା |
| ନ, ସଂପ୍ରତିଷ୍ଠା | = ଭଲରୂପରେ ସ୍ଥିତି ନାହିଁ ।[୪] |
| (ଅତଃ) | = ଏଣୁ |
| ଏନମ୍ | = ଏହି |
| ସୁବିରୂଢ଼ମୂଳମ୍ | = ଅହଂତ୍ୱ, ମମତ୍ୱ ଓ ବାସନାରୂପକ ଅତି ଦୃଢ଼ମୂଳବିଶିଷ୍ଟ |
| ଅଶ୍ୱତ୍‌ଥମ୍ | = ସଂସାରରୂପକ ଅଶ୍ୱତ୍‌ଥ ବୃକ୍ଷକୁ |
| ଦୃଢ଼େନ, ଅସଙ୍ଗଶସ୍ତ୍ରେଣ | = ଦୃଢ଼ ବୈରାଗ୍ୟରୂପକ ଶସ୍ତ୍ର ଦ୍ୱାରା [୫] |
| ଛିତ୍ତ୍ୱା | = ଛେଦନ କରି[୬]- |

୧-ନ, ଉପଲଭ୍ୟତେ: ଏହି ସଂସାରର ସ୍ୱରୂପ ଯେପରି ଶାସ୍ତ୍ର ମାନଙ୍କରେ ବର୍ଣ୍ଣନା କରାଯାଇଛି ଏବଂ ଯେପରି ଦେଖିବାକୁ-ଶୁଣିବାକୁ ମିଳୁଛି, ତତ୍ତ୍ୱଜ୍ଞାନ ହେବା ପରେ ସେପରି ମିଳେ ନାହିଁ, ଯେପରି ନିଦ ଭାଙ୍ଗିଲା ପରେ ସ୍ୱପ୍ନର ସଂସାର ମିଳେ ନାହିଁ।

୨- ନ, ଆଦିଃ: ଏହାର 'ଆଦି' ନାହିଁ କହିବାର ତାତ୍ପର୍ଯ୍ୟ ଏହିକି ଯେ ଏହାର ପ୍ରବାହ ଓ ପରମ୍ପରା କେଉଁ କାଳରୁ ଚାଲି ଆସୁଛି ତାହା କେବେ କିଏ ବି ଜାଣି ନାହାଁନ୍ତି।

୩-ନ, ଅନ୍ତଃ: ଏହାର 'ଅନ୍ତ' ନାହିଁ କହିବାର ପ୍ରୟୋଜନ ଏହିକି ଯେ ଏହାର ପରମ୍ପରା କେତେକାଳ ଯାଏଁ ଚାଲିବ ଏହାର ଖବର କେହି କହିପାରିବେ ନାହିଁ।

୪-ନ, ସଂପ୍ରତିଷ୍ଠା: ଏହା 'ଭଲ ରୂପରେ ସ୍ଥିତ ନାହିଁ'—ଏହି ଉକ୍ତିର ତାତ୍ପର୍ଯ୍ୟ ଏହିକି ଯେ ଏହା ବାସ୍ତବରେ କ୍ଷଣଭଂଗୁର ଓ ନାଶବାନ୍ ଅଟେ।

୫-ଦୃଢ଼େନ, ଅସଙ୍ଗଶସ୍ତ୍ରେଣ: ବ୍ରହ୍ମଲୋକ ଯାଏଁ ପ୍ରାପ୍ତ ସମସ୍ତ ଭୋଗ କ୍ଷଣିକ ଏବଂ ନାଶବାନ୍ ଅଟେ। ଏପରି ଜାଣି ଏହି ସଂସାରର ସମସ୍ତ ବିଷୟଭୋଗରେ ସତ୍ତା, ସୁଖ, ପ୍ରୀତି ଏବଂ ରମଣୀୟତାରେ ଭାସି ନଯିବା ହିଁ 'ଦୃଢ଼ ବୈରାଗ୍ୟରୂପ' ଶସ୍ତ୍ର ଅଟେ।

୬-ଛିତ୍ତ୍ୱା (ଛେଦନ କରି): ସ୍ଥାବର-ଜଙ୍ଗମ-ରୂପୀ ସମସ୍ତ ସଂସାରର ଚିନ୍ତନ ତଥା ଅନାଦିକାଳରୁ ଅଜ୍ଞାନ ଦ୍ୱାରା ଦୃଢ଼ୀଭୂତ ହୋଇଥିବା ଅହଂତା, ମମତା ଏବଂ ବାସନାରୂପୀ ମୂଳକୁ ତ୍ୟାଗ କରିବା ହିଁ ସଂସାର ବୃକ୍ଷର ଅବାନ୍ତର ମୂଳମାନଙ୍କୁ 'ଛିତ୍ତ୍ୱା' ଅର୍ଥାତ୍ ଛେଦନ କରିବା।

ଏହି ପରି ବୈରାଗ୍ୟରୂପୀ ଶସ୍ତ୍ର ଦ୍ୱାରା ସଂସାର ବୃକ୍ଷକୁ ଛେଦନ କରି କଣ କରିବା ଉଚିତ, ବର୍ତ୍ତମାନ ତାହା କହୁଛନ୍ତି ।

ତତଃ ପଦଂ ତତ୍ପରିମାର୍ଗିତବ୍ୟଂ
ଯସ୍ମିନ୍ ଗତା ନ ନିବର୍ତ୍ତନ୍ତି ଭୂୟଃ ।
ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ
ଯତଃ ପ୍ରବୃତ୍ତିଃ ପ୍ରସୃତା ପୁରାଣୀ ॥ ୪ ॥

ତତଃ, ପଦମ୍, ତତ୍, ପରିମାର୍ଗିତବ୍ୟମ୍,
ଯସ୍ମିନ୍, ଗତାଃ, ନ, ନିବର୍ତ୍ତନ୍ତି, ଭୂୟଃ,
ତମ୍, ଏବ, ଚ, ଆଦ୍ୟମ୍, ପୁରୁଷମ୍, ପ୍ରପଦ୍ୟେ,
ଯତଃ, ପ୍ରବୃତ୍ତିଃ, ପ୍ରସୃତା, ପୁରାଣୀ । ।୪ । ।

ତତଃ = ତା'ପରେ
ତତ୍ = ସେହି
ପଦମ୍ = ପରମପଦରୂପକ ପରମେଶ୍ୱରଙ୍କୁ
ପରିମାର୍ଗିତବ୍ୟମ୍= ଭଲଭାବରେ ଖୋଜିବା ଉଚିତ
ଯସ୍ମିନ୍ = ଯାହାଙ୍କ ଠାରେ
ଗତାଃ = ପ୍ରବେଶ କରିଥିବା ପୁରୁଷମାନେ
ଭୂୟଃ = ପୁଣି
ନ, ନିବର୍ତ୍ତନ୍ତି = ସଂସାରକୁ ଫେରି ଆସନ୍ତି ନାହିଁ
ଚ = ଏବଂ
ଯତଃ = ଯେଉଁ ପରମେଶ୍ୱରଙ୍କ ଠାରୁ (ଏହି)
ପୁରାଣୀ = ପୁରାତନ
ପ୍ରବୃତ୍ତିଃ = ସଂସାର ବୃକ୍ଷର ପ୍ରବୃତ୍ତି (ପରମ୍ପରା)
ପ୍ରସୃତା = ପ୍ରସାରିତ ହୋଇଛି
ତମ୍ = ସେହି
ଆଦ୍ୟମ୍, ପୁରୁଷମ୍,ଏବ = ଆଦି ପୁରୁଷ ନାରାୟଣଙ୍କର (ହିଁ)
ପ୍ରପଦ୍ୟେ = ମୁଁ ଶରଣ ନେଉଛି (ଏହିପରି ଦୃଢ଼ନିଶ୍ଚୟ କରି ସେହି ପରମେଶ୍ୱରଙ୍କ ମନନ ଓ ନିଦିଧ୍ୟାସନ କରିବା ଉଚିତ ।)

ପରମପଦ ପରମେଶ୍ୱରଙ୍କୁ ପ୍ରାପ୍ତ କରିଥିବା ପୁରୁଷଙ୍କ ଲକ୍ଷଣ ।

**ନିର୍ମାନମୋହା ଜିତସଙ୍ଗଦୋଷା**
**ଅଧ୍ୟାତ୍ମନିତ୍ୟା ବିନିବୃତ୍ତକାମାଃ ।**
**ଦ୍ୱନ୍ଦ୍ୱୈର୍ବିମୁକ୍ତାଃ ସୁଖଦୁଃଖସଂଜ୍ଞୈ-**
**ର୍ଗଚ୍ଛନ୍ତ୍ୟମୂଢାଃ ପଦମବ୍ୟୟଂ ତତ୍ ॥ ୫ ॥**

ନିର୍ମାନମୋହାଃ, ଜିତସଙ୍ଗଦୋଷାଃ,
ଅଧ୍ୟାତ୍ମନିତ୍ୟାଃ, ବିନିବୃତ୍ତକାମାଃ,
ଦ୍ୱନ୍ଦ୍ୱୈଃ, ବିମୁକ୍ତାଃ, ସୁଖଦୁଃଖସଂଜ୍ଞୈଃ,
ଗଚ୍ଛନ୍ତି, ଅମୂଢ଼ାଃ,ପଦମ୍, ଅବ୍ୟୟମ୍, ତତ୍ ।।୫।।

ନିର୍ମାନମୋହାଃ = ଯେଉଁମାନଙ୍କର ମାନ ଓ ମୋହ ନଷ୍ଟ ହୋଇଯାଇଛି,
ଜିତସଙ୍ଗଦୋଷାଃ= ଯେଉଁମାନେ ଆସକ୍ତିରୂପକ ଦୋଷକୁ ଜୟ କରି ନେଇଛନ୍ତି ,
ଅଧ୍ୟାତ୍ମନିତ୍ୟାଃ = ଯେଉଁମାନେ ପରମାତ୍ମାଙ୍କ ସ୍ୱରୂପରେ ନିତ୍ୟସ୍ଥିତ ଅଟନ୍ତି
ବିନିବୃତ୍ତକାମାଃ = (ଏବଂ) ଯେଉଁମାନଙ୍କର କାମନା ସମ୍ପୂର୍ଣ୍ଣରୂପେ ନଷ୍ଟ ହୋଇଯାଇଛି, (ସେହି)
ସୁଖଦୁଃଖସଂଜ୍ଞୈଃ= ସୁଖ-ଦୁଃଖନାମକ
ଦ୍ୱନ୍ଦ୍ୱୈଃ = ଦ୍ୱନ୍ଦ୍ୱମାନଙ୍କରୁ
ବିମୁକ୍ତାଃ = ବିମୁକ୍ତ
ଅମୂଢ଼ାଃ = ଜ୍ଞାନୀମାନେ
ତତ୍ = ସେହି
ଅବ୍ୟୟମ୍ = ଅବିନାଶୀ
ପଦମ୍ = ପରମପଦକୁ
ଗଚ୍ଛନ୍ତି = ପ୍ରାପ୍ତ ହୁଅନ୍ତି ।

ପରମପଦକୁ ପରମପ୍ରକାଶମୟ ଏବଂ ଅପୁନରାବୃତିଶୀଳ ବୋଲି ଭକ୍ତି ।

**ନ ତଦ୍ଭାସୟତେ ସୂର୍ଯ୍ୟୋ ନ ଶଶାଙ୍କୋ ନ ପାବକଃ ।**
**ଯଦ୍‌ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ ॥ ୬ ॥**

ନ, ତତ୍, ଭାସୟତେ, ସୂର୍ଯ୍ୟଃ, ନ, ଶଶାଙ୍କଃ, ନ, ପାବକଃ,
ଯତ୍, ଗତ୍ୱା, ନ, ନିବର୍ତ୍ତନ୍ତେ, ତତ୍, ଧାମ, ପରମମ୍, ମମ।।୬।।

ଏବଂ —

| | | | |
|---|---|---|---|
| ତତ୍ | = ସେହି ସ୍ୱୟଂ ପ୍ରକାଶ ପରମପଦକୁ | ନ, | = ପ୍ରକାଶିତ କରି |
| ସୂର୍ଯ୍ୟଃ | = ସୂର୍ଯ୍ୟ | (ଭାସୟତେ) | ପାରେ ନାହିଁ ଏବଂ |
| ନ, | = ପ୍ରକାଶିତ କରି | ଯତ୍ | = ଯେଉଁ ପରମପଦକୁ |
| ଭାସୟତେ | ପାରେ ନାହିଁ, | ଗତ୍ୱା | = ପ୍ରାପ୍ତ ହୋଇ(ମନୁଷ୍ୟ) |
| ଶଶାଙ୍କଃ | = ଚନ୍ଦ୍ର | ନ, | = (ସଂସାରକୁ) ଫେରି |
| ନ, | = ପ୍ରକାଶିତ କରି | ନିବର୍ତ୍ତନ୍ତେ | ଆସନ୍ତି ନାହିଁ, |
| (ଭାସୟତେ) | ପାରେ ନାହିଁ, | ତତ୍ | = ତାହା ହିଁ |
| ପାବକଃ | = ଅଗ୍ନି (ବି) | ମମ | = ମୋର |
| | | ପରମମ୍, ଧାମ | = ପରମଧାମ[୧] । |

ଜୀବାତ୍ମାର ସ୍ୱରୂପ ବର୍ଣ୍ଣନ ।

**ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ ।**
**ମନଃଷଷ୍ଠାନୀନ୍ଦ୍ରିୟାଣି ପ୍ରକୃତିସ୍ଥାନି କର୍ଷତି ॥ ୭ ॥**

ମମ, ଏବ, ଅଂଶଃ, ଜୀବଲୋକେ, ଜୀବଭୂତଃ, ସନାତନଃ,
ମନଃଷଷ୍ଠାନି, ଇନ୍ଦ୍ରିୟାଣି, ପ୍ରକୃତିସ୍ଥାନି, କର୍ଷତି ।। ୭ ।।

ଏବଂ ହେ ଅର୍ଜୁନ ।—

| | | | |
|---|---|---|---|
| ଜୀବଲୋକେ | = ଏହି ଦେହରେ (ସ୍ଥିତ) | ଏବ | = ହିଁ |
| ସନାତନଃ | = ଏହି ସନାତନ | ଅଂଶଃ | = ଅଂଶ ଅଟେ[୨] (ଏବଂ ସେ ହିଁ) |
| ଜୀବଭୂତଃ | = ଜୀବାତ୍ମା | | |
| ମମ | = ମୋର | ପ୍ରକୃତିସ୍ଥାନି | = ଏହି ପ୍ରକୃତିରେ ସ୍ଥିତ |

୧- ପରମଧାମର ଅର୍ଥ ଗୀତା ଅଧ୍ୟାୟ ୮ ଶ୍ଳୋକ ୨୧ ରେ ଦେଖିବା ଉଚିତ ।

୨- ଯେପରି ବିଭାଗରହିତ ହୋଇ ସ୍ଥିତ ଥିବା ମହାକାଶ ମାଠିଆମାନଙ୍କରେ ପୃଥକ୍ ପୃଥକ୍ ପ୍ରତୀତ ହୁଏ, ସେହିପରି ସକଳ ଭୂତରେ ସ୍ଥିତ ପରମାତ୍ମା ମଧ୍ୟ ପୃଥକ୍ ପୃଥକ୍ ପରି ପ୍ରତୀତ ହୁଅନ୍ତି । ସେଥିପାଇଁ ଦେହରେ ସ୍ଥିତ ଜୀବାତ୍ମାକୁ ଭଗବାନ୍ 'ସନାତନ' ଅଂଶ ବୋଲି କହିଛନ୍ତି ।

| | | | |
|---|---|---|---|
| ମନଃଷଷ୍ଠାନି | = ମନ ଓ ପାଞ୍ଚଟି | ଇନ୍ଦ୍ରିୟାଣି | = ଇନ୍ଦ୍ରିୟମାନଙ୍କୁ |
| | | କର୍ଷତି | = ଆକର୍ଷଣ କରେ । |

ବାୟୁର ଦୃଷ୍ଟାନ୍ତ ଦେଇ ଜୀବାତ୍ମାର ଗମନ ବିଷୟରେ କଥନ ।

**ଶରୀରଂ ଯଦବାପ୍ନୋତି ଯଚ୍ଚାପ୍ୟୁତ୍କ୍ରାମତୀଶ୍ୱରଃ ।**
**ଗୃହୀତ୍ୱୈତାନି ସଂଯାତି ବାୟୁର୍ଗନ୍ଧାନିବାଶୟାତ୍ ॥ ୮ ॥**

ଶରୀରମ୍, ଯତ୍, ଅବାପ୍ନୋତି, ଯତ୍, ଚ, ଅପି, ଉତ୍କ୍ରାମତି, ଈଶ୍ୱରଃ, ଗୃହୀତ୍ୱା, ଏତାନି, ସଂଯାତି, ବାୟୁଃ, ଗନ୍ଧାନ୍, ଇବ, ଆଶୟାତ୍ ।।୮।।

**ଯେପରି କି—**

| | | | |
|---|---|---|---|
| ବାୟୁଃ | = ବାୟୁ | ଉତ୍କ୍ରାମତି | = ତ୍ୟାଗ କରି ଚାଲିଯାଏ, |
| ଆଶୟାତ୍ | = ଗନ୍ଧର ସ୍ଥାନରୁ | (ତସ୍ମାତ୍) | = ସେଥିରୁ |
| ଗନ୍ଧାନ୍ | = ଗନ୍ଧମାନଙ୍କୁ | ଏତାନି | = ମନ ସହିତ ଇନ୍ଦ୍ରିୟମାନଙ୍କୁ |
| ଇବ | = ଯେପରି (ବୋହି ନେଇ ଯାଏ, ସେହିପରି ହିଁ) | ଗୃହୀତ୍ୱା | = ଗ୍ରହଣ କରି |
| | | ଚ | = ପୁଣି |
| | | ଯତ୍ | = ଯେଉଁ |
| ଈଶ୍ୱରଃ | = ଦେହାଦିର ସ୍ୱାମୀ ଜୀବାତ୍ମା | ଶରୀରମ୍ | = ଶରୀରକୁ |
| | | ଅବାପ୍ନୋତି | = ପ୍ରାପ୍ତ ହୁଏ |
| ଅପି | = ବି (ସେହିପରି) | (ତସ୍ମିନ୍) | = ସେଥିରେ |
| ଯତ୍ | = ଯେଉଁ (ଶରୀରକୁ) | ସଂଯାତି | = ପ୍ରବେଶ କରେ । |

ମନ ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ଜୀବାତ୍ମାର ବିଷୟ ସେବନ ।

**ଶ୍ରୋତ୍ରଂ ଚକ୍ଷୁଃ ସ୍ପର୍ଶନଂ ଚ ରସନଂ ଘ୍ରାଣମେବ ଚ ।**
**ଅଧିଷ୍ଠାୟ ମନଶ୍ଚାୟଂ ବିଷୟାନୁପସେବତେ ॥ ୯ ॥**

ଶ୍ରୋତ୍ରମ୍, ଚକ୍ଷୁଃ, ସ୍ପର୍ଶନମ୍, ଚ, ରସନମ୍, ଘ୍ରାଣମ୍, ଏବ, ଚ, ଅଧିଷ୍ଠାୟ, ମନଃ, ଚ, ଅୟମ୍, ବିଷୟାନ୍, ଉପସେବତେ ।।୯।।

## ଏହି ପ୍ରକାରେ ଶରୀରରେ ସ୍ଥିତ—

| | |
|---|---|
| ଅୟମ୍ | = ଏହି ଜୀବାତ୍ମା |
| ଶ୍ରୋତ୍ରମ୍ | = କର୍ଣ୍ଣ, |
| ଚକ୍ଷୁଃ | = ଚକ୍ଷୁ |
| ଚ | = ଓ |
| ସ୍ପର୍ଶନମ୍ | = ତ୍ୱକ୍ (ଚର୍ମକୁ) |
| ଚ | = ତଥା |
| ରସନମ୍ | = ଜିହ୍ୱା, |
| ଘ୍ରାଣମ୍ | = ନାସା |
| ଚ | = ଏବଂ |
| ମନଃ | = ମନକୁ |
| ଅଧିଷ୍ଠାୟ | = ଆଶ୍ରୟ କରି ଅର୍ଥାତ୍ ଏସବୁର ସାହାଯ୍ୟରେ |
| ଏବ | = ହିଁ |
| ବିଷୟାନ୍ | = ବିଷୟମାନଙ୍କୁ |
| ଉପସେବତେ | = ସେବନ କରେ । |

ସକଳ ଅବସ୍ଥାରେ ସ୍ଥିତ ଆତ୍ମାକୁ ମୂଢ଼ ଲୋକେ ଜାଣନ୍ତି ନାହିଁ ଏବଂ ଜ୍ଞାନୀ ପୁରୁଷ ଜାଣନ୍ତି ।

**ଉତ୍କ୍ରାମନ୍ତଂ ସ୍ଥିତଂ ବାପି ଭୁଞ୍ଜାନଂ ବା ଗୁଣାନ୍ୱିତମ୍ ।**
**ବିମୂଢ଼ା ନାନୁପଶ୍ୟନ୍ତି ପଶ୍ୟନ୍ତି ଜ୍ଞାନଚକ୍ଷୁଷଃ ॥ ୧୦ ॥**

ଉତ୍କ୍ରାମନ୍ତମ୍, ସ୍ଥିତମ୍, ବା, ଅପି, ଭୁଞ୍ଜାନମ୍, ବା, ଗୁଣାନ୍ୱିତମ୍,
ବିମୂଢ଼ାଃ, ନ, ଅନୁପଶ୍ୟନ୍ତି, ପଶ୍ୟନ୍ତି, ଜ୍ଞାନଚକ୍ଷୁଷଃ ।।୧୦।।

## ପରନ୍ତୁ—

| | |
|---|---|
| ଉତ୍କ୍ରାମନ୍ତମ୍ | = ଶରୀର ଛାଡ଼ି ଚାଲିଯାଉଥିବା |
| ବା | = ଅଥବା |
| ସ୍ଥିତମ୍ | = ଶରୀରରେ ରହିଥିବା |
| ବା | = ଅଥବା |
| ଭୁଞ୍ଜାନମ୍ | = ବିଷୟ ଭୋଗ କରୁଥିବା |
| ଗୁଣାନ୍ୱିତମ୍ | = (ଏହିପରି) ତିନିଗୁଣରେ ଯୁକ୍ତ ହୋଇଥିବା ଜୀବାତ୍ମାର ସ୍ୱରୂପ |
| ଅପି | = ବି |
| ବିମୂଢ଼ାଃ | = ଅଜ୍ଞାନୀ ଲୋକେ |
| ନ, ଅନୁପଶ୍ୟନ୍ତି | = ଜାଣନ୍ତି ନାହିଁ ; (କେବଳ) |

| | | | |
|---|---|---|---|
| ଜ୍ଞାନଚକ୍ଷୁଷଃ | = ଜ୍ଞାନରୂପକ ଚକ୍ଷୁ ଥିବା ବିବେକଶୀଳ | | ଜ୍ଞାନୀମାନେ ହିଁ |
| | | ପଶ୍ୟନ୍ତି | = ତତ୍ତ୍ୱତଃ ଜାଣନ୍ତି । |

ଯତନ୍ତୋ ଯୋଗିନଶ୍ଚୈନଂ ପଶ୍ୟନ୍ତ୍ୟାତ୍ମନ୍ୟବସ୍ଥିତମ୍ ।
ଯତନ୍ତୋଽପ୍ୟକୃତାତ୍ମାନୋ ନୈନଂ ପଶ୍ୟନ୍ତ୍ୟଚେତସଃ ॥ ୧୧ ॥

ଯତନ୍ତଃ, ଯୋଗିନଃ, ଚ, ଏନମ୍, ପଶ୍ୟନ୍ତି, ଆତ୍ମନି, ଅବସ୍ଥିତମ୍,
ଯତନ୍ତଃ, ଅପି, ଅକୃତାତ୍ମାନଃ, ନ, ଏନମ୍, ପଶ୍ୟନ୍ତି, ଅଚେତସଃ ।।୧୧।।

କାହିଁକି' ନା—

| | | | |
|---|---|---|---|
| ଯତନ୍ତଃ | = ଯତ୍ନ କରୁଥିବା | | ଅନ୍ତଃକରଣକୁ ଶୁଦ୍ଧ |
| ଯୋଗିନଃ | = ଯୋଗୀମାନେ ବି | | କରି ନାହାନ୍ତି |
| ଆତ୍ମନି | = ନିଜ ହୃଦୟରେ | | (ସେପରି) |
| ଅବସ୍ଥିତମ୍ | = ସ୍ଥିତ | ଅଚେତସଃ | = ଅଜ୍ଞାନୀମାନେ (ତ) |
| ଏନମ୍ | = ଏହି ଆତ୍ମାକୁ | ଯତନ୍ତଃ | = ଯତ୍ନ କରୁଥିଲେ |
| ପଶ୍ୟନ୍ତି | = ତତ୍ତ୍ୱତଃ ଜାଣନ୍ତି; | ଅପି | = ବି |
| ଚ | = କିନ୍ତୁ | ଏନମ୍ | = ଏହି ଆତ୍ମାକୁ |
| ଅକୃତାତ୍ମାନଃ | = ଯେଉଁମାନେ ନିଜ | ନ, ପଶ୍ୟନ୍ତି | = ଜାଣିପାରନ୍ତି ନାହିଁ । |

ପରମେଶ୍ୱରଙ୍କ ତେଜର ମହିମା ।

ଯଦାଦିତ୍ୟଗତଂ ତେଜୋ ଜଗଦ୍‌ଭାସୟତେଽଖିଳମ୍ ।
ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ ତତ୍ତେଜୋ ବିଦ୍ଧି ମାମକମ୍ ॥ ୧୨ ॥

ଯତ୍, ଆଦିତ୍ୟଗତମ୍, ତେଜଃ, ଜଗତ୍, ଭାସୟତେ, ଅଖିଳମ୍,
ଯତ୍, ଚନ୍ଦ୍ରମସି, ଯତ୍, ଚ, ଅଗ୍ନୌ, ତତ୍, ତେଜଃ, ବିଦ୍ଧି, ମାମକମ୍।।୧୨।।

ଏବଂ ହେ ଅର୍ଜୁନ ।—

| | | | |
|---|---|---|---|
| ଆଦିତ୍ୟଗତମ୍ | = ସୂର୍ଯ୍ୟଙ୍କଠାରେ ଥିବା | ଚନ୍ଦ୍ରମସି | = ଚନ୍ଦ୍ରଙ୍କଠାରେ (ରହିଛି) (ଓ) |
| ଯତ୍ | = ଯେଉଁ | ଯତ୍ | = ଯାହା |
| ତେଜଃ | = ତେଜ | ଅଗ୍ନୌ | = ଅଗ୍ନିରେ (ରହିଛି) |
| ଅଖିଳମ୍ | = ସମସ୍ତ | ତତ୍ | = ତାହାକୁ (ତୁମେ) |
| ଜଗତ୍ | = ଜଗତକୁ | ମାମକମ୍ | = ମୋର (ହିଁ) |
| ଭାସୟତେ | = ପ୍ରକାଶିତ କରେ | ତେଜଃ | = ତେଜ (ବୋଲି) |
| ଚ | = ତଥା | ବିଦ୍ଧି | = ଜାଣ । |
| ଯତ୍ | = ଯେଉଁ ତେଜ | | |

ପୃଥିବୀ ରୂପରେ ସମ୍ପୂର୍ଣ୍ଣ ଜଗତକୁ ଧାରଣ କରିଥିବା ଏବଂ ଚନ୍ଦ୍ରମାରୂପରେ ଏହାର ପୋଷଣ କରୁଥିବା ପରମେଶ୍ୱରଙ୍କ କଥନ ।

**ଗାମାବିଶ୍ୟ ଚ ଭୂତାନି ଧାରୟାମ୍ୟହମୋଜସା ।**
**ପୁଷ୍ଣାମି ଚୌଷଧୀଃ ସର୍ବାଃ ସୋମୋ ଭୂତ୍ୱା ରସାତ୍ମକଃ ॥ ୧୩ ॥**

ଗାମ୍, ଆବିଶ୍ୟ, ଚ, ଭୂତାନି, ଧାରୟାମି, ଅହମ୍, ଓଜସା,
ପୁଷ୍ଣାମି, ଚ, ଓଷଧୀଃ, ସର୍ବାଃ, ସୋମଃ, ଭୂତ୍ୱା, ରସାତ୍ମକଃ ।।୧୩।।

| | | | |
|---|---|---|---|
| ଚ | = ଏବଂ | ରସାତ୍ମକଃ | = ରସସ୍ୱରୂପ ଅର୍ଥାତ୍ ଅମୃତମୟ |
| ଅହମ୍ | = ମୁଁ (ହିଁ) | ସୋମଃ | = ଚନ୍ଦ୍ରମା |
| ଗାମ୍ | = ପୃଥିବୀରେ | ଭୂତ୍ୱା | = ହୋଇ |
| ଆବିଶ୍ୟ | = ପ୍ରବେଶ କରି | ସର୍ବାଃ | = ସକଳ |
| ଓଜସା | = ନିଜ ଶକ୍ତି ଦ୍ୱାରା | ଔଷଧୀଃ | = ଓଷଧୀ ଅର୍ଥାତ୍ ବନସ୍ପତିମାନଙ୍କୁ |
| ଭୂତାନି | = ସମସ୍ତ ଭୂତଙ୍କୁ | ପୁଷ୍ଣାମି | = ପୁଷ୍ଟ କରେ । |
| ଧାରୟାମି | = ଧାରଣ କରେ | | |
| ଚ | = ଓ | | |

ଭଗବାନ ନିଜକୁ ବୈଶ୍ୱାନର ରୂପେ

**ଅହଂ ବୈଶ୍ୱାନରୋ ଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତଃ ।**
**ପ୍ରାଣାପାନସମାଯୁକ୍ତଃ ପଚାମ୍ୟନ୍ନଂ ଚତୁର୍ବିଧମ୍ ॥ ୧୪ ॥**

ସମସ୍ତ ପ୍ରକାର ଅନ୍ନକୁ ଜୀର୍ଣ୍ଣ କରନ୍ତି ।

ଅହମ୍, ବୈଶ୍ୱାନରଃ, ଭୂତ୍ୱା, ପ୍ରାଣିନାମ୍, ଦେହମ୍, ଆଶ୍ରିତଃ,
ପ୍ରାଣାପାନସମାଯୁକ୍ତଃ, ପଚାମି, ଅନ୍ନମ୍, ଚତୁର୍ବିଧମ୍ ।। ୧୪ ।

ତଥା—

| | | | |
|---|---|---|---|
| ପ୍ରାଣିନାମ୍ | = ପ୍ରାଣୀମାନଙ୍କର | ବୈଶ୍ୱାନରଃ | = ବୈଶ୍ୱାନର ଅଗ୍ନିରୂପ |
| ଦେହମ୍ | = ଶରୀରରେ | ଭୂତ୍ୱା | = ହୋଇ |
| ଆଶ୍ରିତଃ | = ସ୍ଥିତ ରହୁଥିବା | ଚତୁର୍ବିଧମ୍ | = ଚାରି ପ୍ରକାର* |
| ଅହମ୍ | = ମୁଁ | | |
| ପ୍ରାଣାପାନ-ସମାଯୁକ୍ତଃ | = ପ୍ରାଣ ଓ ଅପାନଦ୍ୱାରା ସଂଯୁକ୍ତ (ହୋଇ) | ଅନ୍ନମ୍ | = ଖାଦ୍ୟକୁ |
| | | ପଚାମି | = ଜୀର୍ଣ୍ଣ କରୁଛି । |

ପ୍ରଭାବ ସହିତ ଭଗବାନଙ୍କର ସ୍ୱରୂପ ବର୍ଣ୍ଣନ ।

ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟୋ
ମତ୍ତଃ ସ୍ମୃତିର୍ଜ୍ଞାନମପୋହନଂ ଚ ।
ବେଦୈଶ୍ଚ ସର୍ବୈରହମେବ ବେଦ୍ୟୋ
ବେଦାନ୍ତକୃଦ୍‌ବେଦବିଦେବ ଚାହମ୍ ॥ ୧୫ ॥

ସର୍ବସ୍ୟ, ଚ, ଅହମ୍, ହୃଦି, ସନ୍ନିବିଷ୍ଟଃ,
ମତ୍ତଃ, ସ୍ମୃତିଃ, ଜ୍ଞାନମ୍, ଅପୋହନମ୍, ଚ,
ବେଦୈଃ, ଚ, ସର୍ବୈଃ, ଅହମ୍, ଏବ, ବେଦ୍ୟଃ,
ବେଦାନ୍ତକୃତ୍, ବେଦବିତ୍, ଏବ, ଚ, ଅହମ୍ ।। ୧୫ ।।

* ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ ଏବଂ ଚୋଷ୍ୟ—ଏହିପରି ଚାରି ପ୍ରକାର ଅନ୍ନ ହୁଏ, ଏଥିରୁ ଦାନ୍ତରେ ଚୋବାଇ ଖିଆ ଯାଉଥିବା ରୁଟି, ଭାତ ଇତ୍ୟାଦିକୁ ଭକ୍ଷ୍ୟ, ପିଆ ଯାଉଥିବା ଦହି, ଚହ୍ଲା, ଦୁଧ, ପାଣି ଇତ୍ୟାଦିକୁ ଭୋଜ୍ୟ, ଚାଟି ଖିଆ ଯାଉଥିବା ମହୁ, ଚଟଣି ଆଦିକୁ ଲେହ୍ୟ ଏବଂ ଚୁଚୁମି ଖିଆଯାଉଥିବା ଆମ୍ବ ଇତ୍ୟାଦିକୁ ଚୋଷ୍ୟ କୁହାଯାଏ ।

| | | | |
|---|---|---|---|
| ଅହମ୍ | = ମୁଁ (ହିଁ) | ଚ | = ଏବଂ |
| ସର୍ବସ୍ୟ | = ସବୁ ପ୍ରାଣୀଙ୍କର | ସର୍ବୈଃ | = ସକଳ |
| ହୃଦି | = ହୃଦୟରେ | ବେଦୈଃ | = ବେଦମାନଙ୍କ ଦ୍ୱାରା |
| ସନ୍ନିବିଷ୍ଟଃ | = ଅନ୍ତର୍ଯାମୀରୂପରେ ରହିଛି | ଅହମ୍ | = ମୁଁ |
| | | ଏବ | = ହିଁ |
| ଚ | = ତଥା | ବେଦ୍ୟଃ | = ଜାଣିବାର ଯୋଗ୍ୟ (ତଥା ) |
| ମତ୍ତଃ | = ମୋ ଠାରୁ (ହିଁ) | | |
| ସ୍ମୃତିଃ | = ସ୍ମୃତି, | ବେଦାନ୍ତକୃତ୍ | = ବେଦାନ୍ତର କର୍ତ୍ତା[2] |
| ଜ୍ଞାନମ୍ | = ଜ୍ଞାନ | ଚ | = ଓ |
| ଚ | = ଓ | ବେଦବିତ୍ | = ବେଦଜ୍ଞ (ମଧ୍ୟ) |
| ଅପୋହନମ୍ | = ଅପୋହନ [1] | ଅହମ୍ | = ମୁଁ |
| (ଭବତି) | = ଜାତ ହୋଇଥାଏ | ଏବ | = ହିଁ ଅଟେ । |

ସମସ୍ତ ଭୂତଙ୍କୁ କ୍ଷର ଏବଂ କୂଟସ୍ଥ ଆତ୍ମାଙ୍କୁ ଅକ୍ଷର ପୁରୁଷ ବୋଲି ବୁଝାଇବା ।

**ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।**
**କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ॥ ୧୬ ॥**

ଦ୍ୱୌ, ଇମୌ, ପୁରୁଷୌ, ଲୋକେ, କ୍ଷରଃ, ଚ, ଅକ୍ଷରଃ, ଏବ, ଚ, କ୍ଷରଃ, ସର୍ବାଣି, ଭୂତାନି, କୂଟସ୍ଥଃ, ଅକ୍ଷରଃ, ଉଚ୍ୟତେ ।।୧୬।।

**ତଥା, ହେ ଅର୍ଜୁନ !—**

| | | | |
|---|---|---|---|
| ଲୋକେ | = ଏହି ସଂସାରରେ | ଚ | = ଓ |
| କ୍ଷରଃ | = ନାଶବାନ୍ | ଅକ୍ଷରଃ | = ଅବିନାଶୀ |

୧ - ବିଚାର ଦ୍ୱାରା ବୁଦ୍ଧିରେ ରହିଥିବା ସଂଶୟ, ବିପର୍ଯ୍ୟୟ ଆଦି ଦୋଷକୁ ଦୂର କରିବାର ନାମ 'ଅପୋହନ' ଅଟେ ।

୨-ସମସ୍ତ ବେଦର ତାତ୍ପର୍ଯ୍ୟ ହେଲା ପରମେଶ୍ୱରଙ୍କୁ ଜାଣିବା । ଏଥିପାଇଁ ସମସ୍ତ ବେଦଦ୍ୱାରା 'ଜାଣିବା ଯୋଗ୍ୟ' ଏକ ପରମେଶ୍ୱର ହିଁ ଅଟନ୍ତି ।

| | | | |
|---|---|---|---|
| ଏବ | = ବି | ଭୂତାନି | = ପ୍ରାଣୀମାନଙ୍କର ଶରୀର (ତ) |
| ଇମୌ | = ଏହି | କ୍ଷରଃ | = ନାଶବାନ୍ |
| ଦ୍ୱୌ | = ଦୁଇ ପ୍ରକାର* | ଚ | = ଏବଂ |
| ପୁରୁଷୌ | = ପୁରୁଷ (ଅଛନ୍ତି) | କୂଟସ୍ଥଃ | = ଜୀବାତ୍ମା |
| ସର୍ବାଣି | = (ଏମାନଙ୍କ ମଧ୍ୟରେ) ସକଳ | ଅକ୍ଷରଃ | = ଅବିନାଶୀ |
| | | ଉଚ୍ୟତେ | = ବୋଲି କୁହାଯାଏ । |

ପୁରୁଷୋତ୍ତମଙ୍କ ସ୍ୱରୂପର କଥନ ।

**ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ ।**
**ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ ॥ ୧୭ ॥**

ଉତ୍ତମଃ, ପୁରୁଷଃ, ତୁ, ଅନ୍ୟଃ, ପରମାତ୍ମା, ଇତି, ଉଦାହୃତଃ, ଯଃ, ଲୋକତ୍ରୟମ୍, ଆବିଶ୍ୟ, ବିଭର୍ତ୍ତି, ଅବ୍ୟୟଃ, ଈଶ୍ୱରଃ ।।୧୭।।

**ତଥା ଏହି ଦୁଇଟି ମଧ୍ୟରେ—**

| | | | |
|---|---|---|---|
| ଉତ୍ତମଃ | = ଉତ୍ତମ | ବିଭର୍ତ୍ତି | = (ସମସ୍ତଙ୍କୁ) ଧାରଣ-ପୋଷଣ କରନ୍ତି (ଏବଂ) |
| ପୁରୁଷଃ | = ପୁରୁଷ | ଅବ୍ୟୟଃ | = ଅବିନାଶୀ |
| ତୁ | = ତ | ଈଶ୍ୱରଃ | = ପରମେଶ୍ୱର (ଏବଂ) |
| ଅନ୍ୟଃ | = ଅନ୍ୟଜଣେ ହିଁ ଅଟନ୍ତି, | ପରମାତ୍ମା | = ପରମାତ୍ମା |
| ଯଃ | = ଯେ କି | ଇତି | = ବୋଲି |
| ଲୋକତ୍ରୟମ୍ | = ତ୍ରିଲୋକରେ | ଉଦାହୃତଃ | = କଥିତ ହୁଅନ୍ତି । |
| ଆବିଶ୍ୟ | = ପ୍ରବେଶ କରି | | |

* ଗୀତା ଅଧ୍ୟାୟ ୭ ଶ୍ଳୋକ ୪-୫ରେ ଯାହାକୁ 'ପରା ଏବଂ ଅପରା' ପ୍ରକୃତି ନାମରେ କୁହାଯାଇଛି ତଥା ଅଧ୍ୟାୟ ୧୩ ଶ୍ଳୋକ ୧ ରେ ଯାହାକୁ 'କ୍ଷେତ୍ର' ଏବଂ 'କ୍ଷେତ୍ରଜ୍ଞ' ନାମରେ କୁହାଯାଇଛି, ସେହି ଦୁଇଟିକୁ ଏଠାରେ 'କ୍ଷର' ଏବଂ 'ଅକ୍ଷର' ନାମରେ ବର୍ଣ୍ଣନା କରାଯାଇଛି ।

ପୁରୁଷୋତ୍ତମ ତତ୍ତ୍ୱର ପ୍ରସିଦ୍ଧିର ହେତୁ ।

**ଯସ୍ମାତ୍କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।**
**ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ॥ ୧୮ ॥**

ଯସ୍ମାତ୍, କ୍ଷରମ୍, ଅତୀତଃ, ଅହମ୍, ଅକ୍ଷରାତ୍, ଅପି, ଚ, ଉତ୍ତମଃ, ଅତଃ, ଅସ୍ମି, ଲୋକେ, ବେଦେ, ଚ, ପ୍ରଥିତଃ, ପୁରୁଷୋତ୍ତମଃ ।।୧୮।।

| | | | |
|---|---|---|---|
| ଯସ୍ମାତ୍ | = ଯେହେତୁ | ଅତଃ | = ଏଣୁ |
| ଅହମ୍ | = ମୁଁ | ଲୋକେ | = ଲୋକମାନଙ୍କ ମଧ୍ୟରେ |
| କ୍ଷରମ୍ | = ନାଶବାନ୍ ଜଡ଼ବର୍ଗ କ୍ଷେତ୍ରଠାରୁ (ସର୍ବଥା) | ଚ | = ଓ |
| ଅତୀତଃ | = ଅତୀତ ଅଟେ | ବେଦେ | = ବେଦରେ (ମଧ୍ୟ) |
| ଚ | = ଓ | ପୁରୁଷୋତ୍ତମଃ | = ପୁରୁଷୋତ୍ତମ ନାମରେ |
| ଅକ୍ଷରାତ୍ | = ଅବିନାଶୀ ଜୀବାତ୍ମାଠାରୁ | | |
| ଅପି | = ମଧ୍ୟ | ପ୍ରଥିତଃ | = ପ୍ରସିଦ୍ଧ |
| ଉତ୍ତମଃ | = ଉତ୍ତମ ଅଟେ, | ଅସ୍ମି | = ଅଟେ । |

ଭଗବାନ ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ ବୋଲି ଜାଣିବା ଲୋକଙ୍କ ମହିମା ।

**ଯୋ ମାମେବମସମ୍ମୂଢୋ ଜାନାତି ପୁରୁଷୋତ୍ତମମ୍ ।**
**ସ ସର୍ବବିଦ୍ଭଜତି ମାଂ ସର୍ବଭାବେନ ଭାରତ ॥ ୧୯ ॥**

ଯଃ, ମାମ୍, ଏବମ୍, ଅସଂମୂଢ଼ଃ, ଜାନାତି, ପୁରୁଷୋତ୍ତମମ୍, ସଃ, ସର୍ବବିତ୍, ଭଜତି, ମାମ୍, ସର୍ବଭାବେନ, ଭାରତ ।।୧୯।।

| | | | |
|---|---|---|---|
| ଭାରତ | = ହେ ଭାରତ ! | ପୁରୁଷୋତ୍ତମମ୍ | = ପୁରୁଷୋତ୍ତମ ବୋଲି |
| ଯଃ | = ଯେଉଁ | ଜାନାତି | = ତତ୍ତ୍ୱତଃ ଜାଣେ, |
| ଅସଂମୂଢ଼ଃ | = ଜ୍ଞାନୀ ପୁରୁଷ | ସଃ | = ସେହି |
| ମାମ୍ | = ମୋତେ | ସର୍ବବିତ୍ | = ସର୍ବଜ୍ଞ ପୁରୁଷ |
| ଏବମ୍ | = ଏହିପରି | | |

| | | | |
|---|---|---|---|
| ସର୍ବଭାବେନ | = ସକଳ ଭାବରେ ନିରନ୍ତର | | ବାସୁଦେବ ପରମେଶ୍ୱରଙ୍କୁ ହିଁ |
| ମାମ୍ | = ମୋତେ ଅର୍ଥାତ୍ | ଭଜତି | = ଭଜେ । |

ଏହି ଗୁହ୍ୟତମ ଜ୍ଞାନକୁ ଜାଣିବାର ମହିମା

**ଇତି ଗୁହ୍ୟତମଂ ଶାସ୍ତ୍ରମିଦମୁକ୍ତଂ ମୟାନଘ ।**
**ଏତଦ୍‌ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍ କୃତକୃତ୍ୟଶ୍ଚ ଭାରତ ॥ ୨୦ ॥**

ଇତି, ଗୁହ୍ୟତମମ୍, ଶାସ୍ତ୍ରମ୍, ଇଦମ୍, ଉକ୍ତମ୍, ମୟା, ଅନଘ, ଏତତ୍, ବୁଦ୍ଧ୍ୱା, ବୁଦ୍ଧିମାନ୍, ସ୍ୟାତ୍, କୃତକୃତ୍ୟଃ, ଚ, ଭାରତ ।।୨୦।।

| | | | |
|---|---|---|---|
| ଅନଘ | = ହେ ନିଷ୍ପାପ | ଉକ୍ତମ୍ | = କୁହାଗଲା । |
| ଭାରତ | = ଅର୍ଜୁନ ! | ଏତତ୍ | = ଏହାକୁ |
| ଇତି | = ଏପରି ଭାବରେ | ବୁଦ୍ଧ୍ୱା | = ତତ୍ତ୍ୱତଃ ଜାଣି (ମନୁଷ୍ୟ) |
| ଇଦମ୍ | = ଏହି | | |
| ଗୁହ୍ୟତମମ୍ | = ଅତ୍ୟନ୍ତ ରହସ୍ୟଯୁକ୍ତ ଏବଂ ଗୋପନୀୟ | ବୁଦ୍ଧିମାନ୍ | = ଜ୍ଞାନବାନ୍ |
| | | ଚ | = ଏବଂ |
| ଶାସ୍ତ୍ରମ୍ | = ଶାସ୍ତ୍ର | କୃତକୃତ୍ୟଃ | = କୃତାର୍ଥ |
| ମୟା | = ମୋ' ଦ୍ୱାରା | ସ୍ୟାତ୍ | = ହୋଇଯାଏ । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ପୁରୁଷୋତ୍ତମଯୋଗୋ ନାମ ପଞ୍ଚଦଶୋଽଧ୍ୟାୟଃ ॥ ୧୫ ॥*

**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ପୁରୁଷୋତ୍ତମଯୋଗ' ନାମକ ପଞ୍ଚଦଶ ଅଧ୍ୟାୟ ପୂର୍ଣ୍ଣ ହେଲା । ।୧୫। ।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଷୋଡ଼ଶ ଅଧ୍ୟାୟ

## ଦୈବାସୁରସମ୍ପଦ୍‌ବିଭାଗଯୋଗ

**ପ୍ରଧାନ ବିଷୟ**

୧ ରୁ ୫ - ଫଳ ସହିତ ଦୈବୀ ଏବଂ ଆସୁରୀ ସମ୍ପଦାର କଥନ,

୬ ରୁ ୨୦ - ଆସୁରୀ ସମ୍ପଦାଯୁକ୍ତ ମନୁଷ୍ୟଙ୍କ ଲକ୍ଷଣ ଏବଂ ସେମାନଙ୍କର ଅଧୋଗତିର କଥନ,

୨୧ ରୁ ୨୪ - ଶାସ୍ତ୍ର-ବିପରୀତ ଆଚରଣର ତ୍ୟାଗ ଏବଂ ଶାସ୍ତ୍ରାନୁକୂଳ ଆଚରଣ କରିବା ପାଇଁ ପ୍ରେରଣା ।

*ଶ୍ରୀଭଗବାନ ଉବାଚ*

ଦୈବୀ ସମ୍ପଦ ପ୍ରାପ୍ତ ପୁରୁଷଙ୍କ ଲକ୍ଷଣ ।

ଅଭୟଂ ସତ୍ତ୍ୱସଂଶୁଦ୍ଧିର୍ଜ୍ଞାନଯୋଗବ୍ୟବସ୍ଥିତିଃ ।
ଦାନଂ ଦମଶ୍ଚ ଯଜ୍ଞଶ୍ଚ ସ୍ୱାଧ୍ୟାୟସ୍ତପ ଆର୍ଜବମ୍ ॥ ୧ ॥

ଅଭୟମ୍, ସତ୍ତ୍ୱସଂଶୁଦ୍ଧିଃ, ଜ୍ଞାନଯୋଗବ୍ୟବସ୍ଥିତିଃ,
ଦାନମ୍, ଦମଃ, ଚ, ଯଜ୍ଞଃ, ଚ, ସ୍ୱାଧ୍ୟାୟଃ, ତପଃ, ଆର୍ଜବମ୍ ॥ ୧ ॥

**ଏହାପରେ ଶ୍ରୀକୃଷ୍ଣ ଭଗବାନ୍ ପୁଣି କହିଲେ କି, ହେ ଅର୍ଜୁନ ! ଯେଉଁ-ଯେଉଁ ପୁରୁଷଙ୍କୁ ଦୈବୀ ସମ୍ପଦ ପ୍ରାପ୍ତ ହୋଇଛି ଏବଂ ଯେଉଁମାନଙ୍କୁ ଆସୁରୀ ସମ୍ପଦ ପ୍ରାପ୍ତ ହୋଇଛି ସେମାନଙ୍କର ଲକ୍ଷଣ ପୃଥକ-ପୃଥକ ଭାବେ କହିବି । ସେଥି ମଧ୍ୟରୁ—**

| | |
|---|---|
| ଅଭୟମ୍ = ଭୟର ସର୍ବଥା ଅଭାବ, | ସତ୍ତ୍ୱସଂଶୁଦ୍ଧିଃ = ଅନ୍ତଃକରଣର ପୂର୍ଣ୍ଣ ନିର୍ମଳତା, |

| | | | |
|---|---|---|---|
| ଜ୍ଞାନଯୋଗ-ବ୍ୟବସ୍ଥିତିଃ | = ତତ୍ତ୍ୱଜ୍ଞାନ ପାଇଁ ଧ୍ୟାନଯୋଗରେ[1] ନିରନ୍ତର ଦୃଢ଼ ସ୍ଥିତି | ସ୍ୱାଧ୍ୟାୟଃ | = ବେଦଶାସ୍ତ୍ରାଦିର ପଠନ-ପାଠନ ତଥା ଭଗବାନଙ୍କର ନାମ ଓ ଗୁଣକୀର୍ତ୍ତନ, |
| ଚ | = ଓ | ତପଃ | = ସ୍ୱଧର୍ମ ପାଳନ ନିମନ୍ତେ କଷ୍ଟ ସହିବା |
| ଦାନମ୍ | = ସାତ୍ତ୍ୱିକ ଦାନ,[2] | ଚ | = ଓ |
| ଦମଃ | = ଇନ୍ଦ୍ରିୟ ଦମନ, | ଆର୍ଜବମ୍ | = ଶରୀର ତଥା ଇନ୍ଦ୍ରିୟମାନଙ୍କ ସହିତ ଅନ୍ତଃକରଣର ସରଳତା - |
| ଯଜ୍ଞଃ | = ଭଗବାନ, ଦେବତା ଓ ଗୁରୁଜନମାନଙ୍କର ପୂଜା ତଥା ଅଗ୍ନିହୋତ୍ରାଦି ଉତ୍ତମ କର୍ମ ଆଚରଣ (ଏବଂ) | | |

**ଅହିଂସା ସତ୍ୟମକ୍ରୋଧସ୍ତ୍ୟାଗଃ ଶାନ୍ତିରପୈଶୁନମ୍ ।**
**ଦୟା ଭୂତେଷ୍ୱଲୋଲୁପ୍ତ୍ୱଂ ମାର୍ଦବଂ ହ୍ରୀରଚାପଲମ୍ ॥ ୨ ॥**

ଅହିଂସା, ସତ୍ୟମ୍, ଅକ୍ରୋଧଃ, ତ୍ୟାଗଃ, ଶାନ୍ତିଃ, ଅପୈଶୁନମ୍,
ଦୟା, ଭୂତେଷୁ, ଅଲୋଲୁପତ୍ୱମ୍, ମାର୍ଦବମ୍, ହ୍ରୀଃ, ଅଚାପଲମ୍ ।।୨ ।।

**ତଥା—**

| | | | |
|---|---|---|---|
| ଅହିଂସା | = କାୟମନୋବାକ୍ୟରେ କାହାରିକୁ କୌଣସି ପ୍ରକାର କଷ୍ଟ ନ ଦେବା, | ସତ୍ୟମ୍ | = ଯଥାର୍ଥ ଓ ପ୍ରିୟଭାଷଣ,[3] |

**୧**-ପରମାତ୍ମାଙ୍କ ସ୍ୱରୂପକୁ ତତ୍ତ୍ୱତଃ ଜାଣିବା ପାଇଁ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ ଏକୀଭାବରେ ଦୃଢ଼ ଏବଂ ନିରନ୍ତର ଧ୍ୟାନର ନାମ ହିଁ 'ଜ୍ଞାନଯୋଗବ୍ୟବସ୍ଥିତିଃ' ବୋଲି ବୁଝିବା ଉଚିତ।

**୨**-ଗୀତା ଅଧ୍ୟାୟ ୧୭ ଶ୍ଳୋକ ୨୦ରେ ଏହା ବିସ୍ତାର ଭାବରେ କୁହାଯାଇଛି।

**୩**- ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯେପରି ନିଶ୍ଚୟ କରାଯାଏ, ସେହିପରି ହିଁ ପ୍ରିୟ ଶବ୍ଦ କହିବାର ନାମ 'ସତ୍ୟଭାଷଣ' ଅଟେ।

ଅକ୍ରୋଧଃ = ନିଜର ଅପକାର କରୁଥିବା ଲୋକ ପ୍ରତି ମଧ୍ୟ କ୍ରୋଧ ନ କରିବା,
ତ୍ୟାଗଃ = କର୍ମରେ କର୍ତ୍ତୃତ୍ୱ ଅଭିମାନ ତ୍ୟାଗ,
ଶାନ୍ତିଃ = ଅନ୍ତଃକରଣର ଉପରତି ଅର୍ଥାତ୍ ଚିତ୍ତ ଚଞ୍ଚଳତାର ଅଭାବ,
ଅପୈଶୁନମ୍ = କାହାରି ନିନ୍ଦା ନ କରିବା,
ଭୂତେଷୁ = ସବୁ ଭୂତ ପ୍ରାଣୀଙ୍କ ପ୍ରତି
ଦୟା = ଅହେତୁକ ଦୟା,
ଅଲୋଲୁପ୍-ତ୍ୱମ୍ = ଇନ୍ଦ୍ରିୟମାନଙ୍କର ବିଷୟମାନଙ୍କ ସହ ସଂଯୋଗ ହେଲେ ମଧ୍ୟ ସେଥିରେ ଆସକ୍ତ ନ ହେବା,
ମାର୍ଦ୍ଦବମ୍ = କୋମଳତା,
ହ୍ରୀଃ = ଲୋକାଚାର ଓ ଶାସ୍ତ୍ରବିରୁଦ୍ଧ ଆଚରଣରେ ଲଜ୍ଜା (ଓ)
ଅଚାପଳମ୍ = ବ୍ୟର୍ଥ ଚେଷ୍ଟାର ଅଭାବ-

ତେଜଃ କ୍ଷମା ଧୃତିଃ ଶୌଚମଦ୍ରୋହୋ ନାତିମାନିତା ।
ଭବନ୍ତି ସମ୍ପଦଂ ଦୈବୀମଭିଜାତସ୍ୟ ଭାରତ ॥ ୩ ॥

ତେଜଃ, କ୍ଷମା, ଧୃତିଃ, ଶୌଚମ୍, ଅଦ୍ରୋହଃ, ନାତିମାନିତା,
ଭବନ୍ତି, ସମ୍ପଦମ୍, ଦୈବୀମ୍, ଅଭିଜାତସ୍ୟ, ଭାରତ ।। ୩ ।।

ତେଜଃ = ତେଜ,[୧]
କ୍ଷମା = କ୍ଷମା,
ଧୃତିଃ = ଧୈର୍ଯ୍ୟ,
ଶୌଚମ୍ = ବାହ୍ୟଶୁଦ୍ଧି (ଏବଂ)[୨]
ଅଦ୍ରୋହଃ = କାହାରି ପ୍ରତି ମଧ୍ୟ ଶତ୍ରୁଭାବ ନ ହେବା (ଓ)
ନାତିମାନିତା = ନିଜଠାରେ ପୂଜ୍ୟତା-ଅଭିମାନର ଅଭାବ, (ଏ ସବୁ)

---

୧- ଶ୍ରେଷ୍ଠ ପୁରୁଷଙ୍କ ସେହି ଶକ୍ତିର ନାମ 'ତେଜ' ଅଟେ ଯାହାର ପ୍ରଭାବରେ ତାଙ୍କ ସମ୍ମୁଖରେ ବିଷୟାସକ୍ତ ଏବଂ ନୀଚ ପ୍ରକୃତି ଯୁକ୍ତ ପୁରୁଷ ମଧ୍ୟ ଅନ୍ୟାୟ ଆଚରଣରୁ ରହିତ ହୋଇ ସେହି ଶ୍ରେଷ୍ଠପୁରୁଷଙ୍କ କହିବା ଅନୁସାରେ କର୍ମରେ ପ୍ରବୃତ୍ତ ହୋଇଯାଆନ୍ତି ।

୨ - ବାହ୍ୟଶୁଦ୍ଧି-ଗୀତା ଅଧ୍ୟାୟ ୧୩ ଶ୍ଳୋକ ୭ ର ଟିପ୍ପଣୀ ଦ୍ରଷ୍ଟବ୍ୟ ।

| | | | |
|---|---|---|---|
| ଭାରତ | = ହେ ଅର୍ଜୁନ ! | ଅଭିଜାତସ୍ୟ | = ନେଇ ଜନ୍ମ ହୋଇଥିବା ପୁରୁଷଙ୍କ |
| ଦୈବୀମ୍ | = ଦୈବୀ | ଭବନ୍ତି | = (ଲକ୍ଷଣ) ଅଟେ । |
| ସମ୍ପଦମ୍ | = ସମ୍ପଦକୁ | | |

ସଂକ୍ଷେପରେ ଆସୁରୀ ସମ୍ପଦର ନିରୂପଣ ।

**ଦମ୍ଭୋ ଦର୍ପୋଽଭିମାନଶ୍ଚ କ୍ରୋଧଃ ପାରୁଷ୍ୟମେବ ଚ ।**
**ଅଜ୍ଞାନଂ ଚାଭିଜାତସ୍ୟ ପାର୍ଥ ସମ୍ପଦମାସୁରୀମ୍ ॥ ୪ ॥**

ଦମ୍ଭଃ, ଦର୍ପଃ, ଅଭିମାନଃ, ଚ, କ୍ରୋଧଃ, ପାରୁଷ୍ୟମ୍, ଏବ, ଚ,
ଅଜ୍ଞାନମ୍, ଚ, ଅଭିଜାତସ୍ୟ, ପାର୍ଥ, ସମ୍ପଦମ୍, ଆସୁରୀମ୍ ।।୪ ।।

**ଏବଂ—**

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ଚ | = ଓ |
| ଦମ୍ଭଃ | = ଦମ୍ଭ, | ଅଜ୍ଞାନମ୍ | = ଅଜ୍ଞାନ |
| ଦର୍ପଃ | = ଗର୍ବ | ଏବ | = ବି - (ଏ ସବୁ) |
| ଚ | = ଓ | ଆସୁରୀମ୍ | = ଆସୁରୀ |
| ଅଭିମାନଃ | = ଅଭିମାନ | ସମ୍ପଦମ୍ | = ସମ୍ପଦକୁ |
| ଚ | = ତଥା | ଅଭିଜାତସ୍ୟ | = ନେଇ ଜନ୍ମ ହୋଇଥିବା ପୁରୁଷର (ଲକ୍ଷଣ) । |
| କ୍ରୋଧଃ | = କ୍ରୋଧ, | | |
| ପାରୁଷ୍ୟମ୍ | = କଠୋରତା | | |

ଦୈବୀ ସମ୍ପଦର ଫଳ ମୁକ୍ତି ତଥା ଆସୁରୀ ସମ୍ପଦର ଫଳ ବନ୍ଧନ ବୋଲି ଉକ୍ତି ।

**ଦୈବୀ ସମ୍ପଦ୍ ବିମୋକ୍ଷାୟ ନିବନ୍ଧାୟାସୁରୀ ମତା ।**
**ମା ଶୁଚଃ ସମ୍ପଦଂ ଦୈବୀମଭିଜାତୋଽସି ପାଣ୍ଡବ ॥ ୫ ॥**

ଦୈବୀ, ସମ୍ପତ୍, ବିମୋକ୍ଷାୟ, ନିବନ୍ଧାୟ, ଆସୁରୀ, ମତା,
ମା, ଶୁଚଃ, ସମ୍ପଦମ୍, ଦୈବୀମ୍, ଅଭିଜାତଃ, ଅସି, ପାଣ୍ଡବ ।।୫ ।।

### ଏହି ଦୁଇ ପ୍ରକାର ସମ୍ପଦରେ —

| | | | |
|---|---|---|---|
| ଦୈବୀ, ସମ୍ପତ୍ | = ଦୈବୀ ସମ୍ପଦ | ପାଣ୍ଡବ | = ହେ ଅର୍ଜୁନ ! (ତୁମେ) |
| ବିମୋକ୍ଷାୟ | = ମୁକ୍ତି ପାଇଁ (ଓ) | ମା, ଶୁଚଃ | = ଶୋକ କର ନାହିଁ; |
| ଆସୁରୀ | = ଆସୁରୀ ସମ୍ପଦ | (ଯତଃ) | = କାରଣ (ତୁମେ) |
| ନିବନ୍ଧାୟ | = ବନ୍ଧନ ପାଇଁ (ବୋଲି) | ଦୈବୀମ୍,ସମ୍ପଦମ୍ | = ଦୈବୀସମ୍ପଦକୁ ନେଇ |
| ମତା | = ସ୍ୱୀକାର କରାଯାଇଛି । | ଅଭିଜାତଃ, ଅସି | = ଜନ୍ମ ହୋଇଛ । |
| (ଅତଃ) | = ଏଣୁ | | |

ବିସ୍ତାରପୂର୍ବକ ଆସୁରୀ ପ୍ରକୃତି ବିଶିଷ୍ଟ ମନୁଷ୍ୟମାନଙ୍କ ଲକ୍ଷଣ ଶୁଣିବା ପାଇଁ ଭଗବାନଙ୍କ ଆଦେଶ ।

**ଦ୍ୱୌ ଭୂତସର୍ଗୌ ଲୋକେଽସ୍ମିନ୍ ଦୈବ ଆସୁର ଏବ ଚ ।**
**ଦୈବୋ ବିସ୍ତରଶଃ ପ୍ରୋକ୍ତ ଆସୁରଂ ପାର୍ଥ ମେ ଶୃଣୁ ॥ ୬ ॥**

ଦ୍ୱୌ, ଭୂତସର୍ଗୌ, ଲୋକେ, ଅସ୍ମିନ୍, ଦୈବଃ, ଆସୁରଃ, ଏବ, ଚ, ଦୈବଃ, ବିସ୍ତରଶଃ, ପ୍ରୋକ୍ତଃ, ଆସୁରମ୍, ପାର୍ଥ, ମେ, ଶୃଣୁ ।।୬।।

### ଏବଂ—

| | | | |
|---|---|---|---|
| ପାର୍ଥ | = ହେ ଅର୍ଜୁନ ! | ଚ | = ଓ (ଅନ୍ୟଟି) |
| ଅସ୍ମିନ୍, ଲୋକେ | = ଇହଲୋକରେ | ଆସୁରଃ | = ଆସୁରୀ ପ୍ରକୃତିର । |
| ଭୂତସର୍ଗୌ | = ଭୂତମାନଙ୍କର ସୃଷ୍ଟି ଅର୍ଥାତ୍ ମନୁଷ୍ୟ ସମୁଦାୟ | ଦୈବଃ | = (ସେହି ଦୁହିଁଙ୍କ ମଧ୍ୟରୁ) ଦୈବୀ ପ୍ରକୃତିର ମନୁଷ୍ୟ (ବିଷୟରେ ତ) |
| ଦ୍ୱୌ, ଏବ | = କେବଳ ଦୁଇପ୍ରକାର, | ବିସ୍ତରଶଃ | = ବିସ୍ତୃତଭାବରେ |
| ଦୈବଃ | = (ଗୋଟିଏ) ଦୈବୀ ପ୍ରକୃତିର | ପ୍ରୋକ୍ତଃ | = କୁହାଯାଇସାରିଛି, |

| | | | |
|---|---|---|---|
| ଆସୁରମ୍ | = (ବର୍ତ୍ତମାନ ତୁମେ) ଆସୁରୀ ପ୍ରକୃତିର ମନୁଷ୍ୟ ସମୁଦାୟଙ୍କ | | ବିଷୟରେ ମଧ୍ୟ ବିସ୍ତାରପୂର୍ବକ |
| | | ମେ | = ମୋଠାରୁ |
| | | ଶୃଣୁ | = ଶୁଣ । |

ଆସୁରୀ ସମ୍ପଦ ବିଶିଷ୍ଟ ମନୁଷ୍ୟମାନଙ୍କ ମଧ୍ୟରେ ସଦାଚାରର ଅଭାବର କଥନ ।

**ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ ଜନା ନ ବିଦୁରାସୁରାଃ ।**
**ନ ଶୌଚଂ ନାପି ଚାଚାରୋ ନ ସତ୍ୟଂ ତେଷୁ ବିଦ୍ୟତେ ॥ ୭ ॥**

ପ୍ରବୃତ୍ତିମ୍, ଚ, ନିବୃତ୍ତିମ୍, ଚ, ଜନାଃ, ନ, ବିଦୁଃ, ଆସୁରାଃ,
ନ, ଶୌଚମ୍, ନ, ଅପି, ଚ, ଆଚାରଃ, ନ, ସତ୍ୟମ୍, ତେଷୁ, ବିଦ୍ୟତେ ।।୭।।

**ହେ ଅର୍ଜୁନ ! —**

| | | | |
|---|---|---|---|
| ଆସୁରାଃ | = ଆସୁର ସ୍ୱଭାବର | ନ, ଶୌଚମ୍ | = ଅନ୍ତଃ ଓ ବାହ୍ୟ ଶୁଦ୍ଧି ନ ଥାଏ (କି ସେମାନଙ୍କର) |
| ଜନାଃ | = ମନୁଷ୍ୟମାନେ | | |
| ପ୍ରବୃତ୍ତିମ୍ | = ପ୍ରବୃତ୍ତିକୁ | | |
| ଚ | = ଓ | ନ, ଆଚାରଃ | = ଆଚରଣ ଶୁଦ୍ଧି ନଥାଏ |
| ନିବୃତ୍ତିମ୍ | = ନିବୃତ୍ତିକୁ (ଏହି ଉଭୟକୁ) | | |
| ଚ | = ମଧ୍ୟ | ଚ | = ତଥା (ସେମାନଙ୍କଠାରେ) |
| ନ, ବିଦୁଃ | = ଜାଣନ୍ତି ନାହିଁ । (ତେଣୁ) | ସତ୍ୟମ୍, ଅପି | = ସତ୍ୟ ଭାଷଣ ମଧ୍ୟ |
| ତେଷୁ | = ସେମାନଙ୍କଠାରେ | ନ, ବିଦ୍ୟତେ | = ନ ଥାଏ । |

ଆସୁରୀ ସମ୍ପଦା ମନୁଷ୍ୟମାନଙ୍କ ନାସ୍ତିକତାର କଥନ ।

**ଅସତ୍ୟମପ୍ରତିଷ୍ଠଂ ତେ ଜଗଦାହୁରନୀଶ୍ୱରମ୍ ।**
**ଅପରସ୍ପରସମ୍ଭୂତଂ କିମନ୍ୟତ୍ କାମହୈତୁକମ୍ ॥ ୮ ॥**

ଅସତ୍ୟମ୍, ଅପ୍ରତିଷ୍ଠମ୍, ତେ, ଜଗତ୍, ଆହୁଃ, ଅନୀଶ୍ୱରମ୍,
ଅପରସ୍ପରସମ୍ଭୂତମ୍, କିମ୍, ଅନ୍ୟତ୍, କାମହୈତୁକମ୍ ।।୮ ।।

**ତଥା —**

| | | |
|---|---|---|
| ତେ | = | ସେହି ଆସୁରୀ ପ୍ରକୃତିର ମନୁଷ୍ୟମାନେ |
| ଆହୁଃ | = | କହନ୍ତି (ଯେ) |
| ଜଗତ୍ | = | ଜଗତ |
| ଅପ୍ରତିଷ୍ଠମ୍ | = | ଆଶ୍ରୟରହିତ, |
| ଅସତ୍ୟମ୍ | = | ସର୍ବଥା ଅସତ୍ୟ (ଓ) |
| ଅନୀଶ୍ୱରମ୍ | = | ଈଶ୍ୱର ରହିତ; |
| ଅପରସ୍ପର-ସମ୍ଭୂତମ୍ | = | କେବଳ ସ୍ତ୍ରୀ ପୁରୁଷଙ୍କ ସଂଯୋଗରୁ ସ୍ୱୟଂ ଉତ୍ପନ୍ନ ହୋଇଛି; (ଅତଏବ) |
| କାମହୈତୁକମ୍, (ଏବ) | = | କେବଳ କାମ ହିଁ ଏହାର କାରଣ ଅଟେ । |
| ଅନ୍ୟତ୍ | = | ଏହାଛଡ଼ା (ଆଉ) |
| କିମ୍ | = | କଣ ଅଛି ? |

ଅସୁରୀ ପ୍ରକୃତି ମନୁଷ୍ୟଙ୍କ ଦୁରାଚାରର ବର୍ଣ୍ଣନ ।

ଏତାଂ ଦୃଷ୍ଟିମବଷ୍ଟଭ୍ୟ ନଷ୍ଟାତ୍ମାନୋଽଳ୍ପବୁଦ୍ଧୟଃ ।
ପ୍ରଭବନ୍ତ୍ୟୁଗ୍ରକର୍ମାଣଃ କ୍ଷୟାୟ ଜଗତୋଽହିତାଃ ॥ ୯ ॥

ଏତାମ୍, ଦୃଷ୍ଟିମ୍, ଅବଷ୍ଟଭ୍ୟ, ନଷ୍ଟାତ୍ମାନଃ, ଅଳ୍ପବୁଦ୍ଧୟଃ,
ପ୍ରଭବନ୍ତି, ଉଗ୍ରକର୍ମାଣଃ, କ୍ଷୟାୟ, ଜଗତଃ, ଅହିତାଃ ।।୯ ।।

**ଏହିପରି—**

| | | |
|---|---|---|
| ଏତାମ୍ | = | ଏହି |
| ଦୃଷ୍ଟିମ୍ | = | ମିଥ୍ୟା ଜ୍ଞାନକୁ |
| ଅବଷ୍ଟଭ୍ୟ | = | ଅବଲମ୍ବନ କରି |
| ନଷ୍ଟାତ୍ମାନଃ | = | ଯେଉଁମାନଙ୍କର ସ୍ୱଭାବ ନଷ୍ଟ ହୋଇଗଲାଣି (ତଥା) |
| ଅଳ୍ପବୁଦ୍ଧୟଃ | = | ଯେଉଁମାନଙ୍କ ବୁଦ୍ଧି ମନ୍ଦ, |
| ଅହିତାଃ | = | ସମସ୍ତଙ୍କର ଅପକାରୀ, |

| | | | |
|---|---|---|---|
| ଉଗ୍ରକର୍ମାଣଃ | = (ସେହି) କ୍ରୂରକର୍ମା ମନୁଷ୍ୟମାନେ (କେବଳ) | ଜଗତଃ | = ଜଗତର |
| | | କ୍ଷୟାୟ | = ବିନାଶ ପାଇଁ ହିଁ |
| | | ପ୍ରଭବନ୍ତି | = ସମର୍ଥ ହୁଅନ୍ତି । |

**କାମମାଶ୍ରିତ୍ୟ ଦୁଷ୍ପୂରଂ ଦମ୍ଭମାନମଦାନ୍ୱିତାଃ ।**
**ମୋହାଦ୍ ଗୃହୀତ୍ୱାସଦ୍‌ଗ୍ରାହାନ୍ ପ୍ରବର୍ତ୍ତନ୍ତେଽଶୁଚିବ୍ରତାଃ ॥ ୧୦ ॥**

କାମମ୍, ଆଶ୍ରିତ୍ୟ, ଦୁଷ୍ପୂରମ୍, ଦମ୍ଭମାନମଦାନ୍ୱିତାଃ,
ମୋହାତ୍, ଗୃହୀତ୍ୱା, ଅସଦ୍‌ଗ୍ରାହାନ୍, ପ୍ରବର୍ତ୍ତନ୍ତେ, ଅଶୁଚିବ୍ରତାଃ ।।୧୦।।

**ଏବଂ ସେମାନେ —**

| | | | |
|---|---|---|---|
| ଦମ୍ଭମାନ-ମଦାନ୍ୱିତାଃ | = ଦମ୍ଭ, ମାନ ଓ ମଦଯୁକ୍ତ ମନୁଷ୍ୟମାନେ | ମୋହାତ୍ | = ଅଜ୍ଞାନବଶତଃ |
| ଦୁଷ୍ପୂରମ୍ | = କୌଣସି ପ୍ରକାରେ ମଧ୍ୟ ପୂର୍ଣ୍ଣ ହେଉ ନ ଥିବା | ଅସଦ୍‌ଗ୍ରାହାନ୍ | = ମିଥ୍ୟା ସିଦ୍ଧାନ୍ତ ମାନଙ୍କୁ |
| କାମମ୍ | = କାମନାମାନଙ୍କୁ | ଗୃହୀତ୍ୱା | = ଗ୍ରହଣ କରି (ଓ) |
| ଆଶ୍ରିତ୍ୟ | = ଆଶ୍ରୟ କରି, | ଅଶୁଚିବ୍ରତାଃ | = ଭ୍ରଷ୍ଟ ଆଚରଣ ଧାରଣ କରି |
| | | ପ୍ରବର୍ତ୍ତନ୍ତେ | = ସଂସାରରେ ବିଚରଣ କରନ୍ତି । |

**ଚିନ୍ତାମପରିମେୟାଂ ଚ ପ୍ରଳୟାନ୍ତାମୁପାଶ୍ରିତାଃ ।**
**କାମୋପଭୋଗପରମା ଏତାବଦିତି ନିଶ୍ଚିତାଃ ॥ ୧୧ ॥**

ଚିନ୍ତାମ୍, ଅପରିମେୟାମ୍, ଚ, ପ୍ରଳୟାନ୍ତାମ୍, ଉପାଶ୍ରିତାଃ,
କାମୋପଭୋଗପରମାଃ, ଏତାବତ୍, ଇତି, ନିଶ୍ଚିତାଃ ।।୧୧।।

**ତଥା ସେମାନେ —**

| | | | | | |
|---|---|---|---|---|---|
| ପ୍ରଳୟାନ୍ତାମ୍ | = | ମୃତ୍ୟୁପର୍ଯ୍ୟନ୍ତ ରହୁଥିବା | କାମୋପଭୋଗ- | = | ବିଷୟ ଭୋଗ |
| ଅପରିମେୟାମ୍ | = | ଅସଂଖ୍ୟ | ପରମାଃ | | ପରାୟଣ (ହୋଇ) |
| ଚିନ୍ତାମ୍ | = | ଚିନ୍ତାକୁ | ଚ | = | ଏବଂ |
| ଉପାଶ୍ରିତାଃ | = | ଆଶ୍ରୟ କରିଥିବା ଲୋକେ | ଏତାବତ୍ | = | 'ଏତିକି ହିଁ ସୁଖ'- |
| | | | ଇତି, | = | ବୋଲି |
| | | | ନିଶ୍ଚିତାଃ | | ମନେକରନ୍ତି । |

ଆଶାପାଶଶତୈର୍ବଦ୍ଧାଃ କାମକ୍ରୋଧପରାୟଣାଃ ।
ଈହନ୍ତେ କାମଭୋଗାର୍ଥମନ୍ୟାୟେନାର୍ଥସଞ୍ଚୟାନ୍ ॥ ୧୨ ॥

ଆଶାପାଶଶତୈଃ, ବଦ୍ଧାଃ, କାମକ୍ରୋଧପରାୟଣାଃ,
ଈହନ୍ତେ, କାମଭୋଗାର୍ଥମ୍, ଅନ୍ୟାୟେନ, ଅର୍ଥସଞ୍ଚୟାନ୍ ।।୧୨।।

**ସେଥିପାଇଁ ସେମାନେ—**

| | | | | | |
|---|---|---|---|---|---|
| ଆଶାପାଶଶତୈଃ | = | ଶତ ଶତ ଆଶାପାଶରେ | ଅନ୍ୟାୟେନ | = | ଅନ୍ୟାୟ ପୂର୍ବକ |
| ବଦ୍ଧାଃ | = | ଆବଦ୍ଧ ହୋଇଥିବା ମନୁଷ୍ୟମାନେ | ଅର୍ଥସଞ୍ଚୟାନ୍ | = | ଧନାଦି ପଦାର୍ଥ ସଂଗ୍ରହ କରିବା ନିମନ୍ତେ |
| କାମକ୍ରୋଧ-ପରାୟଣାଃ | = | କାମକ୍ରୋଧର ପରାୟଣ ହୋଇ | | | |
| କାମଭୋଗାର୍ଥମ୍ | = | ବିଷୟ-ଭୋଗ ପାଇଁ | ଈହନ୍ତେ | = | ଚେଷ୍ଟା କରୁଥାନ୍ତି । |

ଆସୁର ସ୍ୱଭାବର ମନୁଷ୍ୟମାନଙ୍କର ଅହଂତ୍ୱ, ମମତ୍ୱ ଓ

ଇଦମଦ୍ୟ ମୟା ଲବ୍‌ଧମିମଂ ପ୍ରାପ୍‌ସ୍ୟେ ମନୋରଥମ୍ ।
ଇଦମସ୍ତୀଦମପି ମେ ଭବିଷ୍ୟତି ପୁନର୍ଧନମ୍ ॥ ୧୩ ॥

ମୋହଯୁକ୍ତ ସଂକଳ୍ପମାନଙ୍କୁ ନିରୂପଣ କରିବା ଓ ସେମାନଙ୍କର ଦୁର୍ଗତିର ବର୍ଣ୍ଣନା ।

ଇଦମ୍, ଅଦ୍ୟ, ମୟା, ଲବ୍ଧମ୍, ଇମମ୍, ପ୍ରାପ୍ସ୍ୟେ, ମନୋରଥମ୍,
ଇଦମ୍, ଅସ୍ତି, ଇଦମ୍, ଅପି, ମେ, ଭବିଷ୍ୟତି, ପୁନଃ, ଧନମ୍ ।।୧୩।।

**ଏବଂ ସେମାନେ ଭାବନ୍ତି କି —**

| | | | |
|---|---|---|---|
| ମୟା | = ମୋ' ଦ୍ୱାରା | ମେ | = ମୋ ପାଖରେ |
| ଅଦ୍ୟ | = ଆଜି | ଇଦମ୍ | = ଏତିକି |
| ଇଦମ୍ | = ଏତିକି ବସ୍ତୁ ତ | ଧନମ୍ | = ଧନ ତ |
| ଲବ୍ଧମ୍ | = ପ୍ରାପ୍ତ ହେଲା, (ଏଥର) | ଅସ୍ତି | = ଅଛି, |
| | | ପୁନଃ | = ଆହୁରି |
| ଇମମ୍ | = ଅମୁକ | ଅପି | = ମଧ୍ୟ |
| ମନୋରଥମ୍ | = ମନୋରଥକୁ | ଇଦମ୍ | = ଏତିକି (ଧନ) |
| ପ୍ରାପ୍ସ୍ୟେ | = ପୂର୍ଣ୍ଣ କରିବି । | ଭବିଷ୍ୟତି | = ହୋଇଯିବ । |

**ଅସୌ ମୟା ହତଃ ଶତ୍ରୁର୍ହନିଷ୍ୟେ ଚାପରାନପି ।**
**ଈଶ୍ୱରୋଽହମହଂ ଭୋଗୀ ସିଦ୍ଧୋଽହଂ ବଲବାନ୍ ସୁଖୀ ॥ ୧୪ ॥**

ଅସୌ, ମୟା, ହତଃ, ଶତ୍ରୁଃ, ହନିଷ୍ୟେ, ଚ, ଅପରାନ୍, ଅପି,
ଈଶ୍ୱରଃ, ଅହମ୍, ଅହମ୍, ଭୋଗୀ, ସିଦ୍ଧଃ, ଅହମ୍, ବଲବାନ୍, ସୁଖୀ ।।୧୪।।

**ତଥା —**

| | | | |
|---|---|---|---|
| ଅସୌ | = ସେହି | ଅପରାନ୍ | = ଅନ୍ୟ ଶତ୍ରୁମାନଙ୍କୁ |
| ଶତ୍ରୁଃ | = ଶତ୍ରୁ | | |
| ମୟା | = ମୋ' ଦ୍ୱାରା | ଅପି | = ମଧ୍ୟ |
| ହତଃ | = ନିହତ ହୋଇଗଲା | ଅହମ୍ | = ମୁଁ |
| | | ହନିଷ୍ୟେ | = ମାରିଦେବି । |
| ଚ | = ଏବଂ | ଅହମ୍ | = ମୁଁ |

| | | | |
|---|---|---|---|
| ଈଶ୍ୱରଃ | = (ମୁଁ) ଈଶ୍ୱର, | ସିଦ୍ଧଃ | = ସମସ୍ତ ସିଦ୍ଧିରେ ଯୁକ୍ତ (ଓ) |
| ଭୋଗୀ | = (ମୁଁ) ଐଶ୍ୱର୍ଯ୍ୟବାନ୍, | ବଳବାନ୍ | = ବଳବାନ୍ (ତଥା) |
| ଅହମ୍ | = ମୁଁ | ସୁଖୀ | = ସୁଖୀ ଅଟେ । |

ଆସୁରୀ ପ୍ରକୃତିଯୁକ୍ତ ମନୁଷ୍ୟଙ୍କର ଘୋର ନରକ ପ୍ରାପ୍ତି ।

ଆଢ୍ୟୋଽଭିଜନବାନସ୍ମି କୋଽନ୍ୟୋଽସ୍ତି ସଦୃଶୋ ମୟା ।
ଯକ୍ଷ୍ୟେ ଦାସ୍ୟାମି ମୋଦିଷ୍ୟ ଇତ୍ୟଜ୍ଞାନବିମୋହିତାଃ ॥ ୧୫ ॥

ଅନେକଚିତ୍ତବିଭ୍ରାନ୍ତା ମୋହଜାଲସମାବୃତାଃ ।
ପ୍ରସକ୍ତାଃ କାମଭୋଗେଷୁ ପତନ୍ତି ନରକେଽଶୁଚୌ ॥ ୧୬ ॥

ଆଢ୍ୟଃ, ଅଭିଜନବାନ୍, ଅସ୍ମି, କଃ, ଅନ୍ୟଃ, ଅସ୍ତି, ସଦୃଶଃ, ମୟା,
ଯକ୍ଷ୍ୟେ, ଦାସ୍ୟାମି, ମୋଦିଷ୍ୟେ, ଇତି, ଅଜ୍ଞାନବିମୋହିତାଃ ।।୧୫।।

ଅନେକଚିତ୍ତବିଭ୍ରାନ୍ତାଃ, ମୋହଜାଲସମାବୃତାଃ,
ପ୍ରସକ୍ତାଃ, କାମଭୋଗେଷୁ, ପତନ୍ତି, ନରକେ, ଅଶୁଚୌ ।।୧୬।।

**ତଥା ମୁଁ —**

| | | | |
|---|---|---|---|
| ଆଢ୍ୟଃ | = (ମୁଁ) ବିରାଟ ଧନୀ (ଓ) | ଅସ୍ତି | = ଅଛି ? (ମୁଁ) |
| ଅଭିଜନବାନ୍ | = ବିଶାଳ କୁଟୁମ୍ବୀ | ଯକ୍ଷ୍ୟେ | = ଯଜ୍ଞ କରିବି, |
| ଅସ୍ମି | = ଅଟେ । | ଦାସ୍ୟାମି | = ଦାନ ଦେବି (ଓ) |
| ମୟା, ସଦୃଶଃ | = ମୋ ସମାନ | ମୋଦିଷ୍ୟେ | = ଆମୋଦ-ପ୍ରମୋଦ କରିବି । |
| ଅନ୍ୟଃ | = ଆଉ | | |
| କଃ | = କିଏ | ଇତି | = ଏପରି ଭାବରେ |

| | | | |
|---|---|---|---|
| ଅଜ୍ଞାନ-ବିମୋହିତାଃ | = ଅଜ୍ଞାନରେ ବିଶେଷ ମୋହିତ, | କାମଭୋଗେଷୁ | = ବିଷୟ ଭୋଗରେ |
| ଅନେକଚିତ୍ତ-ବିଭ୍ରାନ୍ତାଃ | = ଅନେକ ପ୍ରକାରେ ବିଭ୍ରାନ୍ତ ଚିତ୍ତ (ତଥା) | ପ୍ରସକ୍ତାଃ | = ଅତ୍ୟନ୍ତ ଆସକ୍ତ (ଆସୁର ସ୍ୱଭାବର ଲୋକେ) |
| ମୋହଜାଲ-ସମାବୃତାଃ | = ମୋହରୂପୀ ଜାଲରେ ଆବଦ୍ଧ ହୋଇଥିବା (ଓ) | ଅଶୁଚୌ | = ଅତ୍ୟନ୍ତ ଅପବିତ୍ର |
| | | ନରକେ | = ନରକରେ |
| | | ପତନ୍ତି | = ପଡ଼ନ୍ତି । |

ଆସୁରୀ ପ୍ରକୃତି ମନୁଷ୍ୟଙ୍କ ଲକ୍ଷଣ ।

**ଆତ୍ମସମ୍ଭାବିତାଃ ସ୍ତବ୍ଧା ଧନମାନମଦାନ୍ୱିତାଃ ।**
**ଯଜନ୍ତେ ନାମଯଜ୍ଞୈସ୍ତେ ଦମ୍ଭେନାବିଧିପୂର୍ବକମ୍ ॥ ୧୭ ॥**

ଆତ୍ମସମ୍ଭାବିତାଃ, ସ୍ତବ୍ଧାଃ, ଧନମାନମଦାନ୍ୱିତାଃ,
ଯଜନ୍ତେ, ନାମଯଜ୍ଞୈଃ, ତେ, ଦମ୍ଭେନ, ଅବିଧିପୂର୍ବକମ୍ ।।୧୭।।

**ତଥା—**

| | | | |
|---|---|---|---|
| ତେ | = ସେହି | | ପ୍ରସିଦ୍ଧି ପାଇଁ ଯଜ୍ଞମାନଙ୍କ ଦ୍ୱାରା |
| ଆତ୍ମସମ୍ଭାବିତାଃ | = ନିଜେ ହିଁ ନିଜକୁ ଶ୍ରେଷ୍ଠ ମନେ କରୁଥିବା | ଦମ୍ଭେନ | = ଦମ୍ଭ ପୂର୍ବକ ଅର୍ଥାତ୍ ବାହ୍ୟ ଆଡମ୍ବର ଦ୍ୱାରା |
| ସ୍ତବ୍ଧାଃ | = ଗର୍ବୀ ପୁରୁଷମାନେ | | |
| ଧନମାନ-ମଦାନ୍ୱିତାଃ | = ଧନ ଓ ମାନର ମଦରେ ଯୁକ୍ତ ହୋଇ | ଅବିଧିପୂର୍ବକମ୍ | = ଶାସ୍ତ୍ରବିଧି ରହିତ ହୋଇ |
| ନାମଯଜ୍ଞୈଃ | = କେବଳ ନାମର | ଯଜନ୍ତେ | = ଯଜନ କରନ୍ତି । |

ଅହଙ୍କାରଂ ବଳଂ ଦର୍ପଂ କାମଂ କ୍ରୋଧଂ ଚ ସଂଶ୍ରିତାଃ ।
ମାମାତ୍ମପରଦେହେଷୁ ପ୍ରଦ୍ୱିଷନ୍ତୋଽଭ୍ୟସୂୟକାଃ ॥ ୧୮ ॥

ଅହଙ୍କାରମ୍, ବଳମ୍, ଦର୍ପମ୍, କାମମ୍, କ୍ରୋଧମ୍, ଚ, ସଂଶ୍ରିତାଃ,
ମାମ୍, ଆତ୍ମପରଦେହେଷୁ, ପ୍ରଦ୍ୱିଷନ୍ତଃ, ଅଭ୍ୟସୂୟକାଃ ।।୧୮।।

**ତଥା ସେମାନେ—**

| | | | |
|---|---|---|---|
| ଅହଂକାରମ୍ | = ଅହଂକାର, | | ପୁରୁଷମାନେ |
| ବଳମ୍ | = ବଳ, | ଆତ୍ମପର- | = (ସେମାନଙ୍କର) |
| ଦର୍ପମ୍ | = ଗର୍ବ, | ଦେହେଷୁ | ନିଜର ଓ |
| କାମମ୍ | = କାମନା, (ଓ) | | ଅନ୍ୟମାନଙ୍କ |
| କ୍ରୋଧମ୍ | = କ୍ରୋଧାଦିର | | ଶରୀରରେ |
| ସଂଶ୍ରିତାଃ | = ପରାୟଣ ହୋଇ | | ଅଧିଷ୍ଠିତ ଥିବା |
| ଚ | = ଓ | ମାମ୍ | = ଅନ୍ତର୍ଯ୍ୟାମୀରୂପୀ |
| ଅଭ୍ୟସୂୟକାଃ | = ଅନ୍ୟମାନଙ୍କର ନିନ୍ଦା | | ମୋ' ସହ ହିଁ |
| | କରୁଥିବା (ସେହି) | ପ୍ରଦ୍ୱିଷନ୍ତଃ | = ଦ୍ୱେଷ କରନ୍ତି । |

ଦ୍ୱେଷ କରୁଥିବା ନରାଧମଙ୍କୁ ଆସୁରୀ ଯୋନି ପ୍ରାପ୍ତି ।

ତାନହଂ ଦ୍ୱିଷତଃ କ୍ରୂରାନ୍ ସଂସାରେଷୁ ନରାଧମାନ୍ ।
କ୍ଷିପାମ୍ୟଜସ୍ରମଶୁଭାନାସୁରୀଷ୍ୱେବ ଯୋନିଷୁ ॥ ୧୯ ॥

ତାନ୍, ଅହମ୍, ଦ୍ୱିଷତଃ, କ୍ରୂରାନ୍, ସଂସାରେଷୁ, ନରାଧମାନ୍,
କ୍ଷିପାମି, ଅଜସ୍ରମ୍, ଅଶୁଭାନ୍, ଆସୁରୀଷୁ, ଏବ, ଯୋନିଷୁ ।।୧୯।।

**ଏହିପରି —**

| | | | |
|---|---|---|---|
| ତାନ୍ | = ସେହି | ଅଶୁଭାନ୍ | = ପାପାଚାରୀ (ଓ) |
| ଦ୍ୱିଷତଃ | = ଦ୍ୱେଷକାରୀ, | କ୍ରୂରାନ୍ | = କ୍ରୂରକର୍ମା |

| | | | |
|---|---|---|---|
| ନରାଧମାନ୍ | = ନରାଧମମାନଙ୍କୁ | ଆସୁରୀଷୁ | = ଆସୁରୀ |
| ଅହମ୍ | = ମୁଁ | ଯୋନିଷୁ | = ଯୋନିମାନଙ୍କରେ |
| ସଂସାରେଷୁ | = ସଂସାରରେ | ଏବ | = ହିଁ |
| ଅଜସ୍ରମ୍ | = ବାରମ୍ବାର | କ୍ଷିପାମି | = ନିକ୍ଷେପ କରେ । |

ଆସୁରୀ ସ୍ୱଭାବ ମନୁଷ୍ୟଙ୍କ ଅଧୋଗତି ପ୍ରାପ୍ତି ।

ଆସୁରୀଂ ଯୋନିମାପନ୍ନା ମୂଢ଼ା ଜନ୍ମନି ଜନ୍ମନି ।
ମାମପ୍ରାପ୍ୟୈବ କୌନ୍ତେୟ ତତୋ ଯାନ୍ତ୍ୟଧମାଂ ଗତିମ୍ ॥ ୨୦ ॥

ଆସୁରୀମ୍, ଯୋନିମ୍, ଆପନ୍ନାଃ, ମୂଢ଼ାଃ, ଜନ୍ମନି, ଜନ୍ମନି,
ମାମ୍, ଅପ୍ରାପ୍ୟ, ଏବ, କୌନ୍ତେୟ, ତତଃ, ଯାନ୍ତି, ଅଧମାମ୍, ଗତିମ୍ ।।୨୦।।

**ଏଥିପାଇଁ—**

| | | | |
|---|---|---|---|
| କୌନ୍ତେୟ | = ହେ ଅର୍ଜୁନ ! | ଯୋନିମ୍ | = ଯୋନିକୁ |
| ମୂଢ଼ାଃ | = (ସେହି) ମୂଢ଼ମାନେ | ଆପନ୍ନାଃ | = ପାଆନ୍ତି (ଏବଂ) |
| ମାମ୍ | = ମୋତେ | ତତଃ | = ତା'ଠାରୁ ବି |
| ଅପ୍ରାପ୍ୟ | = ନ ପାଇ | ଅଧମାମ୍ | = ଅତି ନୀଚ |
| ଏବ | = ହିଁ * | ଗତିମ୍ | = ଗତିକୁ |
| ଜନ୍ମନି, ଜନ୍ମନି | = ଜନ୍ମ ଜନ୍ମାନ୍ତରରେ | ଯାନ୍ତି | = ପାଆନ୍ତି ଅର୍ଥାତ୍ ଘୋର ନର୍କରେ ପଡ଼ନ୍ତି । |
| ଆସୁରୀମ୍ | = ଆସୁରୀ | | |

ଆସୁରୀ ସମ୍ପଦାର ପ୍ରଧାନ ଲକ୍ଷଣ- କାମ, କ୍ରୋଧ

ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ ।
କାମଃ କ୍ରୋଧସ୍ତଥା ଲୋଭସ୍ତସ୍ମାଦେତତ୍ତ୍ରୟଂ ତ୍ୟଜେତ୍ ॥ ୨୧ ॥

* ଏଠାରେ 'ଏବ' ପଦ ଦେଇ ସତେ ଯେମିତି ଭଗବାନ୍ ପଶ୍ଚାତ୍ତାପ କରୁଛନ୍ତି ଯେ ଏହି ଦୁର୍ଲଭ ମନୁଷ୍ୟ ଶରୀର ପାଇ ମୋର ପ୍ରାପ୍ତି ପାଇଁ ଯେଉଁ ଅବସର ମିଳିଥିଲା, ଏପରି ସୁବର୍ଣ୍ଣ ସୁଯୋଗକୁ ହରାଇ ଏହି ଅଜ୍ଞାନୀ ଲୋକମାନେ ଘୋର ଗତିକୁ ପ୍ରାପ୍ତ ହେଉଛନ୍ତି ।

ଏବଂ ଲୋଭକୁ ନରକର ଦ୍ୱାର ବୋଲି ଛନ୍ତି ।

ତ୍ରିବିଧମ୍, ନରକସ୍ୟ, ଇଦମ୍, ଦ୍ୱାରମ୍, ନାଶନମ୍, ଆତ୍ମନଃ,
କାମଃ, କ୍ରୋଧଃ, ତଥା, ଲୋଭଃ, ତସ୍ମାତ୍, ଏତତ୍, ତ୍ରୟମ୍, ତ୍ୟଜେତ୍ ।।୨୧।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| କାମଃ | = କାମ * | ନାଶନମ୍ | = ବିନାଶକ ଅଟନ୍ତି (ଅର୍ଥାତ୍ ତାହାର ଅଧୋଗତି ଘଟାଇ ଦିଅନ୍ତି) । |
| କ୍ରୋଧଃ | = କ୍ରୋଧ | ତସ୍ମାତ୍ | = ତେଣୁ |
| ତଥା | = ତଥା | ଏତତ୍ | = ଏହି |
| ଲୋଭଃ | = ଲୋଭ | ତ୍ରୟମ୍ | = ତିନିଟିକୁ |
| ଇଦମ୍ | = ଏହି | ତ୍ୟଜେତ୍ | = ତ୍ୟାଗ କରିବା ଉଚିତ । |
| ତ୍ରିବିଧମ୍ | = ତିନି ପ୍ରକାର | | |
| ନରକସ୍ୟ | = ନରକର | | |
| ଦ୍ୱାରମ୍ | = ଦ୍ୱାର (ହିଁ) | | |
| ଆତ୍ମନଃ | = ଆତ୍ମାର | | |

ଶ୍ରେୟ ସାଧନ ଦ୍ୱାରା ପରମଗତି ପ୍ରାପ୍ତି ।

**ଏତୈର୍ବିମୁକ୍ତଃ କୌନ୍ତେୟ ତମୋଦ୍ୱାରୈସ୍ତ୍ରିଭିର୍ନରଃ ।**
**ଆଚରତ୍ୟାତ୍ମନଃ ଶ୍ରେୟସ୍ତତୋ ଯାତି ପରାଂ ଗତିମ୍ ॥ ୨୨ ॥**

ଏତୈଃ, ବିମୁକ୍ତଃ, କୌନ୍ତେୟ, ତମୋଦ୍ୱାରୈଃ, ତ୍ରିଭିଃ, ନରଃ,
ଆଚରତି, ଆତ୍ମନଃ, ଶ୍ରେୟଃ, ତତଃ, ଯାତି, ପରାମ୍, ଗତିମ୍ ।।୨୨।।

**କାହିଁକି ନା —**

| | | | |
|---|---|---|---|
| କୌନ୍ତେୟ | = ହେ ଅର୍ଜୁନ ! | ତମୋଦ୍ୱାରୈଃ | = ନରକର ଦ୍ୱାର ମାନଙ୍କରୁ |
| ଏତୈଃ | = ଏହି | | |
| ତ୍ରିଭିଃ | = ତିନି | | |

* ସମସ୍ତ ଅନର୍ଥର ମୂଳ ଏବଂ ନରକ ପ୍ରାପ୍ତିର ହେତୁ ଭାବେ ଏଠାରେ କାମ, କ୍ରୋଧ ଏବଂ ଲୋଭକୁ 'ନରକସ୍ୟ ଦ୍ୱାରମ୍' ବୋଲି କୁହାଯାଇଛି ।

| | | | |
|---|---|---|---|
| ବିମୁକ୍ତଃ | = ମୁକ୍ତ ହୋଇଥିବା[୧] | ତତଃ | = ତାହାଦ୍ୱାରା (ସେ) |
| ନରଃ | = ପୁରୁଷ | ପରାମ୍ | = ପରମ |
| ଆତ୍ମନଃ | = ନିଜର | ଗତିମ୍ | = ଗତିକୁ |
| ଶ୍ରେୟଃ | = କଲ୍ୟାଣ | ଯାତି | = ପାଏ ଅର୍ଥାତ୍ ମୋତେ ପାଏ । |
| ଆଚରତି | = ଆଚରଣ କରେ ।[୨] | | |

ଶାସ୍ତ୍ରବିଧିକୁ ତ୍ୟାଗ କରି ଇଚ୍ଛା ଅନୁସାରେ କର୍ମ କରିବା ମନୁଷ୍ୟ ମାନଙ୍କୁ ନିନ୍ଦା ।

**ଯଃ ଶାସ୍ତ୍ରବିଧିମୁତ୍ସୃଜ୍ୟ ବର୍ତ୍ତତେ କାମକାରତଃ ।**
**ନ ସ ସିଦ୍ଧିମବାପ୍ନୋତି ନ ସୁଖଂ ନ ପରାଂ ଗତିମ୍ ॥ ୨୩ ॥**

ଯଃ, ଶାସ୍ତ୍ରବିଧିମ୍, ଉତ୍ସୃଜ୍ୟ, ବର୍ତ୍ତତେ, କାମକାରତଃ,
ନ, ସଃ, ସିଦ୍ଧିମ୍, ଅବାପ୍ନୋତି, ନ, ସୁଖମ୍, ନ, ପରାମ୍, ଗତିମ୍, ।।୨୩।।

ଏବଂ —

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | ସିଦ୍ଧିମ୍ | = ସିଦ୍ଧିକୁ |
| ଶାସ୍ତ୍ରବିଧିମ୍ | = ଶାସ୍ତ୍ର ବିଧିକୁ | ନ, ଅବାପ୍ନୋତି | = ପ୍ରାପ୍ତ ହୁଏ ନାହିଁ, (କି) |
| ଉତ୍ସୃଜ୍ୟ | = ତ୍ୟାଗ କରି | | |
| କାମକାରତଃ | = ନିଜ ଇଚ୍ଛାନୁସାରେ ମନମୁଖି | ନ, ପରାମ୍, ଗତିମ୍ | = ପରମ ଗତିକୁ ପ୍ରାପ୍ତ ହୁଏ ନାହିଁ, (କି) |
| ବର୍ତ୍ତତେ | = ଆଚରଣ କରେ, | | |
| ସଃ | = ସେ | ନ, ସୁଖମ୍ | = ସୁଖ ପାଏ ନାହିଁ । |

ଶାସ୍ତ୍ରାନୁକୂଳ କର୍ମ କରିବା ପାଇଁ ପ୍ରେରଣା ।

**ତସ୍ମାଚ୍ଛାସ୍ତ୍ରଂ ପ୍ରମାଣଂ ତେ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ ।**
**ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମ କର୍ତ୍ତୁମିହାର୍ହସି ॥ ୨୪ ॥**

---

୧-ଅର୍ଥାତ୍ କାମ, କ୍ରୋଧ ଏବଂ ଲୋଭ ଆଦି ବିକାରରୁ 'ମୁକ୍ତ' ଅଟେ ।

୨-ନିଜର ଉଦ୍ଧାରପାଇଁ ଭଗବତ୍ ଆଜ୍ଞା ଅନୁସାରେ ପ୍ରବୃତ୍ତ ହେବା ହିଁ 'ନିଜର କଲ୍ୟାଣକୁ' ଆଚରଣ କରିବା ।

ତସ୍ମାତ୍, ଶାସ୍ତ୍ରମ୍, ପ୍ରମାଣମ୍, ତେ, କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ,
ଜ୍ଞାତ୍ୱା, ଶାସ୍ତ୍ରବିଧାନୋକ୍ତମ୍, କର୍ମ, କର୍ତ୍ତୁମ୍, ଇହ, ଅର୍ହସି ।।୨୪।।

| | | | |
|---|---|---|---|
| ତସ୍ମାତ୍ | = ତେଣୁ | ପ୍ରମାଣମ୍ | = ପ୍ରମାଣ ଅଟେ । |
| ତେ | = ତୁମ ପାଇଁ | (ଏବମ୍) | = ଏପରି |
| | | ଜ୍ଞାତ୍ୱା | = ଜାଣି (ତୁମେ) |
| ଇହ | = ଏହି | ଶାସ୍ତ୍ରବିଧାନୋକ୍ତମ୍ | = ଶାସ୍ତ୍ରବିଧି ଦ୍ୱାରା ନିୟତ |
| କାର୍ଯ୍ୟାକାର୍ଯ୍ୟ-ବ୍ୟବସ୍ଥିତୌ | = କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟର ନିର୍ଣ୍ଣୟରେ | କର୍ମ | = କର୍ମ ହିଁ |
| | | କର୍ତ୍ତୁମ୍ | = କରିବା |
| ଶାସ୍ତ୍ରମ୍ | = ଶାସ୍ତ୍ର (ହିଁ) | ଅର୍ହସି | = ଉଚିତ । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଦୈବାସୁରସମ୍ପଦ୍‌ବିଭାଗଯୋଗୋ ନାମ ଷୋଡ଼ଶୋଽଧ୍ୟାୟଃ ॥ ୧୬ ॥*



**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ଦୈବାସୁରସମ୍ପଦ୍‌ବିଭାଗଯୋଗ' ନାମକ ଷୋଡ଼ଶ ଅଧ୍ୟାୟ ପୂର୍ଣ୍ଣ ହେଲା ।।୧୬।।**

**ହରିଃ ଓଁ ତତ୍‌ସତ୍    ହରିଃ ଓଁ ତତ୍‌ସତ୍    ହରିଃ ଓଁ ତତ୍‌ସତ୍**

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ସପ୍ତଦଶ ଅଧ୍ୟାୟ

## ଶ୍ରଦ୍ଧାତ୍ରୟବିଭାଗଯୋଗ

**ପ୍ରଧାନ ବିଷୟ**

୧ ରୁ ୬ - ଶ୍ରଦ୍ଧା ଯୁକ୍ତ ଅଥଚ ଶାସ୍ତ୍ର ବିପରୀତ ଘୋର ତପ କରୁଥିବା ମନୁଷ୍ୟଙ୍କ ବିଷୟ,

୭ ରୁ ୨୨ - ଆହାର, ଯଜ୍ଞ, ତପ ଏବଂ ଦାନର ପୃଥକ୍-ପୃଥକ୍ ଭେଦ,

୨୩ ରୁ ୨୮ - ଓଁ, ତତ୍, ସତ୍ ପ୍ରୟୋଗର ବ୍ୟାଖ୍ୟା ।

*ଅର୍ଜୁନ ଉବାଚ*

ଶାସ୍ତ୍ରବିଧିକୁ ତ୍ୟାଗ କରି ଶ୍ରଦ୍ଧା ସହ ପୂଜା କରୁଥିବା ପୁରୁଷଙ୍କ ନିଷ୍ଠା ବିଷୟରେ ଅର୍ଜୁନଙ୍କ ପ୍ରଶ୍ନ ।

**ଯେ ଶାସ୍ତ୍ରବିଧିମୁତ୍ସୃଜ୍ୟ ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।**
**ତେଷାଂ ନିଷ୍ଠା ତୁ କା କୃଷ୍ଣ ସତ୍ତ୍ୱମାହୋ ରଜସ୍ତମଃ ॥ ୧ ॥**

ଯେ, ଶାସ୍ତ୍ରବିଧିମ୍, ଉତ୍ସୃଜ୍ୟ, ଯଜନ୍ତେ, ଶ୍ରଦ୍ଧୟା, ଅନ୍ୱିତାଃ,
ତେଷାମ୍, ନିଷ୍ଠା, ତୁ, କା, କୃଷ୍ଣ, ସତ୍ତ୍ୱମ୍, ଆହୋ, ରଜଃ, ତମଃ ।।୧ ।।

**ଏହିପରି ଭଗବାନଙ୍କର ବଚନକୁ ଶୁଣି ଅର୍ଜୁନ କହିଲେ—**

| | | | |
|---|---|---|---|
| କୃଷ୍ଣ | = ହେ କୃଷ୍ଣ ! | ଅନ୍ୱିତାଃ | = ଯୁକ୍ତ ହୋଇ |
| ଯେ | = ଯେଉଁ ମନୁଷ୍ୟମାନେ | ଯଜନ୍ତେ | = ଦେବାଦିଙ୍କୁ ପୂଜା କରନ୍ତି, |
| ଶାସ୍ତ୍ରବିଧିମ୍ | = ଶାସ୍ତ୍ରବିଧିକୁ | ତେଷାମ୍ | = ସେମାନଙ୍କର |
| ଉତ୍ସୃଜ୍ୟ | = ତ୍ୟାଗ କରି | ନିଷ୍ଠା | = ସ୍ଥିତି |
| ଶ୍ରଦ୍ଧୟା | = ଶ୍ରଦ୍ଧାରେ | ତୁ | = ପୁଣି |

| | | | |
|---|---|---|---|
| କା | = କେଉଁ ପ୍ରକାରର ? | ଆହୋ | = ଅଥବା |
| ସତ୍ତ୍ୱମ୍ | = ସାତ୍ତ୍ୱିକୀ, | ରଜଃ | = ରାଜସୀ (ନା) |
| | | ତମଃ | = ତାମସୀ ? |

ଗୁଣ ଅନୁସାରେ ତିନି ପ୍ରକାରର ସ୍ୱାଭାବିକ ଶ୍ରଦ୍ଧାର କଥନ ।

*ଶ୍ରୀଭଗବାନ ଉବାଚ*

ତ୍ରିବିଧା ଭବତି ଶ୍ରଦ୍ଧା ଦେହିନାଂ ସା ସ୍ୱଭାବଜା ।
ସାତ୍ତ୍ୱିକୀ ରାଜସୀ ଚୈବ ତାମସୀ ଚେତି ତାଂ ଶୃଣୁ ॥ ୨ ॥

ତ୍ରିବିଧା, ଭବତି, ଶ୍ରଦ୍ଧା, ଦେହିନାମ୍, ସା, ସ୍ୱଭାବଜା,
ସାତ୍ତ୍ୱିକୀ, ରାଜସୀ, ଚ, ଏବ, ତାମସୀ, ଚ, ଇତି, ତାମ୍, ଶୃଣୁ ।।୨ ।।

**ଏହି ପ୍ରକାର ଅର୍ଜୁନଙ୍କ ପଚାରିବାରେ ଭଗବାନ କହିଲେ—**
**ହେ ଅର୍ଜୁନ!—**

| | | | |
|---|---|---|---|
| ଦେହିନାମ୍ | = ମନୁଷ୍ୟମାନଙ୍କର | ଚ | = ତଥା |
| ସା | = ସେହି (ଶାସ୍ତ୍ରୀୟ ସଂସ୍କାରରୁ ରହିତ) | ତାମସୀ | = ତାମସୀ- |
| | | ଇତି | = ଏପରି |
| ସ୍ୱଭାବଜା | = (କେବଳ) ସ୍ୱଭାବରୁ ଉତ୍ପନ୍ନ* | ତ୍ରିବିଧା | = ତିନି ପ୍ରକାର |
| | | ଏବ | = ହିଁ |
| | | ଭବତି | = ହୋଇଥାଏ । |
| ଶ୍ରଦ୍ଧା | = ଶ୍ରଦ୍ଧା | ତାମ୍ | = ତାହା (ତୁମେ) |
| ସାତ୍ତ୍ୱିକୀ | = ସାତ୍ତ୍ୱିକୀ | | |
| ଚ | = ଓ | (ମତ୍ତଃ) | = ମୋ' ଠାରୁ |
| ରାଜସୀ | = ରାଜସୀ | ଶୃଣୁ | = ଶୁଣ । |

* ଅନନ୍ତ ଜନ୍ମରେ କରାଯାଇଥିବା କର୍ମର ସଞ୍ଚିତ ସଂସ୍କାର ଦ୍ୱାରା ଉତ୍ପନ୍ନ ଶ୍ରଦ୍ଧାକୁ 'ସ୍ୱଭାବଜ ଶ୍ରଦ୍ଧା' କୁହାଯାଏ ।

ଶ୍ରଦ୍ଧା ଅନୁସାରେ ପୁରୁଷର ସ୍ୱରୂପ ।

**ସତ୍ତ୍ୱାନୁରୂପା ସର୍ବସ୍ୟ ଶ୍ରଦ୍ଧା ଭବତି ଭାରତ ।**
**ଶ୍ରଦ୍ଧାମୟୋଽୟଂ ପୁରୁଷୋ ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ ॥ ୩ ॥**

ସତ୍ତ୍ୱାନୁରୂପା, ସର୍ବସ୍ୟ, ଶ୍ରଦ୍ଧା, ଭବତି, ଭାରତ,
ଶ୍ରଦ୍ଧାମୟଃ, ଅୟମ୍, ପୁରୁଷଃ, ଯଃ, ଯଚ୍ଛ୍ରଦ୍ଧଃ, ସଃ, ଏବ, ସଃ ।।୩।।

| | | | |
|---|---|---|---|
| ଭାରତ | = ହେ ଭାରତ ! | ଶ୍ରଦ୍ଧାମୟଃ | = ଶ୍ରଦ୍ଧାଯୁକ୍ତ, |
| ସର୍ବସ୍ୟ | = ସମସ୍ତ ମନୁଷ୍ୟଙ୍କର | (ଅତଃ) | = ଏଣୁ |
| ଶ୍ରଦ୍ଧା | = ଶ୍ରଦ୍ଧା | ଯଃ | = ଯେଉଁ ପୁରୁଷ |
| ସତ୍ତ୍ୱାନୁରୂପା | = ସେମାନଙ୍କ ଅନ୍ତଃକରଣର ଅନୁରୂପ | ଯଚ୍ଛ୍ରଦ୍ଧଃ | = ଯେପରି ଶ୍ରଦ୍ଧାଯୁକ୍ତ, |
| | | ସଃ | = ସେ ସ୍ୱୟଂ |
| ଭବତି | = ହୁଏ । | ଏବ | = ମଧ୍ୟ |
| ଅୟମ୍ | = ଏହି | ସଃ | = ସେପରି |
| ପୁରୁଷଃ | = ପୁରୁଷ | | (ଅଟେ) । |

ଦେବ, ଯକ୍ଷ ଏବଂ ପ୍ରେତାଦିଙ୍କ ପୂଜା ଦ୍ୱାରା ତ୍ରିବିଧ ଶ୍ରଦ୍ଧାଯୁକ୍ତ ପୁରୁଷଙ୍କର ପରିଚୟ ।

**ଯଜନ୍ତେ ସାତ୍ତ୍ୱିକା ଦେବାନ୍ ଯକ୍ଷରକ୍ଷାଂସି ରାଜସାଃ ।**
**ପ୍ରେତାନ୍ ଭୂତଗଣାଂଶ୍ଚାନ୍ୟେ ଯଜନ୍ତେ ତାମସା ଜନାଃ ॥ ୪ ॥**

ଯଜନ୍ତେ, ସାତ୍ତ୍ୱିକାଃ, ଦେବାନ୍, ଯକ୍ଷରକ୍ଷାଂସି, ରାଜସାଃ,
ପ୍ରେତାନ୍, ଭୂତଗଣାନ୍, ଚ, ଅନ୍ୟେ, ଯଜନ୍ତେ, ତାମସାଃ, ଜନାଃ ।।୪।।

**ସେମାନଙ୍କ ମଧ୍ୟରେ—**

| | | | |
|---|---|---|---|
| ସାତ୍ତ୍ୱିକାଃ | = ସାତ୍ତ୍ୱିକ ଲୋକେ | ଯକ୍ଷରକ୍ଷାଂସି | = ଯକ୍ଷ ଓ ରାକ୍ଷସମାନଙ୍କୁ (ତଥା) |
| ଦେବାନ୍ | = ଦେବତାମାନଙ୍କୁ | | |
| ଯଜନ୍ତେ | = ପୂଜା କରନ୍ତି | | |
| ରାଜସାଃ | = ରାଜସ ଲୋକେ | ଅନ୍ୟେ | = ଅନ୍ୟ (ଯେଉଁ) |

| | | | |
|---|---|---|---|
| ତାମସାଃ | = ତାମସ | ଚ | = ଏବଂ |
| ଜନାଃ | = ଲୋକେ ଅଛନ୍ତି | ଭୂତଗଣାନ୍ | = ଭୂତଗଣଙ୍କୁ |
| ପ୍ରେତାନ୍ | = ସେମାନେ ପ୍ରେତମାନଙ୍କୁ | ଯଜନ୍ତେ | = ପୂଜା କରନ୍ତି । |

ଶାସ୍ତ୍ର ବିରୁଦ୍ଧ ଘୋର ତପ କରିବା ଲୋକଙ୍କୁ ନିନ୍ଦା ।

**ଅଶାସ୍ତ୍ରବିହିତଂ ଘୋରଂ ତପ୍ୟନ୍ତେ ଯେ ତପୋ ଜନାଃ ।**
**ଦମ୍ଭାହଙ୍କାରସଂଯୁକ୍ତାଃ କାମରାଗବଲାନ୍ୱିତାଃ ॥ ୫ ॥**

ଅଶାସ୍ତ୍ରବିହିତମ୍, ଘୋରମ୍, ତପ୍ୟନ୍ତେ, ଯେ, ତପଃ, ଜନାଃ,
ଦମ୍ଭାହଙ୍କାରସଂଯୁକ୍ତାଃ, କାମରାଗବଲାନ୍ୱିତାଃ ।।୫।।

**ଏବଂ ହେ ଅର୍ଜୁନ ।—**

| | | | |
|---|---|---|---|
| ଯେ, ଜନାଃ | = ଯେଉଁମାନେ | ଦମ୍ଭାହଙ୍କାର- ସଂଯୁକ୍ତାଃ | = ଦମ୍ଭ ଏବଂ ଅହଙ୍କାରରେ ଯୁକ୍ତ (ଏବଂ) |
| ଅଶାସ୍ତ୍ରବିହିତମ୍ | = ଶାସ୍ତ୍ରବିଧି ରହିତ (କେବଳ ମନଃକଳ୍ପିତ) | | |
| ଘୋରମ୍, ତପଃ | = ଘୋର ତପ | କାମରାଗ- ବଲାନ୍ୱିତାଃ | = କାମନା, ଆସକ୍ତି ଓ ବଳର ଅଭିମାନରେ ମଧ୍ୟ ଜଡ଼ିତ - - |
| ତପ୍ୟନ୍ତେ | = ଆଚରଣ କରନ୍ତି (ତଥା) | | |

**କର୍ଶୟନ୍ତଃ ଶରୀରସ୍ଥଂ ଭୂତଗ୍ରାମମଚେତସଃ ।**
**ମାଂ ଚୈବାନ୍ତଃଶରୀରସ୍ଥଂ ତାନ୍ ବିଦ୍ଧ୍ୟାସୁରନିଶ୍ଚୟାନ୍ ॥ ୬ ॥**

କର୍ଶୟନ୍ତଃ, ଶରୀରସ୍ଥମ୍, ଭୂତଗ୍ରାମମ୍, ଅଚେତସଃ, ମାମ୍,
ଚ, ଏବ, ଅନ୍ତଃଶରୀରସ୍ଥମ୍, ତାନ୍, ବିଦ୍ଧି, ଆସୁରନିଶ୍ଚୟାନ୍।।୬।।

**ତଥା ଯେଉଁମାନେ —**

| | | | |
|---|---|---|---|
| ଶରୀରସ୍ଥମ୍ | = ଶରୀର ରୂପରେ ଅବସ୍ଥିତ | କର୍ଶୟନ୍ତଃ | = କୃଶ (କ୍ଷୀଣ) କରାଉଥିବା[2] |
| ଭୂତଗ୍ରାମମ୍ | = ଭୂତ ସମୁଦାୟକୁ[1] | ତାନ୍ | = ସେହି |
| ଚ | = ଏବଂ | ଅଚେତସଃ | = ଅଜ୍ଞାନୀମାନଙ୍କୁ (ତୁମେ) |
| ଅନ୍ତଃଶରୀରସ୍ଥମ୍ | = ଅନ୍ତଃକରଣରେ ସ୍ଥିତ | ଆସୁରନିଶ୍ଚୟାନ୍ | = ଆସୁର ସ୍ୱଭାବର ଲୋକ (ବୋଲି) |
| ମାମ୍ | = ମୋତେ ଅର୍ଥାତ୍ (ପରମାତ୍ମାଙ୍କୁ) | ବିଦ୍ଧି | = ଜାଣ । |
| ଏବ | = ମଧ୍ୟ | | |

ଆହାର, ଯଜ୍ଞ, ତପ ଏବଂ ଦାନର ଭେଦ ଶୁଣିବା ପାଇଁ ଭଗବାନଙ୍କ ଆଜ୍ଞା ।

**ଆହାରସ୍ତ୍ୱପି ସର୍ବସ୍ୟ ତ୍ରିବିଧୋ ଭବତି ପ୍ରିୟଃ ।**
**ଯଜ୍ଞସ୍ତପସ୍ତଥା ଦାନଂ ତେଷାଂ ଭେଦମିମଂ ଶୃଣୁ ॥ ୭ ॥**

ଆହାରଃ, ତୁ, ଅପି, ସର୍ବସ୍ୟ, ତ୍ରିବିଧଃ, ଭବତି, ପ୍ରିୟଃ, ଯଜ୍ଞଃ, ତପଃ, ତଥା, ଦାନମ୍, ତେଷାମ୍, ଭେଦମ୍, ଇମମ୍, ଶୃଣୁ ।।୭।।

**ଏବଂ ହେ ଅର୍ଜୁନ! ଯେପରି ଶ୍ରଦ୍ଧା ତିନି ପ୍ରକାର ହୁଏ, ସେପରି ହିଁ—**

| | | | |
|---|---|---|---|
| ଆହାରଃ | = ଆହାର (ଖାଦ୍ୟ) | ପ୍ରିୟଃ | = ପ୍ରିୟ |
| ଅପି | = ମଧ୍ୟ | ଭବତି | = ହୁଏ |
| ସର୍ବସ୍ୟ | = ସମସ୍ତଙ୍କର (ନିଜ ନିଜର ପ୍ରକୃତି ଅନୁସାରେ) | ତୁ | = ଏବଂ |
| | | ତଥା | = ସେହିପରି |
| | | ଯଜ୍ଞଃ | = ଯଜ୍ଞ, |
| ତ୍ରିବିଧଃ | = ତିନି ପ୍ରକାରର | ତପଃ | = ତପ (ଏବଂ) |

୧ - ଅର୍ଥାତ୍ ଶରୀର, ମନ ଏବଂ ଇନ୍ଦ୍ରିୟାଦିର ରୂପରେ ପରିଣତ ଆକାଶାଦି ପଞ୍ଚଭୂତ ।

୨ - ଶାସ୍ତ୍ରବିରୁଦ୍ଧ ଉପବାସାଦି ଘୋର ଆଚରଣଦ୍ୱାରା ଶରୀରକୁ ଶୁଷ୍କ କରି ଏବଂ ଭଗବାନଙ୍କ ଅଂଶସ୍ୱରୂପ ଜୀବାତ୍ମାକୁ ତଥା ଭୂତସମୁଦାୟକୁ କ୍ଲେଶ ପହଞ୍ଚାଇବା ହିଁ ଅନ୍ତର୍ଯାମୀ ପରମାତ୍ମାଙ୍କୁ 'କୃଶ କରିବା' ବୋଲି କୁହାଯାଏ ।

| | | | |
|---|---|---|---|
| ଦାନମ୍ | = ଦାନ (ମଧ୍ୟ ତିନି ପ୍ରକାରର ହୁଏ) । | ଭେଦମ୍ | = ବିଭାଗକୁ |
| ତେଷାମ୍ | = ସେ ଗୁଡ଼ିକର | ଶୃଣୁ | = (ତୁମେ ମୋ'ଠାରୁ) ଶୁଣ । |
| ଇମମ୍ | = ଏହି (ପୃଥକ୍-ପୃଥକ୍) | | |

ସତ୍ତ୍ୱିକ ଆହାରର ଲକ୍ଷଣ ।

ଆୟୁଃସତ୍ତ୍ୱବଳାରୋଗ୍ୟସୁଖପ୍ରୀତିବିବର୍ଧନାଃ ।
ରସ୍ୟାଃ ସ୍ନିଗ୍ଧାଃ ସ୍ଥିରା ହୃଦ୍ୟା ଆହାରାଃ ସାତ୍ତ୍ୱିକପ୍ରିୟାଃ ॥ ୮ ॥

ଆୟୁଃସତ୍ତ୍ୱବଳାରୋଗ୍ୟସୁଖପ୍ରୀତିବିବର୍ଦ୍ଧନାଃ,
ରସ୍ୟାଃ, ସ୍ନିଗ୍ଧାଃ, ସ୍ଥିରାଃ, ହୃଦ୍ୟାଃ, ଆହାରାଃ, ସାତ୍ତ୍ୱିକପ୍ରିୟାଃ ।।୮।।

| | | | |
|---|---|---|---|
| ଆୟୁଃ-ସତ୍ତ୍ୱ-ବଳ-ଆରୋଗ୍ୟ-ସୁଖପ୍ରୀତି-ବିବର୍ଦ୍ଧନାଃ | = ଆୟୁ, ବୁଦ୍ଧି, ବଳ, ଆରୋଗ୍ୟ, ସୁଖ ଓ ପ୍ରୀତି ବର୍ଦ୍ଧନକାରୀ, | ସ୍ଥିରାଃ | = ସ୍ଥିର ରହୁଥିବା * (ତଥା) |
| ରସ୍ୟାଃ | = ରସଯୁକ୍ତ, | ହୃଦ୍ୟାଃ | = ସ୍ୱଭାବତଃ ମନକୁ ପ୍ରିୟ (ଏପରି) |
| ସ୍ନିଗ୍ଧାଃ | = ସ୍ନିଗ୍ଧ (ଏବଂ) | ଆହାରାଃ | = ଖାଦ୍ୟ |
| | | ସାତ୍ତ୍ୱିକପ୍ରିୟାଃ | = ସାତ୍ତ୍ୱିକ ମନୁଷ୍ୟ ମାନଙ୍କର ପ୍ରିୟ । |

ରାଜସ ଆହାରର ଲକ୍ଷଣ ।

କଟ୍ୱମ୍ଳଲବଣାତ୍ୟୁଷ୍ଣତୀକ୍ଷ୍ଣରୂକ୍ଷବିଦାହିନଃ ।
ଆହାରା ରାଜସସ୍ୟେଷ୍ଟା ଦୁଃଖଶୋକାମୟପ୍ରଦାଃ ॥ ୯ ॥

କଟ୍ୱମ୍ଳଲବଣାତ୍ୟୁଷ୍ଣତୀକ୍ଷ୍ଣରୂକ୍ଷବିଦାହିନଃ,
ଆହାରାଃ, ରାଜସସ୍ୟ, ଇଷ୍ଟାଃ, ଦୁଃଖଶୋକାମୟପ୍ରଦାଃ ।।୯।।

ଏବଂ—

* ଯେଉଁ ଭୋଜନରେ ସାରତତ୍ତ୍ୱ ବହୁତ ସମୟ ଯାଏଁ ରହେ, ତାହାକୁ 'ସ୍ଥିର ରହୁଥିବା' କୁହାଯାଏ ।

| | | | |
|---|---|---|---|
| କଟୁ - | = ପିତା, | ବିଦାହିନଃ - | = ଦାହକାରକ (ଏବଂ) |
| ଅମ୍ଳ - | = ଖଟା, | ଦୁଃଖଶୋକା- ମୟପ୍ରଦାଃ | = ଦୁଃଖ, ଚିନ୍ତା ତଥା ରୋଗ ଉତ୍ପନ୍ନକାରୀ |
| ଲବଣ - | = ଲୁଣିଆ, | | |
| ଅତ୍ୟୁଷ୍ଣ - | = ଅତି ଗରମ, | ଆହାରାଃ | = ଆହାର ଗୁଡ଼ିକ |
| ତୀକ୍ଷ୍ଣ - | = ରାଗ, | ରାଜସସ୍ୟ | = ରାଜସ ଲୋକର |
| ରୁକ୍ଷ - | = ଶୁଖିଲା, | ଇଷ୍ଟାଃ | = ପ୍ରିୟ ଅଟେ । |

ତାମସ ଆହାରର ଲକ୍ଷଣ ।

**ଯାତଯାମଂ ଗତରସଂ ପୂତି ପର୍ଯ୍ୟୁଷିତଂ ଚ ଯତ୍ ।**
**ଉଚ୍ଛିଷ୍ଟମପି ଚାମେଧ୍ୟଂ ଭୋଜନଂ ତାମସପ୍ରିୟମ୍ ॥ ୧୦ ॥**

ଯାତଯାମମ୍, ଗତରସମ୍, ପୂତି, ପର୍ଯ୍ୟୁଷିତମ୍, ଚ, ଯତ୍,
ଉଚ୍ଛିଷ୍ଟମ୍, ଅପି, ଚ, ଅମେଧ୍ୟମ୍, ଭୋଜନମ୍, ତାମସପ୍ରିୟମ୍ ।।୧୦।।

**ତଥା—**

| | | | |
|---|---|---|---|
| ଯତ୍ | = ଯେଉଁ | ଚ | = ତଥା (ଯେଉଁ ଖାଦ୍ୟ) |
| ଭୋଜନମ୍ | = ଖାଦ୍ୟ | | |
| ଯାତଯାମମ୍ | = ଅର୍ଦ୍ଧପକ୍ୱ, | ଅମେଧ୍ୟମ୍ | = ଅପବିତ୍ର |
| ଗତରସମ୍ | = ରସରହିତ, | ଅପି | = ମଧ୍ୟ, |
| ପୂତି | = ଦୁର୍ଗନ୍ଧଯୁକ୍ତ, | (ତତ୍) | = ସେହି ଖାଦ୍ୟ |
| ପର୍ଯ୍ୟୁଷିତମ୍ | = ବାସି | ତାମସପ୍ରିୟମ୍ | = ତାମସ ପୁରୁଷଙ୍କ ପ୍ରିୟ । |
| ଚ | = ଏବଂ | | |
| ଉଚ୍ଛିଷ୍ଟମ୍ | = ଅଇଁଠା | | |

ସାତ୍ତ୍ୱିକ ଯଜ୍ଞର ଲକ୍ଷଣ ।

**ଅଫଳାକାଙ୍କ୍ଷିଭିର୍ଯଜ୍ଞୋ ବିଧିଦୃଷ୍ଟୋ ଯ ଇଜ୍ୟତେ ।**
**ଯଷ୍ଟବ୍ୟମେବେତି ମନଃ ସମାଧାୟ ସ ସାତ୍ତ୍ୱିକଃ ॥ ୧୧ ॥**

ଅଫଳାକାଙ୍କ୍ଷିଭିଃ, ଯଜ୍ଞଃ, ବିଧିଦୃଷ୍ଟଃ, ଯଃ, ଇଜ୍ୟତେ,
ଯଷ୍ଟବ୍ୟମ୍, ଏବ, ଇତି, ମନଃ, ସମାଧାୟ, ସଃ, ସାତ୍ତ୍ୱିକଃ ।। ୧୧ ।।

**ଏବଂ ହେ ଅର୍ଜୁନ ! —**

| | | | |
|---|---|---|---|
| ଯଷ୍ଟବ୍ୟମ୍, ଏବ | = 'ଯଜ୍ଞ କରିବା କର୍ତ୍ତବ୍ୟ'- | ବିଧିଦୃଷ୍ଟଃ | = ଶାସ୍ତ୍ରବିଧି ଅନୁଯାୟୀ |
| ଇତି | = ଏହିପରି | ଯଃ | = ଯେଉଁ |
| ମନଃ | = ମନରେ | ଯଜ୍ଞଃ | = ଯଜ୍ଞ |
| ସମାଧାୟ | = ନିଶ୍ଚୟ କରି | ଇଜ୍ୟତେ | = କରାଯାଏ, |
| ଅଫଳା- କାଙ୍କ୍ଷିଭିଃ | = ଫଳେଚ୍ଛା ରହିତ ମନୁଷ୍ୟଙ୍କ ଦ୍ୱାରା | ସଃ | = ତାହା |
| | | ସାତ୍ତ୍ୱିକଃ | = ସାତ୍ତ୍ୱିକ ଅଟେ । |

ରାଜସ ଯଜ୍ଞର ଲକ୍ଷଣ ।

**ଅଭିସନ୍ଧାୟ ତୁ ଫଳଂ ଦମ୍ଭାର୍ଥମପି ଚୈବ ଯତ୍ ।**
**ଇଜ୍ୟତେ ଭରତଶ୍ରେଷ୍ଠ ତଂ ଯଜ୍ଞଂ ବିଦ୍ଧି ରାଜସମ୍ ॥ ୧୨ ॥**

ଅଭିସନ୍ଧାୟ, ତୁ, ଫଳମ୍, ଦମ୍ଭାର୍ଥମ୍, ଅପି, ଚ, ଏବ, ଯତ୍,
ଇଜ୍ୟତେ, ଭରତଶ୍ରେଷ୍ଠ, ତମ୍, ଯଜ୍ଞମ୍, ବିଦ୍ଧି, ରାଜସମ୍ ।। ୧୨ ।।

| | | | |
|---|---|---|---|
| ତୁ | = କିନ୍ତୁ | ଅପି | = ମଧ୍ୟ |
| ଭରତଶ୍ରେଷ୍ଠ | = ହେ ଅର୍ଜୁନ ! | ଅଭିସନ୍ଧାୟ | = ଦୃଷ୍ଟିରେ ରଖି |
| ଦମ୍ଭାର୍ଥମ୍, ଏବ | = କେବଳ ଦମ୍ଭାଚରଣ ପାଇଁ | ଯତ୍ | = ଯେଉଁ ଯଜ୍ଞ |
| | | ଇଜ୍ୟତେ | = କରାଯାଏ |
| | | ତମ୍ | = ସେହି |
| | | ଯଜ୍ଞମ୍ | = ଯଜ୍ଞକୁ (ତୁମେ) |
| ଚ | = ଅଥବା | ରାଜସମ୍ | = ରାଜସ (ବୋଲି) |
| ଫଳମ୍ | = ଫଳକୁ | ବିଦ୍ଧି | = ଜାଣ । |

ତାମସ ଯଜ୍ଞର ଲକ୍ଷଣ ।

**ବିଧିହୀନମସୃଷ୍ଟାନ୍ନଂ ମନ୍ତ୍ରହୀନମଦକ୍ଷିଣମ୍ ।**
**ଶ୍ରଦ୍ଧାବିରହିତଂ ଯଜ୍ଞଂ ତାମସଂ ପରିଚକ୍ଷତେ ॥ ୧୩ ॥**

ବିଧିହୀନମ୍, ଅସୃଷ୍ଟାନ୍ନମ୍, ମନ୍ତ୍ରହୀନମ୍, ଅଦକ୍ଷିଣମ୍,
ଶ୍ରଦ୍ଧାବିରହିତମ୍, ଯଜ୍ଞମ୍, ତାମସମ୍, ପରିଚକ୍ଷତେ ।।୧୩।।

**ତଥା—**

ବିଧିହୀନମ୍ = ଶାସ୍ତ୍ରବିଧି ରହିତ,
ଅସୃଷ୍ଟାନ୍ନମ୍ = ଅନ୍ନଦାନ ରହିତ,
ମନ୍ତ୍ରହୀନମ୍ = ବିନା ମନ୍ତ୍ରରେ,
ଅଦକ୍ଷିଣମ୍ = ବିନା ଦକ୍ଷିଣାରେ (ଏବଂ)
ଶ୍ରଦ୍ଧାବିରହିତମ୍ = ବିନା ଶ୍ରଦ୍ଧାରେ (କରାଯାଉଥିବା)
ଯଜ୍ଞମ୍ = ଯଜ୍ଞକୁ
ତାମସମ୍ = ତାମସ ବୋଲି
ପରିଚକ୍ଷତେ = କହନ୍ତି ।

ଶାରୀରିକ ତପର ଲକ୍ଷଣ ।

**ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନଂ ଶୌଚମାର୍ଜବମ୍ ।**
**ବ୍ରହ୍ମଚର୍ଯ୍ୟମହିଂସା ଚ ଶାରୀରଂ ତପ ଉଚ୍ୟତେ ॥ ୧୪ ॥**

ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନମ୍, ଶୌଚମ୍, ଆର୍ଜବମ୍,
ବ୍ରହ୍ମଚର୍ଯମ୍, ଅହିଂସା, ଚ, ଶାରୀରମ୍, ତପଃ, ଉଚ୍ୟତେ ।।୧୪।।

**ତଥା ହେ ଅର୍ଜୁନ ! —**

ଦେବ-ଦ୍ୱିଜ-ଗୁରୁ*-ପ୍ରାଜ୍ଞ-ପୂଜନମ୍ = ଦେବତା, ବ୍ରାହ୍ମଣ, ଗୁରୁ ଏବଂ ଜ୍ଞାନୀମାନଙ୍କର ପୂଜନ,
ଶୌଚମ୍ = ପବିତ୍ରତା,
ଆର୍ଜବମ୍ = ସରଳତା,
ବ୍ରହ୍ମଚର୍ଯ୍ୟମ୍ = ବ୍ରହ୍ମଚର୍ଯ୍ୟ
ଚ = ଏବଂ

* ଏଠାରେ 'ଗୁରୁ' ଶବ୍ଦ ମାତା, ପିତା, ଆଚାର୍ଯ୍ୟ ଓ ବୃଦ୍ଧ ତଥା ନିଜଠାରୁ କୌଣସି ଭାବେ ମଧ୍ୟ ଶ୍ରେଷ୍ଠ ମନୁଷ୍ୟଙ୍କୁ ବୋଲି ବୁଝିବା ଉଚିତ ।

| | | | |
|---|---|---|---|
| ଅହିଂସା | = ଅହିଂସା (ଏ ସବୁକୁ) | ତପଃ | = ତପ |
| ଶାରୀରମ୍ | = ଶରୀର ସମ୍ବନ୍ଧୀ | ଉଚ୍ୟତେ | = କୁହାଯାଏ । |

ଅନୁଦ୍ବେଗକରଂ ବାକ୍ୟଂ ସତ୍ୟଂ ପ୍ରିୟହିତଂ ଚ ଯତ୍ ।
ସ୍ୱାଧ୍ୟାୟାଭ୍ୟସନଂ ଚୈବ ବାଙ୍ମୟଂ ତପ ଉଚ୍ୟତେ ॥ ୧୫ ॥

ଅନୁଦ୍ବେଗକରମ୍, ବାକ୍ୟମ୍, ସତ୍ୟମ୍, ପ୍ରିୟହିତମ୍, ଚ, ଯତ୍,
ସ୍ୱାଧ୍ୟାୟାଭ୍ୟସନମ୍, ଚ, ଏବ, ବାଙ୍ମୟମ୍, ତପଃ, ଉଚ୍ୟତେ ।।୧୫।।

| | | | |
|---|---|---|---|
| ଯତ୍ | = ଯାହା | ସ୍ୱାଧ୍ୟାୟା- | = ବେଦଶାସ୍ତ୍ରର |
| ଅନୁଦ୍ବେଗ- | = ଉଦ୍ବେଗ | ଭ୍ୟସନମ୍ | ପଠନ ଏବଂ |
| କରମ୍ | କାରକ ନୁହେଁ, | | ପରମେଶ୍ୱରଙ୍କ |
| ପ୍ରିୟହିତମ୍ | = ପ୍ରିୟ ଏବଂ | | ନାମ ଜପ |
| | ହିତକର | | କରିବାର |
| ଚ | = ଏବଂ | | ଅଭ୍ୟାସ, |
| ସତ୍ୟମ୍ | = ଯଥାର୍ଥ | (ତତ୍) ଏବ | = ତାହାକୁ ହିଁ |
| ବାକ୍ୟମ୍ | = ବଚନ | ବାଙ୍ମୟମ୍ | = ବାଣୀ ସମ୍ବନ୍ଧୀୟ |
| | (ଅଟେ)* | ତପଃ | = ତପ |
| ଚ | = ତଥା | ଉଚ୍ୟତେ | = କୁହାଯାଏ । |

ମାନସିକ ତପର ଲକ୍ଷଣ ।

ମନଃପ୍ରସାଦଃ ସୌମ୍ୟତ୍ୱଂ ମୌନମାତ୍ମବିନିଗ୍ରହଃ ।
ଭାବସଂଶୁଦ୍ଧିରିତ୍ୟେତତ୍ତପୋ ମାନସମୁଚ୍ୟତେ ॥ ୧୬ ॥

ମନଃପ୍ରସାଦଃ, ସୌମ୍ୟତ୍ୱମ୍, ମୌନମ୍, ଆତ୍ମବିନିଗ୍ରହଃ,
ଭାବସଂଶୁଦ୍ଧିଃ, ଇତି, ଏତତ୍, ତପଃ, ମାନସମ୍, ଉଚ୍ୟତେ ।।୧୬।।

* ମନ ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯେପରି ଅନୁଭବ କରାଯାଏ, ଠିକ୍ ସେହିପରି କହିବାକୁ 'ଯଥାର୍ଥ ବଚନ' କୁହାଯାଏ ।

**ତଥା—**

| | | | |
|---|---|---|---|
| ମନଃପ୍ରସାଦଃ | = ମନର ପ୍ରସନ୍ନତା, | ଭାବସଂଶୁଦ୍ଧିଃ | = ଅନ୍ତଃକରଣ ସ୍ଥିତ ଭାବମାନଙ୍କର ସମ୍ୟକ ପବିତ୍ରତା- |
| ସୌମ୍ୟତ୍ୱମ୍ | = ଶାନ୍ତ ଭାବ, | ଇତି, ଏତତ୍ | = ଏହାକୁ |
| ମୌନମ୍ | = ଭଗବତ୍‌ଚିନ୍ତନ କରିବାର ସ୍ୱଭାବ, | ମାନସମ୍ | = ମନସମ୍ବନ୍ଧୀ |
| ଆତ୍ମବିନିଗ୍ରହଃ | = ମନନିଗ୍ରହ (ଏବଂ) | ତପଃ, ଉଚ୍ୟତେ | = ତପ କୁହାଯାଏ । |

ସାତ୍ତ୍ୱିକ ତପର ଲକ୍ଷଣ ।

**ଶ୍ରଦ୍ଧୟା ପରୟା ତପ୍ତଂ ତପସ୍ତତ୍ ତ୍ରିବିଧଂ ନରୈଃ ।**
**ଅଫଳାକାଙ୍କ୍ଷିଭିର୍ଯୁକ୍ତୈଃ ସାତ୍ତ୍ୱିକଂ ପରିଚକ୍ଷତେ ॥ ୧୭ ॥**

ଶ୍ରଦ୍ଧୟା, ପରୟା, ତପ୍ତମ୍, ତପଃ, ତତ୍, ତ୍ରିବିଧମ୍, ନରୈଃ,
ଅଫଳାକାଙ୍କ୍ଷିଭିଃ, ଯୁକ୍ତୈଃ, ସାତ୍ତ୍ୱିକମ୍, ପରିଚକ୍ଷତେ ।।୧୭।।

**କିନ୍ତୁ ହେ ଅର୍ଜୁନ !—**

| | | | |
|---|---|---|---|
| ଅଫଳାକାଙ୍କ୍ଷିଭିଃ | = ଫଳ ଇଚ୍ଛା କରୁ ନ ଥିବା | ତତ୍ | = ସେହି (ପୂର୍ବୋକ୍ତ) |
| ଯୁକ୍ତୈଃ, ନରୈଃ | = ଯୋଗୀ ପୁରୁଷମାନଙ୍କ ଦ୍ୱାରା | ତ୍ରିବିଧମ୍ | = ତିନି ପ୍ରକାର ଅର୍ଥାତ୍ କାୟିକ, ବାଚିକ ଓ ମାନସିକ (ତପକୁ) |
| ପରୟା, ଶ୍ରଦ୍ଧୟା | = ପରମ ଶ୍ରଦ୍ଧାରେ | ସାତ୍ତ୍ୱିକମ୍ | = ସାତ୍ତ୍ୱିକ |
| ତପ୍ତମ୍, ତପଃ | = କରାଯାଇଥିବା ତପ | ପରିଚକ୍ଷତେ | = କହନ୍ତି । |

ରାଜସ ତପର ଲକ୍ଷଣ ।

**ସତ୍କାରମାନପୂଜାର୍ଥଂ ତପୋ ଦମ୍ଭେନ ଚୈବ ଯତ୍ ।**
**କ୍ରିୟତେ ତଦିହ ପ୍ରୋକ୍ତଂ ରାଜସଂ ଚଳମଧ୍ରୁବମ୍ ॥ ୧୮ ॥**

ସତ୍‌କାରମାନପୂଜାର୍ଥମ୍, ତପଃ, ଦମ୍ଭେନ, ଚ, ଏବ, ଯତ୍,
କ୍ରିୟତେ, ତତ୍, ଇହ, ପ୍ରୋକ୍ତମ୍, ରାଜସମ୍, ଚଳମ୍, ଅଧ୍ରୁବମ୍ ।।୧୮।।

| | | | |
|---|---|---|---|
| ଯତ୍ | = ଯେଉଁ | | (ଲୋକ ଦେଖାଣିଆ ଭାବରେ) |
| ତପଃ | = ତପ | କ୍ରିୟତେ | = କରାଯାଏ, |
| ସତ୍‌କାରମାନ ପୂଜାର୍ଥମ୍ | = ସତ୍କାର, ମାନ ଓ ପୂଜା ପାଇବା ପାଇଁ (ତଥା) | ତତ୍ | = ସେହି |
| | | ଅଧ୍ରୁବମ୍ | = ଅନିଶ୍ଚିତ * |
| ଚ, ଏବ | = ଅନ୍ୟ କୌଣସି ସ୍ୱାର୍ଥସିଦ୍ଧି ପାଇଁ, ସ୍ୱଭାବତଃ | ଚଳମ୍ | = (ଓ) କ୍ଷଣିକ ଫଳଦାୟୀ ତପକୁ |
| | | ଇହ | = ଏଠାରେ |
| (ବା) | = ବା | ରାଜସମ୍ | = ରାଜସ (ତପ) |
| ଦମ୍ଭେନ | = ଦମ୍ଭପୂର୍ବକ | ପ୍ରୋକ୍ତମ୍ | = କୁହାଯାଇଛି । |

ତାମସ ତପର ଲକ୍ଷଣ ।

**ମୂଢଗ୍ରାହେଣାତ୍ମନୋ ଯତ୍ ପୀଡୟା କ୍ରିୟତେ ତପଃ ।**
**ପରସ୍ୟୋତ୍ସାଦନାର୍ଥଂ ବା ତତ୍ତାମସମୁଦାହୃତମ୍ ॥ ୧୯ ॥**

ମୂଢ଼ଗ୍ରାହେଣ, ଆତ୍ମନଃ, ଯତ୍, ପୀଡ଼ୟା, କ୍ରିୟତେ, ତପଃ,
ପରସ୍ୟ, ଉତ୍‌ସାଦନାର୍ଥମ୍, ବା, ତତ୍, ତାମସମ୍, ଉଦାହୃତମ୍ ।।୧୯।।

**ଏବଂ —**

| | | | |
|---|---|---|---|
| ଯତ୍ | = ଯେଉଁ | ଆତ୍ମନଃ | = ମନ, ବାଣୀ ଓ ଶରୀରର |
| ତପଃ | = ତପ | | |
| ମୂଢ଼ଗ୍ରାହେଣ | = ମୂଢ଼ତାପୂର୍ବକ ଜିଦ୍ ଦ୍ୱାରା | ପୀଡ଼ୟା | = ପୀଡ଼ା ସହିତ |
| | | ବା | = ଅଥବା |

* 'ଅନିଶ୍ଚିତ ଫଳ' ତାହାକୁ କହନ୍ତି, ଯାହାର ଫଳ ପ୍ରାପ୍ତ ହେବା ଏବଂ ନ ହେବାରେ ଶଙ୍କା ଅଛି ।

| | | | |
|---|---|---|---|
| ପରସ୍ୟ | = ଅନ୍ୟର | ତତ୍ | = ସେହି ତପକୁ |
| ଉତ୍ସାଦନାର୍ଥମ୍ | = ଅନିଷ୍ଟ କରିବା ନିମନ୍ତେ | ତାମସମ୍ | = ତାମସ |
| କ୍ରିୟତେ | = କରାଯାଏ | ଉଦାହୃତମ୍ | = କୁହାଯାଏ । |

ସାତ୍ତ୍ୱିକ ଦାନର ଲକ୍ଷଣ ।

**ଦାତବ୍ୟମିତି ଯଦ୍ଦାନଂ ଦୀୟତେଽନୁପକାରିଣେ ।**
**ଦେଶେ କାଳେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତମ୍ ॥ ୨୦ ॥**

ଦାତବ୍ୟମ୍, ଇତି, ଯତ୍, ଦାନମ୍, ଦୀୟତେ, ଅନୁପକାରିଣେ,
ଦେଶେ, କାଳେ, ଚ, ପାତ୍ରେ, ଚ, ତତ୍, ଦାନମ୍, ସାତ୍ତ୍ୱିକମ୍, ସ୍ମୃତମ୍ ।।୨୦।।

| | | | |
|---|---|---|---|
| ଦାତବ୍ୟମ୍ | = ଦାନ ଦେବା ହିଁ କର୍ତ୍ତବ୍ୟ - | ଅନୁପକାରିଣେ | = ପ୍ରତ୍ୟୁପକାର ଆଶା ନ ରଖି ଅନୁପକାରୀକୁ |
| ଇତି | = ଏପରି ଭାବ ରଖି | ଦୀୟତେ | = ନିଃସ୍ୱାର୍ଥ ଭାବରେ ଦିଆଯାଏ, |
| ଯତ୍ | = ଯେଉଁ | ତତ୍ | = ସେହି |
| ଦାନମ୍ | = ଦାନ | ଦାନମ୍ | = ଦାନକୁ |
| ଦେଶେ | = ଦେଶ [୧] | ସାତ୍ତ୍ୱିକମ୍ | = ସାତ୍ତ୍ୱିକ (ବୋଲି) |
| ଚ | = ତଥା | ସ୍ମୃତମ୍ | = କୁହାଯାଇଛି । |
| କାଳେ | = କାଳ [୨] | | |
| ଚ | = ଏବଂ | | |
| ପାତ୍ରେ | = ପାତ୍ର ପ୍ରାପ୍ତ ହେଲେ[୩] | | |

୧ -୨ ଯେଉଁ ଦେଶ ଓ କାଳରେ ଯେଉଁ ବସ୍ତୁର ଅଭାବ ହୁଏ ସେହି 'ଦେଶ, କାଳରେ' ସେହି ବସ୍ତୁ ଦ୍ୱାରା ପ୍ରାଣୀମାନଙ୍କ ସେବା କରିବା ଉତ୍ତମ ବୋଲି ବିବେଚିତ ହୁଏ ।

୩- ଭୋକିଲା, ଅନାଥ, ଦୁଃଖୀ, ରୋଗୀ ଓ ଅସମର୍ଥ ତଥା ଭିକ୍ଷୁକ ଆଦିଙ୍କୁ ଅନ୍ନ, ବସ୍ତ୍ର ଓ ଔଷଧ ଏବଂ ଯେଉଁ ବସ୍ତୁ ଯାହାଙ୍କ ପାଖରେ ଅଭାବ ହୁଏ, ସେହି ବସ୍ତୁ ଦ୍ୱାରା ସେବା କରିବା ପାଇଁ ଯୋଗ୍ୟ ପାତ୍ର ବିବେଚିତ ହୁଅନ୍ତି ଏବଂ ଶ୍ରେଷ୍ଠ ଆଚରଣ କରୁଥିବା ପୁରୁଷ, ବ୍ରାହ୍ମଣମାନେ ଧନାଦି ସକଳ ପ୍ରକାର ପଦାର୍ଥ ଦ୍ୱାରା ସେବା କରିବା ପାଇଁ 'ଯୋଗ୍ୟ ପାତ୍ର' ବୋଲି ବିବେଚିତ ହୁଅନ୍ତି ।

ରାଜସ ଦାନର ଲକ୍ଷଣ ।

ଯତ୍ତୁ ପ୍ରତ୍ୟୁପକାରାର୍ଥଂ ଫଳମୁଦ୍ଦିଶ୍ୟ ବା ପୁନଃ ।
ଦୀୟତେ ଚ ପରିକ୍ଳିଷ୍ଟଂ ତଦ୍ଦାନଂ ରାଜସଂ ସ୍ମୃତମ୍ ॥ ୨୧ ॥

ଯତ୍, ତୁ, ପ୍ରତ୍ୟୁପକାରାର୍ଥମ୍, ଫଳମ୍, ଉଦ୍ଦିଶ୍ୟ, ବା ପୁନଃ,
ଦୀୟତେ, ଚ, ପରିକ୍ଳିଷ୍ଟମ୍, ତତ୍, ଦାନମ୍, ରାଜସମ୍, ସ୍ମୃତମ୍ ।।୨୧ ।।

| | | | |
|---|---|---|---|
| ତୁ | = କିନ୍ତୁ | ଉଦ୍ଦିଶ୍ୟ | = ଦୃଷ୍ଟିରେ ରଖି [୩] |
| ଯତ୍ | = ଯେଉଁ (ଦାନ) | | |
| ପରିକ୍ଳିଷ୍ଟମ୍ | = କ୍ଳେଶପୂର୍ବକ [୧] | ପୁନଃ | = ପୁଣି |
| ଚ | = ତଥା | ଦୀୟତେ | = ଦିଆଯାଏ |
| ପ୍ରତ୍ୟୁପକାରାର୍ଥମ୍ | = ପ୍ରତ୍ୟୁପକାର ପାଇବା ନିମନ୍ତେ [୨] | ତତ୍ | = ସେହି |
| | | ଦାନମ୍ | = ଦାନକୁ |
| | | ରାଜସମ୍ | = ରାଜସ (ବୋଲି) |
| ବା | = ଅଥବା | | |
| ଫଳମ୍ | = ଫଳପ୍ରାପ୍ତିକୁ | ସ୍ମୃତମ୍ | = କୁହାଯାଏ । |

ତାମସ ଦାନର ଲକ୍ଷଣ ।

ଅଦେଶକାଳେ ଯଦ୍ଦାନମପାତ୍ରେଭ୍ୟଶ୍ଚ ଦୀୟତେ ।
ଅସତ୍କୃତମବଜ୍ଞାତଂ ତତ୍ତାମସମୁଦାହୃତମ୍ ॥ ୨୨ ॥

ଅଦେଶକାଳେ, ଯତ୍, ଦାନମ୍, ଅପାତ୍ରେଭ୍ୟଃ, ଚ, ଦୀୟତେ,
ଅସତ୍କୃତମ୍, ଅବଜ୍ଞାତମ୍, ତତ୍, ତାମସମ୍, ଉଦାହୃତମ୍ ।।୨୨ ।।

| | | | |
|---|---|---|---|
| ଯତ୍ | = ଯେଉଁ | ଅସତ୍କୃତମ୍ | = ବିନା ସତ୍କାରରେ |
| ଦାନମ୍ | = ଦାନ | (ବା) | = ଅଥବା |

୧ - ଯେପରି ପ୍ରାୟତଃ ବର୍ତ୍ତମାନ ସମୟରେ ଚାନ୍ଦା ଆଦିରେ ଅର୍ଥ ଦିଆଯାଏ ।
୨ - ଅର୍ଥାତ୍ ଦାନର ବଦଳରେ ନିଜର ସାଂସାରିକ କାର୍ଯ୍ୟ କରାଇବା ଆଶାରେ ।
୩ - ଅର୍ଥାତ୍ ମାନ, ବଡ଼ିମା, ପ୍ରତିଷ୍ଠା ଏବଂ ସ୍ୱର୍ଗାଦି ପ୍ରାପ୍ତି ତଥା ରୋଗ ନିବାରଣ ନିମନ୍ତେ ।

| | | | |
|---|---|---|---|
| ଅବଜ୍ଞାତମ୍ | = ତିରସ୍କାରପୂର୍ବକ | ଦୀୟତେ | = ଦିଆଯାଏ |
| ଅଦେଶକାଳେ | = ଅଯୋଗ୍ୟ ଦେଶ-କାଳରେ | ତତ୍ | = ସେହି ଦାନ |
| ଚ | = ଏବଂ | ତାମସମ୍ | = ତାମସ ବୋଲି |
| ଅପାତ୍ରେଭ୍ୟଃ | = ଅପାତ୍ରମାନଙ୍କୁ * | ଉଦାହୃତମ୍ | = କୁହାଯାଏ । |

ଓଁ ତତ୍ ସତ୍ ର ମହିମା ।

**ଓଁ ତତ୍ସଦିତି ନିର୍ଦ୍ଦେଶୋ ବ୍ରହ୍ମଣସ୍ତ୍ରିବିଧଃ ସ୍ମୃତଃ ।**
**ବ୍ରାହ୍ମଣାସ୍ତେନ ବେଦାଶ୍ଚ ଯଜ୍ଞାଶ୍ଚ ବିହିତାଃ ପୁରା ॥ ୨୩ ॥**

ଓଁ, ତତ୍, ସତ୍, ଇତି, ନିର୍ଦ୍ଦେଶଃ, ବ୍ରହ୍ମଣଃ, ତ୍ରିବିଧଃ, ସ୍ମୃତଃ, ବ୍ରାହ୍ମଣାଃ, ତେନ, ବେଦାଃ, ଚ, ଯଜ୍ଞାଃ, ଚ, ବିହିତାଃ, ପୁରା ।।୨୩।।

**ଏବଂ ହେ ଅର୍ଜୁନ —**

| | | | |
|---|---|---|---|
| ଓଁ | = ଓଁ, | ପୁରା | = ସୃଷ୍ଟିର ଆଦିକାଳରେ |
| ତତ୍ | = ତତ୍, | ବ୍ରାହ୍ମଣାଃ | = ବ୍ରାହ୍ମଣମାନେ |
| ସତ୍ | = ସତ୍ | ଚ | = ଏବଂ |
| ଇତି | = ଏପରି - | ବେଦାଃ | = ବେଦମାନେ |
| ତ୍ରିବିଧଃ | = ତିନି ପ୍ରକାର | ଚ | = ତଥା |
| ବ୍ରହ୍ମଣଃ | = ସଚ୍ଚିଦାନନ୍ଦଘନ ବ୍ରହ୍ମଙ୍କର | ଯଜ୍ଞାଃ | = ଯଜ୍ଞମାନେ |
| ନିର୍ଦ୍ଦେଶଃ | = ନାମ | ବିହିତାଃ | = ରଚିତ ହୋଇଛନ୍ତି । |
| ସ୍ମୃତଃ | = କୁହାଯାଇଛି; | | |
| ତେନ | = ତାଙ୍କରି ଦ୍ୱାରା | | |

* ଅର୍ଥାତ୍ ମଦ୍ୟ-ମାଂସାଦି ଅଭକ୍ଷ୍ୟ ପଦାର୍ଥକୁ ଖାଇବା ଲୋକେ ଏବଂ ଚୋରି, ବ୍ୟଭିଚାର ଆଦିରେ ଲିପ୍ତ ନୀଚକର୍ମା, ଠକ, ଜୁଆଖୋର ଏବଂ ନାସ୍ତିକ ଆଦି ଲୋକେ ଦାନ ପାଇଁ ଅପାତ୍ର ଅଟନ୍ତି ତଥା ସେମାନଙ୍କୁ ଦିଆଯାଉଥିବା ଦାନ ବ୍ୟର୍ଥ ହୁଏ ଏବଂ ଦାତାଙ୍କୁ ନରକଗାମୀ କରାଏ ।

ଓଁକାର ପ୍ରୟୋଗର ବ୍ୟାଖ୍ୟା ।

ତସ୍ମାଦୋମିତ୍ୟୁଦାହୃତ୍ୟ ଯଜ୍ଞଦାନତପଃକ୍ରିୟାଃ ।
ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ ସତତଂ ବ୍ରହ୍ମବାଦିନାମ୍ ॥ ୨୪ ॥

ତସ୍ମାତ୍, ଓଁ, ଇତି, ଉଦାହୃତ୍ୟ, ଯଜ୍ଞଦାନତପଃକ୍ରିୟାଃ,
ପ୍ରବର୍ତ୍ତନ୍ତେ, ବିଧାନୋକ୍ତାଃ, ସତତମ୍, ବ୍ରହ୍ମବାଦିନାମ୍ ।।୨୪।।

| | | | |
|---|---|---|---|
| ତସ୍ମାତ୍ | = ତେଣୁ | ତପଃକ୍ରିୟାଃ | ତପରୂପକ କ୍ରିୟାଗୁଡ଼ିକ |
| ବ୍ରହ୍ମବାଦିନାମ୍ | = ବେଦମନ୍ତ୍ର ଉଚ୍ଚାରଣ କରୁଥିବା ଶ୍ରେଷ୍ଠ ପୁରୁଷମାନଙ୍କର | ସତତମ୍ | = ସଦା |
| | | ଓମ୍ | = 'ଓଁ' |
| ବିଧାନୋକ୍ତାଃ | = ଶାସ୍ତ୍ରବିଧିଦ୍ୱାରା ନିୟତ | ଇତି | = ଏହି (ପରମାତ୍ମାଙ୍କ ନାମକୁ) |
| ଯଜ୍ଞଦାନ- | = ଯଜ୍ଞ, ଦାନ ଏବଂ | ଉଦାହୃତ୍ୟ | = ଉଚ୍ଚାରଣ କରି (ହିଁ) |
| | | ପ୍ରବର୍ତ୍ତନ୍ତେ | = ଆରମ୍ଭ ହୁଏ । |

ତତ୍ ଶବ୍ଦ ପ୍ରୟୋଗର ବ୍ୟାଖ୍ୟା ।

ତଦିତ୍ୟନଭିସନ୍ଧାୟ ଫଳଂ ଯଜ୍ଞତପଃକ୍ରିୟାଃ ।
ଦାନକ୍ରିୟାଶ୍ଚ ବିବିଧାଃ କ୍ରିୟନ୍ତେ ମୋକ୍ଷକାଙ୍‌କ୍ଷିଭିଃ ॥ ୨୫ ॥

ତତ୍, ଇତି, ଅନଭିସନ୍ଧାୟ, ଫଳମ୍, ଯଜ୍ଞତପଃକ୍ରିୟାଃ,
ଦାନକ୍ରିୟାଃ, ଚ, ବିବିଧାଃ, କ୍ରିୟନ୍ତେ, ମୋକ୍ଷକାଙ୍‌କ୍ଷିଭିଃ ।।୨୫।।

ଏବଂ —

| | | | |
|---|---|---|---|
| ତତ୍ | = ତତ୍ ଅର୍ଥାତ୍ 'ତତ୍' ନାମରେ କୁହାଯାଉଥିବା ପରମାତ୍ମାଙ୍କର ହିଁ ଏହି ସବୁ ଅଟେ | ଇତି | = ଏହି ଭାବ ରଖି |
| | | ଫଳମ୍ | = ଫଳକୁ |
| | | ଅନଭିସନ୍ଧାୟ | = ଆକାଙ୍‌କ୍ଷା ନ କରି, |
| | | ବିବିଧାଃ | = ନାନା ପ୍ରକାର |

| | | | |
|---|---|---|---|
| ଯଜ୍ଞ-ତପଃ- | = ଯଜ୍ଞ ଓ ତପରୂପକ | | କ୍ରିୟାଗୁଡ଼ିକୁ |
| କ୍ରିୟାଃ | କ୍ରିୟାଗୁଡ଼ିକୁ | ମୋକ୍ଷ- | = କଲ୍ୟାଣକାମୀ |
| ଚ | = ତଥା | କାଙ୍‌କ୍ଷିଭିଃ | ପୁରୁଷମାନଙ୍କ ଦ୍ୱାରା |
| ଦାନକ୍ରିୟାଃ | = ଦାନରୂପକ | କ୍ରିୟନ୍ତେ | = କରାଯାଏ । |

ସତ୍ ଶବ୍ଦ ପ୍ରୟୋଗର ବ୍ୟାଖ୍ୟା ।

**ସଦ୍ଭାବେ ସାଧୁଭାବେ ଚ ସଦିତ୍ୟେତତ୍ ପ୍ରଯୁଜ୍ୟତେ ।**
**ପ୍ରଶସ୍ତେ କର୍ମଣି ତଥା ସଚ୍ଛବ୍ଦଃ ପାର୍ଥ ଯୁଜ୍ୟତେ ॥ ୨୬ ॥**

ସଦ୍‌ଭାବେ, ସାଧୁଭାବେ, ଚ, ସତ୍, ଇତି, ଏତତ୍, ପ୍ରଯୁଜ୍ୟତେ,
ପ୍ରଶସ୍ତେ, କର୍ମଣି, ତଥା, ସତ୍, ଶବ୍ଦଃ, ପାର୍ଥ, ଯୁଜ୍ୟତେ ।।୨୬।।

ଏବଂ —

| | | | |
|---|---|---|---|
| ସତ୍ | = 'ସତ୍' - | ତଥା | = ତଥା |
| ଇତି | = ଏହିପରି | ପାର୍ଥ | = ହେ ପାର୍ଥ ! |
| ଏତତ୍ | = ଏହି (ପରମାତ୍ମାଙ୍କର ନାମ) | ପ୍ରଶସ୍ତେ | = ଉତ୍ତମ |
| | | କର୍ମଣି | = କର୍ମରେ (ମଧ୍ୟ) |
| ସଦ୍‌ଭାବେ | = ସତ୍ୟ ଭାବରେ | ସତ୍ | = 'ସତ୍' |
| ଚ | = ଏବଂ | ଶବ୍ଦଃ | = ଶବ୍ଦ |
| ସାଧୁଭାବେ | = ଶ୍ରେଷ୍ଠଭାବରେ | ଯୁଜ୍ୟତେ | = ପ୍ରୟୋଗ କରାଯାଏ । |
| ପ୍ରଯୁଜ୍ୟତେ | = ପ୍ରୟୋଗ କରାଯାଏ | | |

**ଯଜ୍ଞେ ତପସି ଦାନେ ଚ ସ୍ଥିତିଃ ସଦିତି ଚୋଚ୍ୟତେ ।**
**କର୍ମ ଚୈବ ତଦର୍ଥୀୟଂ ସଦିତ୍ୟେବାଭିଧୀୟତେ ॥ ୨୭ ॥**

ଯଜ୍ଞେ, ତପସି, ଦାନେ, ଚ, ସ୍ଥିତିଃ, ସତ୍, ଇତି, ଚ, ଉଚ୍ୟତେ,
କର୍ମ, ଚ, ଏବ, ତଦର୍ଥୀୟମ୍, ସତ୍, ଇତି, ଏବ, ଅଭିଧୀୟତେ ।।୨୭।।

| | |
|---|---|
| ଚ | = ତଥା |
| ଯଜ୍ଞେ | = ଯଜ୍ଞରେ, |
| ତପସି | = ତପରେ |
| ଚ | = ଏବଂ |
| ଦାନେ | = ଦାନରେ |
| (ଯା) | = ଯେଉଁ |
| ସ୍ଥିତିଃ | = ସ୍ଥିତି ବା ନିଷ୍ଠା ଥାଏ |
| (ସା) | = ତାହାକୁ |
| ଏବ | = ମଧ୍ୟ |
| ସତ୍ | = 'ସତ୍' |
| ଇତି | = ବୋଲି |
| ଉଚ୍ୟତେ | = କୁହାଯାଏ |
| ଚ | = ଏବଂ |
| ତଦର୍ଥୀୟମ୍ | = ସେହି ପରମାତ୍ମାଙ୍କ ପାଇଁ କରାଯାଉଥିବା |
| କର୍ମ | = କର୍ମକୁ ମଧ୍ୟ |
| ଏବ | = ନିଶ୍ଚିତରୂପେ |
| ସତ୍ | = ସତ୍ |
| ଇତି | = ବୋଲି |
| ଅଭିଧୀୟତେ | = କୁହାଯାଏ । |

ଏବଂ —

ଅଶ୍ରଦ୍ଧାରେ କରାଯାଉଥିବା ଯଜ୍ଞାଦି କର୍ମ ଇହଲୋକ ଏବଂ ପରଲୋକରେ ନିଷ୍ଫଳ ଏବଂ ଅସତ୍ୟ ବୋଲି ଉକ୍ତି ।

**ଅଶ୍ରଦ୍ଧୟା ହୁତଂ ଦତ୍ତଂ ତପସ୍ତପ୍ତଂ କୃତଂ ଚ ଯତ୍ ।**
**ଅସଦିତ୍ୟୁଚ୍ୟତେ ପାର୍ଥ ନ ଚ ତତ୍ ପ୍ରେତ୍ୟ ନୋ ଇହ ॥ ୨୮ ॥**

ଅଶ୍ରଦ୍ଧୟା, ହୁତମ୍, ଦତ୍ତମ୍, ତପଃ, ତପ୍ତମ୍, କୃତମ୍, ଚ, ଯତ୍,
ଅସତ୍, ଇତି, ଉଚ୍ୟତେ, ପାର୍ଥ, ନ, ଚ, ତତ୍ ପ୍ରେତ୍ୟ, ନୋ, ଇହ ।।୨୮ ।।

| | |
|---|---|
| ପାର୍ଥ | = ହେ ଅର୍ଜୁନ ! |
| ଅଶ୍ରଦ୍ଧୟା | = ବିନା-ଶ୍ରଦ୍ଧାରେ କରାଯାଉଥିବା |
| ହୁତମ୍ | = ହୋମ, |
| ଦତ୍ତମ୍ | = ଦିଆଯାଉଥିବା ଦାନ (ଓ) |
| ତପ୍ତମ୍, ତପଃ | = କରାଯାଉଥିବା ତପ |
| ଚ | = ତଥା |
| ଯତ୍ | = ଯାହା (କିଛି ମଧ୍ୟ) |
| କୃତମ୍ | = କରାଯାଉଥିବା ଶୁଭକର୍ମ |

| | | | |
|---|---|---|---|
| (ତତ୍) | = ସେ ସବୁ | | (ଲାଭଦାୟକ) |
| ଅସତ୍ | = 'ଅସତ୍' - | | ନୁହେଁ |
| ଇତି | = ବୋଲି | ଚ | = କି |
| ଉଚ୍ୟତେ | = କୁହାଯାଏ । | ନ, ପ୍ରେତ୍ୟ | = ମରିବା ପରେ |
| | (ତେଣୁ) | | ମଧ୍ୟ ତାହାର |
| ତତ୍ | = ତାହା | | 'ସତ୍'ଫଳ |
| ନୋ, ଇହ | = ଇହଲୋକରେ | | ମିଳେ ନାହିଁ । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ଶ୍ରଦ୍ଧାତ୍ରୟବିଭାଗଯୋଗୋ ନାମ ସପ୍ତଦଶୋଽଧ୍ୟାୟଃ ॥ ୧୭ ॥*



**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ଶ୍ରଦ୍ଧାତ୍ରୟବିଭାଗଯୋଗ' ନାମକ ସପ୍ତଦଶ ଅଧ୍ୟାୟ ପୂର୍ଣ୍ଣ ହେଲା ।।୧୭।।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଅଷ୍ଟାଦଶ ଅଧ୍ୟାୟ

## ମୋକ୍ଷସଂନ୍ୟାସଯୋଗ

**ପ୍ରଧାନ ବିଷୟ**

| | |
|---|---|
| ୧ ରୁ ୧୨ | ତ୍ୟାଗର ବିଷୟ, |
| ୧୩ ରୁ ୧୮ | କର୍ମର ସିଦ୍ଧି ବିଷୟରେ ସାଂଖ୍ୟ ସିଦ୍ଧାନ୍ତର କଥନ, |
| ୧୯ ରୁ ୪୦ | ତିନି ଗୁଣ ଅନୁସାରେ ଜ୍ଞାନ, କର୍ମ, କର୍ତ୍ତା, ବୁଦ୍ଧି, ଧୃତି ଏବଂ ସୁଖର ପୃଥକ-ପୃଥକ ଭେଦ, |
| ୪୧ ରୁ ୪୮ | ଫଳ ସହିତ ବର୍ଣ୍ଣ ଧର୍ମର ବିଷୟ, |
| ୪୯ ରୁ ୫୫ | ଜ୍ଞାନନିଷ୍ଠାର ବିଷୟ, |
| ୫୬ ରୁ ୬୬ | ଭକ୍ତି ସହିତ ନିଷ୍କାମ କର୍ମଯୋଗର ବିଷୟ, |
| ୬୭ ରୁ ୭୮ | ଶ୍ରୀଗୀତାଜୀଙ୍କ ମାହାତ୍ମ୍ୟ । |

*ଅର୍ଜୁନ ଉବାଚ*

ସନ୍ନ୍ୟାସ ଏବଂ ତ୍ୟାଗର ତତ୍ତ୍ୱ ଜାଣିବା ପାଇଁ ଅର୍ଜୁନଙ୍କ ଇଚ୍ଛା ।

**ସନ୍ନ୍ୟାସସ୍ୟ ମହାବାହୋ ତତ୍ତ୍ୱମିଚ୍ଛାମି ବେଦିତୁମ୍ ।**
**ତ୍ୟାଗସ୍ୟ ଚ ହୃଷୀକେଶ ପୃଥକ୍ କେଶିନିଷୂଦନ ॥ ୧ ॥**

ସନ୍ନ୍ୟାସସ୍ୟ, ମହାବାହୋ, ତତ୍ତ୍ୱମ୍, ଇଚ୍ଛାମି, ବେଦିତୁମ୍,
ତ୍ୟାଗସ୍ୟ, ଚ, ହୃଷୀକେଶ, ପୃଥକ୍, କେଶିନିଷୂଦନ ।।୧ ।।

**ଏହାପରେ ଅର୍ଜୁନ କହିଲେ—**

| | | | |
|---|---|---|---|
| ମହାବାହୋ | = ହେ ମହାବାହୁ ! | ସନ୍ନ୍ୟାସସ୍ୟ | = (ମୁଁ) ସନ୍ନ୍ୟାସର |
| ହୃଷୀକେଶ | = ହେ ଅନ୍ତର୍ଯ୍ୟାମୀ ! | ଚ | = ଏବଂ |
| କେଶିନିଷୂଦନ | = ହେ ବାସୁଦେବ ! | ତ୍ୟାଗସ୍ୟ | = ତ୍ୟାଗର |

| | | | |
|---|---|---|---|
| ତତ୍ତ୍ୱମ୍ | = ତତ୍ତ୍ୱକୁ | ବେଦିତୁମ୍ | = ଜାଣିବାକୁ |
| ପୃଥକ୍ | = ପୃଥକ୍-ପୃଥକ୍ ଭାବରେ | ଇଚ୍ଛାମି | = ଇଚ୍ଛା କରୁଛି । |

ତ୍ୟାଗର ବିଷୟରେ ଅନ୍ୟ ପୁରୁଷମାନଙ୍କର ଚାରୋଟି ସିଦ୍ଧାନ୍ତର କଥନ ।

*ଶ୍ରୀଭଗବାନ ଉବାଚ*

**କାମ୍ୟାନାଂ କର୍ମଣାଂ ନ୍ୟାସଂ ସଂନ୍ୟାସଂ କବୟୋ ବିଦୁଃ ।**
**ସର୍ବକର୍ମଫଳତ୍ୟାଗଂ ପ୍ରାହୁସ୍ତ୍ୟାଗଂ ବିଚକ୍ଷଣାଃ ॥ ୨ ॥**

କାମ୍ୟାନାମ୍, କର୍ମଣାମ୍, ନ୍ୟାସମ୍, ସନ୍ନ୍ୟାସମ୍, କବୟଃ, ବିଦୁଃ,
ସର୍ବକର୍ମଫଳତ୍ୟାଗମ୍, ପ୍ରାହୁଃ, ତ୍ୟାଗମ୍, ବିଚକ୍ଷଣାଃ ।।୨।।

**ଏହି ପ୍ରକାର ଅର୍ଜୁନଙ୍କ ପଚାରିବାରେ ଶ୍ରୀ ଭଗବାନ କହିଲେ, ହେ ଅର୍ଜୁନ! କେତେ ଜ୍ଞାନୀ ପୁରୁଷ ମଧ୍ୟ—**

| | | | |
|---|---|---|---|
| କବୟଃ | = କେତେକ ପଣ୍ଡିତ | ବିଚକ୍ଷଣାଃ | = ବିଚାରକୁଶଳ ପୁରୁଷମାନେ |
| କାମ୍ୟାନାମ୍ | = କାମ୍ୟ[୧] | ସର୍ବକର୍ମ- | = ସକଳ କର୍ମର ଫଳ |
| କର୍ମଣାମ୍ | = କର୍ମମାନଙ୍କ | ଫଳତ୍ୟାଗମ୍ | ତ୍ୟାଗକୁ[୨] |
| ନ୍ୟାସମ୍ | = ତ୍ୟାଗକୁ | ତ୍ୟାଗମ୍ | = ତ୍ୟାଗ (ବୋଲି) |
| ସନ୍ନ୍ୟାସମ୍ | = ସନ୍ନ୍ୟାସ (ବୋଲି) | ପ୍ରାହୁଃ | = କହନ୍ତି । |
| ବିଦୁଃ | = ବୁଝନ୍ତି (ଏବଂ ଅନ୍ୟ) | | |

୧-ସ୍ତ୍ରୀ, ପୁତ୍ର ଓ ଧନ ଆଦି ପ୍ରିୟ ବସ୍ତୁମାନଙ୍କର ପ୍ରାପ୍ତି ତଥା ସଙ୍କଟାଦି ରୋଗମାନଙ୍କ ନିବୃତ୍ତି ପାଇଁ ଯେଉଁ ଯଜ୍ଞ, ଦାନ, ତପ ଓ ଉପାସନାଦି କର୍ମ କରାଯାଏ ତାହାକୁ 'କାମ୍ୟ କର୍ମ' କୁହାଯାଏ।

୨-ଈଶ୍ୱର ଭକ୍ତି, ଦେବତା ପୂଜା, ମାତା-ପିତାଦି ଗୁରୁଜନମାନଙ୍କର ସେବା, ଯଜ୍ଞ, ଦାନ ଏବଂ ତପ ତଥା ବର୍ଣ୍ଣାଶ୍ରମ ଅନୁସାରେ ଜୀବିକା ପାଇଁ କର୍ମ ଏବଂ ଶରୀର ସମ୍ବନ୍ଧୀ ପାନ-ଭୋଜନ ଆଦି ଯେଉଁସବୁ ଶାସ୍ତ୍ରବିହିତ କର୍ତ୍ତବ୍ୟ କର୍ମ ରହିଛି ସେସବୁ କର୍ମମାନଙ୍କରେ ଏବଂ ଇହଲୋକ ଓ ପରଲୋକର ସମ୍ପୂର୍ଣ୍ଣ କାମନାର ତ୍ୟାଗକୁ 'ସର୍ବକର୍ମଫଳତ୍ୟାଗ' କୁହାଯାଏ।

ତ୍ୟାଜ୍ୟଂ ଦୋଷବଦିତ୍ୟେକେ କର୍ମ ପ୍ରାହୁର୍ମନୀଷିଣଃ ।
ଯଜ୍ଞଦାନତପଃକର୍ମ ନ ତ୍ୟାଜ୍ୟମିତି ଚାପରେ ॥ ୩ ॥

ତ୍ୟାଜ୍ୟମ୍, ଦୋଷବତ୍, ଇତି, ଏକେ, କର୍ମ, ପ୍ରାହୁଃ, ମନୀଷିଣଃ,
ଯଜ୍ଞଦାନତପଃକର୍ମ, ନ, ତ୍ୟାଜ୍ୟମ୍, ଇତି, ଚ, ଅପରେ ।।୩।।

**ତଥା—**

| | | | |
|---|---|---|---|
| ଏକେ | = କେହି କେହି | ଅପରେ | = ଅନ୍ୟ ବିଦ୍ୱାନମାନେ |
| ମନୀଷିଣଃ | = ବିଦ୍ୱାନ୍ | ଇତି | = ଏପରି |
| ଇତି | = ଏପରି | (ଆହୁଃ) | = କହନ୍ତି (ଯେ) |
| ପ୍ରାହୁଃ | = କହନ୍ତି (ଯେ) | ଯଜ୍ଞ, ଦାନ, ତପଃକର୍ମ | = ଯଜ୍ଞ, ଦାନ ଓ ତପରୂପୀ କର୍ମ |
| କର୍ମ | = କର୍ମମାତ୍ର | ନ, ତ୍ୟାଜ୍ୟମ୍ | = ତ୍ୟାଗ କରିବା ଉଚିତ ନୁହେଁ । |
| ଦୋଷବତ୍ | = ଦୋଷଯୁକ୍ତ, (ତେଣୁ) | | |
| ତ୍ୟାଜ୍ୟମ୍ | = ତ୍ୟାଗ କରିବା ଯୋଗ୍ୟ | | |
| ଚ | = ଏବଂ | | |

ତ୍ୟାଗ ବିଷୟରେ ଭଗବାନଙ୍କର ନିଶ୍ଚିତ ମତ କହନ୍ତି ।

ନିଶ୍ଚୟଂ ଶୃଣୁ ମେ ତତ୍ର ତ୍ୟାଗେ ଭରତସତ୍ତମ ।
ତ୍ୟାଗୋ ହି ପୁରୁଷବ୍ୟାଘ୍ର ତ୍ରିବିଧଃ ସମ୍ପ୍ରକୀର୍ତ୍ତିତଃ ॥ ୪ ॥

ନିଶ୍ଚୟମ୍, ଶୃଣୁ, ମେ, ତତ୍ର, ତ୍ୟାଗେ, ଭରତସତ୍ତମ,
ତ୍ୟାଗଃ, ହି, ପୁରୁଷବ୍ୟାଘ୍ର, ତ୍ରିବିଧଃ, ସମ୍ପ୍ରକୀର୍ତ୍ତିତଃ ।।୪।।

**ପରନ୍ତୁ—**

ଭରତସତ୍ତମ = ହେ ଭରତ ଶ୍ରେଷ୍ଠ ଅର୍ଜୁନ !
ତତ୍ର = ସନ୍ନ୍ୟାସ ଓ ତ୍ୟାଗ—ଏହି ଦୁଇଟି ମଧ୍ୟରୁ (ତୁମେ) ପ୍ରଥମେ
ତ୍ୟାଗେ = ତ୍ୟାଗ ବିଷୟରେ
ମେ = ମୋର
ନିଶ୍ଚୟମ୍ = ନିର୍ଣ୍ଣୟ
ଶୃଣୁ = ଶୁଣ ।
ହି = କାରଣ
ପୁରୁଷବ୍ୟାଘ୍ର = ହେ ପୁରୁଷ ଶ୍ରେଷ୍ଠ !
ତ୍ୟାଗଃ = ତ୍ୟାଗ
ତ୍ରିବିଧଃ = ତିନି ପ୍ରକାର-(ସାତ୍ତ୍ୱିକ, ରାଜସ ଓ ତାମସ-ଭେଦରେ)
ସମ୍ପ୍ରକୀର୍ତ୍ତିତଃ = ବୋଲି କୁହାଯାଇଛି ।

ଯଜ୍ଞ, ଦାନ ଓ ତପରୂପ କର୍ମର ତ୍ୟାଗ ନିଷେଧ ।

**ଯଜ୍ଞଦାନତପଃକର୍ମ ନ ତ୍ୟାଜ୍ୟଂ କାର୍ଯ୍ୟମେବ ତତ୍ ।**
**ଯଜ୍ଞୋ ଦାନଂ ତପଶ୍ଚୈବ ପାବନାନି ମନୀଷିଣାମ୍ ॥ ୫ ॥**

ଯଜ୍ଞଦାନତପଃକର୍ମ, ନ, ତ୍ୟାଜ୍ୟମ୍, କାର୍ଯ୍ୟମ୍, ଏବ, ତତ୍,
ଯଜ୍ଞଃ, ଦାନମ୍, ତପଃ, ଚ, ଏବ, ପାବନାନି, ମନୀଷିଣାମ୍ ।।୫ ।।

**ତଥା —**

ଯଜ୍ଞଦାନ-ତପଃକର୍ମ = ଯଜ୍ଞ, ଦାନ ଓ ତପରୂପକ କର୍ମ
ନ, ତ୍ୟାଜ୍ୟମ୍ = ତ୍ୟାଗ କରିବା ଉଚିତ ନୁହେଁ, (ବରଂ)
ତତ୍ = ତାହା (ତ)
କାର୍ଯ୍ୟମ୍, ଏବ = ଅବଶ୍ୟ କରିବା ଉଚିତ ଅଟେ; (କାରଣ)
ଯଜ୍ଞଃ = ଯଜ୍ଞ
ଦାନମ୍ = ଦାନ
ଚ = ଏବଂ
ତପଃ = ତପ
ଏବ = (ଏହି ତିନି ପ୍ରକାର କର୍ମ) ହିଁ

| | | | |
|---|---|---|---|
| ମନୀଷିଣାମ୍ | = ବୁଦ୍ଧିମାନ ପୁରୁଷମାନଙ୍କୁ* | ପାବନାନି | = ପବିତ୍ର କରେ । |

ତ୍ୟାଗ ବିଷୟରେ ଭଗବାନଙ୍କର ସ୍ୱୀୟ ମତ ।

ଏତାନ୍ୟପି ତୁ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା ଫଳାନି ଚ ।
କର୍ତ୍ତବ୍ୟାନୀତି ମେ ପାର୍ଥ ନିଶ୍ଚିତଂ ମତମୁତ୍ତମମ୍ ॥ ୬ ॥

ଏତାନି, ଅପି, ତୁ, କର୍ମାଣି, ସଙ୍ଗମ୍, ତ୍ୟକ୍ତ୍ୱା, ଫଳାନି, ଚ, କର୍ତ୍ତବ୍ୟାନି, ଇତି, ମେ, ପାର୍ଥ, ନିଶ୍ଚିତମ୍, ମତମ୍, ଉତ୍ତମମ୍, ।।୬।।

ଏଥିପାଇଁ —

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ଫଳାନି | = ଫଳେଚ୍ଛା |
| ଏତାନି | = ଏହି ଯଜ୍ଞ, ଦାନ ଓ ତପରୂପକ କର୍ମ | ତ୍ୟକ୍ତ୍ୱା | = ତ୍ୟାଗ କରି |
| ତୁ | = ତଥା | କର୍ତ୍ତବ୍ୟାନି | = ଅବଶ୍ୟ କରିବା ଉଚିତ- |
| (ଅନ୍ୟାନି) | = ଅନ୍ୟାନ୍ୟ | ଇତି | = ଏହା |
| କର୍ମାଣି | = କର୍ତ୍ତବ୍ୟ କର୍ମମାନଙ୍କୁ | ମେ | = ମୋର |
| ଅପି | = ମଧ୍ୟ | ନିଶ୍ଚିତମ୍ | = ନିଶ୍ଚୟ କରାଯାଇଥିବା |
| ସଙ୍ଗମ୍ | = ଆସକ୍ତି | ଉତ୍ତମମ୍ | = ଉତ୍ତମ |
| ଚ | = ଏବଂ | ମତମ୍ | = ମତ ଅଟେ । |

ତାମସ ତ୍ୟାଗର ଲକ୍ଷଣ

ନିୟତସ୍ୟ ତୁ ସଂନ୍ୟାସଃ କର୍ମଣୋ ନୋପପଦ୍ୟତେ ।
ମୋହାତ୍ତସ୍ୟ ପରିତ୍ୟାଗସ୍ତାମସଃ ପରିକୀର୍ତ୍ତିତଃ ॥ ୭ ॥

* ସେହି ମନୁଷ୍ୟ 'ବୁଦ୍ଧିମାନ' ଅଟେ, ଯିଏ ଫଳ ଏବଂ ଆସକ୍ତିକୁ ତ୍ୟାଗ କରି କେବଳ ଭଗବଦର୍ଥ କର୍ମ କରେ ।

ନିୟତସ୍ୟ, ତୁ, ସନ୍ନ୍ୟାସଃ, କର୍ମଣଃ, ନ, ଉପପଦ୍ୟତେ,
ମୋହାତ୍, ତସ୍ୟ, ପରିତ୍ୟାଗଃ, ତାମସଃ, ପରିକୀର୍ତ୍ତିତଃ ।।୭।।

## ନିଷିଦ୍ଧ ଏବଂ କାମ୍ୟ-କର୍ମମାନଙ୍କୁ ତ ସ୍ୱରୂପତଃ ତ୍ୟାଗ କରିବା ଉଚିତ—

| | | | |
|---|---|---|---|
| ତୁ | = ପରନ୍ତୁ | ମୋହାତ୍ | = ମୋହ ବଶତଃ |
| ନିୟତସ୍ୟ | = ନିୟତ* | ତସ୍ୟ | = ତାହାର |
| କର୍ମଣଃ | = କର୍ମର | ପରିତ୍ୟାଗଃ | = ତ୍ୟାଗ କରିଦେବା |
| ସନ୍ନ୍ୟାସଃ | = ସ୍ୱରୂପତଃ ତ୍ୟାଗ କରିଦେବା | ତାମସଃ | = ତାମସ |
| ନ, ଉପପଦ୍ୟତେ | = ଉଚିତ ନୁହେଁ । (ତେଣୁ) | ପରିକୀର୍ତ୍ତିତଃ | = ତ୍ୟାଗ ବୋଲି କୁହାଯାଏ । |

ରାଜସ ତ୍ୟାଗର ଲକ୍ଷଣ ।

ଦୁଃଖମିତ୍ୟେବ ଯତ୍କର୍ମ କାୟକ୍ଲେଶଭୟାତ୍ ତ୍ୟଜେତ୍ ।
ସ କୃତ୍ୱା ରାଜସଂ ତ୍ୟାଗଂ ନୈବ ତ୍ୟାଗଫଳଂ ଲଭେତ୍ ॥ ୮ ॥

ଦୁଃଖମ୍, ଇତି, ଏବ, ଯତ୍, କର୍ମ, କାୟକ୍ଲେଶଭୟାତ୍, ତ୍ୟଜେତ୍,
ସଃ, କୃତ୍ୱା, ରାଜସମ୍, ତ୍ୟାଗମ୍, ନ, ଏବ, ତ୍ୟାଗଫଳମ୍, ଲଭେତ୍ ।।୮।।

## ଏବଂ ଯଦି କେହି ମନୁଷ୍ୟ—

| | | | |
|---|---|---|---|
| ଯତ୍, କର୍ମ | = ଯାହାକିଛି କର୍ମ ରହିଛି | ଇତି | = ଏପରି (ବୁଝି ଯଦି କେହି) |
| (ତତ୍) | = ସେ ସବୁ | କାୟକ୍ଲେଶ-ଭୟାତ୍ | = ଶାରୀରିକ କ୍ଲେଶ ଭୟରୁ |
| ଦୁଃଖମ୍, ଏବ | = ଦୁଃଖରୂପ ହିଁ ଅଟେ- | | |

* ଏହି ଅଧ୍ୟାୟର ଶ୍ଳୋକ ୪୮ର ଟିପ୍ପଣୀରେ ଏହାର ଅର୍ଥ ଦେଖିବା ଉଚିତ ।

| | | | |
|---|---|---|---|
| ତ୍ୟଜେତ୍ | = (କର୍ତ୍ତବ୍ୟକର୍ମକୁ) ତ୍ୟାଗ କରିଦିଏ (ତେବେ) | କୃତ୍ୱା | = କରି |
| ସଃ | = ସେ (ଏପରି) | ତ୍ୟାଗଫଳମ୍ | = ତ୍ୟାଗର ଫଳକୁ |
| ରାଜସମ୍ | = ରାଜସ | ନ, ଏବ, | = କୌଣସି |
| ତ୍ୟାଗମ୍ | = ତ୍ୟାଗ | ଲଭେତ୍ | ପ୍ରକାରେ ମଧ୍ୟ ପାଇପାରେ ନାହିଁ । |

ସାତ୍ତ୍ୱିକ ତ୍ୟାଗର ଲକ୍ଷଣ ।

**କାର୍ଯ୍ୟମିତ୍ୟେବ ଯତ୍କର୍ମ ନିୟତଂ କ୍ରିୟତେଽର୍ଜୁନ ।**
**ସଙ୍ଗଂ ତ୍ୟକ୍ତ୍ୱା ଫଳଂ ଚୈବ ସ ତ୍ୟାଗଃ ସାତ୍ତ୍ୱିକୋ ମତଃ ॥ ୯ ॥**

କାର୍ଯ୍ୟମ୍, ଇତି, ଏବ, ଯତ୍, କର୍ମ, ନିୟତମ୍, କ୍ରିୟତେ, ଅର୍ଜୁନ,
ସଙ୍ଗମ୍, ତ୍ୟକ୍ତ୍ୱା, ଫଳମ୍, ଚ, ଏବ, ସଃ, ତ୍ୟାଗଃ, ସାତ୍ତ୍ୱିକଃ, ମତଃ ।।୯।।

ଏବଂ—

| | | | |
|---|---|---|---|
| ଅର୍ଜୁନ | = ହେ ଅର୍ଜୁନ ! | ଫଳମ୍ | = ଫଳକୁ |
| ଯତ୍ | = ଯେଉଁ | ତ୍ୟକ୍ତ୍ୱା | = ତ୍ୟାଗ କରି |
| ନିୟତମ୍ | = ଶାସ୍ତ୍ରବିହିତ | କ୍ରିୟତେ | = କରାଯାଏ, |
| କର୍ମ | = କର୍ମ | ସଃ, ଏବ | = ତାହା ହିଁ |
| କାର୍ଯ୍ୟମ୍ | = କରିବା କର୍ତ୍ତବ୍ୟ, | ସାତ୍ତ୍ୱିକଃ | = ସାତ୍ତ୍ୱିକ |
| ଇତି, ଏବ | = ଏପରି ଭାବି | ତ୍ୟାଗଃ | = ତ୍ୟାଗ |
| ସଙ୍ଗମ୍ | = ଆସକ୍ତିକୁ | ମତଃ | = (ବୋଲି) ଗୃହୀତ ହୁଏ । |
| ଚ | = ଏବଂ | | |

ସାତ୍ତ୍ୱିକ ତ୍ୟାଗୀର ଲକ୍ଷଣ ।

**ନ ଦ୍ୱେଷ୍ଟ୍ୟକୁଶଳଂ କର୍ମ କୁଶଳେ ନାନୁଷଜ୍ଜତେ ।**
**ତ୍ୟାଗୀ ସତ୍ତ୍ୱସମାବିଷ୍ଟୋ ମେଧାବୀ ଛିନ୍ନସଂଶୟଃ ॥ ୧୦ ॥**

ନ, ଦ୍ୱେଷ୍ଟି, ଅକୁଶଳମ୍, କର୍ମ, କୁଶଳେ, ନ, ଅନୁଷଜ୍ଜତେ,
ତ୍ୟାଗୀ, ସତ୍ତ୍ୱସମାବିଷ୍ଟଃ, ମେଧାବୀ, ଛିନ୍ନସଂଶୟଃ ।।୧୦।।

**ଏବଂ ହେ ଅର୍ଜୁନ ! ଯେଉଁ ମନୁଷ୍ୟ—**

| | | | |
|---|---|---|---|
| ଅକୁଶଳମ୍ | = (ଯେଉଁ ମନୁଷ୍ୟ) ଅକୁଶଳ | ସତ୍ତ୍ୱସମାବିଷ୍ଟଃ | = ଶୁଦ୍ଧ ସତ୍ତ୍ୱଗୁଣଯୁକ୍ତ ପୁରୁଷ |
| କର୍ମ | = କର୍ମରେ | ଛିନ୍ନସଂଶୟଃ | = ସଂଶୟରହିତ, |
| ନ, ଦ୍ୱେଷ୍ଟି | = ଦ୍ୱେଷ କରେନାହିଁ (କି) | ମେଧାବୀ | = ବୁଦ୍ଧିମାନ (ଏବଂ) |
| କୁଶଳେ | = କୁଶଳ କର୍ମରେ | ତ୍ୟାଗୀ | = (ପ୍ରକୃତ) ତ୍ୟାଗୀ ଅଟନ୍ତି । |
| ନ, ଅନୁଷଜ୍ଜତେ | = ଆସକ୍ତ ହୁଏ ନାହିଁ, (ସେହି) | | |

**ନ ହି ଦେହଭୃତା ଶକ୍ୟଂ ତ୍ୟକ୍ତୁଂ କର୍ମାଣ୍ୟଶେଷତଃ ।**
**ଯସ୍ତୁ କର୍ମଫଳତ୍ୟାଗୀ ସ ତ୍ୟାଗୀତ୍ୟଭିଧୀୟତେ ॥ ୧୧ ॥**

ନ, ହି, ଦେହଭୃତା, ଶକ୍ୟମ୍, ତ୍ୟକ୍ତୁମ୍, କର୍ମାଣି, ଅଶେଷତଃ,
ଯଃ, ତୁ, କର୍ମଫଳତ୍ୟାଗୀ, ସଃ, ତ୍ୟାଗୀ, ଇତି, ଅଭିଧୀୟତେ ।।୧୧।।

| | | | |
|---|---|---|---|
| ହି | = କାରଣ | (ତସ୍ମାତ୍) | = ତେଣୁ |
| ଦେହଭୃତା | = ଶରୀରଧାରୀ କୌଣସି ବି ମନୁଷ୍ୟଦ୍ୱାରା | ଯଃ | = ଯେ |
| ଅଶେଷତଃ | = ସମ୍ପୂର୍ଣ୍ଣ ଭାବରେ | କର୍ମଫଳତ୍ୟାଗୀ | = କର୍ମଫଳର ତ୍ୟାଗୀ, |
| କର୍ମାଣି | = ସକଳ କର୍ମକୁ | ସଃ, ତୁ | = ସେ ହିଁ |
| ତ୍ୟକ୍ତୁମ୍ | = ତ୍ୟାଗ କରିବାକୁ | ତ୍ୟାଗୀ | = ତ୍ୟାଗୀ |
| ନ, ଶକ୍ୟମ୍ | = ସକ୍ଷମ ନୁହେଁ; | ଇତି | = ବୋଲି |
| | | ଅଭିଧୀୟତେ | = କୁହାଯାଏ । |

ତ୍ୟାଗୀ ପୁରୁଷଙ୍କ ମହତ୍ତ୍ୱର ପ୍ରତିପାଦନ ।

**ଅନିଷ୍ଟମିଷ୍ଟଂ ମିଶ୍ରଂ ଚ ତ୍ରିବିଧଂ କର୍ମଣଃ ଫଳମ୍ ।**
**ଭବତ୍ୟତ୍ୟାଗିନାଂ ପ୍ରେତ୍ୟ ନ ତୁ ସଂନ୍ୟାସିନାଂ କ୍ୱଚିତ୍ ॥ ୧୨ ॥**

ଅନିଷ୍ଟମ୍, ଇଷ୍ଟମ୍, ମିଶ୍ରମ୍, ଚ, ତ୍ରିବିଧମ୍, କର୍ମଣଃ, ଫଳମ୍,
ଭବତି, ଅତ୍ୟାଗିନାମ୍, ପ୍ରେତ୍ୟ, ନ, ତୁ, ସନ୍ନ୍ୟାସିନାମ୍, କ୍ୱଚିତ୍ ।।୧୨।।

ତଥା—

| | | | |
|---|---|---|---|
| ଅତ୍ୟାଗିନାମ୍ | = କର୍ମଫଳ ତ୍ୟାଗ କରୁ ନ ଥିବା ମନୁଷ୍ୟମାନଙ୍କର | ପ୍ରେତ୍ୟ | = ମରିବାପରେ |
| କର୍ମଣଃ | = କର୍ମର | ଭବତି | = ଅବଶ୍ୟ ହୁଏ, |
| ଇଷ୍ଟମ୍ | = ଭଲ | ତୁ | = କିନ୍ତୁ |
| ଅନିଷ୍ଟମ୍ | = ମନ୍ଦ | ସନ୍ନ୍ୟାସିନାମ୍ | = କର୍ମଫଳ ତ୍ୟାଗ କରିଦେଇଥିବା ମନୁଷ୍ୟଙ୍କ (କର୍ମର ଫଳ) |
| ଚ | = ଏବଂ | କ୍ୱଚିତ୍, ନ | = କୌଣସି କାଳରେ ମଧ୍ୟ ହୁଏ ନାହିଁ । |
| ମିଶ୍ରମ୍ | = ମିଶ୍ରିତ - | | |
| (ଇତି) | = ଏପରି | | |
| ତ୍ରିବିଧମ୍ | = ତିନି ପ୍ରକାର | | |
| ଫଳମ୍ | = ଫଳ | | |

ସର୍ବକର୍ମ ସମ୍ପନ୍ନ ହେବାପାଇଁ ଅଧିଷ୍ଠାନାଦି ପାଞ୍ଚଟି କାରଣର ନିରୂପଣ ।

**ପଞ୍ଚୈତାନି ମହାବାହୋ କାରଣାନି ନିବୋଧ ମେ ।**
**ସାଙ୍ଖ୍ୟେ କୃତାନ୍ତେ ପ୍ରୋକ୍ତାନି ସିଦ୍ଧୟେ ସର୍ବକର୍ମଣାମ୍ ॥ ୧୩ ॥**

ପଞ୍ଚ, ଏତାନି, ମହାବାହୋ, କାରଣାନି, ନିବୋଧ, ମେ,
ସାଂଖ୍ୟେ, କୃତାନ୍ତେ, ପ୍ରୋକ୍ତାନି, ସିଦ୍ଧୟେ, ସର୍ବକର୍ମଣାମ୍ ।।୧୩।।

ଏବଂ—

| | | | |
|---|---|---|---|
| ମହାବାହୋ | = ହେ ମହାବାହୁ ! | ସିଦ୍ଧୟେ | = ସିଦ୍ଧିପାଇଁ * |
| ସର୍ବକର୍ମଣାମ୍ | = ସକଳ କର୍ମର | ଏତାନି | = ଏହି |

* ଅର୍ଥାତ୍ ସମ୍ପୂର୍ଣ୍ଣ କର୍ମ ସିଦ୍ଧ ହେବା ପାଇଁ ।

| | | | |
|---|---|---|---|
| ପଞ୍ଚ | = ପାଞ୍ଚଟି | ପ୍ରୋକ୍ତାନି | = କୁହାଯାଇଛି ; |
| କାରଣାନି | = କାରଣ | (ତାନି) | = ସେଗୁଡ଼ିକୁ (ତୁମେ) |
| କୃତାନ୍ତେ | = କର୍ମମାନଙ୍କୁ ଅନ୍ତ କରିବାର ଉପାୟ | ମେ | = ମୋ'ଠାରୁ |
| ସାଂଖ୍ୟେ | = ସାଂଖ୍ୟଶାସ୍ତ୍ରରେ | ନିବୋଧ | = ଭଲଭାବରେ ଜାଣିନିଅ । |

**ଅଧିଷ୍ଠାନଂ ତଥା କର୍ତ୍ତା କରଣଂ ଚ ପୃଥଗ୍‌ବିଧମ୍ ।**
**ବିବିଧାଶ୍ଚ ପୃଥକ୍ ଚେଷ୍ଟା ଦୈବଂ ଚୈବାତ୍ର ପଞ୍ଚମମ୍ ॥ ୧୪ ॥**

ଅଧିଷ୍ଠାନମ୍, ତଥା, କର୍ତ୍ତା କରଣମ୍, ଚ, ପୃଥଗ୍‌ବିଧମ୍,
ବିବିଧାଃ, ଚ, ପୃଥକ୍, ଚେଷ୍ଟାଃ, ଦୈବମ୍, ଚ, ଏବ, ଅତ୍ର, ପଞ୍ଚମମ୍ ।। ୧୪ ।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଅତ୍ର | = ଏହି ବିଷୟରେ ଅର୍ଥାତ୍ କର୍ମମାନଙ୍କ ସିଦ୍ଧିରେ | କରଣମ୍ | = କରଣ [୨] |
| | | ଚ | = ଏବଂ |
| | | ବିବିଧାଃ | = ନାନାପ୍ରକାର |
| | | ପୃଥକ୍ | = ଅଲଗା-ଅଲଗା |
| ଅଧିଷ୍ଠାନମ୍ | = ଅଧିଷ୍ଠାନ [୧] | ଚେଷ୍ଟାଃ | = ଚେଷ୍ଟାମାନ (ଏବଂ) |
| ଚ | = ଏବଂ | | |
| କର୍ତ୍ତା | = କର୍ତ୍ତା | ତଥା, ଏବ | = ସେହିପରି |
| ଚ | = ତଥା | ପଞ୍ଚମମ୍ | = ପଞ୍ଚମ ହେତୁ |
| ପୃଥଗ୍‌ବିଧମ୍ | = ବିଭିନ୍ନ ପ୍ରକାର | ଦୈବମ୍ | = ଦୈବ ଅଟେ । [୩] |

୧-ଯାହାର ଆଶ୍ରୟରେ କର୍ମ କରାଯାଏ ତାହାର ନାମ 'ଅଧିଷ୍ଠାନ' ଅଟେ ।

୨-ଯେଉଁ-ଯେଉଁ ଇନ୍ଦ୍ରିୟମାନଙ୍କ ଦ୍ୱାରା ଏବଂ ସାଧନମାନଙ୍କ ଦ୍ୱାରା କର୍ମ କରାଯାଏ, ତାହାର ନାମ 'କରଣ' ଅଟେ । ଏହିପରି ଏହି ଅଧ୍ୟାୟର ଶ୍ଳୋକ ୧୮ରେ ଆସିଥିବା 'କରଣ' ଶବ୍ଦର ମଧ୍ୟ ଏହି ଅର୍ଥ ବୁଝିବା ଉଚିତ ।

୩-ପୂର୍ବକୃତ ଶୁଭାଶୁଭ କର୍ମର ସଂସ୍କାରର ନାମ 'ଦୈବ' ଅଟେ ।

**ଶରୀରବାଙ୍‌ମନୋଭିର୍ଯତ୍କର୍ମ ପ୍ରାରଭତେ ନରଃ ।**
**ନ୍ୟାଯ୍ୟଂ ବା ବିପରୀତଂ ବା ପଞ୍ଚୈତେ ତସ୍ୟ ହେତବଃ ॥ ୧୫ ॥**

ଶରୀରବାଙ୍‌ମନୋଭିଃ, ଯତ୍, କର୍ମ, ପ୍ରାରଭତେ, ନରଃ,
ନ୍ୟାଯ୍ୟମ୍, ବା, ବିପରୀତମ୍, ବା, ପଞ୍ଚ, ଏତେ, ତସ୍ୟ, ହେତବଃ ।।୧୫।।

**କାହିଁକି ନା—**

| | | | |
|---|---|---|---|
| ନରଃ | = ମନୁଷ୍ୟ | ଯତ୍, କର୍ମ | = ଯେ କୌଣସି ମଧ୍ୟ କର୍ମ |
| ଶରୀରବାଙ୍-ମନୋଭିଃ | = ମନ, ବାଣୀ ଓ ଶରୀର ଦ୍ୱାରା | ପ୍ରାରଭତେ | = କରେ, |
| | | ଏତେ | = ଏହି |
| ନ୍ୟାଯ୍ୟମ୍ | = ଶାସ୍ତ୍ରାନୁକୂଳ | ପଞ୍ଚ | = ପାଞ୍ଚଟି (ହିଁ) |
| ବା | = ଅଥବା | ତସ୍ୟ | = ତାହାର |
| ବିପରୀତମ୍, ବା | = ବିପରୀତ, | ହେତବଃ | = କାରଣ । |

> ଆତ୍ମାକୁ କର୍ତ୍ତା ବୋଲି ଗ୍ରହଣ କରୁଥିବା ଲୋକଙ୍କର ନିନ୍ଦା ।

**ତତ୍ରୈବଂ ସତି କର୍ତ୍ତାରମାତ୍ମାନଂ କେବଳଂ ତୁ ଯଃ ।**
**ପଶ୍ୟତ୍ୟକୃତବୁଦ୍ଧିତ୍ୱାନ୍ନ ସ ପଶ୍ୟତି ଦୁର୍ମତିଃ ॥ ୧୬ ॥**

ତତ୍ର, ଏବମ୍, ସତି, କର୍ତ୍ତାରମ୍, ଆତ୍ମାନମ୍, କେବଳମ୍, ତୁ, ଯଃ,
ପଶ୍ୟତି, ଅକୃତବୁଦ୍ଧିତ୍ୱାତ୍, ନ, ସଃ, ପଶ୍ୟତି, ଦୁର୍ମତିଃ ।।୧୬।।

| | | | |
|---|---|---|---|
| ତୁ | = ପରନ୍ତୁ | ଯଃ | = ଯେଉଁ ମନୁଷ୍ୟ |
| ଏବମ୍ | = ଏପରି | ଅକୃତବୁଦ୍ଧିତ୍ୱାତ୍ | = ଅଶୁଦ୍ଧବୁଦ୍ଧି * ହୋଇଥିବାରୁ |
| ସତି | = ହେଲେ ମଧ୍ୟ | | |

* ସତ୍‌ସଙ୍ଗ ଏବଂ ଶାସ୍ତ୍ରର ଅଭ୍ୟାସ ଦ୍ୱାରା ଭଗବଦର୍ଥ କର୍ମ ଏବଂ ଉପାସନା କଲେ ମନୁଷ୍ୟର ବୁଦ୍ଧି ଶୁଦ୍ଧ ହୁଏ । ଏଥିପାଇଁ ଯେଉଁ ମନୁଷ୍ୟ ଉପର୍ଯ୍ୟୁକ୍ତ ସାଧନରୁ ରହିତ, ତାହାଙ୍କୁ 'ଅଶୁଦ୍ଧ ବୁଦ୍ଧି' ବୋଲି ବୁଝିବା ଉଚିତ ।

| | | | |
|---|---|---|---|
| ତତ୍ର | = ସେହି ବିଷୟରେ ଅର୍ଥାତ୍ କର୍ମ ହେବାରେ | ପଶ୍ୟତି | = (ବୋଲି) ବୁଝେ, |
| କେବଳମ୍ | = କେବଳ ଶୁଦ୍ଧସ୍ୱରୂପ | ସଃ | = ସେହି |
| ଆତ୍ମାନମ୍ | = ଆତ୍ମାଙ୍କୁ | ଦୁର୍ମତିଃ | = ମଳିନ ବୁଦ୍ଧିଯୁକ୍ତ ଅଜ୍ଞାନୀ |
| କର୍ତ୍ତାରମ୍ | = କର୍ତ୍ତା | ନ, ପଶ୍ୟତି | = ଯଥାର୍ଥ ବୁଝେ ନାହିଁ । |

କର୍ତ୍ତୃତ୍ୱାଭିମାନରୁ ରହିତ ହୋଇ କର୍ମ କରୁଥିବା ମନୁଷ୍ୟଙ୍କ ପ୍ରଶଂସା ।

**ଯସ୍ୟ ନାହଂକୃତୋ ଭାବୋ ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ ।**
**ହତ୍ୱାପି ସ ଇମାଁଲ୍ଲୋକାନ୍ନ ହନ୍ତି ନ ନିବଧ୍ୟତେ ॥ ୧୭ ॥**

ଯସ୍ୟ, ନ, ଅହଂକୃତଃ, ଭାବଃ, ବୁଦ୍ଧିଃ, ଯସ୍ୟ, ନ, ଲିପ୍ୟତେ, ହତ୍ୱା, ଅପି, ସଃ, ଇମାନ୍, ଲୋକାନ୍, ନ, ହନ୍ତି, ନ, ନିବଧ୍ୟତେ ।।୧୭।।

**ଏବଂ ହେ ଅର୍ଜୁନ !—**

| | | | |
|---|---|---|---|
| ଯସ୍ୟ | = ଯେଉଁ ପୁରୁଷଙ୍କ (ଅନ୍ତଃକରଣରେ) | ନ, ଲିପ୍ୟତେ | = ଲିପ୍ତ ହୁଏ ନାହିଁ, |
| ଅହଂକୃତଃ | = 'ମୁଁ କର୍ତ୍ତା'(ବୋଲି) | ସଃ | = ସେହି ପୁରୁଷ |
| ଭାବଃ | = ଭାବ | ଇମାନ୍ | = ଏହି |
| ନ | = ନାହିଁ (ତଥା) | ଲୋକାନ୍ | = ସମସ୍ତ ଲୋକଙ୍କୁ |
| ଯସ୍ୟ | = ଯାହାଙ୍କ | ହତ୍ୱା | = ମାରି |
| ବୁଦ୍ଧିଃ | = ବୁଦ୍ଧି (ସାଂସାରିକ ପଦାର୍ଥରେ ଓ କର୍ମରେ) | ଅପି | = ମଧ୍ୟ (ବାସ୍ତବରେ) |
| | | ନ, ହନ୍ତି | = ମାରନ୍ତି ନାହିଁ,(କି) |
| | | ନ, ନିବଧ୍ୟତେ | = ପାପଦ୍ୱାରା ବାନ୍ଧି ହୁଅନ୍ତି ନାହିଁ * |

* ଯେପରି ଅଗ୍ନି, ବାୟୁ ଓ ଜଳ ଆଦି ଦ୍ୱାରା ପ୍ରାରବ୍ଧବଶତଃ କୌଣସି ପ୍ରାଣୀପ୍ରତି ହିଂସା ହେବା ଦେଖାଯାଉଥିଲେ ବି ବାସ୍ତବରେ ତାହା ହିଂସା ହୁଏ ନାହିଁ, ସେହିପରି ଯେଉଁ ପୁରୁଷର ଦେହରେ ଅଭିମାନ ନାହିଁ ଏବଂ ସ୍ୱାର୍ଥରହିତ ହୋଇ କେବଳ ସଂସାରର ହିତ ପାଇଁ ହିଁ ଯାହାର ସମ୍ପୂର୍ଣ୍ଣ କର୍ମ ହୋଇଥାଏ, ସେହି ପୁରୁଷର ଶରୀର ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯଦି କୌଣସି ପ୍ରାଣୀର ହିଂସା ହେଲା ବୋଲି ଲୋକଦୃଷ୍ଟିରେ ଆସେ, ତେବେ ବି ବାସ୍ତବରେ ତାହା ହିଂସା ନୁହେଁ, କାରଣ ଆସକ୍ତି, ସ୍ୱାର୍ଥ ଏବଂ ଅହଂକାର ନ ଥିଲେ କୌଣସି ପ୍ରାଣୀ ପ୍ରତି ହିଂସା ହେବ ନାହିଁ ତଥା ବିନା କର୍ତ୍ତୃତ୍ୱ-ଅଭିମାନରେ କରାଯାଉଥିବା କର୍ମ ବାସ୍ତବରେ ଅକର୍ମ ହିଁ ହୋଇଥାଏ । ସେଥିପାଇଁ ସେହି ପୁରୁଷ ପାପରେ ବାନ୍ଧି ହୁଅନ୍ତି ନାହିଁ ।

କର୍ମ-ପ୍ରେରଣା ଏବଂ କର୍ମ-ସଂଗ୍ରହର ସ୍ୱରୂପ ।

**ଜ୍ଞାନଂ ଜ୍ଞେୟଂ ପରିଜ୍ଞାତା ତ୍ରିବିଧା କର୍ମଚୋଦନା ।**
**କରଣଂ କର୍ମ କର୍ତ୍ତେତି ତ୍ରିବିଧଃ କର୍ମସଙ୍ଗ୍ରହଃ ॥ ୧୮ ॥**

ଜ୍ଞାନମ୍, ଜ୍ଞେୟମ୍, ପରିଜ୍ଞାତା, ତ୍ରିବିଧା, କର୍ମଚୋଦନା,
କରଣମ୍, କର୍ମ, କର୍ତ୍ତା, ଇତି, ତ୍ରିବିଧଃ, କର୍ମସଂଗ୍ରହଃ ।।୧୮।।

**ତଥା, ହେ ଅର୍ଜୁନ ।—**

| | | | |
|---|---|---|---|
| ପରିଜ୍ଞାତା | = ଜ୍ଞାତା [1] | କର୍ତ୍ତା | = କର୍ତ୍ତା [4] |
| ଜ୍ଞାନମ୍ | = ଜ୍ଞାନ [2] (ଏବଂ) | କରଣମ୍ | = କରଣ [5] (ତଥା) |
| ଜ୍ଞେୟମ୍ | = ଜ୍ଞେୟ [3] | କର୍ମ | = କ୍ରିୟା [6] - |
| ତ୍ରିବିଧା | = ଏ ତିନୋଟି ଦ୍ୱାରା | ଇତି | = ଏହି |
| କର୍ମଚୋଦନା | = କର୍ମ ପ୍ରେରଣା ହୁଏ (ଏବଂ) | ତ୍ରିବିଧଃ | = ତିନୋଟି ଦ୍ୱାରା |
| | | କର୍ମସଂଗ୍ରହଃ | = କର୍ମସଂଗ୍ରହ ହୁଏ । |

ଜ୍ଞାନ, କର୍ମ ଏବଂ କର୍ତ୍ତାର ତ୍ରିବିଧ ଭେଦ ବୁଝାଇବା ପାଇଁ ପ୍ରସ୍ତାବନା ।

**ଜ୍ଞାନଂ କର୍ମ ଚ କର୍ତ୍ତା ଚ ତ୍ରିଧୈବ ଗୁଣଭେଦତଃ ।**
**ପ୍ରୋଚ୍ୟତେ ଗୁଣସଙ୍ଖ୍ୟାନେ ଯଥାବଚ୍ଛୃଣୁ ତାନ୍ୟପି ॥ ୧୯ ॥**

ଜ୍ଞାନମ୍, କର୍ମ, ଚ, କର୍ତ୍ତା, ଚ, ତ୍ରିଧା, ଏବ, ଗୁଣଭେଦତଃ,
ପ୍ରୋଚ୍ୟତେ, ଗୁଣସଂଖ୍ୟାନେ, ଯଥାବତ୍, ଶୃଣୁ, ତାନି, ଅପି ।।୧୯।।

---

୧ - ଜାଣିବା ଲୋକର ନାମ 'ଜ୍ଞାତା' ଅଟେ ।
୨ - ଯାହାଦ୍ୱାରା ଜଣାଯାଏ ତାହାର ନାମ 'ଜ୍ଞାନ' ଅଟେ ।
୩ - ଜାଣି ହେଉଥିବା ବସ୍ତୁର ନାମ 'ଜ୍ଞେୟ' ଅଟେ ।
୪ - କର୍ମ କରିବା ଲୋକର ନାମ 'କର୍ତ୍ତା' ଅଟେ ।
୫ - ଯେଉଁ ସମସ୍ତ ସାଧନ ଦ୍ୱାରା କର୍ମ କରାଯାଏ ତାହାର ନାମ 'କରଣ' ଅଟେ ।
୬ - କରିବାର ନାମ 'କ୍ରିୟା' ଅଟେ ।

### ଏହିମାନଙ୍କ ମଧ୍ୟରେ—

| | | | |
|---|---|---|---|
| ଗୁଣସଂଖ୍ୟାନେ | = ଗୁଣମାନଙ୍କର ସଂଖ୍ୟା କରୁଥିବା ଶାସ୍ତ୍ରରେ | ତ୍ରିଧା | = ତିନି ପ୍ରକାର |
| ଜ୍ଞାନମ୍ | = ଜ୍ଞାନ | ଏବ | = ବୋଲି |
| ଚ | = ଏବଂ | ପ୍ରୋଚ୍ୟତେ | = କୁହାଯାଇଛି । |
| କର୍ମ | = କର୍ମ | ତାନି | = ସେ ଗୁଡ଼ିକୁ |
| ଚ | = ଏବଂ | ଅପି | = ମଧ୍ୟ (ତୁମେ ମୋ ଠାରୁ) |
| କର୍ତ୍ତା | = କର୍ତ୍ତା (ପ୍ରତ୍ୟେକକୁ) | ଯଥାବତ୍ | = ଭଲ ଭାବରେ |
| ଗୁଣଭେଦତଃ | = ଗୁଣଭେଦରେ | ଶୃଣୁ | = ଶୁଣ । |

ସାତ୍ତ୍ୱିକ ଜ୍ଞାନର ଲକ୍ଷଣ ।

**ସର୍ବଭୂତେଷୁ ଯେନୈକଂ ଭାବମବ୍ୟୟମୀକ୍ଷତେ ।**
**ଅବିଭକ୍ତଂ ବିଭକ୍ତେଷୁ ତଜ୍‌ଜ୍ଞାନଂ ବିଦ୍ଧି ସାତ୍ତ୍ୱିକମ୍ ॥ ୨୦ ॥**

ସର୍ବଭୂତେଷୁ, ଯେନ, ଏକମ୍, ଭାବମ୍, ଅବ୍ୟୟମ୍, ଈକ୍ଷତେ,
ଅବିଭକ୍ତମ୍, ବିଭକ୍ତେଷୁ, ତତ୍, ଜ୍ଞାନମ୍, ବିଦ୍ଧି, ସାତ୍ତ୍ୱିକମ୍ ।।୨୦।।

### ହେ ଅର୍ଜୁନ !—

| | | | |
|---|---|---|---|
| ଯେନ | = ଯେଉଁ ଜ୍ଞାନ ଦ୍ୱାରା (ମନୁଷ୍ୟ) | | (ସମଭାବରେ ସ୍ଥିତ ରହିଥିବାର) |
| ବିଭକ୍ତେଷୁ | = ପୃଥକ୍-ପୃଥକ୍ | ଈକ୍ଷତେ | = ଦେଖେ, |
| ସର୍ବଭୂତେଷୁ | = ସମସ୍ତ ଭୂତମାନଙ୍କରେ | ତତ୍ | = ସେହି |
| ଏକମ୍ | = ଏକ | ଜ୍ଞାନମ୍ | = ଜ୍ଞାନକୁ (ତୁମେ) |
| ଅବ୍ୟୟମ୍ | = ଅବିନାଶୀ | ସାତ୍ତ୍ୱିକମ୍ | = ସାତ୍ତ୍ୱିକ (ଜ୍ଞାନ ବୋଲି) |
| ଭାବମ୍ | = ପରମାତ୍ମ ଭାବକୁ | | |
| ଅବିଭକ୍ତମ୍ | = ବିଭାଗ ରହିତ | ବିଦ୍ଧି | = ଜାଣ । |

ରାଜସ ଜ୍ଞାନର ଲକ୍ଷଣ ।

**ପୃଥକ୍ତ୍ୱେନ ତୁ ଯଜ୍‌ଜ୍ଞାନଂ ନାନାଭାବାନ୍ ପୃଥଗ୍‌ବିଧାନ୍ ।**
**ବେତ୍ତି ସର୍ବେଷୁ ଭୂତେଷୁ ତଜ୍‌ଜ୍ଞାନଂ ବିଦ୍ଧି ରାଜସମ୍ ॥ ୨୧ ॥**

ପୃଥକ୍‌ତ୍ୱେନ, ତୁ, ଯତ୍, ଜ୍ଞାନମ୍, ନାନାଭାବାନ୍, ପୃଥଗ୍‌ବିଧାନ୍,
ବେତ୍ତି, ସର୍ବେଷୁ, ଭୂତେଷୁ, ତତ୍, ଜ୍ଞାନମ୍, ବିଦ୍ଧି, ରାଜସମ୍ ।।୨୧।।

| | | | |
|---|---|---|---|
| ତୁ | = କିନ୍ତୁ | ନାନାଭାବାନ୍ | = ଅନେକ ଭାବମାନଙ୍କୁ |
| ଯତ୍ | = ଯେଉଁ | ପୃଥକ୍ ବିଧାନ୍ | = ପୃଥକ୍ ପୃଥକ୍ ବୋଲି |
| ଜ୍ଞାନମ୍ | = ଜ୍ଞାନ (ଅର୍ଥାତ୍ ଯେଉଁ ଜ୍ଞାନ ଦ୍ୱାରା ମନୁଷ୍ୟ) | ବେତ୍ତି | = ଜାଣେ, |
| | | ତତ୍ | = ସେହି |
| ସର୍ବେଷୁ | = ସକଳ | ଜ୍ଞାନମ୍ | = ଜ୍ଞାନକୁ (ତୁମେ) |
| ଭୂତେଷୁ | = ଭୂତମାନଙ୍କ ମଧ୍ୟରେ | ରାଜସମ୍ | = ରାଜସ (ବୋଲି) |
| ପୃଥକ୍‌ତ୍ୱେନ | = ଭିନ୍ନ ଭିନ୍ନ | ବିଦ୍ଧି | = ଜାଣ । |

ତାମସ ଜ୍ଞାନର ଲକ୍ଷଣ ।

**ଯତ୍ତୁ କୃତ୍ସ୍ନବଦେକସ୍ମିନ୍ କାର୍ଯ୍ୟେ ସକ୍ତମହୈତୁକମ୍ ।**
**ଅତତ୍ତ୍ୱାର୍ଥବଦଳ୍ପଂ ଚ ତତ୍ତାମସମୁଦାହୃତମ୍ ॥ ୨୨ ॥**

ଯତ୍, ତୁ, କୃତ୍ସ୍ନବତ୍, ଏକସ୍ମିନ୍, କାର୍ଯ୍ୟେ, ସକ୍ତମ୍, ଅହୈତୁକମ୍,
ଅତତ୍ତ୍ୱାର୍ଥବତ୍, ଅଳ୍ପମ୍, ଚ, ତତ୍, ତାମସମ୍, ଉଦାହୃତମ୍ ।।୨୨।।

| | | | |
|---|---|---|---|
| ତୁ | = ପରନ୍ତୁ | କାର୍ଯ୍ୟେ | = କାର୍ଯ୍ୟରୂପ ଶରୀରରେ (ହିଁ) |
| ଯତ୍ | = ଯାହା (ଯେଉଁ ଜ୍ଞାନ ଦ୍ୱାରା) | | |
| ଏକସ୍ମିନ୍ | = ଏକମାତ୍ର | କୃତ୍ସ୍ନବତ୍ | = ସମ୍ପୂର୍ଣ୍ଣଭଳି |

| | | | |
|---|---|---|---|
| ସକ୍ତମ୍ | = (ତା ପ୍ରତି) ଆସକ୍ତ ହୁଏ* (ଏବଂ) | | ରହିତ (ଏବଂ) |
| | | ଅଳ୍ପମ୍ | = ତୁଚ୍ଛ, |
| ଚ | = ତଥା (ଯାହା) | ତତ୍ | = ତାହାକୁ |
| ଅହୈତୁକମ୍ | = ଅଯୌକ୍ତିକ, | ତାମସମ୍ | = ତାମସ |
| ଅତତ୍ତ୍ୱାର୍ଥବତ୍ | = ତାତ୍ତ୍ୱିକ ଅର୍ଥରୁ | ଉଦାହୃତମ୍ | = କୁହାଯାଇଛି । |

ସାତ୍ତ୍ୱିକ କର୍ମର ଲକ୍ଷଣ ।

**ନିୟତଂ ସଙ୍ଗରହିତମରାଗଦ୍ୱେଷତଃ କୃତମ୍ ।**
**ଅଫଳପ୍ରେପ୍ସୁନା କର୍ମ ଯତ୍ତତ୍ସାତ୍ତ୍ୱିକମୁଚ୍ୟତେ ॥ ୨୩ ॥**

ନିୟତମ୍, ସଙ୍ଗରହିତମ୍, ଅରାଗଦ୍ୱେଷତଃ, କୃତମ୍,
ଅଫଳପ୍ରେପ୍ସୁନା, କର୍ମ, ଯତ୍, ତତ୍, ସାତ୍ତ୍ୱିକମ୍, ଉଚ୍ୟତେ ।।୨୩।।

**ତଥା ହେ ଅର୍ଜୁନ !—**

| | | | |
|---|---|---|---|
| ଯତ୍ | = ଯେଉଁ | ଅଫଳପ୍ରେପ୍ସୁନା | = ଫଳ ଇଚ୍ଛା କରୁ ନ ଥିବା ପୁରୁଷଙ୍କ ଦ୍ୱାରା |
| କର୍ମ | = କର୍ମ | ଅରାଗଦ୍ୱେଷତଃ | = ବିନା ରାଗଦ୍ୱେଷରେ |
| ନିୟତମ୍ | = ଶାସ୍ତ୍ରବିଧି ଦ୍ୱାରା ନିୟତ (ଏବଂ) | କୃତମ୍ | = କରାଯାଇଥାଏ- |
| ସଙ୍ଗରହିତମ୍ | = କର୍ତ୍ତାପଣ ଅଭିମାନରୁ ରହିତ (ତଥା) | ତତ୍ | = ତାହା |
| | | ସାତ୍ତ୍ୱିକମ୍ | = ସାତ୍ତ୍ୱିକ |
| | | ଉଚ୍ୟତେ | = କୁହାଯାଏ । |

ରାଜସ କର୍ମର ଲକ୍ଷଣ ।

**ଯତ୍ତୁ କାମେପ୍ସୁନା କର୍ମ ସାହଙ୍କାରେଣ ବା ପୁନଃ ।**
**କ୍ରିୟତେ ବହୁଳାୟାସଂ ତଦ୍ରାଜସମୁଦାହୃତମ୍ ॥ ୨୪ ॥**

* ଅର୍ଥାତ୍ ଯେଉଁ ବିପରୀତ ଜ୍ଞାନ ଦ୍ୱାରା ମନୁଷ୍ୟ ଏକ କ୍ଷଣଭଙ୍ଗୁର ନାଶବାନ୍ ଶରୀରକୁ ହିଁ ଆତ୍ମା ମାନି ତାହାହିଁ ସର୍ବସ୍ୱ ବୋଲି ସେଥିରେ ଆସକ୍ତ ରହେ ।

ଯତ୍, ତୁ, କାମେପ୍ସୁନା, କର୍ମ, ସାହଂକାରେଣ, ବା, ପୁନଃ,
କ୍ରିୟତେ, ବହୁଳାୟାସମ୍, ତତ୍, ରାଜସମ୍, ଉଦାହୃତମ୍ ।।୨୪।।

| | | | |
|---|---|---|---|
| ତୁ | = ପରନ୍ତୁ | | ପୁରୁଷ ଦ୍ୱାରା |
| ଯତ୍ | = ଯେଉଁ | ବା | = ବା |
| କର୍ମ | = କର୍ମ | ସାହଂକାରେଣ | = ଅହଙ୍କାରଯୁକ୍ତ ପୁରୁଷଦ୍ୱାରା, |
| ବହୁଳାୟାସମ୍ | = ବହୁତ ପରିଶ୍ରମଯୁକ୍ତ ହୋଇଥାଏ | କ୍ରିୟତେ | = କରାଯାଏ |
| | | ତତ୍ | = ସେହି କର୍ମ |
| ପୁନଃ | = ତଥା | ରାଜସମ୍ | = ରାଜସ (ବୋଲି) |
| କାମେପ୍ସୁନା | = ଭୋଗ ଇଚ୍ଛା କରୁଥିବା | ଉଦାହୃତମ୍ | = କୁହାଯାଏ । |

ତାମସ କର୍ମର ଲକ୍ଷଣ ।

**ଅନୁବନ୍ଧଂ କ୍ଷୟଂ ହିଂସାମନବେକ୍ଷ୍ୟ ଚ ପୌରୁଷମ୍ ।**
**ମୋହାଦାରଭ୍ୟତେ କର୍ମ ଯତ୍ତାମସମୁଚ୍ୟତେ ॥ ୨୫ ॥**

ଅନୁବନ୍ଧମ୍, କ୍ଷୟମ୍, ହିଂସାମ୍, ଅନବେକ୍ଷ୍ୟ, ଚ, ପୌରୁଷମ୍,
ମୋହାତ୍, ଆରଭ୍ୟତେ, କର୍ମ, ଯତ୍, ତତ୍, ତାମସମ୍, ଉଚ୍ୟତେ ।।୨୫।।

**ତଥା —**

| | | | |
|---|---|---|---|
| ଯତ୍ | = ଯେଉଁ | ମୋହାତ୍ | = କେବଳ ଅଜ୍ଞାନବଶତଃ |
| କର୍ମ | = କର୍ମ | | |
| ଅନୁବନ୍ଧମ୍ | = ପରିଣାମ, | ଆରଭ୍ୟତେ | = ଆରମ୍ଭ କରାଯାଏ, |
| କ୍ଷୟମ୍ | = ହାନି, | | |
| ହିଂସାମ୍ | = ହିଂସା | ତତ୍ | = ସେହି କର୍ମ |
| ଚ | = ଏବଂ | ତାମସମ୍ | = ତାମସ |
| ପୌରୁଷମ୍ | = ସାମର୍ଥ୍ୟକୁ | ଉଚ୍ୟତେ | = (ବୋଲି) କୁହାଯାଏ । |
| ଅନବେକ୍ଷ୍ୟ | = ବିଚାର ନକରି | | |

ସାତ୍ତ୍ୱିକ କର୍ତ୍ତାଙ୍କ ଲକ୍ଷଣ ।

**ମୁକ୍ତସଙ୍ଗୋଽନହଂବାଦୀ ଧୃତ୍ୟୁତ୍ସାହସମନ୍ୱିତଃ ।**
**ସିଦ୍ଧ୍ୟସିଦ୍ଧ୍ୟୋର୍ନିର୍ବିକାରଃ କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ ॥ ୨୬ ॥**

ମୁକ୍ତସଙ୍ଗଃ, ଅନହଂବାଦୀ, ଧୃତ୍ୟୁତ୍ସାହସମନ୍ୱିତଃ,
ସିଦ୍ଧ୍ୟସିଦ୍ଧ୍ୟୋଃ, ନିର୍ବିକାରଃ, କର୍ତ୍ତା, ସାତ୍ତ୍ୱିକଃ, ଉଚ୍ୟତେ ।।୨୬।।

**ତଥା ହେ ଅର୍ଜୁନ ! ଯେଉଁ —**

| | | | |
|---|---|---|---|
| କର୍ତ୍ତା | = (ଯେଉଁ) କର୍ତ୍ତା | | ଯୁକ୍ତ (ତଥା) |
| ମୁକ୍ତସଙ୍ଗଃ | = ସଙ୍ଗରହିତ, | ସିଦ୍ଧ୍ୟସିଦ୍ଧ୍ୟୋଃ | = କାର୍ଯ୍ୟର ସିଦ୍ଧି ଓ ଅସିଦ୍ଧିରେ |
| ଅନହଂବାଦୀ | = ଅହଙ୍କାରଯୁକ୍ତ ବଚନ କହନ୍ତି ନାହିଁ, | ନିର୍ବିକାରଃ | = ହର୍ଷ-ଶୋକାଦି ବିକାରରୁ ରହିତ, |
| ଧୃତ୍ୟୁତ୍ସାହ-ସମନ୍ୱିତଃ | = ଧୈର୍ଯ୍ୟ ଏବଂ ଉତ୍ସାହରେ | ସାତ୍ତ୍ୱିକଃ | = (ସେ) ସାତ୍ତ୍ୱିକ |
| | | ଉଚ୍ୟତେ | = କୁହାଯାନ୍ତି । |

ରାଜସ କର୍ତ୍ତାଙ୍କ ଲକ୍ଷଣ ।

**ରାଗୀ କର୍ମଫଳପ୍ରେପ୍ସୁର୍ଲୁବ୍ଧୋ ହିଂସାତ୍ମକୋଽଶୁଚିଃ ।**
**ହର୍ଷଶୋକାନ୍ୱିତଃ କର୍ତ୍ତା ରାଜସଃ ପରିକୀର୍ତ୍ତିତଃ ॥ ୨୭ ॥**

ରାଗୀ, କର୍ମଫଳପ୍ରେପ୍ସୁଃ, ଲୁବ୍ଧଃ, ହିଂସାତ୍ମକଃ, ଅଶୁଚିଃ,
ହର୍ଷଶୋକାନ୍ୱିତଃ, କର୍ତ୍ତା, ରାଜସଃ, ପରିକୀର୍ତ୍ତିତଃ ।।୨୭।।

**ଏବଂ ଯେଉଁ—**

| | | | |
|---|---|---|---|
| କର୍ତ୍ତା | = (ଯେଉଁ) କର୍ତ୍ତା | ହିଂସାତ୍ମକଃ | = ଅନ୍ୟକୁ କଷ୍ଟ ଦେବାର ସ୍ୱଭାବଯୁକ୍ତ, |
| ରାଗୀ | = ଆସକ୍ତିଯୁକ୍ତ, | | |
| କର୍ମଫଳପ୍ରେପ୍ସୁଃ | = କର୍ମଫଳାକାଙ୍କ୍ଷୀ, | | |
| ଲୁବ୍ଧଃ | = ଲୋଭୀ, (ତଥା) | ଅଶୁଚିଃ | = ଅଶୁଦ୍ଧାଚାରୀ (ଏବଂ) |

| | | | | | |
|---|---|---|---|---|---|
| ହର୍ଷଶୋକାନ୍ୱିତଃ | = | ହର୍ଷ ଓ ଶୋକ ଦ୍ୱାରା ଲିପ୍ତ (ତାହାକୁ) | ରାଜସଃ | = | ରାଜସ କର୍ତ୍ତା |
| | | | ପରିକୀର୍ତ୍ତିତଃ | = | କୁହାଯାଏ । |

ତାମସ କର୍ତ୍ତାଙ୍କ ଲକ୍ଷଣ ।

**ଅଯୁକ୍ତଃ ପ୍ରାକୃତଃ ସ୍ତବ୍‌ଧଃ ଶଠୋ ନୈଷ୍କୃତିକୋଽଲସଃ ।**
**ବିଷାଦୀ ଦୀର୍ଘସୂତ୍ରୀ ଚ କର୍ତ୍ତା ତାମସ ଉଚ୍ୟତେ ॥ ୨୮ ॥**

ଅଯୁକ୍ତଃ, ପ୍ରାକୃତଃ, ସ୍ତବ୍‌ଧଃ, ଶଠଃ, ନୈଷ୍କୃତିକଃ, ଅଲସଃ, ବିଷାଦୀ, ଦୀର୍ଘସୂତ୍ରୀ, ଚ, କର୍ତ୍ତା, ତାମସଃ, ଉଚ୍ୟତେ ।।୨୮।।

**ତଥା ଯେଉଁ —**

| | | | | | |
|---|---|---|---|---|---|
| କର୍ତ୍ତା | = | (ଯେଉଁ) କର୍ତ୍ତା | ବିଷାଦୀ | = | ବିଷାଦଗ୍ରସ୍ତ, |
| ଅଯୁକ୍ତଃ | = | ଅଯୁକ୍ତ (ଅସାବଧାନ), | ଅଲସଃ | = | ଆଳସ୍ୟ ପରାୟଣ |
| ପ୍ରାକୃତଃ | = | ଅଶିକ୍ଷିତ, | ଚ | = | ଏବଂ |
| ସ୍ତବ୍‌ଧଃ | = | ଅବିନୟୀ, | ଦୀର୍ଘସୂତ୍ରୀ | = | ଦୀର୍ଘସୂତ୍ରୀ (ତାହାକୁ)* |
| ଶଠଃ | = | ଧୂର୍ତ୍ତ, | ତାମସଃ | = | ତାମସକର୍ତ୍ତା (ବୋଲି) |
| ନୈଷ୍କୃତିକଃ | = | ଅନ୍ୟର ଜୀବିକା ନାଶକାରୀ (ତଥା) | ଉଚ୍ୟତେ | = | କୁହାଯାଏ । |

ବୁଦ୍ଧି ଓ ଧୃତିର ତ୍ରିବିଧ ଭେଦକୁ ବୁଝାଇବା ପାଇଁ ପ୍ରସ୍ତାବନା ।

**ବୁଦ୍ଧେର୍ଭେଦଂ ଧୃତେଶ୍ଚୈବ ଗୁଣତସ୍ତ୍ରିବିଧଂ ଶୃଣୁ ।**
**ପ୍ରୋଚ୍ୟମାନମଶେଷେଣ ପୃଥକ୍‌ତ୍ୱେନ ଧନଞ୍ଜୟ ॥ ୨୯ ॥**

* 'ଦୀର୍ଘସୂତ୍ରୀ' ତାହାକୁ କୁହାଯାଏ ଯେ ଅଳ୍ପ ସମୟରେ ହୋଇପାରୁଥିବା ସାଧାରଣ କାମକୁ ମଧ୍ୟ ବହୁ କାଳ ପର୍ଯ୍ୟନ୍ତ ପୂରା କରେ ନାହିଁ, ଆଜି କରିଦେବି, କାଲି କରିଦେବି ବୋଲି ବିଚାର କରି ଦିନକର କାମକୁ ବହୁଦିନ ନିଏ ଏବଂ ତଥାପି ମଧ୍ୟ ତାହା ପୂର୍ଣ୍ଣ କରିପାରେ ନାହିଁ ।

ବୁଦ୍ଧେଃ, ଭେଦମ୍, ଧୃତେଃ, ଚ, ଏବ, ଗୁଣତଃ, ତ୍ରିବିଧମ୍, ଶୃଣୁ,
ପ୍ରୋଚ୍ୟମାନମ୍, ଅଶେଷେଣ, ପୃଥକ୍ତ୍ୱେନ, ଧନଞ୍ଜୟ ।।୨୯।।

**ତଥା—**

| | |
|---|---|
| ଧନଞ୍ଜୟ | = ହେ ଧନଞ୍ଜୟ ! (ଏବେ ତୁମେ) |
| ବୁଦ୍ଧେଃ | = ବୁଦ୍ଧିର |
| ଚ | = ଏବଂ |
| ଧୃତେଃ | = ଧୃତିର ଅର୍ଥାତ୍ (ଧାରଣ ଶକ୍ତିର) |
| ଏବ | = ମଧ୍ୟ |
| ଗୁଣତଃ | = ଗୁଣମାନଙ୍କ ଅନୁସାରେ |
| ତ୍ରିବିଧମ୍ | = ତିନି ପ୍ରକାର |
| ଭେଦମ୍ | = ବିଭାଗକୁ |
| (ମୟା) | = ମୋ ଦ୍ୱାରା |
| ଅଶେଷେଣ | = ସମ୍ପୂର୍ଣ୍ଣ ରୂପେ |
| ପୃଥକ୍ତ୍ୱେନ | = ବିଭାଗପୂର୍ବକ |
| ପ୍ରୋଚ୍ୟମାନମ୍ | = କୁହାଯାଉଥିବା |
| ଶୃଣୁ | = ଶୁଣ । |

ସାତ୍ତ୍ୱିକ ବୁଦ୍ଧିର ଲକ୍ଷଣ ।

**ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ କାର୍ଯ୍ୟାକାର୍ଯ୍ୟେ ଭୟାଭୟେ ।**
**ବନ୍ଧଂ ମୋକ୍ଷଂ ଚ ଯା ବେତ୍ତି ବୁଦ୍ଧିଃ ସା ପାର୍ଥ ସାତ୍ତ୍ୱିକୀ ॥ ୩୦ ॥**

ପ୍ରବୃତ୍ତିମ୍, ଚ, ନିବୃତ୍ତିମ୍, ଚ, କାର୍ଯ୍ୟାକାର୍ଯ୍ୟେ, ଭୟାଭୟେ,
ବନ୍ଧମ୍, ମୋକ୍ଷମ୍, ଚ, ଯା, ବେତ୍ତି, ବୁଦ୍ଧିଃ, ସା, ପାର୍ଥ, ସାତ୍ତ୍ୱିକୀ ।।୩୦।।

| | |
|---|---|
| ପାର୍ଥ | = ହେ ପାର୍ଥ ! |
| ଯା | = ଯେଉଁ ବୁଦ୍ଧି |
| ପ୍ରବୃତ୍ତିମ୍ | = ପ୍ରବୃତ୍ତିମାର୍ଗକୁ [1] |
| ଚ | = ଏବଂ |
| ନିବୃତ୍ତିମ୍ | = ନିବୃତ୍ତିମାର୍ଗକୁ, [2] |
| କାର୍ଯ୍ୟାକାର୍ଯ୍ୟେ | = କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ, |
| ଭୟାଭୟେ | = ଭୟ ଓ ଅଭୟକୁ |

୧-ଗୃହସ୍ଥ ଧର୍ମ ପାଳନ କରୁଥିବା ସମୟରେ ଫଳ ଏବଂ ଆସକ୍ତି ତ୍ୟାଗ କରି ଭଗବତ୍-ଅର୍ପଣ ବୁଦ୍ଧିରେ କେବଳ ଲୋକଶିକ୍ଷାର୍ଥ ରାଜା ଜନକଙ୍କ ପରି ଆଚରଣ କରିବାର ନାମ 'ପ୍ରବୃତ୍ତିମାର୍ଗ' ଅଟେ ।

୨-ଦେହାଭିମାନକୁ ତ୍ୟାଗ କରି କେବଳ ଏକ ସଚ୍ଚିଦାନନ୍ଦଘନ ପରମାତ୍ମାରେ ସ୍ଥିତ ହୋଇଥିବା ଶ୍ରୀ ଶୁକଦେବ ଏବଂ ସନକାଦିଙ୍କ ପରି ସଂସାରଠାରୁ ଉପରାମ ହୋଇ ସଂସାରରେ ବିଚରଣ କରିବାର ନାମ 'ନିବୃତ୍ତିମାର୍ଗ' ଅଟେ ।

| | | | |
|---|---|---|---|
| ଚ | = ତଥା | ବେତ୍ତି | = ଯଥାର୍ଥ ଜାଣେ |
| ବନ୍ଧମ୍ | = ବନ୍ଧନକୁ | ସା | = ସେହି |
| ଚ | = ଏବଂ | ବୁଦ୍ଧିଃ | = ବୁଦ୍ଧି |
| ମୋକ୍ଷମ୍ | = ମୋକ୍ଷକୁ | ସାତ୍ତ୍ୱିକୀ | = ସାତ୍ତ୍ୱିକୀ ଅଟେ । |

ରାଜସୀ ବୁଦ୍ଧିର ଲକ୍ଷଣ ।

**ଯୟା ଧର୍ମମଧର୍ମଂ ଚ କାର୍ଯ୍ୟଂ ଚାକାର୍ଯ୍ୟମେବ ଚ ।**
**ଅଯଥାବତ୍ ପ୍ରଜାନାତି ବୁଦ୍ଧିଃ ସା ପାର୍ଥ ରାଜସୀ ॥ ୩୧ ॥**

ଯୟା, ଧର୍ମମ୍ ଅଧର୍ମମ୍, ଚ, କାର୍ଯ୍ୟମ୍, ଚ, ଅକାର୍ଯ୍ୟମ୍, ଏବ, ଚ,
ଅଯଥାବତ୍, ପ୍ରଜାନାତି, ବୁଦ୍ଧିଃ, ସା, ପାର୍ଥ, ରାଜସୀ ।।୩୧ ।।

ଏବଂ —

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ଚ | = ଏବଂ |
| ଯୟା | = (ମନୁଷ୍ୟ) ଯେଉଁ ବୁଦ୍ଧି ଦ୍ୱାରା | ଅକାର୍ଯ୍ୟମ୍ | = ଅକର୍ତ୍ତବ୍ୟକୁ |
| | | ଏବ | = ମଧ୍ୟ |
| | | ଅଯଥାବତ୍, | = ଯଥାର୍ଥ ରୂପେ |
| ଧର୍ମମ୍ | = ଧର୍ମକୁ | | |
| ଚ | = ଏବଂ | ପ୍ରଜାନାତି | ଜାଣେ ନାହିଁ, |
| ଅଧର୍ମମ୍ | = ଅଧର୍ମକୁ | ସା | = ସେହି |
| ଚ | = ତଥା | ବୁଦ୍ଧିଃ | = ବୁଦ୍ଧି |
| କାର୍ଯ୍ୟମ୍ | = କର୍ତ୍ତବ୍ୟକୁ | ରାଜସୀ | = ରାଜସୀ ଅଟେ । |

ତାମସୀ ବୁଦ୍ଧିର ଲକ୍ଷଣ ।

**ଅଧର୍ମଂ ଧର୍ମମିତି ଯା ମନ୍ୟତେ ତମସାବୃତା ।**
**ସର୍ବାର୍ଥାନ୍ ବିପରୀତାଂଶ୍ଚ ବୁଦ୍ଧିଃ ସା ପାର୍ଥ ତାମସୀ ॥ ୩୨ ॥**

ଅଧର୍ମମ୍, ଧର୍ମମ୍, ଇତି, ଯା, ମନ୍ୟତେ, ତମସା, ଆବୃତା,
ସର୍ବାର୍ଥାନ୍, ବିପରୀତାନ୍, ଚ, ବୁଦ୍ଧିଃ, ସା, ପାର୍ଥ, ତାମସୀ ।।୩୨ ।।

ଏବଂ —

| | | | |
|---|---|---|---|
| ପାର୍ଥ | = ହେ ଅର୍ଜୁନ ! | ମନ୍ୟତେ | = ମାନିନିଏ |
| ଯା | = ଯେଉଁ | ଚ | = ତଥା |
| ତମସା | = ତମୋଗୁଣ ଦ୍ୱାରା | ସର୍ବାର୍ଥାନ୍ | = ସବୁ ବିଷୟକୁ (ଏହିପରି) |
| ଆବୃତା | = ଆବୃତ ହୋଇଥିବା ବୁଦ୍ଧି | ବିପରୀତାନ୍ | = ବିପରୀତ |
| ଅଧର୍ମମ୍ | = ଅଧର୍ମକୁ (ମଧ୍ୟ) | (ମନ୍ୟତେ) | = ମନେକରେ, |
| | | ସା | = ସେହି |
| ଧର୍ମମ୍ | = 'ଏହା ଧର୍ମ ଅଟେ' | ବୁଦ୍ଧିଃ | = ବୁଦ୍ଧି |
| ଇତି | = ବୋଲି | ତାମସୀ | = ତାମସୀ ଅଟେ । |

ସାତ୍ତ୍ୱିକୀ ଧୃତିର ଲକ୍ଷଣ ।

**ଧୃତ୍ୟା ଯୟା ଧାରୟତେ ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ।**
**ଯୋଗେନାବ୍ୟଭିଚାରିଣ୍ୟା ଧୃତିଃ ସା ପାର୍ଥ ସାତ୍ତ୍ୱିକୀ ॥ ୩୩ ॥**

ଧୃତ୍ୟା, ଯୟା, ଧାରୟତେ, ମନଃପ୍ରାଣେନ୍ଦ୍ରିୟକ୍ରିୟାଃ,
ଯୋଗେନ, ଅବ୍ୟଭିଚାରିଣ୍ୟା, ଧୃତିଃ, ସା, ପାର୍ଥ, ସାତ୍ତ୍ୱିକୀ ।।୩୩।।

ଏବଂ—

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ମନଃପ୍ରାଣେ-ନ୍ଦ୍ରିୟକ୍ରିୟାଃ | = ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କର କ୍ରିୟାମାନଙ୍କୁ[୨] |
| ଯୟା | = ଯେଉଁ | | |
| ଅବ୍ୟଭିଚାରିଣ୍ୟା | = ଅବ୍ୟଭିଚାରିଣୀ[୧] | | |
| ଧୃତ୍ୟା | = ଧାରଣ ଶକ୍ତି ଦ୍ୱାରା (ମନୁଷ୍ୟ) | ଧାରୟତେ | = ଧାରଣ କରେ |
| | | ସା | = ସେହି |
| ଯୋଗେନ | = ଧ୍ୟାନ ଯୋଗର ଆଶ୍ରୟ ନେଇ | ଧୃତିଃ | = ଧାରଣ ଶକ୍ତି |
| | | ସାତ୍ତ୍ୱିକୀ | = ସାତ୍ତ୍ୱିକୀ ଅଟେ । |

୧-ଭଗବତ୍-ବିଷୟକୁ ଛାଡ଼ି ଅନ୍ୟ ସାଂସାରିକ ବିଷୟକୁ ଧାରଣ କରିବା ହିଁ ବ୍ୟଭିଚାର ଦୋଷ ଅଟେ । ଏହି ଦୋଷରୁ ରହିତ ହେବା ହିଁ 'ଅବ୍ୟଭିଚାରିଣୀ ଧାରଣଶକ୍ତି' ଅଟେ ।

୨-ମନ, ପ୍ରାଣ ଓ ଇନ୍ଦ୍ରିୟସମୂହକୁ ଭଗବତ୍‌ପ୍ରାପ୍ତି ପାଇଁ ଭଜନ, ଧ୍ୟାନ ଏବଂ ନିଷ୍କାମ କର୍ମରେ ଲଗାଇବାର ନାମ 'ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କୁ ଧାରଣ କରିବା' ଅଟେ ।

ରାଜସୀ ଧୃତିର ଲକ୍ଷଣ ।

**ଯଯ୍ୟା ତୁ ଧର୍ମକାମାର୍ଥାନ୍ ଧୃତ୍ୟା ଧାରୟତେଽର୍ଜୁନ ।**
**ପ୍ରସଙ୍ଗେନ ଫଳାକାଙ୍‌କ୍ଷୀ ଧୃତିଃ ସା ପାର୍ଥ ରାଜସୀ ॥ ୩୪ ॥**

ଯୟା, ତୁ, ଧର୍ମକାମାର୍ଥାନ୍, ଧୃତ୍ୟା, ଧାରୟତେ, ଅର୍ଜୁନ,
ପ୍ରସଙ୍ଗେନ, ଫଳାକାଙ୍‌କ୍ଷୀ, ଧୃତିଃ, ସା, ପାର୍ଥ , ରାଜସୀ ।।୩୪ ।।

| | | | |
|---|---|---|---|
| ତୁ | =ପରନ୍ତୁ | ପ୍ରସଙ୍ଗେନ | =ଅତ୍ୟନ୍ତ ଆସକ୍ତି ସହିତ |
| ପାର୍ଥ | =ହେ ପୃଥାନନ୍ଦନ | ଧର୍ମକାମାର୍ଥାନ୍ | =ଧର୍ମ, ଅର୍ଥ ଓ କାମକୁ |
| ଅର୍ଜୁନ | =ଅର୍ଜୁନ ! | ଧାରୟତେ | =ଧାରଣ କରେ |
| ଫଳାକାଙ୍‌କ୍ଷୀ | =ଫଳ ଇଚ୍ଛା କରୁଥିବା ମନୁଷ୍ୟ | ସା | =ସେହି |
| ଯୟା | = ଯେଉଁ | ଧୃତିଃ | =ଧାରଣ ଶକ୍ତି |
| ଧୃତ୍ୟା | =ଧାରଣ ଶକ୍ତି ଦ୍ୱାରା | ରାଜସୀ | =ରାଜସୀ ଅଟେ । |

ତାମସୀ ଧୃତିର ଲକ୍ଷଣ ।

**ଯଯ୍ୟା ସ୍ୱପ୍ନଂ ଭୟଂ ଶୋକଂ ବିଷାଦଂ ମଦମେବ ଚ ।**
**ନ ବିମୁଞ୍ଚତି ଦୁର୍ମେଧା ଧୃତିଃ ସା ପାର୍ଥ ତାମସୀ ॥ ୩୫ ॥**

ଯୟା, ସ୍ୱପ୍ନମ୍, ଭୟମ୍, ଶୋକମ୍, ବିଷାଦମ୍, ମଦମ୍, ଏବ, ଚ,
ନ, ବିମୁଞ୍ଚତି, ଦୁର୍ମେଧାଃ, ଧୃତିଃ, ସା, ପାର୍ଥ, ତାମସୀ ।।୩୫ ।।

**ତଥା—**

| | | | |
|---|---|---|---|
| ପାର୍ଥ | = ହେ ପାର୍ଥ ! | ଶୋକମ୍ | = ଚିନ୍ତା |
| ଦୁର୍ମେଧାଃ | = ଦୁଷ୍ଟବୁଦ୍ଧି ମନୁଷ୍ୟ | ଚ | = ଏବଂ |
| ଯୟା | = ଯେଉଁ | ବିଷାଦମ୍ | = ଦୁଃଖକୁ (ତଥା) |
| (ଧୃତ୍ୟା) | = ଧାରଣ ଶକ୍ତି ଦ୍ୱାରା | ମଦମ୍ | = ଉନ୍ମତ୍ତତାକୁ |
| ସ୍ୱପ୍ନମ୍ | = ନିଦ୍ରା, | ଏବ | = ମଧ୍ୟ |
| ଭୟମ୍ | = ଭୟ, | | |

| | | | | |
|---|---|---|---|---|
| ନ, ବିମୁଞ୍ଚତି | = ଛାଡ଼େ ନାହିଁ ଅର୍ଥାତ୍ ଧାରଣ କରି ରଖେ | ସା | = | ସେହି |
| | | ଧୃତିଃ | = | ଧାରଣ ଶକ୍ତି |
| | | ତାମସୀ | = | ତାମସୀ ଅଟେ । |

ତ୍ରିବିଧ ଗୁଣ ଅନୁସାରେ ସୁଖର ଭେଦମାନଙ୍କୁ ଶୁଣିବା ପାଇଁ ଭଗବାନଙ୍କ ଆଜ୍ଞା ଏବଂ ସାତ୍ତ୍ୱିକ ସୁଖର ଲକ୍ଷଣ ।

**ସୁଖଂ ତ୍ୱିଦାନୀଂ ତ୍ରିବିଧଂ ଶୃଣୁ ମେ ଭରତର୍ଷଭ ।**
**ଅଭ୍ୟାସାଦ୍ରମତେ ଯତ୍ର ଦୁଃଖାନ୍ତଂ ଚ ନିଗଚ୍ଛତି ॥ ୩୬ ॥**

**ଯତ୍ତଦଗ୍ରେ ବିଷମିବ ପରିଣାମେଽମୃତୋପମମ୍ ।**
**ତତ୍ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତମାତ୍ମବୁଦ୍ଧିପ୍ରସାଦଜମ୍ ॥ ୩୭ ॥**

ସୁଖମ୍, ତୁ, ଇଦାନୀମ୍, ତ୍ରିବିଧମ୍, ଶୃଣୁ, ମେ, ଭରତର୍ଷଭ,
ଅଭ୍ୟାସାତ୍, ରମତେ, ଯତ୍ର, ଦୁଃଖାନ୍ତମ୍, ଚ, ନିଗଚ୍ଛତି ।। ୩୬

ଯତ୍, ତତ୍, ଅଗ୍ରେ, ବିଷମ୍, ଇବ, ପରିଣାମେ, ଅମୃତୋପମମ୍,
ତତ୍, ସୁଖମ୍, ସାତ୍ତ୍ୱିକମ୍, ପ୍ରୋକ୍ତମ୍, ଆତ୍ମବୁଦ୍ଧିପ୍ରସାଦଜମ୍ ।।୩୭ ।।

| | | | | |
|---|---|---|---|---|
| ଭରତର୍ଷଭ | = ହେ ଭରତଶ୍ରେଷ୍ଠ ! | ରମତେ | = | ରମଣ କରେ |
| ଇଦାନୀମ୍ | = ବର୍ତ୍ତମାନ | ଚ | = | ଏବଂ (ଯାହାଦ୍ୱାରା) |
| ତ୍ରିବିଧମ୍ | = ତିନି ପ୍ରକାର | | | |
| ସୁଖମ୍ | = ସୁଖକୁ | ଦୁଃଖାନ୍ତମ୍ | = | ଦୁଃଖମାନଙ୍କର ଅନ୍ତକୁ |
| ତୁ | = ମଧ୍ୟ | | | |
| ମେ | = ମୋଠାରୁ | ନିଗଚ୍ଛତି | = | ପ୍ରାପ୍ତ ହୋଇଯାଏ- (ଅର୍ଥାତ୍ ସକଳ ଦୁଃଖ ନାଶ ହୁଏ), |
| ଶୃଣୁ | = ଶୁଣ । | | | |
| ଯତ୍ର | = ଯେଉଁ ସୁଖରେ (ସାଧକ) | | | |
| ଅଭ୍ୟାସାତ୍ | = ଭଜନ, ଧ୍ୟାନ ଏବଂ ସେବା ଆଦିର ଅଭ୍ୟାସଦ୍ୱାରା | ଯତ୍ | = | କିନ୍ତୁ ଯେଉଁ (ସୁଖ) |
| | | ଅଗ୍ରେ | = | ଆରମ୍ଭରେ (ଯଦିଓ) |

| | | | |
|---|---|---|---|
| ବିଷମ, ଇବ | = ବିଷ ପରି ଲାଗେ [1] (ପରନ୍ତୁ) | ଆତ୍ମବୁଦ୍ଧି-ପ୍ରସାଦଜମ୍ | = ପରମାତ୍ମବିଷୟକ ବୁଦ୍ଧିର ପ୍ରସାଦରୁ ଉତ୍ପନ୍ନ ହେଉଥିବା |
| ପରିଣାମେ | = ପରିଣାମରେ | ସୁଖମ୍ | = ସୁଖକୁ |
| ଅମୃତୋପମମ୍ | = ଅମୃତତୁଲ୍ୟ ହୋଇଥାଏ, | ସାତ୍ତ୍ୱିକମ୍ | = ସାତ୍ତ୍ୱିକ ସୁଖ |
| ତତ୍ | = ସେହି | ପ୍ରୋକ୍ତମ୍ | = କୁହାଯାଇଛି । |

ରାଜସ ସୁଖର ଲକ୍ଷଣ ।

**ବିଷୟେନ୍ଦ୍ରିୟସଂଯୋଗାଦ୍‌ଯତ୍ତଦଗ୍ରେଽମୃତୋପମମ୍ ।**
**ପରିଣାମେ ବିଷମିବ ତତ୍ସୁଖଂ ରାଜସଂ ସ୍ମୃତମ୍ ॥ ୩୮ ॥**

ବିଷୟେନ୍ଦ୍ରିୟସଂଯୋଗାତ୍, ଯତ୍,ତତ୍, ଅଗ୍ରେ, ଅମୃତୋପମମ୍,
ପରିଣାମେ, ବିଷମ୍, ଇବ, ତତ୍, ସୁଖମ୍, ରାଜସମ୍, ସ୍ମୃତମ୍ ।।୩୮।।

ଏବଂ—

| | | | |
|---|---|---|---|
| ଯତ୍ | = ଯେଉଁ | ଅମୃତୋପମମ୍ | = ଅମୃତତୁଲ୍ୟ (ପ୍ରତୀତ ହେଲେ ମଧ୍ୟ); |
| ସୁଖମ୍ | = ସୁଖ | ପରିଣାମେ | = ପରିଣାମରେ |
| ବିଷୟେନ୍ଦ୍ରିୟ-ସଂଯୋଗାତ୍ | = ବିଷୟ ଏବଂ ଇନ୍ଦ୍ରିୟମାନଙ୍କ ସଂଯୋଗରୁ | ବିଷମ୍ | = ବିଷ [2] |
| (ଭବତି) | = ହୁଏ | ଇବ | = ତୁଲ୍ୟ ଅଟେ; |
| ତତ୍ | = ତାହା | (ଅତଃ) | = ଏଣୁ |
| ଅଗ୍ରେ | = ପ୍ରଥମେ ଅର୍ଥାତ୍ ଭୋଗକାଳରେ | ତତ୍ | = ସେହି ସୁଖ |
| | | ରାଜସମ୍ | = ରାଜସ (ବୋଲି) |
| | | ସ୍ମୃତମ୍ | = କୁହାଯାଇଛି । |

୧-ଯେପରି ଖେଳରେ ଆସକ୍ତ ବାଳକ ମୋହବଶ ହୋଇ ବିଦ୍ୟା ଅଭ୍ୟାସ କରିବା ପ୍ରଥମେ ବିଷତୁଲ୍ୟ ପ୍ରତୀୟମାନ ହୁଏ, ସେହିପରି ବିଷୟାସକ୍ତ ପୁରୁଷ ଭଗବତ୍ ଭଜନ, ଧ୍ୟାନ, ସେବା ଆଦି ଅଭ୍ୟାସର ମର୍ମ ନ ଜାଣିବା କାରଣରୁ ତାହାକୁ 'ବିଷପରି ଲାଗେ'—ଏପରି ।

୨-ବଳ, ବୀର୍ଯ୍ୟ, ବୁଦ୍ଧି, ଧନ, ଉତ୍ସାହ ଏବଂ ପରଲୋକର ନାଶକ ବିଷୟ ଏବଂ ଇନ୍ଦ୍ରିୟମାନଙ୍କ ସଂଯୋଗରେ ଉତ୍ପନ୍ନ ସୁଖ 'ବିଷତୁଲ୍ୟ' ହିଁ ଅଟେ ।

ତାମସ ସୁଖର ଲକ୍ଷଣ ।

ଯଦଗ୍ରେ ଚାନୁବନ୍ଧେ ଚ ସୁଖଂ ମୋହନମାତ୍ମନଃ ।
ନିଦ୍ରାଲସ୍ୟପ୍ରମାଦୋତ୍ଥଂ ତତ୍ତାମସମୁଦାହୃତମ୍ ॥ ୩୯ ॥

ଯତ୍, ଅଗ୍ରେ, ଚ, ଅନୁବନ୍ଧେ, ଚ, ସୁଖମ୍, ମୋହନମ୍, ଆତ୍ମନଃ,
ନିଦ୍ରାଲସ୍ୟପ୍ରମାଦୋତ୍ଥମ୍, ତତ୍, ତାମସମ୍, ଉଦାହୃତମ୍ ।।୩୯।।

ତଥା—

| | | | |
|---|---|---|---|
| ଯତ୍ | = ଯେଉଁ | ତତ୍ | = ସେହି |
| ସୁଖମ୍ | = ସୁଖ | ନିଦ୍ରାଲସ୍ୟ- | = ନିଦ୍ରା, ଆଳସ୍ୟ |
| ଅଗ୍ରେ | = ଭୋଗକାଳରେ | ପ୍ରମାଦୋତ୍ଥମ୍ | ଓ ପ୍ରମାଦରୁ ଉତ୍ପନ୍ନ (ସୁଖ) |
| ଚ | = ତଥା | ତାମସମ୍ | = ତାମସ (ବୋଲି) |
| ଅନୁବନ୍ଧେ | = ପରିଣାମରେ | ଉଦାହୃତମ୍ | = କୁହାଯାଇଛି । |
| ଚ | = ମଧ୍ୟ | | |
| ଆତ୍ମନଃ | = ଆତ୍ମାର | | |
| ମୋହନମ୍ | = ମୋହକାରକ - | | |

ତ୍ରିବିଧ ଗୁଣମାନଙ୍କର ପ୍ରସଙ୍ଗର ଉପସଂହାର ।

ନ ତଦସ୍ତି ପୃଥିବ୍ୟାଂ ବା ଦିବି ଦେବେଷୁ ବା ପୁନଃ ।
ସତ୍ତ୍ୱଂ ପ୍ରକୃତିଜୈର୍ମୁକ୍ତଂ ଯଦେଭିଃ ସ୍ୟାତ୍ ତ୍ରିଭିର୍ଗୁଣୈଃ ॥ ୪୦ ॥

ନ, ତତ୍, ଅସ୍ତି, ପୃଥିବ୍ୟାମ୍, ବା, ଦିବି, ଦେବେଷୁ, ବା, ପୁନଃ,
ସତ୍ତ୍ୱମ୍, ପ୍ରକୃତିଜୈଃ, ମୁକ୍ତମ୍, ଯତ୍, ଏଭିଃ, ସ୍ୟାତ୍, ତ୍ରିଭିଃ, ଗୁଣୈଃ ।।୪୦।।

| | | | |
|---|---|---|---|
| ପୃଥିବ୍ୟାମ୍ | = ପୃଥିବୀରେ | | ଠାରେ |
| ବା | = ବା | ପୁନଃ | = ତଥା ଏମାନଙ୍କ ବ୍ୟତୀତ ଅନ୍ୟ କେଉଁଠାରେ ମଧ୍ୟ |
| ଦିବି | = ଆକାଶରେ | | |
| ବା | = ଅଥବା | | |
| ଦେବେଷୁ | = ଦେବତାମାନଙ୍କ | | |

| | | | |
|---|---|---|---|
| ତତ୍ | = ସେଭଳି (କୌଣସି ବି) | ଏଭିଃ | = ଏହି |
| ସତ୍ତ୍ୱମ୍ | = ସତ୍ତ୍ୱ | ତ୍ରିଭିଃ | = ତିନି |
| ନ, ଅସ୍ତି | = ନାହିଁ, | ଗୁଣୈଃ | = ଗୁଣମାନଙ୍କରୁ |
| ଯତ୍ | = ଯାହା | ମୁକ୍ତମ୍ | = ମୁକ୍ତ |
| ପ୍ରକୃତିଜୈଃ | = ପ୍ରକୃତିରୁ ଉତ୍ପନ୍ନ | ସ୍ୟାତ୍ | = ହୋଇଥାଏ । |

ବର୍ଣ୍ଣ-ଧର୍ମ ବିଷୟର ଆରମ୍ଭ ।

ବ୍ରାହ୍ମଣକ୍ଷତ୍ରିୟବିଶାଂ ଶୂଦ୍ରାଣାଂ ଚ ପରନ୍ତପ ।
କର୍ମାଣି ପ୍ରବିଭକ୍ତାନି ସ୍ୱଭାବପ୍ରଭବୈର୍ଗୁଣୈଃ ॥ ୪୧ ॥

ବ୍ରାହ୍ମଣକ୍ଷତ୍ରିୟବିଶାମ୍, ଶୂଦ୍ରାଣାମ୍, ଚ, ପରନ୍ତପ,
କର୍ମାଣି, ପ୍ରବିଭକ୍ତାନି, ସ୍ୱଭାବପ୍ରଭବୈଃ, ଗୁଣୈଃ ।।୪୧ ।।

ଏଥିପାଇଁ—

| | | | |
|---|---|---|---|
| ପରନ୍ତପ | = ହେ ପରନ୍ତପ ! | କର୍ମାଣି | = କର୍ମଗୁଡ଼ିକ |
| ବ୍ରାହ୍ମଣକ୍ଷତ୍ରିୟ-ବିଶାମ୍ | = ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର | ସ୍ୱଭାବପ୍ରଭବୈଃ | = ସ୍ୱଭାବରୁ ଉତ୍ପନ୍ନ |
| | | ଗୁଣୈଃ | = ଗୁଣମାନଙ୍କ ଦ୍ୱାରା |
| ଚ | = ତଥା | ପ୍ରବିଭକ୍ତାନି | = ବିଭକ୍ତ କରାଯାଇଛି । |
| ଶୂଦ୍ରାଣାମ୍ | = ଶୂଦ୍ରମାନଙ୍କର | | |

ବ୍ରାହ୍ମଣଙ୍କ ସ୍ୱାଭାବିକ କର୍ମର ବର୍ଣ୍ଣନ ।

ଶମୋ ଦମସ୍ତପଃ ଶୌଚଂ କ୍ଷାନ୍ତିରାର୍ଜବମେବ ଚ ।
ଜ୍ଞାନଂ ବିଜ୍ଞାନମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜମ୍ ॥ ୪୨ ॥

ଶମଃ, ଦମଃ, ତପଃ, ଶୌଚମ୍, କ୍ଷାନ୍ତିଃ, ଆର୍ଜବମ୍, ଏବ, ଚ,
ଜ୍ଞାନମ୍, ବିଜ୍ଞାନମ୍, ଆସ୍ତିକ୍ୟମ୍, ବ୍ରହ୍ମକର୍ମ, ସ୍ୱଭାବଜମ୍ ।। ୪୨ ।।

| | | |
|---|---|---|
| ଶମଃ | = | ଅନ୍ତଃକରଣକୁ ନିଗ୍ରହ କରିବା, |
| ଦମଃ | = | ଇନ୍ଦ୍ରିୟମାନଙ୍କୁ ଦମନ କରିବା, |
| ତପଃ | = | ଧର୍ମପାଳନ ପାଇଁ କଷ୍ଟ ସହିବା, |
| ଶୌଚମ୍ | = | ବାହାରେ ଭିତରେ ଶୁଦ୍ଧ ରହିବା,* |
| କ୍ଷାନ୍ତିଃ | = | ଅନ୍ୟର ଅପରାଧକୁ କ୍ଷମା କରିବା, |
| ଆର୍ଜବମ୍ | = | ମନ, ଇନ୍ଦ୍ରିୟ ଓ ଶରୀରକୁ ସରଳ ରଖିବା, |
| ଆସ୍ତିକ୍ୟମ୍ | = | ବେଦ, ଶାସ୍ତ୍ର, ଈଶ୍ୱର ଓ ପରଲୋକ ଆଦିରେ ଶ୍ରଦ୍ଧା ରଖିବା, |
| ଜ୍ଞାନମ୍ | = | ବେଦାଦି ଶାସ୍ତ୍ରମାନଙ୍କର ଅଧ୍ୟୟନ-ଅଧ୍ୟାପନ କରିବା |
| ଚ | = | ଏବଂ |
| ବିଜ୍ଞାନମ୍ | = | ପରମାତ୍ମ ତତ୍ତ୍ୱକୁ ଅନୁଭବ କରିବା - (ଏ ସମସ୍ତ) |
| ଏବ | = | ହିଁ |
| ବ୍ରହ୍ମକର୍ମ, ସ୍ୱଭାବଜମ୍ | = | ବ୍ରାହ୍ମଣମାନଙ୍କର ସ୍ୱାଭାବିକ କର୍ମ ଅଟେ । |

କ୍ଷତ୍ରିୟମାନଙ୍କ ସ୍ୱାଭାବିକ କର୍ମର ବର୍ଣ୍ଣନ ।

**ଶୌର୍ଯ୍ୟଂ ତେଜୋ ଧୃତିର୍ଦାକ୍ଷ୍ୟଂ ଯୁଦ୍ଧେ ଚାପ୍ୟପଲାୟନମ୍ ।**
**ଦାନମୀଶ୍ୱରଭାବଶ୍ଚ କ୍ଷାତ୍ରଂ କର୍ମ ସ୍ୱଭାବଜମ୍ ॥ ୪୩ ॥**

ଶୌର୍ଯମ୍, ତେଜଃ, ଧୃତିଃ, ଦାକ୍ଷ୍ୟମ୍, ଯୁଦ୍ଧେ, ଚ, ଅପି, ଅପଲାୟନମ୍,
ଦାନମ୍, ଈଶ୍ୱରଭାବଃ, ଚ, କ୍ଷାତ୍ରମ୍, କର୍ମ, ସ୍ୱଭାବଜମ୍ ।।୪୩।।

ଏବଂ—

| | | | |
|---|---|---|---|
| ଶୌର୍ଯ୍ୟମ୍ | = ଶୂରବୀରତା, | ଯୁଦ୍ଧେ | = ଯୁଦ୍ଧରେ |
| ତେଜଃ | = ତେଜ, | ଅପି | = ମଧ୍ୟ |
| ଧୃତିଃ | = ଧୈର୍ଯ୍ୟ, | ଅପଲାୟନମ୍ | = ପଳାଇ ନ ଯିବା, |
| ଦାକ୍ଷ୍ୟମ୍ | = ଦକ୍ଷତା | ଦାନମ୍ | = ଦାନ ଦେବା |
| ଚ | = ଏବଂ | ଚ | = ଏବଂ |

* ଗୀତା ଅଧ୍ୟାୟ ୧୩ ଶ୍ଳୋକ ୭ ଦେଖିବା ଉଚିତ ।

| | | | |
|---|---|---|---|
| ଈଶ୍ୱରଭାବଃ | = ସ୍ୱାମିତ୍ୱ[1] (ଏସବୁ) | ସ୍ୱଭାବଜମ୍ | = ସ୍ୱାଭାବିକ |
| କ୍ଷାତ୍ରମ୍ | = କ୍ଷତ୍ରିୟମାନଙ୍କର | କର୍ମ | = କର୍ମ ଅଟେ । |

ବୈଶ୍ୟ ଏବଂ ଶୂଦ୍ରମାନଙ୍କ ସ୍ୱାଭାବିକ କର୍ମର ବର୍ଣ୍ଣନ ।

**କୃଷିଗୌରକ୍ଷ୍ୟବାଣିଜ୍ୟଂ ବୈଶ୍ୟକର୍ମ ସ୍ୱଭାବଜମ୍ ।**
**ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ୱଭାବଜମ୍ ॥ ୪୪ ॥**

କୃଷିଗୌରକ୍ଷ୍ୟବାଣିଜ୍ୟମ୍, ବୈଶ୍ୟକର୍ମ, ସ୍ୱଭାବଜମ୍,
ପରିଚର୍ଯ୍ୟାତ୍ମକମ୍, କର୍ମ, ଶୂଦ୍ରସ୍ୟ, ଅପି, ସ୍ୱଭାବଜମ୍ ।।୪୪।।

| | | | |
|---|---|---|---|
| କୃଷିଗୌରକ୍ଷ୍ୟ-ବାଣିଜ୍ୟମ୍ | = କୃଷି, ଗୋପାଳନ ଏବଂ କ୍ରୟ-ବିକ୍ରୟରୂପୀ ସତ୍ୟ ବ୍ୟବହାର[2] | ପରିଚର୍ଯ୍ୟାତ୍ମକମ୍ | = (ତଥା) ସବୁ ବର୍ଣ୍ଣର ସେବା କରିବା |
| | | ଶୂଦ୍ରସ୍ୟ | = ଶୂଦ୍ରଙ୍କର |
| ବୈଶ୍ୟକର୍ମ, | = ବୈଶ୍ୟର | ଅପି | = ମଧ୍ୟ |
| ସ୍ୱଭାବଜମ୍ | ସ୍ୱାଭାବିକ କର୍ମ | ସ୍ୱଭାବଜମ୍ | = ସ୍ୱାଭାବିକ |
| | | କର୍ମ | = କର୍ମ ଅଟେ । |

---

୧-ଅର୍ଥାତ୍ ନିଃସ୍ୱାର୍ଥ ଭାବରେ ସମସ୍ତଙ୍କ ହିତ ଚିନ୍ତା କରି ଶାସ୍ତ୍ରଜ୍ଞାନ ଅନୁସାରେ ଶାସନ ଦ୍ୱାରା ପ୍ରେମସହିତ ପୁତ୍ରତୁଲ୍ୟ ପ୍ରଜାଙ୍କୁ ପାଳନ କରିବାର ଭାବ ।

୨-ବାଣିଜ୍ୟ କରିବା ସମୟରେ ବସ୍ତୁମାନଙ୍କର କିଣା-ବିକା କରିବାରେ, ଓଜନ-ମାପ ତଥା ଗଣତି ଆଦିରେ କମ୍ ଦେବା ବା ଅଧିକା ନେଇଯିବା, ଏକ ବସ୍ତୁ ବଦଳରେ ଅନ୍ୟ ବସ୍ତୁ ଦେଇଦେବା ବା ଏକ ବସ୍ତୁରେ ଅନ୍ୟ ବସ୍ତୁ ମିଶାଇ ଭଲ ବଦଳରେ ଖରାପ ଦେଇଦେବା ବା ଖରାପ ବଦଳରେ ଭଲ ନେଇଯିବା, ଲାଭ, ମଧ୍ୟସ୍ଥି-ପାଉଣା ଏବଂ ଦଲାଲି ଆଦି କରି ଲୋକଙ୍କଠାରୁ ଅଧିକ ନେବା ବା କମ୍ ଦେବା, କୌଣସି ବ୍ୟାପାରରେ ମିଥ୍ୟା, କପଟ, ଚୋରି ବା ଜବରଦସ୍ତି ଆଦି ଅନ୍ୟ କୌଣସିପ୍ରକାର ଅନ୍ୟାୟ ଉପାୟରେ ଅନ୍ୟର ସ୍ୱତ୍ୱକୁ ଅନୁଚିତ ଭାବରେ ନେଇଯିବା ହେଉଛି ବାଣିଜ୍ୟର ଦୋଷ । ଏହିସବୁ ଦୋଷରୁ ମୁକ୍ତ ରହି ସତ୍ୟ ଏବଂ ନ୍ୟାୟ ମାର୍ଗରେ ବସ୍ତୁମାନଙ୍କର କ୍ରୟ-ବିକ୍ରୟକୁ 'ସତ୍ୟ ବ୍ୟବହାର' କହନ୍ତି । (ତୁଳାଧାର ବୈଶ୍ୟ ଏହିପରି ବ୍ୟବହାର କରି ସିଦ୍ଧିପ୍ରାପ୍ତ ହୋଇଥିଲେ) ।

ନିଜ ନିଜ ବର୍ଣ୍ଣ-ଧର୍ମର ପାଳନରେ ପରମସିଦ୍ଧି ପ୍ରାପ୍ତି ତଥା ପାଳନ କରିବା ବିଧି ।

ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ ।
ସ୍ୱକର୍ମନିରତଃ ସିଦ୍ଧିଂ ଯଥା ବିନ୍ଦତି ତଚ୍ଛୃଣୁ ॥ ୪୫ ॥

ସ୍ୱେ, ସ୍ୱେ, କର୍ମଣି, ଅଭିରତଃ, ସଂସିଦ୍ଧିମ୍, ଲଭତେ, ନରଃ,
ସ୍ୱକର୍ମନିରତଃ, ସିଦ୍ଧିମ୍, ଯଥା, ବିନ୍ଦତି, ତତ୍, ଶୃଣୁ ।।୪୫।।

**ଏବଂ ଏହି —**

| | | |
|---|---|---|
| ସ୍ୱେ, ସ୍ୱେ | = | ନିଜ ନିଜର |
| କର୍ମଣି | = | ସ୍ୱାଭାବିକ କର୍ମରେ |
| ଅଭିରତଃ | = | ତତ୍ପରତାର ସହିତ ଲାଗି ରହିଥିବା |
| ନରଃ | = | ମନୁଷ୍ୟ |
| ସଂସିଦ୍ଧିମ୍ | = | ଭଗବତ୍ପ୍ରାପ୍ତି ରୂପକ ପରମସିଦ୍ଧିକୁ |
| ଲଭତେ | = | ପ୍ରାପ୍ତ ହୋଇଯାଏ । |
| ସ୍ୱକର୍ମନିରତଃ | = | ନିଜର ସ୍ୱାଭାବିକ କର୍ମରେ ଲାଗି ରହିଥିବା ମନୁଷ୍ୟ |
| ଯଥା | = | ଯେଉଁପରି କର୍ମ କରି |
| ସିଦ୍ଧିମ୍ | = | ପରମସିଦ୍ଧିକୁ |
| ବିନ୍ଦତି | = | ପ୍ରାପ୍ତହୁଏ, |
| ତତ୍ | = | ତାହା (ତୁମେ ମୋ'ଠାରୁ) |
| ଶୃଣୁ | = | ଶୁଣ । |

ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତମ୍ ।
ସ୍ୱକର୍ମଣା ତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ॥ ୪୬ ॥

ଯତଃ, ପ୍ରବୃତ୍ତିଃ, ଭୂତାନାମ୍, ଯେନ, ସର୍ବମ୍, ଇଦମ୍, ତତମ୍,
ସ୍ୱକର୍ମଣା, ତମ୍, ଅଭ୍ୟର୍ଚ୍ୟ, ସିଦ୍ଧିମ୍, ବିନ୍ଦତି, ମାନବଃ।।୪୬।।

**ହେ ଅର୍ଜୁନ !—**

| | | | | | |
|---|---|---|---|---|---|
| ଯତଃ | = | ଯେଉଁ ପରମେଶ୍ୱରଙ୍କ ଠାରୁ | ତତମ୍ | = | ବ୍ୟାପ୍ତ ହୋଇଛି,[୧] |
| ଭୂତାନାମ୍ | = | ସମସ୍ତ ପ୍ରାଣୀଙ୍କ | ତମ୍ | = | ସେହି ପରମେଶ୍ୱରଙ୍କୁ |
| ପ୍ରବୃତ୍ତିଃ | = | ଉତ୍ପତ୍ତି ହୋଇଛି (ଏବଂ) | ସ୍ୱକର୍ମଣା | = | ନିଜର ସ୍ୱାଭାବିକ କର୍ମଦ୍ୱାରା |
| ଯେନ | = | ଯାହାଙ୍କ ଦ୍ୱାରା | ଅଭ୍ୟର୍ଚ୍ୟ | = | ପୂଜା କରି[୨] |
| ଇଦମ୍ | = | ଏହି | ମାନବଃ | = | ମନୁଷ୍ୟ |
| ସର୍ବମ୍ | = | ସମସ୍ତ (ଜଗତ) | ସିଦ୍ଧିମ୍ | = | ପରମସିଦ୍ଧିକୁ |
| | | | ବିନ୍ଦତି | = | ପାଇଥାଏ । |

ସ୍ୱଧର୍ମ ପାଳନର ପ୍ରଶଂସା ।

**ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ସ୍ୱନୁଷ୍ଠିତାତ୍ ।**
**ସ୍ୱଭାବନିୟତଂ କର୍ମ କୁର୍ବନ୍ନାପ୍ନୋତି କିଲ୍‌ବିଷମ୍ ॥ ୪୭ ॥**

ଶ୍ରେୟାନ୍, ସ୍ୱଧର୍ମଃ, ବିଗୁଣଃ, ପରଧର୍ମାତ୍, ସ୍ୱନୁଷ୍ଠିତାତ୍,
ସ୍ୱଭାବନିୟତମ୍, କର୍ମ, କୁର୍ବନ୍, ନ, ଆପ୍ନୋତି, କିଲ୍‌ବିଷମ୍ ।।୪୭ ।।

**ଏହିପାଇଁ —**

| | | | | | |
|---|---|---|---|---|---|
| ସ୍ୱନୁଷ୍ଠିତାତ୍ | = | ଭଲଭାବରେ ଆଚରଣ କରାଯାଇଥିବା | ବିଗୁଣଃ | = | ଗୁଣରହିତ |
| ପରଧର୍ମାତ୍ | = | ଅନ୍ୟର ଧର୍ମଠାରୁ | (ଅପି) | = | ହେଲେ ମଧ୍ୟ |
| | | | ସ୍ୱଧର୍ମଃ | = | ନିଜର ଧର୍ମ |
| | | | ଶ୍ରେୟାନ୍ | = | ଶ୍ରେଷ୍ଠ ଅଟେ; |

୧-ଯେପରି ବରଫ ଜଳ ଦ୍ୱାରା ବ୍ୟାପ୍ତ, ସେହିପରି ସମ୍ପୂର୍ଣ୍ଣ ସଂସାର ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଦ୍ୱାରା ବ୍ୟାପ୍ତ ହୋଇଛି ।

୨-ଯେପରି ପତିବ୍ରତା ସ୍ତ୍ରୀ ପତିଙ୍କୁ ହିଁ ସର୍ବସ୍ୱ ଜ୍ଞାନ କରି ପତି ଆଜ୍ଞାନୁସାରେ ପତି ପାଇଁ କାୟମନୋବାକ୍ୟରେ ସମସ୍ତ କର୍ମ କରେ, ସେହିପରି ପରମେଶ୍ୱରଙ୍କୁ ହିଁ ସର୍ବସ୍ୱ ଜ୍ଞାନ କରି ପରମେଶ୍ୱରଙ୍କ ଆଜ୍ଞାନୁସାରେ ପରମେଶ୍ୱରଙ୍କ ପାଇଁ କାୟମନୋବାକ୍ୟରେ ସ୍ୱାଭାବିକ କର୍ତ୍ତବ୍ୟ କର୍ମର ଆଚରଣ କରିବା ହିଁ କର୍ମଦ୍ୱାରା 'ପରମେଶ୍ୱରଙ୍କ ପୂଜା କରିବା' ଅଟେ ।

| | | | |
|---|---|---|---|
| (ଯସ୍ମାତ୍) | = କାରଣ | କୁର୍ବନ୍ | = ଆଚରଣ କରୁଥିବା (ମନୁଷ୍ୟ) |
| ସ୍ୱଭାବ-ନିୟତମ୍ | = ସ୍ୱଭାବଦ୍ୱାରା ନିୟତ କରାଯାଇଥିବା | କିଲ୍‌ବିଷମ୍ | = ପାପକୁ |
| କର୍ମ | = ସ୍ୱଧର୍ମରୂପକ କର୍ମ | ନ, ଆପ୍ନୋତି | = ପ୍ରାପ୍ତ ହୁଏ ନାହିଁ । |

ସ୍ୱଧର୍ମ ତ୍ୟାଗ କରିବା ନିଷେଧ ।

**ସହଜଂ କର୍ମ କୌନ୍ତେୟ ସଦୋଷମପି ନ ତ୍ୟଜେତ୍ ।**
**ସର୍ବାରମ୍ଭା ହି ଦୋଷେଣ ଧୂମେନାଗ୍ନିରିବାବୃତାଃ ॥ ୪୮ ॥**

ସହଜମ୍, କର୍ମ, କୌନ୍ତେୟ,ସଦୋଷମ୍, ଅପି, ନ, ତ୍ୟଜେତ୍,
ସର୍ବାରମ୍ଭାଃ, ହି, ଦୋଷେଣ, ଧୂମେନ, ଅଗ୍ନିଃ, ଇବ, ଆବୃତାଃ ।।୪୮ ।।

**ଅତଏବ—**

| | | | |
|---|---|---|---|
| କୌନ୍ତେୟ | = ହେ କୁନ୍ତିପୁତ୍ର ! | ଅଗ୍ନିଃ | = ଅଗ୍ନି |
| ସଦୋଷମ୍ | = ଦୋଷଯୁକ୍ତ ହେଲେ | ଧୂମେନ | = ଧୂଆଁଦ୍ୱାରା (ଆବୃତ ହୋଇଥିବା) |
| ଅପି | = ମଧ୍ୟ | ଇବ | = ପରି, |
| ସହଜମ୍ | = ସହଜ, ସ୍ୱାଭାବିକ * | ସର୍ବାରମ୍ଭାଃ | = ସମସ୍ତ କର୍ମ |
| କର୍ମ | = କର୍ମକୁ | ଦୋଷେଣ | = (କୌଣସି ନା କୌଣସି) ଦୋଷଦ୍ୱାରା |
| ନ, ତ୍ୟଜେତ୍ | = ତ୍ୟାଗ କରିବା ଉଚିତ ନୁହେଁ, | | |
| ହି | = କାରଣ | ଆବୃତାଃ | = ଯୁକ୍ତ । |

* ପ୍ରକୃତି ଅନୁଯାୟୀ ଶାସ୍ତ୍ରବିଧି ସହ କରାଯାଉଥିବା ବର୍ଣ୍ଣାଶ୍ରମ ଧର୍ମ ସାମାନ୍ୟ ଧର୍ମରୂପ ସ୍ୱାଭାବିକ କର୍ମ ଅଟେ । ଏହିସବୁକୁ ଏଠାରେ 'ସ୍ୱଧର୍ମ', 'ସହଜ କର୍ମ', 'ସ୍ୱକର୍ମ', 'ନିୟତ କର୍ମ', 'ସ୍ୱଭାବଜ କର୍ମ' ଏବଂ 'ସ୍ୱଭାବନିୟତ କର୍ମ' ଇତ୍ୟାଦି ନାମରେ କୁହାଯାଇଛି ।

ସନ୍ନ୍ୟାସ ଯୋଗ ଦ୍ୱାରା ପରମ ସିଦ୍ଧି ପ୍ରାପ୍ତି ।

ଅସକ୍ତବୁଦ୍ଧିଃ ସର୍ବତ୍ର ଜିତାତ୍ମା ବିଗତସ୍ପୃହଃ ।
ନୈଷ୍କର୍ମ୍ୟସିଦ୍ଧିଂ ପରମାଂ ସନ୍ନ୍ୟାସେନାଧିଗଚ୍ଛତି ॥ ୪୯ ॥

ଅସକ୍ତବୁଦ୍ଧିଃ, ସର୍ବତ୍ର, ଜିତାତ୍ମା, ବିଗତସ୍ପୃହଃ,
ନୈଷ୍କର୍ମ୍ୟସିଦ୍ଧିମ୍, ପରମାମ୍, ସନ୍ନ୍ୟାସେନ, ଅଧିଗଚ୍ଛତି ।।୪୯ ।।

**ତଥା ହେ ଅର୍ଜୁନ !—**

| | | | |
|---|---|---|---|
| ସର୍ବତ୍ର | = ସର୍ବତ୍ର | | କରିଥିବା ପୁରୁଷ |
| ଅସକ୍ତବୁଦ୍ଧିଃ | = ଆସକ୍ତିରହିତ ବୁଦ୍ଧିସମ୍ପନ୍ନ | ସନ୍ନ୍ୟାସେନ | = ସାଂଖ୍ୟ ଯୋଗଦ୍ୱାରା |
| | | ପରମାମ୍ | = ସେହି ପରମ |
| ବିଗତସ୍ପୃହଃ | = ନିଃସ୍ପୃହ (ଏବଂ) | ନୈଷ୍କର୍ମ୍ୟସିଦ୍ଧିମ୍ | = ନୈଷ୍କର୍ମ୍ୟ ସିଦ୍ଧିକୁ |
| ଜିତାତ୍ମା | = ଅନ୍ତଃକରଣକୁ ଜୟ | ଅଧିଗଚ୍ଛତି | = ପ୍ରାପ୍ତ ହୁଏ । |

ଜ୍ଞାନର ପରାନିଷ୍ଠା କହିବା ପାଇଁ ପ୍ରତିଜ୍ଞା ।

ସିଦ୍ଧିଂ ପ୍ରାପ୍ତୋ ଯଥା ବ୍ରହ୍ମ ତଥାପ୍ନୋତି ନିବୋଧ ମେ ।
ସମାସେନୈବ କୌନ୍ତେୟ ନିଷ୍ଠା ଜ୍ଞାନସ୍ୟ ଯା ପରା ॥ ୫୦ ॥

ସିଦ୍ଧିମ୍, ପ୍ରାପ୍ତଃ, ଯଥା, ବ୍ରହ୍ମ, ତଥା, ଆପ୍ନୋତି, ନିବୋଧ, ମେ,
ସମାସେନ, ଏବ, କୌନ୍ତେୟ, ନିଷ୍ଠା, ଜ୍ଞାନସ୍ୟ, ଯା, ପରା ।।୫୦ ।।

**ଏହିପାଇଁ —**

| | | | |
|---|---|---|---|
| ଯା | = ଯାହା | ଯଥା | = ଯେଉଁ ପ୍ରକାରେ |
| ଜ୍ଞାନସ୍ୟ | = ଜ୍ଞାନଯୋଗର | ପ୍ରାପ୍ତଃ | = ପ୍ରାପ୍ତ ହୋଇ ମନୁଷ୍ୟ |
| ପରା | = ପରା | | |
| ନିଷ୍ଠା | = ନିଷ୍ଠା ଅଟେ, | ବ୍ରହ୍ମ | = ବ୍ରହ୍ମକୁ |
| ସିଦ୍ଧିମ୍ | = ସେହି ନୈଷ୍କର୍ମ୍ୟସିଦ୍ଧିକୁ | ଆପ୍ନୋତି | = ପ୍ରାପ୍ତହୁଏ, |
| | | ତଥା | = ସେହି ପ୍ରଣାଳୀକୁ |

| | | | |
|---|---|---|---|
| କୌନ୍ତେୟ | = ହେ କୁନ୍ତୀପୁତ୍ର ! (ତୁମେ) | ଏବ | = ହିଁ |
| | | ମେ | = ମୋ'ଠାରୁ |
| ସମାସେନ | = ସଂକ୍ଷେପରେ | ନିବୋଧ | = ବୁଝିନିଅ । |

ଜ୍ଞାନଯୋଗ ଅନୁସାରେ ଭଗବତ୍ ପ୍ରାପ୍ତି ପାଇଁ ପାତ୍ରତା ।

**ବୁଦ୍ଧ୍ୟା ବିଶୁଦ୍ଧୟା ଯୁକ୍ତୋ ଧୃତ୍ୟାତ୍ମାନଂ ନିୟମ୍ୟ ଚ ।**
**ଶବ୍ଦାଦୀନ୍ ବିଷୟାଂସ୍ତ୍ୟକ୍ତ୍ୱା ରାଗଦ୍ୱେଷୌ ବ୍ୟୁଦସ୍ୟ ଚ ॥ ୫୧ ॥**

**ବିବିକ୍ତସେବୀ ଲଘ୍ୱାଶୀ ଯତବାକ୍କାୟମାନସଃ ।**
**ଧ୍ୟାନଯୋଗପରୋ ନିତ୍ୟଂ ବୈରାଗ୍ୟଂ ସମୁପାଶ୍ରିତଃ ॥ ୫୨ ॥**

**ଅହଙ୍କାରଂ ବଳଂ ଦର୍ପଂ କାମଂ କ୍ରୋଧଂ ପରିଗ୍ରହମ୍ ।**
**ବିମୁଚ୍ୟ ନିର୍ମମଃ ଶାନ୍ତୋ ବ୍ରହ୍ମଭୂୟାୟ କଳ୍ପତେ ॥ ୫୩ ॥**

ବୁଦ୍ଧ୍ୟା, ବିଶୁଦ୍ଧୟା, ଯୁକ୍ତଃ, ଧୃତ୍ୟା, ଆତ୍ମାନମ୍, ନିୟମ୍ୟ, ଚ,
ଶବ୍ଦାଦୀନ୍, ବିଷୟାନ୍, ତ୍ୟକ୍ତ୍ୱା, ରାଗଦ୍ୱେଷୌ, ବ୍ୟୁଦସ୍ୟ, ଚ ।।୫୧ ।।

ବିବିକ୍ତସେବୀ, ଲଘ୍ୱାଶୀ, ଯତବାକ୍କାୟମାନସଃ,
ଧ୍ୟାନଯୋଗପରଃ, ନିତ୍ୟମ୍, ବୈରାଗ୍ୟମ୍, ସମୁପାଶ୍ରିତଃ ।।୫୨ ।।

ଅହଙ୍କାରମ୍, ବଳମ୍, ଦର୍ପମ୍, କାମମ୍, କ୍ରୋଧମ୍, ପରିଗ୍ରହମ୍,
ବିମୁଚ୍ୟ, ନିର୍ମମଃ, ଶାନ୍ତଃ, ବ୍ରହ୍ମଭୂୟାୟ, କଳ୍ପତେ ।।୫୩ ।।

**ହେ ଅର୍ଜୁନ ! —**

| | | | |
|---|---|---|---|
| ବିଶୁଦ୍ଧୟା | = ବିଶୁଦ୍ଧ | ଲଘ୍ୱାଶୀ | = ଲଘୁ, ସାତ୍ତ୍ୱିକ ତଥା ନିୟମିତ ଭୋଜନ କରିବା, |
| ବୁଦ୍ଧ୍ୟା | = ବୁଦ୍ଧିଦ୍ୱାରା | | |
| ଯୁକ୍ତଃ | = ଯୁକ୍ତ | | |

| | |
|---|---|
| ଶବ୍ଦାଦୀନ୍ | = ଶବ୍ଦାଦି |
| ବିଷୟାନ୍ | = ବିଷୟମାନଙ୍କୁ |
| ତ୍ୟକ୍ତ୍ୱା | = ତ୍ୟାଗ କରି |
| ବିବିକ୍ତସେବୀ | = ଏକାନ୍ତ ଏବଂ ପବିତ୍ର ଦେଶ (ସ୍ଥାନ) ରେ ବାସ କରୁଥିବା |
| ଧୃତ୍ୟା | = ସାତ୍ତ୍ୱିକ ଧାରଣଶକ୍ତି ଦ୍ୱାରା* |
| ଆତ୍ମାନମ୍ | = ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କୁ |
| ନିୟମ୍ୟ | = ସଂଯମ କରି |
| ଯତବାକ୍-କାୟମାନସଃ | = ମନ, ବାଣୀ ଓ ଶରୀରକୁ ବଶରେ ରଖି, |
| ରାଗଦ୍ୱେଷୌ | = ରାଗ ଓ ଦ୍ୱେଷକୁ |
| ବ୍ୟୁଦସ୍ୟ | = ସର୍ବଥା ତ୍ୟାଗ କରି, |
| ବୈରାଗ୍ୟମ୍ | = ଉତ୍ତମରୂପେ ଦୃଢ଼ ବୈରାଗ୍ୟକୁ |
| ସମୁପାଶ୍ରିତଃ | = ଆଶ୍ରୟ କରିଥିବା |
| ଚ | = ତଥା |
| ଅହଙ୍କାରମ୍ | = ଅହଙ୍କାର, |
| ବଲମ୍ | = ବଳ, |
| ଦର୍ପମ୍ | = ଗର୍ବ, |
| କାମମ୍ | = କାମ, |
| କ୍ରୋଧମ୍ | = କ୍ରୋଧ |
| ଚ | = ଏବଂ |
| ପରିଗ୍ରହମ୍ | = ସଂଗ୍ରହକୁ |
| ବିମୁଚ୍ୟ | = ତ୍ୟାଗ କରି |
| ନିତ୍ୟମ୍ | = ନିରନ୍ତର |
| ଧ୍ୟାନଯୋଗପରଃ | = ଧ୍ୟାନଯୋଗରେ ପରାୟଣ, |
| ନିର୍ମମଃ | = ମମତ୍ୱରହିତ (ଏବଂ) |
| ଶାନ୍ତଃ | = ପ୍ରଶାନ୍ତଚିତ୍ତ ପୁରୁଷ |
| ବ୍ରହ୍ମଭୂୟାୟ | = ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଅଭିନ୍ନ ଭାବରେ ଅବସ୍ଥାନ କରି ବ୍ରହ୍ମ ପ୍ରାପ୍ତିର |
| କଳ୍ପତେ | = ପାତ୍ର ହୋଇଯାଏ । |

ଜ୍ଞାନଯୋଗ ଦ୍ୱାରା ପରାଭକ୍ତିର ପ୍ରାପ୍ତି ।

**ବ୍ରହ୍ମଭୂତଃ ପ୍ରସନ୍ନାତ୍ମା ନ ଶୋଚତି ନ କାଂକ୍ଷତି ।**
**ସମଃ ସର୍ବେଷୁ ଭୂତେଷୁ ମଦ୍ଭକ୍ତିଂ ଲଭତେ ପରାମ୍ ॥ ୫୪ ॥**

ବ୍ରହ୍ମଭୂତଃ, ପ୍ରସନ୍ନାତ୍ମା, ନ, ଶୋଚତି, ନ, କାଙ୍କ୍ଷତି,
ସମଃ, ସର୍ବେଷୁ, ଭୂତେଷୁ, ମଦ୍‌ଭକ୍ତିମ୍, ଲଭତେ, ପରାମ୍ ।।୫୪ ।।

**ପୁଣି ସେ—**

* ଗୀତା ଅଧ୍ୟାୟ ୧୮ ଶ୍ଳୋକ ୩୩ରେ ଏହା ବିସ୍ତାର ଭାବେ କୁହାଯାଇଛି ।

| | | | |
|---|---|---|---|
| ବ୍ରହ୍ମଭୂତଃ | = ସଚ୍ଚିଦାନନ୍ଦଘନ ବ୍ରହ୍ମରେ ଏକୀଭାବରେ ସ୍ଥିତ | ସର୍ବେଷୁ | = ସମସ୍ତ |
| ପ୍ରସନ୍ନାତ୍ମା | = ପ୍ରସନ୍ନଚିତ୍ତ ଯୋଗୀ | ଭୂତେଷୁ | = ପ୍ରାଣୀଙ୍କଠାରେ |
| ନ, ଶୋଚତି | = କାହାରି ପାଇଁ ଶୋକ କରେ ନାହିଁ (ଏବଂ) | ସମଃ | = ସମଭାବ ସମ୍ପନ୍ନ [1] (ସେହି ଯୋଗୀ) |
| ନ, କାଙ୍କ୍ଷତି | = କିଛି ବି ଆକାଙ୍କ୍ଷା କରେ ନାହିଁ । | ପରାମ୍, ମଦ୍‌ଭକ୍ତିମ୍ | = ମୋର ପରାଭକ୍ତିକୁ [2] |
| | | ଲଭତେ | = ଲାଭ କରେ । |

ବ୍ରହ୍ମଭୂତ ଯୋଗୀ ପରାଭକ୍ତି ଲାଭ କରି ଭଗବତ୍ ପ୍ରାପ୍ତି ରୂପକ ଫଳ ପାଆନ୍ତି ।

**ଭକ୍ତ୍ୟା ମାମଭିଜାନାତି ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ ।**
**ତତୋ ମାଂ ତତ୍ତ୍ୱତୋ ଜ୍ଞାତ୍ୱା ବିଶତେ ତଦନନ୍ତରମ୍ ॥ ୫୫ ॥**

ଭକ୍ତ୍ୟା, ମାମ୍, ଅଭିଜାନାତି, ଯାବାନ୍, ଯଃ, ଚ, ଅସ୍ମି, ତତ୍ତ୍ୱତଃ,
ତତଃ, ମାମ୍, ତତ୍ତ୍ୱତଃ, ଜ୍ଞାତ୍ୱା, ବିଶତେ, ତଦନନ୍ତରମ୍, ।।୫୫।।

## ପୁଣି ସେହି —

| | | | |
|---|---|---|---|
| ଭକ୍ତ୍ୟା | = (ସେହି) ପରାଭକ୍ତି ଦ୍ୱାରା (ସେ) | ଅଭିଜାନାତି | = ତତ୍ତ୍ୱତଃ ଜାଣିପାରେ (ତଥା) |
| ମାମ୍ | = ମୋତେ (ପରମାତ୍ମାଙ୍କୁ) | ତତଃ | = ସେହି ପରାଭକ୍ତି ଦ୍ୱାରା |
| (ଅହମ୍) | = ମୁଁ | ମାମ୍ | = ମୋତେ |
| ଯଃ | = କଣ | ତତ୍ତ୍ୱତଃ | = ତତ୍ତ୍ୱତଃ |
| ଚ | = ଏବଂ | ଜ୍ଞାତ୍ୱା | = ଜାଣି |
| ଯାବାନ୍ | = କିପରି ପ୍ରଭାବବିଶିଷ୍ଟ | ତଦନନ୍ତରମ୍ | = ସେହିକ୍ଷଣି ହିଁ |
| ଅସ୍ମି | = ଅଟେ, | ବିଶତେ | = (ମୋ ଭିତରେ) ପ୍ରବିଷ୍ଟ ହୋଇଯାଏ । |
| ତତ୍ତ୍ୱତଃ | = ଠିକ୍ ସେହିପରି | | |

୧- ଗୀତା ଅଧ୍ୟାୟ ୬ ଶ୍ଲୋକ ୨୯ ଦ୍ରଷ୍ଟବ୍ୟ।

୨-ଯାହା ତତ୍ତ୍ୱଜ୍ଞାନର ପରାକାଷ୍ଠା ତଥା ଯାହାକୁ ପ୍ରାପ୍ତ ହୋଇ ଆଉ କିଛି ଜାଣିବା ବାକି ରହେ ନାହିଁ—ତାହାକୁ ଏଠାରେ 'ପରାଭକ୍ତି', 'ଜ୍ଞାନର ପରାନିଷ୍ଠା', 'ପରମନୈଷ୍କର୍ମ୍ୟସିଦ୍ଧି' ଏବଂ 'ପରମସିଦ୍ଧି' ଇତ୍ୟାଦି ନାମରେ କୁହାଯାଇଛି ।

ଭକ୍ତିସହିତ ନିଷ୍କାମ କର୍ମଯୋଗ ଦ୍ୱାରା ଭଗବତ୍ ପ୍ରାପ୍ତି ।

**ସର୍ବକର୍ମାଣ୍ୟପି ସଦା କୁର୍ବାଣୋ ମଦ୍‌ବ୍ୟପାଶ୍ରୟଃ ।**
**ମତ୍‌ପ୍ରସାଦାଦବାପ୍ନୋତି ଶାଶ୍ୱତଂ ପଦମବ୍ୟୟମ୍ ॥ ୫୬ ॥**

ସର୍ବକର୍ମାଣି, ଅପି, ସଦା, କୁର୍ବାଣଃ, ମଦ୍‌ବ୍ୟପାଶ୍ରୟଃ,
ମତ୍‌ପ୍ରସାଦାତ୍, ଅବାପ୍ନୋତି, ଶାଶ୍ୱତମ୍, ପଦମ୍, ଅବ୍ୟୟମ୍ ।।୫୬।।

**ଏବଂ —**

| | | | |
|---|---|---|---|
| ମଦ୍‌ବ୍ୟପାଶ୍ରୟଃ | = ମୋର ପରାୟଣ ହୋଇଥିବା କର୍ମଯୋଗୀ (ତ) | ମତ୍‌ପ୍ରସାଦାତ୍ | = ମୋ କୃପାରୁ |
| | | ଶାଶ୍ୱତମ୍ | = ସନାତନ |
| | | ଅବ୍ୟୟମ୍ | = ଅବିନାଶୀ |
| ସର୍ବକର୍ମାଣି | = ସକଳ କର୍ମକୁ | ପଦମ୍ | = ପରମ ପଦକୁ |
| ସଦା | = ସଦା ସର୍ବଦା | ଅବାପ୍ନୋତି | = ପ୍ରାପ୍ତ ହୋଇଯାଆନ୍ତି । |
| କୁର୍ବାଣଃ, ଅପି | = କରୁଥିଲେ ମଧ୍ୟ | | |

ଭକ୍ତିସହିତ ନିଷ୍କାମ କର୍ମଯୋଗର ଅନୁଷ୍ଠାନ କରିବା ପାଇଁ ଆଜ୍ଞା ।

**ଚେତସା ସର୍ବକର୍ମାଣି ମୟି ସନ୍ନ୍ୟସ୍ୟ ମତ୍ପରଃ ।**
**ବୁଦ୍ଧିଯୋଗମୁପାଶ୍ରିତ୍ୟ ମଚ୍ଚିତ୍ତଃ ସତତଂ ଭବ ॥ ୫୭ ॥**

ଚେତସା, ସର୍ବକର୍ମାଣି, ମୟି, ସନ୍ନ୍ୟସ୍ୟ, ମତ୍‌ପରଃ,
ବୁଦ୍ଧିଯୋଗମ୍, ଉପାଶ୍ରିତ୍ୟ, ମଚ୍ଚିତ୍ତଃ, ସତତମ୍, ଭବ ।।୫୭।।

**ଏଥିପାଇଁ ହେ ଅର୍ଜୁନ! ତୁମେ—**

| | | | |
|---|---|---|---|
| ସର୍ବକର୍ମାଣି | = ସମସ୍ତ କର୍ମକୁ | ମୟି | = ମୋ' ଠାରେ |
| ଚେତସା | = ମନ ଦ୍ୱାରା | ସନ୍ନ୍ୟସ୍ୟ | = ଅର୍ପଣ କରିଦେଇ* (ତଥା) |

* ଗୀତା ଅଧ୍ୟାୟ ୯ ଶ୍ଳୋକ ୨୭ରେ ଯାହାର ବିଧି କୁହାଯାଇଛି ।

| | | | | | |
|---|---|---|---|---|---|
| ବୁଦ୍ଧିଯୋଗମ୍ | = | ସମବୁଦ୍ଧି ରୂପକ ଯୋଗକୁ | ସତତମ୍ | = | ନିରନ୍ତର |
| ଉପାଶ୍ରିତ୍ୟ | = | ଅବଲମ୍ବନ କରି | ମଚ୍ଚିତ୍ତଃ | = | ମୋଠାରେ ଯୁକ୍ତ ଚିତ୍ତ |
| ମତ୍ପରଃ | = | ମୋର ପରାୟଣ ହୋଇ (ତୁମେ) | ଭବ | = | ହୋଇଯାଅ । |

ଭଗବତ୍ ଚିନ୍ତନ ଦ୍ୱାରା ଉଦ୍ଧାର ଏବଂ ଭଗବତ୍ ଆଜ୍ଞାର ତ୍ୟାଗରେ ଅଧୋଗତି ବୋଲି ଉକ୍ତି ।

**ମଚ୍ଚିତ୍ତଃ ସର୍ବଦୁର୍ଗାଣି ମତ୍ପ୍ରସାଦାତ୍ତରିଷ୍ୟସି ।**
**ଅଥ ଚେତ୍ ତ୍ୱମହଙ୍କାରାନ୍ନ ଶ୍ରୋଷ୍ୟସି ବିନଙ୍କ୍ଷ୍ୟସି ॥ ୫୮ ॥**

ମଚ୍ଚିତ୍ତଃ, ସର୍ବଦୁର୍ଗାଣି, ମତ୍ପ୍ରସାଦାତ୍, ତରିଷ୍ୟସି,
ଅଥ, ଚେତ୍, ତ୍ୱମ୍, ଅହଙ୍କାରାତ୍, ନ, ଶ୍ରୋଷ୍ୟସି, ବିନଙ୍କ୍ଷ୍ୟସି ।।୫୮ ।।

**ଏହି ପ୍ରକାରରେ—**

| | | | | | |
|---|---|---|---|---|---|
| ମଚ୍ଚିତ୍ତଃ | = | ମୋଠାରେ ଯୁକ୍ତଚିତ୍ତ ହୋଇ | ଚେତ୍ | = | ଯଦି |
| ତ୍ୱମ୍ | = | ତୁମେ | ଅହଙ୍କାରାତ୍ | = | ଅହଙ୍କାର ହେତୁ (ମୋର ବଚନକୁ) |
| ମତ୍ପ୍ରସାଦାତ୍ | = | ମୋରି କୃପାରୁ | ନ, ଶ୍ରୋଷ୍ୟସି | = | ଶୁଣିବ ନାହିଁ (ତେବେ) |
| ସର୍ବଦୁର୍ଗାଣି | = | ସମସ୍ତ ସଙ୍କଟକୁ (ଅନାୟାସରେ) | ବିନଙ୍କ୍ଷସି | = | ନଷ୍ଟ ହୋଇଯିବ ଅର୍ଥାତ୍ ପରମାର୍ଥରୁ ଭ୍ରଷ୍ଟ ହୋଇଯିବ । |
| ତରିଷ୍ୟସି | = | ପାର ହୋଇଯିବ | | | |
| ଅଥ | = | ଏବଂ | | | |

ପ୍ରକୃତିର ପ୍ରବଳତା ହେତୁ ସ୍ୱାଭାବିକ କର୍ମର ତ୍ୟାଗରେ ସାମର୍ଥ୍ୟର ଅଭାବ ।

**ଯଦହଙ୍କାରମାଶ୍ରିତ୍ୟ ନ ଯୋତ୍ସ୍ୟ ଇତି ମନ୍ୟସେ ।**
**ମିଥ୍ୟୈଷ ବ୍ୟବସାୟସ୍ତେ ପ୍ରକୃତିସ୍ତ୍ୱାଂ ନିଯୋକ୍ଷ୍ୟତି ॥ ୫୯ ॥**

ଯତ୍, ଅହଙ୍କାରମ୍, ଆଶ୍ରିତ୍ୟ, ନ, ଯୋତ୍ସ୍ୟେ, ଇତି, ମନ୍ୟସେ,
ମିଥ୍ୟା, ଏଷଃ, ବ୍ୟବସାୟଃ, ତେ, ପ୍ରକୃତିଃ, ତ୍ୱାମ୍, ନିଯୋକ୍ଷ୍ୟତି ।।୫୯ ।।

ଏବଂ—

| | | | |
|---|---|---|---|
| ଯତ୍ | = (ତୁମେ) ଯେଉଁ | ତେ | = ତୁମର |
| ଅହଙ୍କାରମ୍ | = ଅହଙ୍କାରକୁ | ଏଷଃ | = ଏହି |
| ଆଶ୍ରିତ୍ୟ | = ଆଶ୍ରୟ କରି | ବ୍ୟବସାୟଃ | = ନିର୍ଣ୍ଣୟ |
| ଇତି | = ଏହା | ମିଥ୍ୟା | = ମିଥ୍ୟା, |
| ମନ୍ୟସେ | = ଧରି ବସିଛ ଯେ | (ଯତଃ) | = (କାରଣ) ତୁମର |
| ନ, ଯୋତ୍ସ୍ୟେ | = 'ମୁଁ ଯୁଦ୍ଧ କରିବି ନାହିଁ', | ପ୍ରକୃତିଃ | = ସ୍ୱଭାବ |
| | | ତ୍ୱାମ୍ | = ତୁମକୁ |
| | | ନିୟୋକ୍ଷ୍ୟତି | = ବଳପୂର୍ବକ ଯୁଦ୍ଧରେ ଲଗାଇଦେବ । |

ସ୍ୱଭାବଜେନ କୌନ୍ତେୟ ନିବଦ୍ଧଃ ସ୍ୱେନ କର୍ମଣା ।
କର୍ତ୍ତୁଂ ନେଚ୍ଛସି ଯନ୍ମୋହାତ୍‌କରିଷ୍ୟସ୍ୟବଶୋଽପି ତତ୍ ॥ ୬୦ ॥

ସ୍ୱଭାବଜେନ, କୌନ୍ତେୟ, ନିବଦ୍ଧଃ, ସ୍ୱେନ, କର୍ମଣା,
କର୍ତ୍ତୁମ୍, ନ, ଇଚ୍ଛସି, ଯତ୍, ମୋହାତ୍, କରିଷ୍ୟସି, ଅବଶଃ, ଅପି, ତତ୍ ।।୬୦ ।।

ଏବଂ —

| | | | |
|---|---|---|---|
| କୌନ୍ତେୟ | = ହେ କୁନ୍ତିପୁତ୍ର ! | ଅପି | = ମଧ୍ୟ |
| ଯତ୍ | = ଯେଉଁ କର୍ମକୁ (ତୁମେ) | ସ୍ୱେନ | = ନିଜର ପୂର୍ବକୃତ |
| ମୋହାତ୍ | = ମୋହ ହେତୁ | ସ୍ୱଭାବଜେନ | = ସ୍ୱଭାବଜନିତ |
| କର୍ତ୍ତୁମ୍ | = କରିବାକୁ | କର୍ମଣା | = କର୍ମ ଦ୍ୱାରା |
| ନ, ଇଚ୍ଛସି | = ଇଚ୍ଛା କରୁ ନାହଁ, | ନିବଦ୍ଧଃ | = ବାନ୍ଧି ହୋଇ, |
| | | ଅବଶଃ | = ପରବଶ ହୋଇ |
| ତତ୍ | = ତାହାକୁ | କରିଷ୍ୟସି | = କରିବ । |

ସମସ୍ତଙ୍କ ହୃଦୟରେ ଅନ୍ତର୍ଯାମୀ ପରମାତ୍ମାଙ୍କ ବ୍ୟାପକତାର କଥନ ।

**ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି ।**
**ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢାନି ମାୟୟା ॥ ୬୧ ॥**

ଈଶ୍ୱରଃ, ସର୍ବଭୂତାନାମ୍, ହୃଦ୍ଦେଶେ, ଅର୍ଜୁନ, ତିଷ୍ଠତି,
ଭ୍ରାମୟନ୍, ସର୍ବଭୂତାନି, ଯନ୍ତ୍ରାରୂଢାନି, ମାୟୟା ।।୬୧ ।।

**କାହିଁକି ନା—**

| | | | |
|---|---|---|---|
| ଅର୍ଜୁନ | = ହେ ଅର୍ଜୁନ ! | ମାୟୟା | = ନିଜର ମାୟା ଦ୍ୱାରା (ସେମାନଙ୍କର କର୍ମାନୁସାରେ) |
| ଯନ୍ତ୍ରାରୂଢାନି | = ଶରୀରରୂପକ ଯନ୍ତ୍ରରେ ଆରୂଢ଼ ହୋଇଥିବା | ଭ୍ରାମୟନ୍ | = ଚାଳିତ କରାଇ |
| ସର୍ବଭୂତାନି | = ସମସ୍ତ ପ୍ରାଣୀଙ୍କୁ | ସର୍ବଭୂତାନାମ୍ | = ସମସ୍ତ ପ୍ରାଣୀଙ୍କର |
| ଈଶ୍ୱରଃ | = ଅନ୍ତର୍ଯାମୀ ପରମେଶ୍ୱର | ହୃଦ୍ଦେଶେ | = ହୃଦୟରେ |
| | | ତିଷ୍ଠତି | = ନିବାସ କରନ୍ତି । |

ଈଶ୍ୱରଙ୍କ ଶରଣ ଯିବା ପାଇଁ ଆଜ୍ଞା ଏବଂ ଏହାର ଫଳ ।

**ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ ।**
**ତତ୍ପ୍ରସାଦାତ୍ ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତମ୍ ॥ ୬୨ ॥**

ତମ୍, ଏବ, ଶରଣମ୍, ଗଚ୍ଛ, ସର୍ବଭାବେନ, ଭାରତ,
ତତ୍ପ୍ରସାଦାତ୍, ପରାମ୍, ଶାନ୍ତିମ୍, ସ୍ଥାନମ୍, ପ୍ରାପ୍ସ୍ୟସି, ଶାଶ୍ୱତମ୍ ।।୬୨ ।।

**ଏହିପାଇଁ —**

| | | | |
|---|---|---|---|
| ଭାରତ | = ହେ ଭାରତ ! (ତୁମେ) | ତମ୍ | = ସେହି ପରମେଶ୍ୱରଙ୍କ |
| ସର୍ବଭାବେନ | = ସର୍ବତୋଭାବେ | ଏବ | = ହିଁ |

| | | | |
|---|---|---|---|
| ଶରଣମ୍ | = ଶରଣ * | ପରାମ୍ | = ପରମ |
| ଗଚ୍ଛ | = ଯାଅ । | ଶାନ୍ତିମ୍ | = ଶାନ୍ତିକୁ (ତଥା) |
| ତତ୍‌ପ୍ରସାଦାତ୍ | = ସେହି ପରମାତ୍ମାଙ୍କ କୃପାରୁ ହିଁ (ତୁମେ) | ଶାଶ୍ୱତମ୍ | = ସନାତନ |
| | | ସ୍ଥାନମ୍ | = ପରମଧାମକୁ |
| | | ପ୍ରାପ୍ସ୍ୟସି | = ପ୍ରାପ୍ତ ହେବ । |

ଉପଦେଶର ଉପସଂହାର ।

ଇତି ତେ ଜ୍ଞାନମାଖ୍ୟାତଂ ଗୁହ୍ୟାଦ୍‌ଗୁହ୍ୟତରଂ ମୟା ।
ବିମୃଶ୍ୟୈତଦଶେଷେଣ ଯଥେଚ୍ଛସି ତଥା କୁରୁ ॥ ୬୩ ॥

ଇତି, ତେ, ଜ୍ଞାନମ୍, ଆଖ୍ୟାତମ୍, ଗୁହ୍ୟାତ୍, ଗୁହ୍ୟତରମ୍, ମୟା,
ବିମୃଶ୍ୟ, ଏତତ୍, ଅଶେଷେଣ, ଯଥା, ଇଚ୍ଛସି, ତଥା, କୁରୁ ।।୬୩।।

| | | | |
|---|---|---|---|
| ଇତି | = ଏପରି ଭାବରେ (ଏହି) | ଏତତ୍ | = ଏହି ରହସ୍ୟଯୁକ୍ତ ଜ୍ଞାନକୁ |
| ଗୁହ୍ୟାତ୍ | = ଗୋପନୀୟଠାରୁ (ମଧ୍ୟ) | ଅଶେଷେଣ | = ପୂର୍ଣ୍ଣରୂପେ |
| ଗୁହ୍ୟତରମ୍ | = ଅତି ଗୋପନୀୟ | ବିମୃଶ୍ୟ | = ଭଲଭାବରେ ବିଚାର କରି, |
| ଜ୍ଞାନମ୍ | = ଜ୍ଞାନ | | |
| ମୟା | = ମୋ ଦ୍ୱାରା | ଯଥା | = ଯେପରି |
| ତେ | = ତୁମକୁ | ଇଚ୍ଛସି | = ଇଚ୍ଛା କରୁଛ, |
| ଆଖ୍ୟାତମ୍ | = କୁହାଗଲା । (ବର୍ତ୍ତମାନ ତୁମେ) | ତଥା | = ସେହିପରି |
| | | କୁରୁ | = କର । |

* ଲଜ୍ଜା, ଭୟ, ମାନ, ବଡ଼ିମା ଏବଂ ଆସକ୍ତି ତ୍ୟାଗ କରି ତଥା ଶରୀର ଏବଂ ସଂସାରରୁ ଅହଂତା-ମମତାରହିତ ହୋଇ କେବଳ ଏକ ପରମାତ୍ମାଙ୍କୁ ହିଁ ପରମ ଆଶ୍ରୟ, ପରମ ଗତି ଏବଂ ସର୍ବସ୍ୱ ବୋଲି ବୁଝି ତଥା ଅନନ୍ୟ ଭାବରେ ଶ୍ରଦ୍ଧା, ଭକ୍ତି ଏବଂ ପ୍ରେମପୂର୍ବକ ନିରନ୍ତର ଭଗବାନଙ୍କ ନାମ, ଗୁଣ, ପ୍ରଭାବ ଏବଂ ସ୍ୱରୂପର ଚିନ୍ତନ କରିବା ଏବଂ ଭଗବାନଙ୍କ ଭଜନ, ସ୍ମରଣ କରି ତାଙ୍କର ଆଜ୍ଞାନୁସାରେ କର୍ତ୍ତବ୍ୟ-କର୍ମକୁ ନିଃସ୍ୱାର୍ଥ ଭାବରେ କେବଳ ପରମେଶ୍ୱରଙ୍କ ପାଇଁ ଆଚରଣ କରିବା ହିଁ 'ସବୁପ୍ରକାରେ ପରମାତ୍ମାଙ୍କ ଶରଣରେ ରହିବା' ଅଟେ ।

ପୁନର୍ବାର ସମସ୍ତ ଗୀତାର ସାରରୂପ ସର୍ବଗୁହ୍ୟତମ ରହସ୍ୟକୁ ଶୁଣିବା ପାଇଁ ଆଜ୍ଞା ।

ସର୍ବଗୁହ୍ୟତମଂ ଭୂୟଃ ଶୃଣୁ ମେ ପରମଂ ବଚଃ ।
ଇଷ୍ଟୋଽସି ମେ ଦୃଢମିତି ତତୋ ବକ୍ଷ୍ୟାମି ତେ ହିତମ୍ ॥ ୬୪ ॥

ସର୍ବଗୁହ୍ୟତମମ୍, ଭୂୟଃ, ଶୃଣୁ, ମେ, ପରମମ୍, ବଚଃ,
ଇଷ୍ଟଃ, ଅସି, ମେ, ଦୃଢ଼ମ୍, ଇତି, ତତଃ, ବକ୍ଷ୍ୟାମି, ତେ, ହିତମ୍ ।।୬୪ ।।

**ଏପରି କହିବା ପରେ ମଧ୍ୟ ଅର୍ଜୁନଙ୍କଠାରୁ କୌଣସି ଉତ୍ତର ନ ପାଇବା କାରଣରୁ ଶ୍ରୀକୃଷ୍ଣ ଭଗବାନ ପୁଣି କହିଲେ କି, ହେ ଅର୍ଜୁନ ।—**

| | | | |
|---|---|---|---|
| ସର୍ବଗୁହ୍ୟତମମ୍ | = ସକଳ ଗୋପନୀୟ ଠାରୁ ଅଧିକ ଗୋପନୀୟ | ମେ | = ମୋର |
| ମେ | = ମୋର | ଦୃଢ଼ମ୍ | = ଅତିଶୟ |
| ପରମମ୍ | = ପରମ ରହସ୍ୟଯୁକ୍ତ | ଇଷ୍ଟଃ | = ପ୍ରିୟ |
| ବଚଃ | = ବଚନକୁ (ତୁମେ) | ଅସି | = ଅଟ, |
| ଭୂୟଃ | = ପୁଣି ଥରେ | ତତଃ | = ତେଣୁ |
| ଶୃଣୁ | = ଶୁଣ । (ତୁମେ) | ଇତି | = ଏହି |
| | | ହିତମ୍ | = ପରମ ହିତକର ବଚନ |
| | | ତେ | = ତୁମକୁ |
| | | ବକ୍ଷ୍ୟାମି | କହିବି । |

ଭଗବାନଙ୍କୁ ଭକ୍ତି କରିବା ପାଇଁ ଆଜ୍ଞା ଏବଂ ଏହାର ଫଳ ।

ମନ୍ମନା ଭବ ମଦ୍ଭକ୍ତୋ ମଦ୍ୟାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ସତ୍ୟଂ ତେ ପ୍ରତିଜାନେ ପ୍ରିୟୋଽସି ମେ ॥ ୬୫ ॥

ମନ୍ମନାଃ, ଭବ, ମଦ୍‌ଭକ୍ତଃ, ମଦ୍‌ଯାଜୀ, ମାମ୍, ନମସ୍କୁରୁ,
ମାମ୍, ଏବ, ଏଷ୍ୟସି, ସତ୍ୟମ୍, ତେ, ପ୍ରତିଜାନେ, ପ୍ରିୟଃ, ଅସି, ମେ ।।୬୫ ।।

## ହେ ଅର୍ଜୁନ! ତୁମେ—

| | | |
|---|---|---|
| ମନ୍ମନାଃ, ଭବ | = | ମୋଠାରେ ମନ ଲଗାଅ, |
| ମଦ୍‌ଭକ୍ତଃ (ଭବ) | = | ମୋର ଭକ୍ତ ହୋଇଯାଅ, |
| ମଦ୍‌ଯାଜୀ (ଭବ) | = | ମୋର ପୂଜକ ହୋଇଯାଅ (ଏବଂ) |
| ମାମ୍ | = | ମୋତେ |
| ନମସ୍କୁରୁ | = | ନମସ୍କାର କର। |
| (ଏବମ୍) | = | ଏପରି କଲେ (ତୁମେ) |
| ମାମ୍ | = | ମୋତେ |
| ଏବ | = | ହିଁ |
| ଏଷ୍ୟସି | = | ପ୍ରାପ୍ତ ହେବ; (ଏହା ମୁଁ) |
| ତେ | = | ତୁମକୁ |
| ସତ୍ୟମ୍ | = | ସତ୍ୟ |
| ପ୍ରତିଜାନେ | = | ପ୍ରତିଜ୍ଞା କରି କହୁଛି; |
| (ଯତଃ) | = | କାରଣ (ତୁମେ) |
| ମେ | = | ମୋର |
| ପ୍ରିୟଃ | = | ଅତ୍ୟନ୍ତ ପ୍ରିୟ |
| ଅସି | = | ଅଟ। |

ସମସ୍ତ ଧର୍ମର ଆଶ୍ରୟ ତ୍ୟାଗ କରି କେବଳ ଭଗବତ୍-ଶରଣ ହେବା ପାଇଁ ଆଜ୍ଞା।

**ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ।**
**ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ॥ ୬୬ ॥**

ସର୍ବଧର୍ମାନ୍, ପରିତ୍ୟଜ୍ୟ, ମାମ୍, ଏକମ୍, ଶରଣମ୍, ବ୍ରଜ, ଅହମ୍, ତ୍ୱା, ସର୍ବପାପେଭ୍ୟଃ, ମୋକ୍ଷୟଷ୍ୟାମି, ମା, ଶୁଚଃ ।।୬୬।।

## ଏଥିପାଇଁ —

| | | |
|---|---|---|
| ସର୍ବଧର୍ମାନ୍ | = | ସକଳ ଧର୍ମ ଅର୍ଥାତ୍ ସମସ୍ତ କର୍ତ୍ତବ୍ୟକର୍ମ-ମାନଙ୍କୁ |
| ପରିତ୍ୟଜ୍ୟ | = | (ମୋଠାରେ) ତ୍ୟାଗ କରିଦେଇ (ତୁମେ) |
| ଏକମ୍ | = | ଏକମାତ୍ର |
| ମାମ୍ | = | ମୋର ଅର୍ଥାତ୍ ସର୍ବଶକ୍ତିମାନ୍, ସର୍ବାଧାର ପରମେଶ୍ୱରଙ୍କ |

| | | | |
|---|---|---|---|
| ଶରଣମ୍ = ଶରଣକୁ [୧] | | ସର୍ବପାପେଭ୍ୟଃ | = ସମସ୍ତ ପାପରୁ |
| ବ୍ରଜ = ଆସିଯାଅ । | | ମୋକ୍ଷୟିଷ୍ୟାମି | = ମୁକ୍ତ କରିଦେବି; |
| ଅହମ୍ = ମୁଁ | | ମା, ଶୁଚଃ | = (ତୁମେ) ଶୋକ କର ନାହିଁ । |
| ତ୍ୱା = ତୁମକୁ | | | |

ଚତୁର୍ବିଧ ଅନଧିକାରୀମାନଙ୍କୁ ଗୀତାର ଉପଦେଶ ଶୁଣାଇବାକୁ ନିଷେଧ କରୁଛନ୍ତି ।

**ଇଦଂ ତେ ନାତପସ୍କାୟ ନାଭକ୍ତାୟ କଦାଚନ ।**
**ନ ଚାଶୁଶ୍ରୂଷବେ ବାଚ୍ୟଂ ନ ଚ ମାଂ ଯୋଽଭ୍ୟସୂୟତି ॥ ୬୭ ॥**

ଇଦମ୍, ତେ, ନ, ଅତପସ୍କାୟ, ନ, ଅଭକ୍ତାୟ, କଦାଚନ,
ନ, ଚ, ଅଶୁଶ୍ରୂଷବେ, ବାଚ୍ୟମ୍, ନ, ଚ, ମାମ୍, ଯଃ, ଅଭ୍ୟସୂୟତି ।।୬୭।।

**ହେ ଅର୍ଜୁନ! ଏହିପରି—**

| | | | |
|---|---|---|---|
| ତେ | = ତୁମର | ଅଶୁଶ୍ରୂଷବେ, | = ଶୁଣିବାକୁ |
| ଇଦମ୍ | = ଏହି ଗୀତାରୂପକ ରହସ୍ୟମୟ ଉପଦେଶ | ଚ, ନ | ଅନିଚ୍ଛୁକ ଲୋକକୁ ମଧ୍ୟ କହିବ ନାହିଁ (ଏବଂ) |
| କଦାଚନ | = କୌଣସି କାଳରେ ବି | ଯଃ | = ଯେ |
| ଅତପସ୍କାୟ, | = ତପସ୍ୟାବିହୀନ | ମାମ୍ | = ମୋ'ଠାରେ |
| ନ, ବାଚ୍ୟମ୍ | ମନୁଷ୍ୟକୁ କହିବ ନାହିଁ, | ଅଭ୍ୟସୂୟତି | = ଦୋଷଦୃଷ୍ଟି ରଖେ, |
| | | (ତସ୍ମୈ) | = ତାକୁ (ତ କଦାପି) |
| ଅଭକ୍ତାୟ, | = ଭକ୍ତିରହିତ [୨] | | |
| ଚ, ନ, | ମନୁଷ୍ୟକୁ ବି କହିବ ନାହିଁ, | ନ, ବାଚ୍ୟମ୍ | = କହିବାର ନୁହେଁ । |

୧ - ଏହି ଅଧ୍ୟାୟର ଶ୍ଳୋକ ୬୨ର ଟିପ୍ପଣୀ ଦ୍ରଷ୍ଟବ୍ୟ ।

୨ - ବେଦ, ଶାସ୍ତ୍ର, ପରମେଶ୍ୱର ତଥା ମହାତ୍ମା ଏବଂ ଗୁରୁଜନଙ୍କଠାରେ ଶ୍ରଦ୍ଧା, ପ୍ରେମ ଏବଂ ପୂଜ୍ୟଭାବର ନାମ 'ଭକ୍ତି' ଅଟେ ।

ଶ୍ରୀଗୀତାଜୀଙ୍କ ପ୍ରଚାରର ମାହାତ୍ମ୍ୟ ।

ଯ ଇମଂ ପରମଂ ଗୁହ୍ୟଂ ମଦ୍ଭକ୍ତେଷ୍ୱଭିଧାସ୍ୟତି ।
ଭକ୍ତିଂ ମୟି ପରାଂ କୃତ୍ୱା ମାମେବୈଷ୍ୟତ୍ୟସଂଶୟଃ ॥ ୬୮ ॥

ଯଃ, ଇମମ୍, ପରମମ୍, ଗୁହ୍ୟମ୍, ମଦ୍‌ଭକ୍ତେଷୁ, ଅଭିଧାସ୍ୟତି,
ଭକ୍ତିମ୍, ମୟି, ପରାମ୍, କୃତ୍ୱା, ମାମ୍, ଏବ, ଏଷ୍ୟତି, ଅସଂଶୟଃ ।।୬୮ ।।

**କାହିଁକି ନା —**

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | ମଦ୍‌ଭକ୍ତେଷୁ | = ମୋର ଭକ୍ତମାନଙ୍କ ମଧ୍ୟରେ |
| ମୟି | = ମୋଠାରେ | ଅଭିଧାସ୍ୟତି | = କହିବେ, * |
| ପରାମ୍ | = ପରମ | (ସଃ) | = ସେ |
| ଭକ୍ତିମ୍ | = ପ୍ରେମ | ମାମ୍ | = ମୋତେ |
| କୃତ୍ୱା | = କରି | ଏବ | = ହିଁ |
| ଇମମ୍ | = ଏହି | ଏଷ୍ୟତି | = ପ୍ରାପ୍ତ ହେବେ |
| ପରମମ୍ | = ପରମ | ଅସଂଶୟଃ | = ଏଥିରେ କୌଣସି ସନ୍ଦେହ ନାହିଁ । |
| ଗୁହ୍ୟମ୍ | = ରହସ୍ୟଯୁକ୍ତ ଗୀତୋପଦେଶକୁ | | |

ନ ଚ ତସ୍ମାନ୍ମନୁଷ୍ୟେଷୁ କଶ୍ଚିନ୍ମେ ପ୍ରିୟକୃତ୍ତମଃ ।
ଭବିତା ନ ଚ ମେ ତସ୍ମାଦନ୍ୟଃ ପ୍ରିୟତରୋ ଭୁବି ॥ ୬୯ ॥

ନ, ଚ, ତସ୍ମାତ୍, ମନୁଷ୍ୟେଷୁ, କଶ୍ଚିତ୍, ମେ, ପ୍ରିୟକୃତ୍ତମଃ,
ଭବିତା, ନ, ଚ, ମେ, ତସ୍ମାତ୍, ଅନ୍ୟଃ, ପ୍ରିୟତରଃ, ଭୁବି ।।୬୯ ।।

* ଅର୍ଥାତ୍ ନିଷ୍କାମ ଭାବରେ ପ୍ରେମପୂର୍ବକ ମୋର ଭକ୍ତଙ୍କୁ ପଢ଼ାଇବା ବା ଅର୍ଥର ବ୍ୟାଖ୍ୟା ଦ୍ୱାରା ଏହାର ପ୍ରଚାର କରିବା ।

| | | | |
|---|---|---|---|
| ତସ୍ମାତ୍ | = ତାଙ୍କଠାରୁ ବଢ଼ ହୋଇ | ନ | = ନାହିଁ; |
| ମେ | = ମୋର | ଚ | = ତଥା |
| ପ୍ରିୟକୃତ୍ତମଃ | = ପ୍ରିୟ କାର୍ଯ୍ୟ କରୁଥିବା ବ୍ୟକ୍ତି | ଭୁବି | = ସମଗ୍ର ପୃଥିବୀରେ |
| ମନୁଷ୍ୟେଷୁ | = ମନୁଷ୍ୟମାନଙ୍କ ମଧ୍ୟରେ | ତସ୍ମାତ୍ | = ତାଙ୍କଠାରୁ ବଳି |
| କଶ୍ଚିତ୍ | = କେହି | ମେ | = ମୋର |
| ଚ | = ମଧ୍ୟ | ପ୍ରିୟତରଃ | = ଅଧିକ ପ୍ରିୟ |
| | | ଅନ୍ୟଃ | = ଅନ୍ୟ କେହି |
| | | ଭବିତା, ନ | = ଭବିଷ୍ୟତରେ ମଧ୍ୟ ହେବ ନାହିଁ । |

ଗୀତାଶାସ୍ତ୍ର ଅଧ୍ୟୟନର ମାହାତ୍ମ୍ୟ ।

**ଅଧ୍ୟେଷ୍ୟତେ ଚ ଯ ଇମଂ ଧର୍ମ୍ୟଂ ସଂବାଦମାବୟୋଃ ।**
**ଜ୍ଞାନଯଜ୍ଞେନ ତେନାହମିଷ୍ଟଃ ସ୍ୟାମିତି ମେ ମତିଃ ॥ ୭୦ ॥**

ଅଧ୍ୟେଷ୍ୟତେ, ଚ, ଯଃ, ଇମମ୍, ଧର୍ମ୍ୟମ୍, ସଂବାଦମ୍, ଆବୟୋଃ, ଜ୍ଞାନଯଜ୍ଞେନ, ତେନ, ଅହମ୍, ଇଷ୍ଟଃ, ସ୍ୟାମ୍, ଇତି, ମେ, ମତିଃ ।।୭୦ ।।

| | | | |
|---|---|---|---|
| ଯଃ | = ଯେଉଁ ପୁରୁଷ | ଚ | = ମଧ୍ୟ |
| ଇମମ୍ | = ଏହି | ଅହମ୍ | = ମୁଁ |
| ଧର୍ମ୍ୟମ୍ | = ଧର୍ମମୟ | ଜ୍ଞାନଯଜ୍ଞେନ | = ଜ୍ଞାନଯଜ୍ଞଦ୍ୱାରା * |
| ଆବୟୋଃ | = ଆମ ଦୁହିଁଙ୍କର | ଇଷ୍ଟଃ | = ପୂଜିତ |
| ସଂବାଦମ୍ | = ସଂବାଦରୂପକ ଗୀତାଶାସ୍ତ୍ରକୁ | ସ୍ୟାମ୍ | = ହେବି; |
| | | ଇତି | = ଏହା |
| ଅଧ୍ୟେଷ୍ୟତେ | = ଅଧ୍ୟୟନ କରିବେ, | ମେ | = ମୋର |
| ତେନ | = ତାହାଙ୍କ ଦ୍ୱାରା | ମତିଃ | = ମତ । |

ଶ୍ରୀଗୀତାଜୀଙ୍କ ଶ୍ରବଣର ମାହାତ୍ମ୍ୟ ।

**ଶ୍ରଦ୍ଧାବାନନସୂୟଶ୍ଚ ଶୃଣୁୟାଦପି ଯୋ ନରଃ ।**
**ସୋଽପି ମୁକ୍ତଃ ଶୁଭାଁଲ୍ଲୋକାନ୍ ପ୍ରାପ୍ନୁୟାତ୍ପୁଣ୍ୟକର୍ମଣାମ୍ ॥ ୭୧ ॥**

* ଗୀତା ଅଧ୍ୟାୟ ୪ ଶ୍ଳୋକ ୩୩ ର ଅର୍ଥ ଦେଖିବା ଉଚିତ ।

ଶ୍ରଦ୍ଧାବାନ୍, ଅନସୂୟଃ, ଚ, ଶୃଣୁୟାତ୍, ଅପି, ଯଃ, ନରଃ,
ସଃ,ଅପି, ମୁକ୍ତଃ, ଶୁଭାନ୍, ଲୋକାନ୍, ପ୍ରାପ୍ନୁୟାତ୍, ପୁଣ୍ୟକର୍ମଣାମ୍ ।।୭୧ ।।

| | | | | | |
|---|---|---|---|---|---|
| ଯଃ | = | ଯେଉଁ | ଅପି | = | ମଧ୍ୟ |
| ନରଃ | = | ମନୁଷ୍ୟ | ମୁକ୍ତଃ | = | (ସମସ୍ତ ପାପରୁ) ମୁକ୍ତ ହୋଇ |
| ଶ୍ରଦ୍ଧାବାନ୍ | = | ଶ୍ରଦ୍ଧାଯୁକ୍ତ | | | |
| ଚ | = | ଏବଂ | | | |
| ଅନସୂୟଃ | = | ଦୋଷଦୃଷ୍ଟିରୁ ରହିତ ହୋଇ (ଏହି ଗୀତାଶାସ୍ତ୍ର) | ପୁଣ୍ୟକର୍ମଣାମ୍ | = | ଉତ୍ତମ କର୍ମକାରୀ-ମାନଙ୍କର |
| | | | ଶୁଭାନ୍ | = | ଶ୍ରେଷ୍ଠ |
| ଶୃଣୁୟାତ୍, ଅପି | = | ଶ୍ରବଣ ମାତ୍ର କରିବେ, | ଲୋକାନ୍ | = | ଲୋକମାନଙ୍କୁ |
| | | | ପ୍ରାପ୍ନୁୟାତ୍ | = | ପ୍ରାପ୍ତ ହେବେ । |
| ସଃ | = | ସେ | | | |

ଗୀତା ଶ୍ରବଣ ଦ୍ୱାରା ମୋହ ନଷ୍ଟ ହେଲା କି ନାହିଁ— ଜାଣିବାପାଇଁ ଭଗବାନଙ୍କ ପ୍ରଶ୍ନ ।

**କଚ୍ଚିଦେତଚ୍ଛ୍ରୁତଂ ପାର୍ଥ ତ୍ୱୟୈକାଗ୍ରେଣ ଚେତସା ।**
**କଚ୍ଚିଦଜ୍ଞାନସମ୍ମୋହଃ ପ୍ରନଷ୍ଟସ୍ତେ ଧନଞ୍ଜୟ ॥ ୭୨ ॥**

କଚ୍ଚିତ୍, ଏତତ୍, ଶ୍ରୁତମ୍, ପାର୍ଥ, ତ୍ୱୟା, ଏକାଗ୍ରେଣ, ଚେତସା,
କଚ୍ଚିତ୍, ଅଜ୍ଞାନସମ୍ମୋହଃ, ପ୍ରନଷ୍ଟଃ, ତେ, ଧନଞ୍ଜୟ ।।୭୨ ।।

**ଏହି ପ୍ରକାର ଗୀତାର ମାହାତ୍ମ୍ୟ କହି ଆନନ୍ଦକନ୍ଦ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଅର୍ଜୁନଙ୍କୁ ପଚାରିଲେ—**

| | | | | | |
|---|---|---|---|---|---|
| ପାର୍ଥ | = | ହେ ପାର୍ଥ ! | ଏକାଗ୍ରେଣ, ଚେତସା | = | ଏକାଗ୍ରଚିତ୍ତରେ |
| କଚ୍ଚିତ୍ | = | କଣ | | | |
| ଏତତ୍ | = | ଏହି (ଗୀତାଶାସ୍ତ୍ର) | ଶ୍ରୁତମ୍ | = | ଶ୍ରବଣ କଲ ? ଏବଂ |
| ତ୍ୱୟା | = | ତୁମେ | | | |

| | | | |
|---|---|---|---|
| ଧନଞ୍ଜୟ | = ହେ ଧନଞ୍ଜୟ ! | ଅଜ୍ଞାନସମ୍ମୋହଃ | = ଅଜ୍ଞାନଜନିତ ମୋହ |
| କଚ୍ଚିତ୍ | = କଣ | ପ୍ରନଷ୍ଟଃ | = ନଷ୍ଟ ହୋଇଗଲା ? |
| ତେ | = ତୁମର | | |

ଅର୍ଜୁନଙ୍କ ମୋହନାଶ ଏବଂ ସ୍ମୃତିପ୍ରାପ୍ତ ହୋଇ ସଂଶୟରହିତ ହେବା ଏବଂ ଆଜ୍ଞାପାଳନ କରିବା ପାଇଁ ପ୍ରତିଜ୍ଞା ।

*ଅର୍ଜୁନ ଉବାଚ*

**ନଷ୍ଟୋ ମୋହଃ ସ୍ମୃତିର୍ଲବ୍ଧା ତ୍ୱତ୍ପ୍ରସାଦାନ୍ମୟାଚ୍ୟୁତ ।**
**ସ୍ଥିତୋଽସ୍ମି ଗତସନ୍ଦେହଃ କରିଷ୍ୟେ ବଚନଂ ତବ ॥ ୭୩ ॥**

ନଷ୍ଟଃ, ମୋହଃ, ସ୍ମୃତିଃ, ଲବ୍ଧା, ତ୍ୱତ୍ପ୍ରସାଦାତ୍, ମୟା, ଅଚ୍ୟୁତ,
ସ୍ଥିତଃ, ଅସ୍ମି, ଗତସନ୍ଦେହଃ, କରିଷ୍ୟେ, ବଚନମ୍, ତବ ।।୭୩।।

**ଏହିପରି ଭଗବାନଙ୍କ ପଚାରିବାରେ ଅର୍ଜୁନ କହିଲେ—**

| | | | |
|---|---|---|---|
| ଅଚ୍ୟୁତ | = ହେ ଅଚ୍ୟୁତ ! | ଗତସନ୍ଦେହଃ | = (ଏବେ ମୁଁ) ସଂଶୟ ରହିତ ହୋଇ |
| ତ୍ୱତ୍ପ୍ରସାଦାତ୍ | = ଆପଣଙ୍କ କୃପାରୁ | ସ୍ଥିତଃ | = ସ୍ଥିତ |
| (ମମ) | = ମୋର | ଅସ୍ମି | = ଅଛି; (ତେଣୁ) ମୁଁ |
| ମୋହଃ | = ମୋହ | ତବ | = ଆପଣଙ୍କର |
| ନଷ୍ଟଃ | = ନଷ୍ଟ ହୋଇଗଲା (ଏବଂ) | ବଚନମ୍ | = ଆଜ୍ଞାକୁ |
| ମୟା | = ମୁଁ | କରିଷ୍ୟେ | = ପାଳନ କରିବି । |
| ସ୍ମୃତିଃ | = ସ୍ମୃତି | | |
| ଲବ୍ଧା | = ପାଇଗଲି ; | | |

ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କ ସଂବାଦର ମହିମା ।

*ସଞ୍ଜୟ ଉବାଚ*

**ଇତ୍ୟହଂ ବାସୁଦେବସ୍ୟ ପାର୍ଥସ୍ୟ ଚ ମହାତ୍ମନଃ ।**
**ସଂବାଦମିମମଶ୍ରୌଷମଦ୍ଭୁତଂ ରୋମହର୍ଷଣମ୍ ॥ ୭୪ ॥**

ଇତି, ଅହମ୍, ବାସୁଦେବସ୍ୟ, ପାର୍ଥସ୍ୟ, ଚ, ମହାତ୍ମନଃ,
ସଂବାଦମ୍, ଇମମ୍, ଅଶ୍ରୌଷମ୍, ଅଦ୍‌ଭୁତମ୍, ରୋମହର୍ଷଣମ୍।।୭୪।।

**ଏହାପରେ ସଂଜୟ କହିଲେ- ହେ ରାଜନ!—**

| | | | |
|---|---|---|---|
| ଇତି | = ଏପରି | ଇମମ୍ | = ଏହି |
| ଅହମ୍ | = ମୁଁ | ଅଦ୍‌ଭୁତମ୍ | = ଅଦ୍‌ଭୁତ ରହସ୍ୟଯୁକ୍ତ |
| ବାସୁଦେବସ୍ୟ | = ଶ୍ରୀବାସୁଦେବଙ୍କର | | |
| ଚ | = ଏବଂ | ରୋମହର୍ଷଣମ୍ | = ରୋମାଞ୍ଚକର |
| ମହାତ୍ମନଃ | = ମହାତ୍ମା | ସଂବାଦମ୍ | = ସମ୍ବାଦକୁ |
| ପାର୍ଥସ୍ୟ | = ଅର୍ଜୁନଙ୍କର | ଅଶ୍ରୌଷମ୍ | = ଶୁଣିଲି । |

ବ୍ୟାସପ୍ରସାଦାତ୍ ଶ୍ରୁତବାନେତଦ୍‌ଗୁହ୍ୟମହଂ ପରମ୍ ।
ଯୋଗଂ ଯୋଗେଶ୍ୱରାତ୍ କୃଷ୍ଣାତ୍ ସାକ୍ଷାତ୍ କଥୟତଃ ସ୍ୱୟମ୍ ॥ ୭୫ ॥

ବ୍ୟାସପ୍ରସାଦାତ୍, ଶ୍ରୁତବାନ୍, ଏତତ୍, ଗୁହ୍ୟମ୍, ଅହମ୍, ପରମ୍,
ଯୋଗମ୍, ଯୋଗେଶ୍ୱରାତ୍, କୃଷ୍ଣାତ୍, ସାକ୍ଷାତ୍, କଥୟତଃ, ସ୍ୱୟମ୍।।୭୫।।

**ଏହା କିପରି ସମ୍ଭବ ହେଲା, ତାହା କହୁଛନ୍ତି—**

| | | | |
|---|---|---|---|
| ବ୍ୟାସପ୍ରସାଦାତ୍ | = ଶ୍ରୀବ୍ୟାସଦେବଙ୍କ କୃପାରୁ (ଦିବ୍ୟଦୃଷ୍ଟି ପାଇ) | ଗୁହ୍ୟମ୍ | = ଗୋପନୀୟ |
| | | ଯୋଗମ୍ | = ଯୋଗ (ଅର୍ଜୁନଙ୍କୁ) |
| ଅହମ୍ | = ମୁଁ | କଥୟତଃ | = କହୁଥିବାର |
| ଏତତ୍ | = ଏହି | ସ୍ୱୟମ୍ | = ସ୍ୱୟଂ |
| ପରମ୍ | = ପରମ | ଯୋଗେଶ୍ୱରାତ୍ | = ଯୋଗେଶ୍ୱର |

| | | | |
|---|---|---|---|
| କୃଷ୍ଣାତ୍ | = ଭଗବାନ ଶ୍ରୀକୃଷ୍ଣଙ୍କ ମୁଖରୁ | ସାକ୍ଷାତ୍ | = ପ୍ରତ୍ୟକ୍ଷ |
| | | ଶ୍ରୁତବାନ୍ | = ଶୁଣିଲି । |

ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କ ସଂବାଦ ଶୁଣି ସଞ୍ଜୟ ହର୍ଷିତ ହେବା ।

**ରାଜନ୍ ସଂସ୍ମୃତ୍ୟ ସଂସ୍ମୃତ୍ୟ ସଂବାଦମିମମଦ୍ଭୁତମ୍ ।**
**କେଶବାର୍ଜୁନୟୋଃ ପୁଣ୍ୟଂ ହୃଷ୍ୟାମି ଚ ମୁହୁର୍ମୁହୁଃ ॥ ୭୬ ॥**

ରାଜନ୍, ସଂସ୍ମୃତ୍ୟ, ସଂସ୍ମୃତ୍ୟ, ସଂବାଦମ୍, ଇମମ୍, ଅଦ୍ଭୁତମ୍,
କେଶବାର୍ଜୁନୟୋଃ, ପୁଣ୍ୟମ୍, ହୃଷ୍ୟାମି, ଚ, ମୁହୁର୍ମୁହୁଃ ।।୭୬।।

**ଏଥିପାଇଁ—**

| | | | |
|---|---|---|---|
| ରାଜନ୍ | = ହେ ରାଜନ ! | ଅଦ୍ଭୁତମ୍ | = ଅଦ୍ଭୁତ |
| କେଶବାର୍ଜୁନୟୋଃ | = ଭଗବାନ୍ ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କର | ସଂବାଦମ୍ | = ସଂବାଦକୁ |
| | | ସଂସ୍ମୃତ୍ୟ, ସଂସ୍ମୃତ୍ୟ | = ସ୍ମରଣ କରି କରି (ମୁଁ) |
| ଇମମ୍ | = ଏହି (ରହସ୍ୟମୟ), | ମୁହୁର୍ମୁହୁଃ | = ବାରମ୍ବାର |
| ପୁଣ୍ୟମ୍ | = କଲ୍ୟାଣକର | ହୃଷ୍ୟାମି | = ହର୍ଷିତ ହେଉଅଛି । |
| ଚ | = ଏବଂ | | |

ଭଗବାନଙ୍କ ବିଶ୍ୱରୂପକୁ ସ୍ମରଣ କରି ସଞ୍ଜୟଙ୍କ ହର୍ଷିତ ହେବା ।

**ତଚ୍ଚ ସଂସ୍ମୃତ୍ୟ ସଂସ୍ମୃତ୍ୟ ରୂପମତ୍ୟଦ୍ଭୁତଂ ହରେଃ ।**
**ବିସ୍ମୟୋ ମେ ମହାନ୍ ରାଜନ୍ ହୃଷ୍ୟାମି ଚ ପୁନଃ ପୁନଃ ॥ ୭୭ ॥**

ତତ୍, ଚ, ସଂସ୍ମୃତ୍ୟ, ସଂସ୍ମୃତ୍ୟ, ରୂପମ୍, ଅତି, ଅଦ୍ଭୁତମ୍, ହରେଃ,
ବିସ୍ମୟଃ, ମେ, ମହାନ୍, ରାଜନ୍, ହୃଷ୍ୟାମି, ଚ, ପୁନଃ, ପୁନଃ ।।୭୭।।

**ତଥା—**

| | | | |
|---|---|---|---|
| ରାଜନ୍ | = ହେ ରାଜନ! | | (ଚିତ୍ତରେ) |
| ହରେଃ | = ଶ୍ରୀହରିଙ୍କର * | ମହାନ୍ | = ବିରାଟ |
| ତତ୍ | = ସେହି | ବିସ୍ମୟଃ | = ବିସ୍ମୟ |
| ଅତି | = ଅତ୍ୟନ୍ତ | | (ଜାତ |
| ଅଦ୍‌ଭୁତମ୍ | = ଅଦ୍‌ଭୁତ | | ହେଉଛି) |
| ରୂପମ୍ | = ରୂପକୁ | ଚ | = ଏବଂ |
| ଚ | = ମଧ | (ଅହମ୍) | = ମୁଁ |
| ସଂସ୍ମୃତ୍ୟ, | = ସ୍ମରଣ | ପୁନଃ, ପୁନଃ | = ବାରମ୍ବାର |
| ସଂସ୍ମୃତ୍ୟ | କରି କରି | ହୃଷ୍ୟାମି | = ହର୍ଷିତ |
| ମେ | = ମୋର | | ହେଉଅଛି। |

ଭଗବାନ ଶ୍ରୀକୃଷ୍ଣ ଏବଂ ଅର୍ଜୁନଙ୍କ ପ୍ରଭାବର କଥନ।

**ଯତ୍ର ଯୋଗେଶ୍ୱରଃ କୃଷ୍ଣୋ ଯତ୍ର ପାର୍ଥୋ ଧନୁର୍ଦ୍ଧରଃ।**
**ତତ୍ର ଶ୍ରୀର୍ବିଜୟୋ ଭୂତିର୍ଧ୍ରୁବା ନୀତିର୍ମତିର୍ମମ ॥୭୮॥**

ଯତ୍ର, ଯୋଗେଶ୍ୱରଃ, କୃଷ୍ଣଃ, ଯତ୍ର, ପାର୍ଥଃ, ଧନୁର୍ଦ୍ଧରଃ,
ତତ୍ର, ଶ୍ରୀଃ, ବିଜୟଃ, ଭୂତିଃ, ଧ୍ରୁବା, ନୀତିଃ, ମତିଃ, ମମ।।୭୮।।

**ହେ ରାଜନ! ଅଧିକ କଣ କହିବି!—**

| | | | |
|---|---|---|---|
| ଯତ୍ର | = ଯେଉଁଠାରେ | ଯତ୍ର | = ଯେଉଁଠାରେ |
| ଯୋଗେଶ୍ୱରଃ | = ଯୋଗେଶ୍ୱର | ଧନୁର୍ଦ୍ଧରଃ | = ଗାଣ୍ଡିବଧନୁ |
| କୃଷ୍ଣଃ | = ଭଗବାନ୍ ଶ୍ରୀକୃଷ୍ଣ | | ଧାରଣ |
| | (ଅଛନ୍ତି) (ଏବଂ) | | କରିଥିବା |

* ଯାହାଙ୍କ ନାମ ସ୍ମରଣ କଲେ ସକଳ ପାପ ହରଣ ହୁଏ, ତାହାଙ୍କର ନାମ 'ହରି' ଅଟେ।

| | |
|---|---|
| ପାର୍ଥଃ | = ଅର୍ଜୁନ (ଅଛନ୍ତି), |
| ତତ୍ର | = ସେଠାରେ |
| ଶ୍ରୀଃ | = ଶ୍ରୀ, |
| ବିଜୟଃ | = ବିଜୟ, |
| ଭୂତିଃ | = ବିଭୂତି (ଏବଂ) |
| ଧ୍ରୁବା, ନୀତିଃ | = ଅଟଳ ନୀତି (ରହିଛି) - |
| (ଇତି) | = ଏହା |
| ମମ | = ମୋର |
| ମତିଃ | = ମତ । |

*ଓଁ ତତ୍ସଦିତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସଂବାଦେ ମୋକ୍ଷସଂନ୍ୟାସଯୋଗୋ ନାମାଷ୍ଟାଦଶୋଽଧ୍ୟାୟଃ ॥ ୧୮ ॥*



**ଏହି ପ୍ରକାରେ 'ଓଁ, ତତ୍, ସତ୍'—ଏହି ଭଗବନ୍ନାମ ଉଚ୍ଚାରଣପୂର୍ବକ ବ୍ରହ୍ମବିଦ୍ୟା ଓ ଯୋଗଶାସ୍ତ୍ରମୟ ଶ୍ରୀମଦ୍‌ଭଗବଦ୍‌ଗୀତୋପନିଷଦ୍‌ରୂପକ ଶ୍ରୀକୃଷ୍ଣାର୍ଜୁନସଂବାଦରେ 'ମୋକ୍ଷସନ୍ନ୍ୟାସଯୋଗ' ନାମକ ଅଷ୍ଟାଦଶ ଅଧ୍ୟାୟ ପୂର୍ଣ୍ଣ ହେଲା ।।୧୮ ।।**

**ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍ ହରିଃ ଓଁ ତତ୍‌ସତ୍**

# ଆରତୀ

ଜୟ ଭଗବଦ୍‌ଗୀତେ, ଜୟ ଭଗବଦ୍‌ଗୀତେ ।
ହରି-ହିୟ-କମଲ-ବିହାରିଣି, ସୁନ୍ଦର ସୁପୁନୀତେ ॥ ଜୟ.
କର୍ମ-ସୁମର୍ମ-ପ୍ରକାଶିନି, କାମାସକ୍ତିହରା ।
ତତ୍ତ୍ୱଜ୍ଞାନ-ବିକାଶିନି, ବିଦ୍ୟା ବ୍ରହ୍ମ ପରା ॥ ଜୟ.
ନିଶ୍ଚଲ-ଭକ୍ତି-ବିଧାୟିନି, ନିର୍ମଲ ମଲହାରୀ ।
ଶରଣ-ରହସ୍ୟ-ପ୍ରଦାୟିନି, ସବ ବିଧି ସୁଖକାରୀ ॥ ଜୟ.
ରାଗ-ଦ୍ୱେଷ-ବିଦାରିଣି, କାରିଣି ମୋଦ ସଦା ।
ଭବ-ଭୟ-ହାରିଣି, ତାରିଣି, ପରମାନନ୍ଦପ୍ରଦା ॥ ଜୟ.
ଆସୁର-ଭାବ-ବିନାଶିନି, ନାଶିନି ତମ-ରଜନୀ ।
ଦୈବୀ ସଦ୍‌ଗୁଣଦାୟିନି, ହରି-ରସିକା ସଜନୀ ॥ ଜୟ.
ସମତା, ତ୍ୟାଗ ସିଖାବନି, ହରିମୁଖକୀ ବାନୀ ।
ସକଲ ଶାସ୍ତ୍ରକୀ ସ୍ୱାମିନି, ଶ୍ରୁତିୟୋଁକୀ ରାନୀ ॥ ଜୟ.
ଦୟା-ସୁଧା ବରସାବନି ମାତୁ! କୃପା କୀଜୈ ।
ହରି-ପଦ-ପ୍ରେମ ଦାନ କର ଅପନୋ କର ଲୀଜୈ ॥ ଜୟ.

୪୮୦

ॐ ଶ୍ରୀପରମାତ୍ମନେ ନମଃ

# ତ୍ୟାଗଦ୍ୱାରା ଭଗବତ୍ ପ୍ରାପ୍ତି

ତ୍ୟକ୍ତ୍ୱା କର୍ମଫଳାସଙ୍ଗଂ ନିତ୍ୟତୃପ୍ତୋ ନିରାଶ୍ରୟଃ ।
କର୍ମଣ୍ୟଭିପ୍ରବୃତ୍ତୋଽପି ନୈବ କିଂଚିତ୍ କରୋତି ସଃ ॥
(୪/୨୦)

ନ ହି ଦେହଭୃତା ଶକ୍ୟଂ ତ୍ୟକ୍ତୁଂ କର୍ମାଣ୍ୟଶେଷତଃ ।
ଯସ୍ତୁ କର୍ମଫଳତ୍ୟାଗୀ ସ ତ୍ୟାଗୀତ୍ୟଭିଧୀୟତେ ॥
(୧୮/୧୧)

ଗୃହସ୍ଥାଶ୍ରମରେ ରହି ମଧ ମନୁଷ୍ୟ ତ୍ୟାଗଦ୍ୱାରା ପରମାତ୍ମାଙ୍କୁ ପ୍ରାପ୍ତ କରିପାରେ । ପରମାତ୍ମାଙ୍କୁ ପ୍ରାପ୍ତ କରିବା ପାଇଁ 'ତ୍ୟାଗ' ହିଁ ମୁଖ୍ୟ ସାଧନ ଅଟେ । ଅତଏବ ତ୍ୟାଗକୁ ସାତୋଟି ଶ୍ରେଣୀରେ ବିଭକ୍ତ କରି ତ୍ୟାଗର ଲକ୍ଷଣ ସଂକ୍ଷେପରେ ନିମ୍ନଲିଖିତ ପ୍ରକାରେ ବୁଝିବା ଉଚିତ :—

**(୧) ସର୍ବଥା ନିଷିଦ୍ଧକର୍ମ ତ୍ୟାଗ—**

ମନ, ବଚନ ଓ ଶରୀରଦ୍ୱାରା ଚୋରି, ବ୍ୟଭିଚାର, ମିଥ୍ୟା, କପଟ, ଛନ୍ଦ, ବଳାତ୍କାର, ହିଂସା, ଅଭକ୍ଷ୍ୟଭୋଜନ ଏବଂ ପ୍ରମାଦ ଆଦି ଶାସ୍ତ୍ରନିଷିଦ୍ଧ ନୀଚକର୍ମ କୌଣସି ପ୍ରକାରେ ନ କରିବା ହେଉଛି ପ୍ରଥମ ଶ୍ରେଣୀର ତ୍ୟାଗ ।

**(୨) କାମ୍ୟକର୍ମ ତ୍ୟାଗ—**

ସ୍ତ୍ରୀ, ପୁତ୍ର ଏବଂ ଧନ ଆଦି ପ୍ରିୟ ବସ୍ତୁ ପ୍ରାପ୍ତି ନିମନ୍ତେ ତଥା ରୋଗ-ସଂକଟ ଆଦିରୁ ନିବୃତ୍ତି ନିମନ୍ତେ ନିଜ ସ୍ୱାର୍ଥପାଇଁ କରାଯାଉଥିବା ଯଜ୍ଞ, ଦାନ, ତପ ଓ ଉପାସନା ଆଦି ସକାମ କର୍ମ ନ କରିବା* ହେଉଛି ଦ୍ୱିତୀୟ ଶ୍ରେଣୀର ତ୍ୟାଗ ।

---

* ଯଦି ସଂଯୋଗବଶତଃ କୌଣସି ଲୌକିକ ଅଥବା ଶାସ୍ତ୍ରୀୟ କର୍ମ କରିବାକୁ ପଡ଼େ, ଯାହାକି ସ୍ୱରୂପତଃ ସକାମ ଅଟେ ଅଥଚ ତାହା ନ କଲେ କାହାରି ମନରେ କଷ୍ଟ ହୁଏ ବା କର୍ମ ଉପାସନାର ପରମ୍ପରାରେ କୌଣସି ପ୍ରକାର ବାଧା ଆସିଯାଏ ବୋଲି ସ୍ୱାର୍ଥତ୍ୟାଗ କରି କେବଳ ଲୋକସଂଗ୍ରହ ପାଇଁ କରାଯାଏ, ତେବେ ତାହା ସକାମ କର୍ମରୂପେ ଗଣ୍ୟ ହୁଏ ନାହିଁ ।

## (୩) ସର୍ବଥା ତୃଷ୍ଣାର ତ୍ୟାଗ—

ମାନ, ବଡ଼ିମା, ପ୍ରତିଷ୍ଠା, ସ୍ତ୍ରୀ, ପୁତ୍ର ଏବଂ ଧନ ଆଦି ଯାହାକିଛି ବି ଅନିତ୍ୟ ପଦାର୍ଥ ପ୍ରାରବ୍ଧ ଅନୁସାରେ ପ୍ରାପ୍ତ ହୋଇଥାଏ, ତାହା ବଢ଼ାଇବାର ଇଚ୍ଛାକୁ ଭଗବତ୍‌ପ୍ରାପ୍ତିରେ ପ୍ରତିବନ୍ଧକ ବୋଲି ବୁଝି ତାହା ତ୍ୟାଗ କରିବା ହେଉଛି ତୃତୀୟ ଶ୍ରେଣୀର ତ୍ୟାଗ ।

## (୪) ସ୍ୱାର୍ଥ ପାଇଁ ଅନ୍ୟଦ୍ୱାରା କରାଯାଉଥିବା ସେବାର ତ୍ୟାଗ—

ନିଜର ସୁଖ ପାଇଁ କାହାରିଠାରୁ ଧନାଦି ପଦାର୍ଥ ଅଥବା ସେବା ପ୍ରାର୍ଥନା କରିବା ଏବଂ ବିନା ପ୍ରାର୍ଥନାରେ ଦିଆଯାଇଥବା ପଦାର୍ଥକୁ ବା ସେବାକୁ ସ୍ୱୀକାର କରିବା ତଥା କୌଣସି ପ୍ରକାରେ କାହାରି ଦ୍ୱାରା ନିଜର ସ୍ୱାର୍ଥସିଦ୍ଧି ପାଇଁ ଇଚ୍ଛା ରଖିବା ଇତ୍ୟାଦି ସ୍ୱାର୍ଥପାଇଁ ଅନ୍ୟମାନଙ୍କ ଦ୍ୱାରା ସେବା କରାଇବାର ଯେଉଁ ଭାବ ରହିଛି, ତାହା ତ୍ୟାଗ କରିବା* ହେଉଛି ଚତୁର୍ଥ ଶ୍ରେଣୀର ତ୍ୟାଗ ।

## (୫) ସମସ୍ତ କର୍ତ୍ତବ୍ୟକର୍ମରେ ସର୍ବଥା ଆଳସ୍ୟ ଏବଂ ଫଳାକାଙ୍‌କ୍ଷାର ତ୍ୟାଗ—

ଈଶ୍ୱରଙ୍କୁ ଭକ୍ତି, ଦେବତାମାନଙ୍କର ପୂଜା, ମାତା-ପିତା ଗୁରୁଜନଙ୍କର ସେବା, ଯଜ୍ଞ, ଦାନ, ତପ ତଥା ବର୍ଣ୍ଣାଶ୍ରମ ଅନୁସାରେ ଆଜୀବିକା ଏବଂ ଶରୀର ସମ୍ବନ୍ଧୀୟ ଖାଇବା-ପିଇବା ଆଦି ଯେତେ ଯେତେ କର୍ତ୍ତବ୍ୟକର୍ମ ରହିଛି, ସେ ସବୁରେ ସବୁ ପ୍ରକାର ଆଳସ୍ୟ ଏବଂ କାମନା ତ୍ୟାଗ କରିବା ପଞ୍ଚମ ଶ୍ରେଣୀର ତ୍ୟାଗ ।

---

* ଯଦି ସ୍ୱତଃ ଏପରି କୌଣସି ଅବସର ଆସିଯାଏ ଯେ, ଶରୀର ସମ୍ବନ୍ଧୀ ସେବା ଅଥବା ଭୋଜନାଦି ପଦାର୍ଥ ଗ୍ରହଣ ନ କଲେ କାହାରିକୁ କଷ୍ଟ ହେଉଥିବ ବା ଲୋକଶିକ୍ଷାରେ କୌଣସି ପ୍ରକାର ବାଧା ପହଞ୍ଚୁଥିବ, ତେବେ ସେପରି ଅବସ୍ଥାରେ ସ୍ୱାର୍ଥ ତ୍ୟାଗ କରି କେବଳ ଅନ୍ୟମାନଙ୍କ ପ୍ରୀତି ପାଇଁ ଉକ୍ତ ସେବା ଆଦି ସ୍ୱୀକାର କଲେ ତାହା ଦୋଷଯୁକ୍ତ ହୁଏ ନାହିଁ, କାରଣ ସ୍ତ୍ରୀ, ପୁତ୍ର ଓ ଭୃତ୍ୟଙ୍କ ଦ୍ୱାରା କରାଯାଉଥିବା ସେବା ଏବଂ ବନ୍ଧୁବାନ୍ଧବ ଓ ମିତ୍ର ଆଦିଙ୍କ ଦ୍ୱାରା ଦିଆଯାଉଥିବା ଭୋଜନ ସ୍ୱୀକାର ନ କଲେ ସେମାନଙ୍କୁ କଷ୍ଟ ହେବ ଏବଂ ସମ୍ଭବତଃ ଲୋକ ମର୍ଯ୍ୟାଦାରେ ବାଧା ପଡ଼ିବ ।

(କ) **ଈଶ୍ୱର ଭକ୍ତିରେ ଆଳସ୍ୟର ତ୍ୟାଗ—**

ନିଜ ଜୀବନର ପରମ କର୍ତ୍ତବ୍ୟ ବୋଲି ମନେ କରି ପରମ ଦୟାଳୁ, ସମସ୍ତଙ୍କର ସୁହୃଦ୍, ପରମପ୍ରେମୀ, ଅନ୍ତର୍ଯାମୀ ପରମେଶ୍ୱରଙ୍କ ଗୁଣ, ପ୍ରଭାବ ଏବଂ ପ୍ରେମର ରହସ୍ୟମୟୀ କଥାମାନଙ୍କର ଶ୍ରବଣ, ମନନ ଏବଂ ପଠନ-ପାଠନ ତଥା ଆଳସ୍ୟ ରହିତ ହୋଇ ତାଙ୍କରି ପରମପୁନୀତ ନାମର ଉତ୍ସାହପୂର୍ବକ ଧ୍ୟାନ ସହିତ ନିରନ୍ତର ଜପ କରିବା ।

(ଖ) **ଈଶ୍ୱରଭକ୍ତିରେ କାମନାର ତ୍ୟାଗ—**

ଇହଲୋକ ଏବଂ ପରଲୋକର ସମ୍ପୂର୍ଣ୍ଣ ଭୋଗକୁ କ୍ଷଣଭଙ୍ଗୁର, ନାଶବାନ୍ ଏବଂ ଭଗବାନଙ୍କ ଭକ୍ତିରେ ବାଧକ ବୋଲି ବୁଝି କୌଣସି ବି ବସ୍ତୁର ପ୍ରାପ୍ତିପାଇଁ ଭଗବାନଙ୍କ ଠାରେ ପ୍ରାର୍ଥନା ନ କରିବା ତଥା ମନରେ ସେହିପ୍ରକାର ଇଚ୍ଛା ପୋଷଣ ନ କରିବା ତଥା କୌଣସି ସଂକଟର ସମ୍ମୁଖୀନ ହେଲେ ବି ତାର ନିବାରଣ ପାଇଁ ଭଗବାନଙ୍କ ଠାରେ ପ୍ରାର୍ଥନା ନ କରିବା ଅର୍ଥାତ୍ ହୃଦୟରେ ଏହିପରି ଭାବ ରଖିବା ଉଚିତ ଯେ ପ୍ରାଣ ପଛେ ଚାଲିଯାଉ, କିନ୍ତୁ ଏହି ମିଥ୍ୟା ଜୀବନ ପାଇଁ ବିଶୁଦ୍ଧ ଭକ୍ତିରେ କଳଙ୍କ ନ ଲାଗୁ ଯେପରି ଭକ୍ତ ପ୍ରହ୍ଲାଦ ନିଜ ପିତାଙ୍କ ଦ୍ୱାରା ବହୁତ ପ୍ରକାର ନିର୍ଯ୍ୟାତିତ ହୋଇ ମଧ୍ୟ କଷ୍ଟ ନିବାରଣ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରି ନ ଥିଲେ ।

ନିଜର ଅନିଷ୍ଟ କରିବା ଲୋକଙ୍କୁ ମଧ୍ୟ 'ଭଗବାନ୍ ତୁମର ଅମଙ୍ଗଳ କରନ୍ତୁ' ଇତ୍ୟାଦି କୌଣସି ପ୍ରକାର କଠୋର ଶବ୍ଦଦ୍ୱାରା ଶାପ ଦେବା ଏବଂ ତାହାର ଅନିଷ୍ଟ ଚିନ୍ତା ନ କରିବା ଉଚିତ ।

ଭଗବାନଙ୍କ ଭକ୍ତିର ଅଭିମାନରେ କାହାକୁ ବରଦାନ ଆଦି ନ ଦେବା, ଯେପରି କି 'ଭଗବାନ୍ ତୁମର ଆରୋଗ୍ୟ କରିଦିଅନ୍ତୁ', ଭଗବାନ୍ 'ତୁମର ଦୁଃଖ ଦୂର କରିଦିଅନ୍ତୁ', 'ଭଗବାନ୍ ତୁମର ଆୟୁ ବଢ଼ାଇ ଦିଅନ୍ତୁ' ଇତ୍ୟାଦି ନ କହିବା ।

(ଗ) **ଦେବତାଙ୍କ ପୂଜାରେ ଆଳସ୍ୟ ଏବଂ କାମନାର ତ୍ୟାଗ—**

ଶାସ୍ତ୍ର ସମ୍ମତ ଅଥବା ଲୋକ ସମ୍ମତ ପୂଜ୍ୟ ଦେବତାଙ୍କର ପୂଜା ନିୟମ ଅନୁସାରେ ଠିକ୍ ସମୟରେ କରିବା ପାଇଁ ଭଗବାନଙ୍କର ଆଜ୍ଞା ଅଛି ଏବଂ

ଭଗବାନଙ୍କ ଆଜ୍ଞାର ପାଳନ କରିବା ପରମ କର୍ତ୍ତବ୍ୟ ବୋଲି ମାନି ଉତ୍ସାହପୂର୍ବକ ବିଧିସହିତ ସମସ୍ତ କାମନାରୁ ରହିତ ହୋଇ ଦେବତାଙ୍କ ପୂଜା କରିବା ।

ଭଗବାନଙ୍କ ପୂଜାରେ ହିସାବ-କିତାବ ଖାତା, ବହି ଇତ୍ୟାଦିରେ କୌଣସି ପ୍ରକାର ସକାମ ଶବ୍ଦ ନ ଲେଖିବା ଯେପରି ମାରବାଡ଼ିମାନେ ନୂଆବର୍ଷ ଆରମ୍ଭରେ ବା ଦୀପାବଳୀ ଓ ଲକ୍ଷ୍ମୀପୂଜାରେ 'ଲକ୍ଷ୍ମୀଜୀ ମୋର ଲାଭ କରାନ୍ତୁ', 'ମୋର ଭଣ୍ଡାର ପୂର୍ଣ୍ଣ ରହୁ', ଋଦ୍ଧି ସିଦ୍ଧି ପ୍ରାପ୍ତ ହେଉ, ଏପରି ନ ଲେଖି 'ଶ୍ରୀଲକ୍ଷ୍ମୀନାରାୟଣ ସବୁଠାରେ ଆନନ୍ଦ ରୂପରେ ବିରାଜମାନ' ତଥା 'ବହୁତ ଆନନ୍ଦ ଏବଂ ଉତ୍ସାହର ସହିତ ଶ୍ରୀଲକ୍ଷ୍ମୀଙ୍କର ପୂଜା କରାଗଲା' ଇତ୍ୟାଦି ନିଷ୍କାମ ଏବଂ ମାଙ୍ଗଳିକ ଶବ୍ଦ ଲେଖିବା ଏବଂ ଦୈନନ୍ଦିନ ଖାତା ଆଦିର ଆରମ୍ଭ କରିବା ସମୟରେ ମଧ୍ୟ ଉପରୋକ୍ତ ରୀତିରେ ଲେଖିବା ଉଚିତ ।

### (ଘ) ମାତା-ପିତାଦି ଗୁରୁଜନଙ୍କ ସେବାରେ ଆଳସ୍ୟ ଏବଂ କାମନାର ତ୍ୟାଗ—

ମାତା, ପିତା, ଆଚାର୍ଯ୍ୟ ଏବଂ ଅନ୍ୟ ଯେଉଁ ଗୁରୁଜନ ତଥା ପୂଜ୍ୟ ପୁରୁଷଙ୍କର ସକଳ ପ୍ରକାର ସେବା କରିବା ଏବଂ ସେମାନଙ୍କୁ ନିତ୍ୟ ପ୍ରଣାମ କରିବା ମନୁଷ୍ୟର ପରମ କର୍ତ୍ତବ୍ୟ ଅଟେ । ଏହି ଭାବକୁ ହୃଦୟରେ ରଖି ତଥା ସର୍ବଥା ଆଳସ୍ୟର ତ୍ୟାଗ କରି ନିଷ୍କାମ ଭାବରେ ଉତ୍ସାହ ପୂର୍ବକ ଭଗବଦ୍ ଆଜ୍ଞାନୁସାରେ ସେମାନଙ୍କର ସେବା କରିବାରେ ତତ୍ପର ହେବା ।

### (ଙ) ଯଜ୍ଞ, ଦାନ ଏବଂ ତପ ଆଦି ଶୁଭ କର୍ମରେ ଆଳସ୍ୟ ଏବଂ କାମନାର ତ୍ୟାଗ—

ପଞ୍ଚ ମହାଯଜ୍ଞ ଯଥା—ଦେବଯଜ୍ଞ(ଅଗ୍ନିହୋତ୍ରାଦି), ଋଷିଯଜ୍ଞ(ବେଦପାଠ, ସନ୍ଧ୍ୟା, ଗାୟତ୍ରୀ-ଜପ ଆଦି), ପିତୃଯଜ୍ଞ(ତର୍ପଣ, ଶ୍ରାଦ୍ଧ ଆଦି), ମନୁଷ୍ୟଯଜ୍ଞ(ଅତିଥି ସେବା) ଏବଂ ଭୂତଯଜ୍ଞ (ବଳିବୈଶ୍ୱଦେବ), ନିତ୍ୟକର୍ମ ଏବଂ ଅନ୍ୟାନ୍ୟ ନୈମିତ୍ତିକ କର୍ମରୂପ ଯଜ୍ଞାଦି କରିବା; ଅନ୍ନ, ବସ୍ତ୍ର, ବିଦ୍ୟା, ଔଷଧ ଏବଂ ଧନାଦି ପଦାର୍ଥ ଦାନଦ୍ୱାରା ସକଳ ଜୀବଙ୍କୁ ଯଥାଯୋଗ୍ୟ ସୁଖ ପହଞ୍ଚାଇବା ପାଇଁ ମନ, ବାଣୀ ଏବଂ ଶରୀର ଦ୍ୱାରା ନିଜର ଶକ୍ତି ଅନୁଯାୟୀ ଚେଷ୍ଟା କରିବା ତଥା ସ୍ୱଧର୍ମପାଳନ ହେତୁ ସମସ୍ତ

ପ୍ରକାର କଷ୍ଟ ସହିବା ଇତ୍ୟାଦି ଶାସ୍ତ୍ରବିହିତ କର୍ମଦ୍ୱାରା ଇହଲୋକ ତଥା ପରଲୋକର ସମସ୍ତ ଭୋଗର କାମନାକୁ ତ୍ୟାଗ କରି ଏବଂ ନିଜର ପରମ କର୍ତ୍ତବ୍ୟ ମନେ କରି ଶ୍ରଦ୍ଧା ସହିତ ଉତ୍ସାହପୂର୍ବକ ଭଗବଦ୍ ଆଜ୍ଞାନୁସାରେ କେବଳ ଭଗବାନଙ୍କ ପାଇଁ ହିଁ ସେସବୁର ଆଚରଣ କରିବା ।

**(ଚ) ଆଜୀବିକାଦ୍ୱାରା ଗୃହସ୍ଥାଶ୍ରମର ଧର୍ମପାଳନ ହେତୁ ଉପଯୁକ୍ତ କର୍ମମାନଙ୍କରେ ଆଳସ୍ୟ ଏବଂ କାମନାର ତ୍ୟାଗ—**

ଭରଣପୋଷଣ ତଥା ଜୀବିକା ନିର୍ବାହ ପାଇଁ ଯେଉଁ ଯଥାର୍ଥ କର୍ମ— ଯେପରି ବୈଶ୍ୟଙ୍କ ପାଇଁ କୃଷି, ଗୋରକ୍ଷା ଏବଂ ବାଣିଜ୍ୟ ଆଦି କର୍ମ, ସେହିପରି ନିଜ-ନିଜର ବର୍ଣ୍ଣ, ଆଶ୍ରମ ଅନୁସାରେ ଶାସ୍ତ୍ର ବିଧାନ ହୋଇଛି । ସେହିସବୁର ପାଳନ ଦ୍ୱାରା ସଂସାରର ହିତ କରି ଗୃହସ୍ଥ ଧର୍ମର ନିର୍ବାହ କରିବା ପାଇଁ ଭଗବାନ୍ ଆଜ୍ଞା ଦେଇଛନ୍ତି । ଅତଏବ ଏହାକୁ ନିଜର କର୍ତ୍ତବ୍ୟ ମନେ କରି ଲାଭ-କ୍ଷତିକୁ ସମାନ ବୋଲି ଭାବି ସବୁ ପ୍ରକାର କାମନାର ତ୍ୟାଗ ପୂର୍ବକ ଉତ୍ସାହର ସହିତ ଉପଯୁକ୍ତ କର୍ମକୁ କରିବା* ।

**(ଛ) ଶରୀର ସମ୍ବନ୍ଧୀ କର୍ମରେ ଆଳସ୍ୟ ଏବଂ କାମନାର ତ୍ୟାଗ—**

ଶରୀର-ନିର୍ବାହ ପାଇଁ ଶାସ୍ତ୍ରୋକ୍ତ ରୀତିରେ ଭୋଜନ, ବସ୍ତ୍ର ଏବଂ ଔଷଧାଦିର ସେବନ ରୂପ ଯେଉଁ ସବୁ ଶରୀର-ସମ୍ବନ୍ଧୀୟ-କର୍ମ ଅଛି, ସେହି ସବୁରେ ସମସ୍ତ ଭୋଗ ବିଳାସର କାମନା ତ୍ୟାଗ କରି ଏବଂ ସୁଖ, ଦୁଃଖ, ଲାଭ, ହାନି ଏବଂ ଜୀବନ-ମରଣ ଆଦିକୁ ସମାନ ମନେ କରି କେବଳ ଭଗବତ୍-ପ୍ରାପ୍ତି ପାଇଁ ହିଁ ଯୋଗ୍ୟତା ଅନୁସାରେ ଆଚରଣ କରିବା ।

---

* ଉପରୋକ୍ତ ଭାବରେ କର୍ମ କରୁଥିବା ପୁରୁଷର କର୍ମ ଲୋଭରୁ ରହିତ ହୋଇଥିବା କାରଣରୁ ସେମାନଙ୍କ ଠାରେ କୌଣସି ପ୍ରକାରର ଦୋଷ ହୋଇପାରେ ନାହିଁ, କାରଣ ଜୀବିକା ନିର୍ବାହ ପାଇଁ କର୍ମରେ ଲୋଭ ହିଁ ବିଶେଷ ରୂପେ ପାପ କରିବାର ହେତୁ ହୁଏ । ସେଥିପାଇଁ ସମସ୍ତ ଦୋଷକୁ ତ୍ୟାଗ କରିବା ପାଇଁ ବିସ୍ତାରପୂର୍ବକ କୁହାଯାଇଛି, ଏବଂ ସେହି ସବୁକୁ ଧ୍ୟାନରେ ରଖି ନିଜ ନିଜର ବର୍ଣ୍ଣାଶ୍ରମ ଧର୍ମ ଅନୁସାରେ ସମ୍ପୂର୍ଣ୍ଣ କର୍ମରେ ସମସ୍ତ ପ୍ରକାର ଦୋଷରୁ ରହିତ ହୋଇ କେବଳ ଭଗବାନଙ୍କ ଆଜ୍ଞା ବୋଲି ହୃଦୟଙ୍ଗମ କରି କେବଳ ଭଗବାନଙ୍କ ପାଇଁ ନିଷ୍କାମ ଭାବରେ ହିଁ ସମ୍ପୂର୍ଣ୍ଣ କର୍ମ କରିବା ।

ପୂର୍ବୋକ୍ତ ଚାରିଶ୍ରେଣୀର ତ୍ୟାଗ ସହିତ ଏହି ପଞ୍ଚମ ଶ୍ରେଣୀର ତ୍ୟାଗାନୁସାରେ ସମ୍ପୂର୍ଣ୍ଣ ଦୋଷର ଏବଂ ସମସ୍ତ ପ୍ରକାର କାମନାର ନାଶ ହୋଇ କେବଳ ଏକ ଭଗବତ୍‌ପ୍ରାପ୍ତିର ହିଁ ତୀବ୍ର ଇଚ୍ଛା ହେବା ଜ୍ଞାନର ପ୍ରଥମ ଚରଣର ପରିପକ୍ୱ ଅବସ୍ଥାକୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କ ଲକ୍ଷଣ ବୋଲି ବୁଝିବା ଉଚିତ ।

**(୬) ସଂସାରର ସମ୍ପୂର୍ଣ୍ଣ ପଦାର୍ଥରେ ଏବଂ କର୍ମରେ ମମତା ଏବଂ ଆସକ୍ତିର ସର୍ବଥା ତ୍ୟାଗ—**

ଧନ, ଘର-ବାଡ଼ି ଏବଂ ବସ୍ତ୍ରାଦି ସମ୍ପୂର୍ଣ୍ଣ ବସ୍ତୁ ତଥା ସ୍ତ୍ରୀ, ପୁତ୍ର ଏବଂ ମିତ୍ରାଦି ସମ୍ପୂର୍ଣ୍ଣ ଆତ୍ମୀୟ-ସ୍ୱଜନ ଏବଂ ମାନ-ସମ୍ମାନ, ପ୍ରତିଷ୍ଠା ପ୍ରଭୃତି ଇହଲୋକ ଓ ପରଲୋକର ଯେତେସବୁ ଭୋଗ୍ୟ ପଦାର୍ଥ ଅଛି ସେଗୁଡ଼ିକୁ କ୍ଷଣଭଙ୍ଗୁର, ବିନାଶଶୀଳ ଏବଂ ଅନିତ୍ୟ ବୋଲି ଜାଣି ସେସବୁ ପ୍ରତି ମମତା ଏବଂ ଆସକ୍ତି ନ ରଖିବା ତଥା କେବଳ ଏକ ସଚ୍ଚିଦାନନ୍ଦଘନ ପରମାତ୍ମାରେ ହିଁ ଅନନ୍ୟ ଭାବେ ପ୍ରେମ ହେବା କାରଣରୁ ମନ, ବାଣୀ ଓ ଶରୀର ଦ୍ୱାରା ହେଉଥିବା ସକଳ କ୍ରିୟା ମାନଙ୍କରେ ଏବଂ ଶରୀରରେ ମଧ୍ୟ ମମତା ଓ ଆସକ୍ତିର ସର୍ବଥା ଅଭାବ ହେବା—ଏହା ଷଷ୍ଠ ଶ୍ରେଣୀର ତ୍ୟାଗ ଅଟେ ।*

ଉକ୍ତ ଷଷ୍ଠ ଶ୍ରେଣୀର ତ୍ୟାଗକୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କର ସଂସାରର ସମସ୍ତ ପଦାର୍ଥରେ ବୈରାଗ୍ୟ ହୋଇ କେବଳ ଏକ ପରମ ପ୍ରେମମୟ ଭଗବାନଙ୍କ ଠାରେ ହିଁ ଅନନ୍ୟ ପ୍ରେମ ହୋଇଯାଏ । ସେଥିପାଇଁ ସେମାନଙ୍କୁ ଭଗବାନଙ୍କ ଗୁଣ, ପ୍ରଭାବ ଏବଂ ରହସ୍ୟରେ ପୂର୍ଣ୍ଣ ହୋଇଥିବା ବିଶୁଦ୍ଧ ପ୍ରେମବିଷୟକ କଥାମାନଙ୍କୁ ଶୁଣିବା-ଶୁଣାଇବା ଏବଂ ମନନ କରିବା ତଥା ଏକାନ୍ତରେ ରହି ନିରନ୍ତର ଭଗବାନଙ୍କ

---

* ସମ୍ପୂର୍ଣ୍ଣ ପଦାର୍ଥରେ ଏବଂ କର୍ମରେ ତୃଷ୍ଣା ଓ ଫଳର ଇଚ୍ଛାକୁ ତ୍ୟାଗ କରିବା ତୃତୀୟ ଏବଂ ପଞ୍ଚମ ଶ୍ରେଣୀର ତ୍ୟାଗ ବୋଲି କୁହାଯାଇଛି, ପରନ୍ତୁ ଏହିପ୍ରକାରେ ତ୍ୟାଗ ହେଲେ ବି ସେଥିରେ ମମତା ଏବଂ ଆସକ୍ତିର ଶେଷ ରହିଯାଏ ଯେପରି ଭଜନ, ଧ୍ୟାନ ଏବଂ ସତ୍‌ସଙ୍ଗର ଅଭ୍ୟାସରୁ ଭରତ ମୁନିଙ୍କ ସମ୍ପୂର୍ଣ୍ଣ ବସ୍ତୁରେ ଏବଂ କର୍ମରେ ତୃଷ୍ଣା ଏବଂ ଫଳେଚ୍ଛାର ତ୍ୟାଗ ହେବା ପରେ ମଧ୍ୟ ହରିଣରେ ଏବଂ ହରିଣର ପାଳନ-ପୋଷଣରୂପ କର୍ମରେ ମମତା ଏବଂ ଆସକ୍ତି ଲାଗି ରହିଥିଲା । ସେଥିପାଇଁ ସଂସାରର ସମ୍ପୂର୍ଣ୍ଣ ପଦାର୍ଥରେ ଏବଂ କର୍ମରେ ଆସକ୍ତିର ତ୍ୟାଗକୁ 'ଷଷ୍ଠ ଶ୍ରେଣୀର ତ୍ୟାଗ' କୁହାଗଲା ।

ଭଜନ, ଧ୍ୟାନ ଏବଂ ଶାସ୍ତ୍ରମାନଙ୍କ ମର୍ମର ବିଚାର କରିବା ହିଁ ପ୍ରିୟ ଲାଗେ । ବିଷୟାସକ୍ତ ମନୁଷ୍ୟମାନଙ୍କ ଗହଣରେ ରହି ହାସ୍ୟ-ବିଳାସ, ପ୍ରମାଦ, ନିନ୍ଦା, ବିଷୟଭୋଗ ଏବଂ ବ୍ୟର୍ଥ ବାର୍ତ୍ତାଳାପ ଇତ୍ୟାଦିରେ ନିଜର ଅମୂଲ୍ୟ ସମୟର ଏକ କ୍ଷଣ ମଧ୍ୟ ବିତଇବା ପାଇଁ ଭଲଲାଗେ ନାହିଁ ଏବଂ ସେମାନଙ୍କ ଦ୍ୱାରା ସମ୍ପୂର୍ଣ୍ଣ କର୍ତ୍ତବ୍ୟକର୍ମ ଭଗବାନଙ୍କର ସ୍ୱରୂପ ଏବଂ ନାମର ମନନ କରି କରି ବିନା ଆସକ୍ତିରେ କେବଳ ଭଗବଦ୍‌ଅର୍ଥ ହୋଇଥାଏ । ଏହିପରି ସମ୍ପୂର୍ଣ୍ଣ ପଦାର୍ଥରେ ମମତା ଏବଂ ଆସକ୍ତିର ତ୍ୟାଗ ହୋଇ କେବଳ ଏକ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ଠାରେ ହିଁ ବିଶୁଦ୍ଧ ପ୍ରେମ ହେବା ଜ୍ଞାନର ଦ୍ୱିତୀୟ ଚରଣର ପରିପକ୍ୱ ଅବସ୍ଥାକୁ ପ୍ରାପ୍ତ ହୋଇଥିବା ପୁରୁଷର ଲକ୍ଷଣ ବୋଲି ବୁଝିବାକୁ ହେବ ।

**(୭) ସଂସାର ଶରୀର ଏବଂ ସମ୍ପୂର୍ଣ୍ଣ କର୍ମରେ ସୂକ୍ଷ୍ମ ବାସନା ଏବଂ ଅହଂଭାବର ସର୍ବଥା ତ୍ୟାଗ—**

ସଂସାରର ସକଳ ପଦାର୍ଥ ମାୟାର କାର୍ଯ୍ୟ ହୋଇଥିବାରୁ ସର୍ବଥା ଅନିତ୍ୟ; ଏକମାତ୍ର ସଚ୍ଚିଦାନନ୍ଦଘନ ପରମାତ୍ମା ହିଁ ସର୍ବତ୍ର ସମଭାବରେ ପରିପୂର୍ଣ୍ଣ ହୋଇ ରହିଛନ୍ତି—ଏପରି ଦୃଢ଼ ନିଶ୍ଚୟ ହୋଇ ଶରୀର ସମେତ ସଂସାରର ସମସ୍ତ ପଦାର୍ଥରେ ଓ ସମସ୍ତ କର୍ମରେ ସର୍ବଥା ସୂକ୍ଷ୍ମ ବାସନାର ଅଭାବ ହୋଇଯିବା ଉଚିତ । ଏପରିକି, ଏହାର ଚିତ୍ର ଅନ୍ତଃକରଣରେ ସଂସ୍କାର ରୂପରେ ମଧ୍ୟ ନ ରହିବା ଏବଂ ସର୍ବଥା ଅହଂଭାବ ଶୂନ୍ୟ ହୋଇ ମନ, ବଚନ ଓ ଶରୀର ଦ୍ୱାରା ହେଉଥିବା କୌଣସି ବି କର୍ମରେ ସାମାନ୍ୟ ମାତ୍ର କର୍ତ୍ତାପଣର ଲେଶମାତ୍ର ଅଭିମାନ ନ ରହିବା—ଏହା ସପ୍ତମ ଶ୍ରେଣୀର ତ୍ୟାଗ ଅଟେ ।* ଏହି ସପ୍ତମ ଶ୍ରେଣୀର ତ୍ୟାଗ ରୂପ 'ପରା ବୈରାଗ୍ୟ'କୁ ପାପ୍ତ ହୋଇଥିବା ପୁରୁଷଙ୍କର ଅନ୍ତଃକରଣର ବୃତ୍ତିସମୂହ ସମସ୍ତ ସଂସାରରୁ ଉପରତ ହୋଇଯାଏ ।

---

* ସମ୍ପୂର୍ଣ୍ଣ ସଂସାରର ପଦାର୍ଥରେ ଏବଂ କର୍ମରେ ତୃଷ୍ଣା ଏବଂ ଫଳର ଇଚ୍ଛାକୁ ଏବଂ ମମତା ଓ ଆସକ୍ତିର ସର୍ବଥା ଅଭାବ ହେଲା ପରେ ମଧ୍ୟ ସେଥିରେ ସୂକ୍ଷ୍ମ ବାସନା ଏବଂ କର୍ତ୍ତୃତ୍ୱ-ଅଭିମାନର ଶେଷ ରହିଯାଏ, ସୁତରାଂ ସୂକ୍ଷ୍ମ ବାସନା ଏବଂ ଅହଂକାର ଭାବର ତ୍ୟାଗକୁ 'ସପ୍ତମ ଶ୍ରେଣୀର ତ୍ୟାଗ' ବୋଲି କୁହାଯାଏ ।

ଯଦି କେତେବେଳେ କୌଣସି କାରଣରୁ ସାଂସାରିକ ବିଷୟର ଉଦ୍ରେକ ହୋଇବି ଯାଏ ତେବେ ତାହାଦ୍ୱାରା ସଂସ୍କାର ସୃଷ୍ଟି ହୁଏ ନାହିଁ । ଏହାର କାରଣ ଏକ ସଚ୍ଚିଦାନନ୍ଦଘନ ବାସୁଦେବ ପରମାତ୍ମାରେ ହିଁ ସେମାନଙ୍କର ଅନନ୍ୟ ଭାବରେ ଦୃଢ଼ସ୍ଥିତି ବିଦ୍ୟମାନ ରହେ ।

ଏହି କାରଣରୁ ଅନ୍ତଃକରଣରେ ସମ୍ପୂର୍ଣ୍ଣଭାବେ ଅବଗୁଣର ଅଭାବ ହୋଇ— (୧) ଅହିଂସା, (୨) ସତ୍ୟ, (୩) ଅସ୍ତେୟ, (୪) ବ୍ରହ୍ମଚର୍ଯ୍ୟ, (୫) ଅପୈଶୁନତା, (୬) ଲଜ୍ଜା, ଅମାନିତ୍ୱ, (୭) ନିଷ୍କପଟତା, ଶୌଚ, (୮) ସନ୍ତୋଷ, (୯) ତିତିକ୍ଷା, (୧୦) ସତ୍‌ସଙ୍ଗ, ସେବା, ଯଜ୍ଞ, ଦାନ, ତପ, (୧୧) ସ୍ୱାଧ୍ୟାୟ,

---

ପୂର୍ବୋକ୍ତ ଷଷ୍ଠ ଶ୍ରେଣୀର ତ୍ୟାଗ ପ୍ରାପ୍ତ ପୁରୁଷମାନଙ୍କର ବିଷୟ ପ୍ରତି ସଂସର୍ଗ ହେବା ଫଳରେ କେବେ ନା କେବେ ସେମାନଙ୍କ ମନରେ କିଛି ଆସକ୍ତି ଆସିପାରେ, କିନ୍ତୁ ଏହି ସପ୍ତମ ଶ୍ରେଣୀର ତ୍ୟାଗୀ ପୁରୁଷଙ୍କର ବିଷୟମାନଙ୍କର ସଙ୍ଗେ ସଂସର୍ଗ ହେବା ସତ୍ତ୍ୱେ ବି ଆସକ୍ତି ଆସିପାରେନି, ଏହାର କାରଣ ସେମାନେ ନିଶ୍ଚିତ ଯେ ଏକ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କୌଣସି ବସ୍ତୁ ହିଁ ନାହିଁ, ସେଥିପାଇଁ ଏହି ତ୍ୟାଗକୁ 'ପରାବୈରାଗ୍ୟ' କୁହାଯାଇଛି ।

(୧) କାୟ, ମନ, ବାକ୍ୟରେ କାହାକୁ ବି କୌଣସି କଷ୍ଟ ନଦେବା;
(୨) ଅନ୍ତଃକରଣ ଏବଂ ଇନ୍ଦ୍ରିୟମାନଙ୍କ ଦ୍ୱାରା ଯେପରି ନିଶ୍ଚିତ କରାହୋଇଛି, ଠିକ୍ ସେହିପରି ହିଁ ପ୍ରିୟ ଶବ୍ଦରେ କହିବା;
(୩) ଚୌର୍ଯ୍ୟ ବୃତ୍ତିର ସର୍ବଥା ଅଭାବ;
(୪) ଆଠ ପ୍ରକାରର ମୈଥୁନର ଅଭାବ;
(୫) କାହାର ବି ନିନ୍ଦା ନ କରିବା;
(୬) ସତ୍କାର, ମାନ-ସମ୍ମାନ ଓ ପୂଜାଦିକୁ ନ ଚାହିଁବା;
(୭) ବାହାର ଏବଂ ଭିତରର ପବିତ୍ରତା (ସତ୍ୟତା ପୂର୍ବକ ଶୁଦ୍ଧ ବ୍ୟବହାର ଦ୍ୱାରା ଦ୍ରବ୍ୟର ଏବଂ ତାହାର ଅନ୍ନରେ ଆହାର କରିବା ଏବଂ ଯଥାଯୋଗ୍ୟ ବ୍ୟବହାର ଓ ଆଚରଣ ଏବଂ ଜଳ ଓ ମୃତ୍ତିକାଦି ଦ୍ୱାରା ଶରୀରର ବାହ୍ୟ ଶୁଦ୍ଧି ଏବଂ ରାଗ-ଦ୍ୱେଷ ତଥା କପଟ ଆଦି ବିକାରର ନାଶ କରି ଅନ୍ତଃକରଣକୁ ସ୍ୱଚ୍ଛ ଏବଂ ଶୁଦ୍ଧ କରିବା);
(୮) ତୃଷ୍ଣାର ସର୍ବଥା ଅଭାବ;
(୯) ଶୀତ, ଉଷ୍ଣ, ସୁଖ, ଦୁଃଖାଦି ଦ୍ୱନ୍ଦ୍ୱକୁ ସହନ କରିବା;
(୧୦) ସ୍ୱଧର୍ମ ପାଳନ ପାଇଁ କଷ୍ଟ ସହିବା;
(୧୧) ବେଦ ଏବଂ ସତ୍‌ଶାସ୍ତ୍ର ଅଧ୍ୟୟନ ଓ ଭଗବାନଙ୍କ ନାମ ଓ ଗୁଣର କୀର୍ତ୍ତନ;

(୧୨) ଶମ, (୧୩) ଦମ, (୧୪) ବିନୟ, ଆର୍ଜବ, (୧୫) ଦୟା, (୧୬) ଶ୍ରଦ୍ଧା, (୧୭) ବିବେକ, (୧୮) ବୈରାଗ୍ୟ, (୧୯) ଏକାନ୍ତବାସ, ଅପରିଗ୍ରହ, (୨୦) ସମାଧାନ, (୨୧) ଉପରାମତା, ତେଜ, (୨୨) କ୍ଷମା, (୨୩) ଧୈର୍ଯ୍ୟ, (୨୪) ଅଦ୍ରୋହ, (୨୫) ଅଭୟ, (୨୬) ନିରହଙ୍କାରତା, ଶାନ୍ତି ଏବଂ ଈଶ୍ୱରଙ୍କ ପ୍ରତି ଅନନ୍ୟ ଭକ୍ତି ଇତ୍ୟାଦି ସତ୍‌ଗୁଣର ଆବିର୍ଭାବ ସ୍ୱତଃ ହିଁ ହୋଇଯାଏ ।

ଏହିପରି ଶରୀର ସହିତ ସମ୍ପୂର୍ଣ୍ଣ ପଦାର୍ଥରେ ଏବଂ କର୍ମରେ ବାସନା ତଥା ଅହଂଭାବର ଅତ୍ୟନ୍ତ ଅଭାବ ହୋଇ ଏକ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ସ୍ୱରୂପରେ

---

(୧୨) ମନକୁ ବଶ କରିବା;

(୧୩) ଇନ୍ଦ୍ରିୟମାନଙ୍କୁ ବଶ କରିବା;

(୧୪) ଶରୀର ଓ ଇନ୍ଦ୍ରିୟମାନଙ୍କ ସହିତ ଅନ୍ତଃକରଣର ସରଳତା;

(୧୫) ଦୁଃଖୀମାନଙ୍କ ପ୍ରତି କରୁଣା;

(୧୬) ବେଦ, ଶାସ୍ତ୍ର ମାହାତ୍ମା, ଗୁରୁ ଏବଂ ପରମେଶ୍ୱରଙ୍କ ବଚନକୁ ପ୍ରତ୍ୟକ୍ଷ ସଦୃଶ ବିଶ୍ୱାସ କରିବା;

(୧୭) ସତ୍ ଏବଂ ଅସତ୍ ପଦାର୍ଥର ଯଥାର୍ଥ ଜ୍ଞାନ;

(୧୮) ବ୍ରହ୍ମ ଲୋକପର୍ଯ୍ୟନ୍ତ ସମସ୍ତ ପଦାର୍ଥରେ ଆସକ୍ତିର ଅତ୍ୟନ୍ତ ଅଭାବ;

(୧୯) ମମତ୍ୱବୁଦ୍ଧିସହ ସଂଗ୍ରହର ଅଭାବ;

(୨୦) ଅନ୍ତଃକରଣରେ ସଂଶୟ ଏବଂ ବିକ୍ଷେପର ଅଭାବ;

(୨୧) ଶ୍ରେଷ୍ଠ ପୁରୁଷମାନଙ୍କ ସେହି ଶକ୍ତିର ନାମ ତେଜ ଯାହାର ପ୍ରଭାବରେ ବିଷୟାସକ୍ତ ଏବଂ ନୀଚ ପ୍ରକୃତିର ମନୁଷ୍ୟ ବି ପାପାଚରଣରୁ ନିବୃତ୍ତ ହୋଇ ସେହି ଶ୍ରେଷ୍ଠ ପୁରୁଷଙ୍କ ଆଜ୍ଞାନୁସାରେ ଶ୍ରେଷ୍ଠ କର୍ମ କରିବାରେ ପ୍ରବୃତ୍ତ ହେବା;

(୨୨) ନିଜର ଅପରାଧ କରୁଥିବା ଲୋକଙ୍କୁ ମଧ୍ୟ କୌଣସି ପ୍ରକାର ଦଣ୍ଡ ଦେବାର ଭାବ ନ ରଖିବା;

(୨୩) ବହୁତ ବଡ଼ ବିପତ୍ତି ପଡ଼ିଲେ ବି ନିଜର ସ୍ଥିତିରେ ବିଚଳିତ ନ ହେବା;

(୨୪) ନିଜ ପ୍ରତି ଦ୍ୱେଷ କରୁଥିବା ଲୋକଙ୍କ ପ୍ରତି ବି ଦ୍ୱେଷ ନ କରିବା;

(୨୫) ସର୍ବଥା ଭୟର ଅଭାବ;

(୨୬) ଇଚ୍ଛା ଏବଂ ବାସନାର ସର୍ବଥା ଅଭାବ ହେବା ଏବଂ ଅନ୍ତଃକରଣରେ ନିତ୍ୟ ନିରନ୍ତର ପ୍ରସନ୍ନ ରହିବା) ।

ହିଁ ଏକୀ ଭାବରେ ନିତ୍ୟ-ନିରନ୍ତର ଦୃଢ଼ ସ୍ଥିତିରେ ରହିବା ଜ୍ଞାନର ତୃତୀୟ ଚରଣରେ ପରିପକ୍ୱ ଅବସ୍ଥାକୁ ପ୍ରାପ୍ତ ହେବା ପୁରୁଷର ଲକ୍ଷଣ ଅଟେ ।

ଉପରୋକ୍ତ ଗୁଣ ସମୂହରୁ କେତେକ ଗୁଣ ପ୍ରଥମ ଓ ଦ୍ୱିତୀୟ ଚରଣରେ ହିଁ ପ୍ରାପ୍ତ ହୋଇଯାଇଥାଏ, କିନ୍ତୁ ସମ୍ପୂର୍ଣ୍ଣ ଗୁଣର ଆବିର୍ଭାବ ପ୍ରାୟତଃ ତୃତୀୟ ଚରଣରେ ହିଁ ପ୍ରାପ୍ତ ହୋଇଥାଏ କାରଣ ଏହିସବୁ ଭଗବତ୍ ପ୍ରାପ୍ତିର ଅତି ନିକଟରେ ପହଞ୍ଚିଥିବା ପୁରୁଷଙ୍କ ଲକ୍ଷଣ ଏବଂ ଭଗବତ୍ ସ୍ୱରୂପର ସାକ୍ଷାତ୍ ଜ୍ଞାନରେ ହେତୁ ଅଟେ । ଅତଏବ ଶ୍ରୀକୃଷ୍ଣ ଭଗବାନ୍ ଏହି ଗୁଣମାନଙ୍କୁ (ଗୀତା ୧୩ ଅଧ୍ୟାୟର ଶ୍ଳୋକ ୭ ରୁ ୧୧ ) 'ଜ୍ଞାନ' ନାମରେ ତଥା (୧୬ ଅଧ୍ୟାୟର ଶ୍ଳୋକ ୧ ରୁ ୩) ରେ 'ଦୈବୀ ସମ୍ପଦା' ନାମରେ ଅଭିହିତ କରିଛନ୍ତି । ଏବଂ ଉକ୍ତ ଗୁଣମାନଙ୍କୁ ଶାସ୍ତ୍ରଜ୍ଞପୁରୁଷମାନେ ସାମାନ୍ୟ ଧର୍ମ ବୋଲି ମାନିଛନ୍ତି । ଏହି କାରଣରୁ କେବଳ ମନୁଷ୍ୟମାନଙ୍କର ହିଁ ଏଥିରେ ଅଧିକାର ଅଛି । ଅତଏବ ଉପରୋକ୍ତ ସଦ୍‌ଗୁଣ ମାନଙ୍କୁ ନିଜ ଅନ୍ତଃକରଣରେ ଆର୍ବିଭାବ କରାଇବା ପାଇଁ ସମସ୍ତଙ୍କୁ ଭଗବାନଙ୍କ ଶରଣ ହୋଇ ବିଶେଷ ରୂପେ ପ୍ରଯତ୍ନ କରିବା ଉଚିତ ।

---

# ଉପସଂହାର

ଏହି ଲେଖାଟିରେ ସାତୋଟି ଶ୍ରେଣୀର ତ୍ୟାଗଦ୍ୱାରା ଭଗବତ୍-ପ୍ରାପ୍ତିର କଥା କୁହାଯାଇଛି । ସେହିମାନଙ୍କ ମଧ୍ୟରୁ ପ୍ରଥମ ପାଞ୍ଚଟି ଶ୍ରେଣୀର ତ୍ୟାଗକୁ ଜ୍ଞାନର ପ୍ରଥମ ଚରଣର ଲକ୍ଷଣ ଏବଂ ଷଷ୍ଠ ଶ୍ରେଣୀ ଯାଏଁ ତ୍ୟାଗ ସମୂହକୁ ଦ୍ୱିତୀୟ ଚରଣର ଲକ୍ଷଣ ତଥା ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ତ୍ୟାଗମାନଙ୍କୁ ତୃତୀୟ ଚରଣର ଲକ୍ଷଣ ବୋଲି କୁହାଯାଇଛି । ଏହି ତୃତୀୟ ଚରଣର ପରିପକ୍ୱ ଅବସ୍ଥା ପ୍ରାପ୍ତ ପୁରୁଷ ତତ୍‌କ୍ଷଣାତ୍ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ପ୍ରାପ୍ତ ହୁଅନ୍ତି । ସେତେବେଳେ ଆଉ ଏହି କ୍ଷଣଭଙ୍ଗୁର ବିନାଶଶୀଳ ଅନିତ୍ୟ ସଂସାର ସଙ୍ଗେ ତାହାର କୌଣସି ବି ସମ୍ପର୍କ ରହେ ନାହିଁ, ଅର୍ଥାତ୍ ସ୍ୱପ୍ନ ଭଙ୍ଗ ହେବା ପରେ ଚେଇଁ ଉଠିଥିବା ମନୁଷ୍ୟର ଯେପରି ସ୍ୱପ୍ନଜଗତ ସଙ୍ଗେ କୌଣସି ସମ୍ପର୍କ ରହେ ନାହିଁ, ସେହିପରି ଅଜ୍ଞାନ ରୂପକ ନିଦ୍ରାରୁ ଜାଗ୍ରତ ଅବସ୍ଥାକୁ ପ୍ରାପ୍ତ ହୋଇଥିବା ମନୁଷ୍ୟର ମଧ୍ୟ କାର୍ଯ୍ୟରୂପ ଅନିତ୍ୟ ସଂସାର ସଙ୍ଗେ କୌଣସି ସମ୍ପର୍କ ରହେ ନାହିଁ । ଅବଶ୍ୟ ଲୌକିକ ଦୃଷ୍ଟିରୁ ଏହିସବୁ ଜ୍ଞାନୀ ପୁରୁଷଙ୍କର ଶରୀର ଦ୍ୱାରା ଯାହାକିଛି ପ୍ରାରବ୍ଧଜନିତ କାର୍ଯ୍ୟମାନ ସମ୍ପନ୍ନ ହେଉଛି ବୋଲି ପ୍ରତୀତ ହୁଏ ସେହିସବୁ କାର୍ଯ୍ୟର ଫଳରେ ସଂସାର ଯଥେଷ୍ଟ ଲାଭବାନ୍ ହୁଏ । କାରଣ କାମନା, ଆସକ୍ତି ଏବଂ କର୍ତ୍ତୃତ୍ୱାଭିମାନରହିତ ହୋଇଥିବା ହେତୁ ଏହିସବୁ ମହାତ୍ମାମାନଙ୍କର ଦେହ, ମନ ଓ ଶରୀର ଦ୍ୱାରା ସମ୍ପନ୍ନ ହେଉଥିବା ଏହିସବୁ ଆଚରଣ ଲୋକ ସମୂହରେ ପ୍ରାମାଣିକ ବୋଲି ବିବେଚିତ ହୁଏ । ଏହି ମହାତ୍ମା ମାନଙ୍କର ଭାବରୁ ହିଁ ଶାସ୍ତ୍ରର ସୃଷ୍ଟି ହୁଏ । କିନ୍ତୁ ଏହିସବୁ ଘଟୁଥିବା ସତ୍ତ୍ୱେ ବି ସଚ୍ଚିଦାନନ୍ଦଘନ ବାସୁଦେବଙ୍କୁ ପ୍ରାପ୍ତ ହୋଇଥିବା ପୁରୁଷ ଏହି ତ୍ରିଗୁଣମୟୀ ମାୟାରୁ ସର୍ବଥା ଅତୀତ । ସେଥିପାଇଁ ଏହି ମାହାତ୍ମା ପୁରୁଷମାନେ ଗୁଣର କାର୍ଯ୍ୟ ରୂପ ପ୍ରକାଶ, ପ୍ରବୃତ୍ତି ଏବଂ ନିଦ୍ରା ଆଦିକୁ ପ୍ରାପ୍ତ ହେଲେ ବି ସେଥିରେ ଦ୍ୱେଷ କରନ୍ତି ନାହିଁ କି ସେସବୁ ଠାରୁ ନିବୃତ୍ତ ହେଲେ ମଧ୍ୟ ସେସବୁର ଆକାଙ୍‌କ୍ଷା କରନ୍ତି ନାହିଁ । କାରଣ ସୁଖ-ଦୁଃଖ, ଲାଭ-ହାନି, ମାନ-ଅପମାନ, ନିନ୍ଦା-ସ୍ତୁତି ପ୍ରଭୃତିରେ ଏବଂ ମାଟି, ପଥର, ସୁନା ଇତ୍ୟାଦି ସବୁଥିରେ ସେମାନଙ୍କର ସମଭାବ ରହେ । ଏଥିପାଇଁ ସେହି ସବୁ ମହାତ୍ମାମାନଙ୍କର କୌଣସି ପ୍ରିୟ ବସ୍ତୁର ପ୍ରାପ୍ତିରେ ଏବଂ ଅପ୍ରିୟ ବସ୍ତୁର ନିବୃତ୍ତିରେ ଆନନ୍ଦ ହୁଏ ନାହିଁ କି ଅପ୍ରିୟ

ବସ୍ତୁର ପ୍ରାପ୍ତି ଏବଂ ପ୍ରିୟ ବସ୍ତୁର ବିୟୋଗରେ ଦୁଃଖ ହୁଏନାହିଁ । ଯଦି ସେହି ସବୁ ପୁରୁଷଙ୍କର ଶରୀର କୌଣସି କାରଣରୁ ଅସ୍ତ୍ର ଦ୍ୱାରା ଛେଦନ କରାଯାଏ କିମ୍ୱା ଅନ୍ୟ କୌଣସି କାରଣରୁ ଦୁଃଖ ପ୍ରାପ୍ତ ହୁଏ, ତେବେ ବି ଏକ ସଚ୍ଚିଦାନନ୍ଦଘନ ବାସୁଦେବଙ୍କଠାରେ ଅନନ୍ୟ ଭାବରେ ସ୍ଥିତ ହୋଇଥିବା ପୁରୁଷ ସେହି ସ୍ଥିତିରୁ ବିଚଳିତ ହୁଅନ୍ତି ନାହିଁ । କାହିଁକି ନା, ସେମାନଙ୍କର ଅନ୍ତଃକରଣରେ ସମ୍ପୂର୍ଣ୍ଣ ସଂସାର ମୃଗତୃଷ୍ଣାର ଜଳ ଭଳି ପ୍ରତୀତ ହୁଏ ଏବଂ ଏକ ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କାହାର ବି ଅସ୍ତିତ୍ୱ ଥିବା ଭାବ ହୁଏନି । ଆଉ ଅଧିକ କଣ କୁହାଯିବ, ପ୍ରକୃତ ପକ୍ଷେ ସେହି ସଚ୍ଚିଦାନନ୍ଦଘନ ପରମାତ୍ମାଙ୍କୁ ପ୍ରାପ୍ତ ହୋଇଥିବା ପୁରୁଷଙ୍କ ଭାବ ସେ ନିଜେ ହିଁ ଜାଣନ୍ତି । ମନ,ବୁଦ୍ଧି ଏବଂ ଇନ୍ଦ୍ରିୟ ଦ୍ୱାରା ପ୍ରକଟ କରିବା ପାଇଁ କାହାରି ବି ସାମର୍ଥ୍ୟ ନାହିଁ ।

ଅତଏବ ଯେତେ ଶୀଘ୍ର ହୋଇପାରେ, ଅଜ୍ଞାନ ନିଦ୍ରାରୁ ଉଠି ଉକ୍ତ ସାତ ଶ୍ରେଣୀରେ କୁହାଯାଇଥିବା ତ୍ୟାଗ ଦ୍ୱାରା ପରମାତ୍ମାଙ୍କୁ ପ୍ରାପ୍ତ କରିବା ପାଇଁ ସତ୍‌ପୁରୁଷଙ୍କ ଶରଣ ନେଇ ସେମାନଙ୍କ ଉପଦେଶ ଅନୁଯାୟୀ ସାଧନ କରିବା ପାଇଁ ତତ୍ପର ହେବା ଉଚିତ କାରଣ ଅତି ଦୁର୍ଲଭ ମନୁଷ୍ୟ ଶରୀର ବହୁତ ଜନ୍ମର ଅନ୍ତରେ ପରମ ଦୟାଳୁ ଭଗବାନଙ୍କ କୃପାରୁ ହିଁ ମିଳିଥାଏ । ଅତଏବ ନାଶବାନ୍, କ୍ଷଣଭଙ୍ଗୁର ସଂସାରର ଅନିତ୍ୟ ଭୋଗମାନଙ୍କୁ ଭୋଗ କରିବା ପାଇଁ ନିଜର ଅମୂଲ୍ୟ ସମୟ ନଷ୍ଟ କରିବା ଉଚିତ ନୁହେଁ ।



॥ ଶ୍ରୀହରିଃ ॥

# ଗୀତାରେ ଧ୍ୟାନ ସମ୍ବନ୍ଧୀୟ ଶ୍ଳୋକ

| ଅଧ୍ୟାୟ | ନିରାକାର | ନିରାକାର ସାକାର | ସାକାର |
|---|---|---|---|
| ୨ | ୧୭,୨୦,୨୧,୨୩,୨୪,୨୫, ୨୮,୨୯,୪୫,୫୫,୬୯ | ୬୧ | ୦ |
| ୩ | ୧୭,୨୮,୪୩ | ୩୦ | ୦ |
| ୪ | ୨୪,୨୫,୨୬,୨୭,୩୫ | ୦ | ୬,୭,୮,୯,୧୦, ୧୧,୧୩,୧୪ |
| ୫ | ୭,୮,୯,୧୩,୧୭,୧୯, ୨୦,୨୧,୨୪,୨୭,୨୮ | ୨୯ | ୦ |
| ୬ | ୭,୮,୧୮,୨୦,୨୧,୨୨, ୨୪,୨୫,୨୬,୨୭,୨୮, ୨୯,୩୧,୩୨ | ୧୦,୧୩,୧୪,୩୦,୪୭ | ୦ |
| ୭ | ୭,୧୨,୧୯ | ୧୪,୩୦ | ୦ |
| ୮ | ୮,୯,୧୦,୨୦,୨୧,୨୨ | ୫,୭,୧୨,୧୩,୧୪ | ୦ |
| ୯ | ୪,୫,୬,୨୯ | ୧୩,୧୪,୧୫,୧୮,୨୨,୩୪ | ୦ |
| ୧୦ | ୨୦ | ୩,୮,୯,୧୦,୧୨,୩୯, ୪୧,୪୨ | ୦ |
| ୧୧ | ୦ | ୧୮,୩୭,୩୮,୫୫ | ୭,୧୭,୪୬ |
| ୧୨ | ୩ | ୬,୭,୮,୧୪ | ୨ |
| ୧୩ | ୧୧,୧୨,୧୪,୧୫,୧୭, ୨୨,୨୪,୨୭,୨୮,୨୯, ୩୦,୩୧,୩୨ | ୧୦,୧୩,୧୬ | ୦ |
| ୧୪ | ୧୯,୨୩,୨୭ | ୨୬ | ୦ |
| ୧୫ | ୫,୧୫,୧୭,୧୯ | ୪ | ୦ |
| ୧୬ | ୧ | ୦ | ୦ |
| ୧୭ | ୦ | ୦ | ୦ |
| ୧୮ | ୨୦,୪୬,୫୪,୫୫,୬୧,୬୨ | ୫୭,୬୫,୬୬ | ୬୬ |

## ଗୀତାରେ ଭଗବତ୍‌ପ୍ରାପ୍ତି ତଥା ସାଧନ ବିଷୟକ ଶ୍ଳୋକର ସଂଖ୍ୟା

| ଅଧ୍ୟାୟ | ଶ୍ଳୋକ |
|---|---|
| ୨ | ୧୭,୨୦, ୨୩, ୨୪, ୨୫, ୩୮, ୪୫, ୪୭, ୪୮, ୪୯, ୫୦, ୫୧,୫୫,୫୬, ୫୭,୫୮,୬୧,୬୪,୬୮,୭୧ (୨୦) |
| ୩ | ୭,୯,୧୭,୧୯,୨୫,୨୮,୩୦,୩୪ (୮) |
| ୪ | ୬,୮,୯,୧୦,୧୧,୧୪,୧୮,୧୯,୨୦,୨୧,୨୨,୨୩,୨୪, ୨୫,୨୬, ୨୭,୨୮,୩୪,୩୮,୩୯,୪୧,୪୨ (୨୨) |
| ୫ | ୨,୩,୪,୫,୬,୭,୮,୧୦,୧୧,୧୨,୧୩,୧୭,୧୮,୧୯,୨୦,୨୧, ୨୪,୨୫,୨୬,୨୮,୨୯ (୨୧) |
| ୬ | ୨,୩,୪,୭,୮,୯,୧୦,୧୪,୧୮,୨୦,୨୫,୨୬,୨୯, ୩୦,୩୧,୩୨,୩୫,୪୭ (୧୮) |
| ୭ | ୧,୭,୧୨,୧୪,୧୬,୧୯,୨୩,୨୮,୨୯,୩୦ (୧୦) |
| ୮ | ୫,୭,୮,୯,୧୩,୧୪,୨୨,୨୪,୨୭ (୯) |
| ୯ | ୪,୫,୬,୯,୧୩,୧୪,୧୫,୧୭,୧୮,୧୯,୨୨,୨୫,୨୬,୨୭, ୨୯,୩୦,୩୧,୩୨,୩୩,୩୪ (୨୦) |
| ୧୦ | ୩,୮,୯,୧୦,୧୨,୧୫,୨୦,୩୯,୪୧,୪୨ (୧୦) |
| ୧୧ | ୭,୧୧,୧୩,୧୫,୧୬,୧୭,୧୮,୧୯,୨୦,୩୭,୩୮, ୩୯,୪୦, ୪୩,୪୬,୫୪,୫୫ (୧୭) |
| ୧୨ | ୨,୩,୬,୭,୮,୯,୧୦,୧୧,୧୨,୧୩,୧୪,୧୫,୧୬,୧୭,୧୮,୧୯ (୧୬) |
| ୧୩ | ୨,୭,୮,୯,୧୦,୧୧,୧୨,୧୩,୧୪,୧୫,୧୬,୧୭,୨୨,୨୪, ୨୫,୨୭,୨୮,୨୯,୩୦,୩୧,୩୨,୩୩ (୨୨) |
| ୧୪ | ୧୯,୨୦,୨୨,୨୩,୨୪,୨୫,୨୬,୨୭ (୮) |
| ୧୫ | ୧,୪,୫,୧୫,୧୯ (୫) |
| ୧୬ | ୧,୨,୩ (୩) |
| ୧୭ | ୧୧,୧୬,୨୦,୨୩,୨୫,୨୭ (୬) |
| ୧୮ | ୨,୯,୧୦,୧୧,୧୭,୨୦,୨୩,୨୬,୩୩,୪୨,୪୬,୪୯,୫୫,୫୬, ୫୭,୬୨,୬୫,୬୬,୬୮,୭୦ (୨୦) |

॥ ଶ୍ରୀହରିଃ ॥

# ପ୍ରାର୍ଥନା

ହେ ନାଥ! ତୁମ ନିକଟରେ ଏହି ପ୍ରାର୍ଥନା କି—ମୁଁ ଯେପରି ତୁମକୁ ଭଲପାଏ ।

କେବଳ ଏତିକି ହିଁ ତୁମଠାରୁ ମୁଁ ମାଗୁଛି ପ୍ରଭୁ ! ଆଉ କିଛି ନୁହଁ ।

ହେ ନାଥ ! ଯଦି ମୁଁ ସ୍ୱର୍ଗ ମାଗେ ତ ମୋତେ ନରକ ଗତି ଦିଅ; ଯଦି ସୁଖ ଚାହେଁ ତ ମୋତେ ଅନନ୍ତ ଦୁଃଖରେ ଠେଲି ଦିଅ, ପରନ୍ତୁ ମୁଁ ଯେପରି ତୁମକୁ ଭଲପାଏ ।

ହେ ନାଥ! ତୁମ ବିନା ମୁଁ ଯେପରି ବଞ୍ଚି ନ ପାରେ, ସେପରି ବ୍ୟାକୁଳତା ମୋ ହୃଦୟରେ ଭରିଦିଅ ।

ହେ ନାଥ! ତୁମେ ମୋର ହୃଦୟରେ ଏପରି ଅଗ୍ନି ପ୍ରଜ୍ୱଳିତ କରିଦିଅ ଯେପରି ତୁମର ପ୍ରୀତି ବିନା ମୁଁ ବଞ୍ଚି ନ ପାରେ ।

ହେ ନାଥ ! ତୁମ ବିନା ମୋର ଅବା କିଏ ଅଛି ? ମୁଁ କାହାକୁ ବା କହିବି ? ମୋ କଥା କିଏ ବା ଶୁଣିବ ?

ହେ ମୋର ଶରଣ୍ୟ ! ମୁଁ କୁଆଡେ ଯିବି ? କଅଣ କରିବି ? ମୋର କିଏ ବି ତ ନାହିଁ ।

ମୁଁ ଭୁଲି ଯାଇଥିବା କେତେକଙ୍କୁ ମୋର ବୋଲି ମାନିଥିଲି । ସେମାନଙ୍କ ଦ୍ୱାରା ଠକି ହେଲି, ପୁଣି ବି ଧୋକା ଖାଇପାରେ । ଆପଣ ବଞ୍ଚାନ୍ତୁ ।

ହେ ମୋର ପ୍ରିୟ ! ହେ ଅନାଥର ନାଥ ! ହେ ଅଶରଣ ଶରଣ! ହେ ପତିତପାବନ!

ହେ ଦୀନବନ୍ଧୁ ! ହେ ଅରକ୍ଷିତର ରକ୍ଷକ! ହେ ନିରାଧାରର ଆଧାର! ହେ ଅକାରଣ-କରୁଣା-ବରୁଣାଳୟ! ହେ ସାଧନହୀନର ଏକ ମାତ୍ର ସାଧନ ! ହେ ଅସହାୟର ସହାୟକ ! ଆପଣ କ'ଣ ମୋତେ ଜାଣନ୍ତି ନାହିଁ କି ମୁଁ କିପରି ଭଗ୍ନପ୍ରତିଜ୍ଞ, କିପରି କୃତଘ୍ନ, କିପରି ଅପରାଧୀ, କିପରି ବିପରୀତଗାମୀ, କିପରି ଅକରଣ-କରଣ ପରାୟଣ ଅଟେ ?

ଅନନ୍ତ ଦୁଃଖର କାରଣ ସ୍ୱରୂପ ଭୋଗମାନଙ୍କୁ ଭୋଗିବା, ଜାଣି ଶୁଣି ଆସକ୍ତିଯୁକ୍ତ,

ଅହିତକୁ ହିତ ବୋଲି ମାନିବା, ବାରମ୍ବାର ଆଘାତ ପାଇ ମଧ୍ୟ ନ ଚେତିବା, ଜାଣି ମଧ୍ୟ ନ ଜାଣିବା ଏପରି ଲୋକ ମୋ ବ୍ୟତୀତ ଆପଣଙ୍କୁ ଆଉ କିଏ ମିଳିବ ?

ପ୍ରଭୁ ! ତ୍ରାହି ମାମ୍ ! ତ୍ରାହି ମାମ୍ ! ପାହି ମାମ୍ ! ପାହି ମାମ୍ !!

ହେ ପ୍ରଭୁ ! ହେ ବିଭୁ ! ମୁଁ ଭଲରୂପେ ଆଖି ଖୋଲି ଦେଖିପାରୁଛି ଯେ ମୋର ଏହି ମନ, ବୁଦ୍ଧି, ପ୍ରାଣ ଓ ଇନ୍ଦ୍ରିୟଗଣ ତଥା ଏହି ଶରୀର ଯେତେବେଳେ ମୋର ନୁହଁ ସେତେବେଳେ ବସ୍ତୁ, ବ୍ୟକ୍ତି ଆଦି ମୋର କିପରି ହୋଇପାରିବେ ? ଏପରି ମୁଁ ଜାଣି ପାରୁଛି, କହୁଛି ବି; କିନ୍ତୁ ବାସ୍ତବରେ ମାନୁ ନାହିଁ । ଏପରି ଦଶା କଣ ଆପଣଙ୍କୁ କିଞ୍ଚନ୍‌ମାତ୍ର କେବେ ହେଲେ ବି ଅଛପା ଅଛି ? ସେଥିହେତୁ ହେ ମୋର ପ୍ରିୟ ! କ'ଣ କହିବି !

ହେ ନାଥ ! ହେ ନାଥ !! ହେ ମୋର ନାଥ !!! ହେ ଦୀନବନ୍ଧୁ ! ହେ ପ୍ରଭୁ !

ଆପଣ ନିଜ ତରଫରୁ ମୋତେ ଶରଣରେ ନେଇଯାଆନ୍ତୁ ।

ଏତିକି ପ୍ରାର୍ଥନା, ଯେପରି ମୁଁ ତୁମକୁ ଭଲପାଏ ।

*—ସ୍ୱାମୀ ରାମସୁଖଦାସଜୀ ମହାରାଜ*

# ଉଦ୍ଦେଶ୍ୟ

ଯେଉଁଥିପାଇଁ ମନୁଷ୍ୟ ଜନ୍ମ ମିଳିଛି, ସେହି ପରମାତ୍ମାଙ୍କୁ ପାଇବାର ଉଦ୍ଦେଶ୍ୟ ନିର୍ଦ୍ଧାରିତ ହୋଇଗଲେ ମନୁଷ୍ୟ ପାଇଁ ସାଂସାରିକ ସିଦ୍ଧି-ଅସିଦ୍ଧି ବିଘ୍ନ ସୃଷ୍ଟି କରିପାରେ ନାହିଁ ।

ରୋଗୀର ଉଦ୍ଦେଶ୍ୟ ଯେପରି ନୀରୋଗତା ପ୍ରାପ୍ତ କରିବା, ସେହିପରି ମନୁଷ୍ୟର ଉଦ୍ଦେଶ୍ୟ ଆତ୍ମକଲ୍ୟାଣ କରିବା । ସାଂସାରିକ ସଫଳତା-ବିଫଳତାକୁ ମହତ୍ତ୍ୱ ନ ଦେଲେ ଅର୍ଥାତ୍ ସେଥିରେ ସମଭାବ ରଖିଲେ ଉଦ୍ଦେଶ୍ୟ ସଫଳ ହୋଇଯାଏ ।

ପରମାତ୍ମାଙ୍କୁ ଲାଭ କରିବା ଯେତେବେଳେ ସାଧକର ଏକମାତ୍ର ଉଦ୍ଦେଶ୍ୟ ହୋଇଯାଏ, ସେତେବେଳେ ତା' ପାଖରେ ଥିବା ସମସ୍ତ ସାମଗ୍ରୀ (ବସ୍ତୁ, ପରିସ୍ଥିତି ଇତ୍ୟାଦି) ସାଧନରୂପ (ସାଧନ-ସାମଗ୍ରୀ) ହୋଇଯାଏ ।

କେବଳ ପରମାତ୍ମାଙ୍କୁ ପାଇବାର ଉଦ୍ଦେଶ୍ୟ ଦୃଢ଼ ହୋଇଗଲେ ଅନ୍ତଃକରଣ ଯେତେ ଶୀଘ୍ର ଓ ଯେଭଳି ଶୁଦ୍ଧ ହୋଇଥାଏ, ଅନ୍ୟ କୌଣସି ଧର୍ମକର୍ମାଦି ଅନୁଷ୍ଠାନ ଦ୍ୱାରା ସେତେ ଶୀଘ୍ର ଓ ସେଭଳି ଶୁଦ୍ଧ ହୁଏ ନାହିଁ ।

ପଶୁମାନେ ମଧ୍ୟ ଇନ୍ଦ୍ରିୟ ଦ୍ୱାରା ସୁଖ ଉପଭୋଗ କରନ୍ତି, କିନ୍ତୁ ସେଭଳି ଭୋଗ ଉପଭୋଗ କରିବା ମନୁଷ୍ୟ ଜୀବନର ଉଦ୍ଦେଶ୍ୟ ନୁହେଁ । ସୁଖ-ଦୁଃଖରୁ ଅତୀତ ତତ୍ତ୍ୱକୁ ପ୍ରାପ୍ତ କରିବା ହିଁ ମାନବ ଜନ୍ମର ଉଦ୍ଦେଶ୍ୟ ।

କର୍ମଯୋଗ, ଜ୍ଞାନଯୋଗ, ଧ୍ୟାନଯୋଗ, ଭକ୍ତିଯୋଗ ଇତ୍ୟାଦି ପ୍ରତ୍ୟେକ ସାଧନାରେ ଦୃଢ଼ନିଶ୍ଚୟ ବା ଉଦ୍ଦେଶ୍ୟ ନିତାନ୍ତ ଆବଶ୍ୟକ । ଆତ୍ମକଲ୍ୟାଣର ଉଦ୍ଦେଶ୍ୟ ଯଦି ଦୃଢ଼ ନାହିଁ, ତେବେ ସାଧନାରେ ସିଦ୍ଧି କିପରି ମିଳିବ ?

ଏକମାତ୍ର ପରମାତ୍ମାଙ୍କୁ ପାଇବାର ଉଦ୍ଦେଶ୍ୟ ହୋଇଗଲେ କୌଣସି ସାଧନା ଛୋଟ-ବଡ ହୋଇ ରହେ ନାହିଁ ।

ବାସ୍ତବରେ ପରମାତ୍ମ-ପ୍ରାପ୍ତି ବ୍ୟତୀତ ମାନବ ଜୀବନର ଅନ୍ୟ କୌଣସି ପ୍ରୟୋଜନ ନାହିଁ । କେବଳ ଏହି ପ୍ରୟୋଜନ ବା ଉଦ୍ଦେଶ୍ୟକୁ ଚିହ୍ନି ତାହାକୁ ପୂର୍ଣ୍ଣ କରିବା ଆବଶ୍ୟକ ।

ଉଦ୍ଦେଶ୍ୟ ହିଁ ମନୁଷ୍ୟର ପ୍ରତିଷ୍ଠା । ଯାହାର କୌଣସି ଉଦ୍ଦେଶ୍ୟ ନାହିଁ, ସେ ପ୍ରକୃତରେ ମନୁଷ୍ୟ ପଦବାଚ୍ୟ ନୁହେଁ ।

॥ ଶ୍ରୀହରିଃ ॥

# ଗୀତାପ୍ରେସରୁ ପ୍ରକାଶିତ ଓଡ଼ିଆ ପୁସ୍ତକାବଳୀ

## ଗୀତା, ଭାଗବତ, ରାମାୟଣ ପ୍ରକାଶନ

| କୋଡ୍ ନଂ | ବହିର ନାମ | ମୂଲ୍ୟ |
|---|---|---|
| ୧୫୫୧ | ଅତିବଡ଼ୀ ଜଗନ୍ନାଥଦାସ ପ୍ରଣୀତ ଭାଗବତ ମହାପୁରାଣ | ଟ. ୧୮୦ |
| ୫୪୧ | ଶ୍ରୀମଦ୍ଭଗବଦ୍ଗୀତା ଏବଂ ବିଷ୍ଣୁସହସ୍ରନାମ (ମୂଳଶ୍ଳୋକ, ଶ୍ଳୋକାର୍ଥ ସହିତ ପକେଟ ସାଇଜ) | ଟ. ୪ |
| ୭୫୪ | ଗୀତାମାଧୁର୍ଯ୍ୟ (ପ୍ରଶ୍ନୋତ୍ତର ଶୈଳୀରେ ଗୀତାର ଭାବ) | ଟ. ୮ |
| ୮୧୫ | ଶ୍ରୀମଦ୍ଭଗବଦ୍ଗୀତା (ଶ୍ଳୋକାର୍ଥ ସହିତ, ବଡ ଅକ୍ଷର, ବନ୍ଧାଇ) | ଟ. ୨୫ |
| ୧୦୦୮ | ଶ୍ରୀମଦ୍ଭଗବଦ୍ଗୀତା (ଶ୍ଳୋକାର୍ଥ ସହିତ ପକେଟ ସାଇଜ) | ଟ. ୧୦ |
| ୧୦୩୬ | ଶ୍ରୀମଦ୍ଭଗବଦ୍ଗୀତା (ଲଘୁ ଆକାର କେବଳ ଶ୍ଳୋକ) | ଟ. ୨ |
| ୧୧୦୦ | ଶ୍ରୀମଦ୍ଭଗବଦ୍ଗୀତା ତତ୍ତ୍ୱବିବେଚନୀ ଟୀକା<br>ଟୀକାକାର - ଶ୍ରୀଜୟଦୟାଲ ଗୋୟନ୍ଦକା<br>(ଗୀତାବିଷୟକ ୨୫୧୫ଟି ପ୍ରଶ୍ନ ଏବଂ ସେଗୁଡ଼ିକର ଉତ୍ତର ରୂପେ ବିବେଚନାତ୍ମକ ଟୀକା, ଗ୍ରନ୍ଥାକାର, ସଚିତ୍ର, ବନ୍ଧେଇ) | ଟ. ୧୦୦ |
| ୧୧୨୧ | ଶ୍ରୀମଦ୍ଭଗବଦ୍ଗୀତା ସାଧକ-ସଂଜୀବନୀ ଟୀକା<br>ଟୀକାକାର - ସ୍ୱାମୀ ରାମସୁଖଦାସ<br>(ଗୀତାର ମର୍ମ ଓ ରହସ୍ୟପୂର୍ଣ୍ଣ ବିଷୟ ବୁଝିବାଭଳି ବ୍ୟାଖ୍ୟାତ୍ମକ ଶୈଳୀ, ଗ୍ରନ୍ଥାକାର, ସଚିତ୍ର ବନ୍ଧାଇ) | ଟ.୧୫୦ |
| ୧୧୫୬ | ଶ୍ରୀମଦ୍ଭଗବଦ୍ଗୀତା (ଶ୍ଳୋକାର୍ଥ ସହିତ, ବଡ ଅକ୍ଷର) | ଟ. ୧୮ |
| ୧୨୯୮ | ଗୀତା-ଦର୍ପଣ<br>(ସ୍ୱାମୀ ରାମସୁଖଦାସଙ୍କ ଦ୍ୱାରା ଗୀତାର ତତ୍ତ୍ୱ ଉପରେ ଆଲୋକପାତ ଏବଂ ଗୀତା ସମ୍ବନ୍ଧୀୟ ନିବନ୍ଧ, ବ୍ୟାକରଣ ଓ ଛନ୍ଦ ଉପରେ ଆଲୋଚନା) | ଟ. ୫୦ |
| ୧୪୬୩ | ଗୋସ୍ୱାମୀତୁଳସୀଦାସ ରଚିତ ଶ୍ରୀରାମଚରିତମାନସ | ଟ. ୧୭୦ |
| ୧୨୧୮ | ଶ୍ରୀରାମଚରିତମାନସ (ମୂଳପାଠ, ବଡ଼ଅକ୍ଷର, ଗ୍ରନ୍ଥାକାର) | ଟ. ୮୦ |
| ୧୨୧୯ | ଗୀତାପଞ୍ଚରତ୍ନ | ଟ. ୨୫ |
| ୧୬୭୨ | ଗୀତାପ୍ରବୋଧନୀ (ଓଡ଼ିଆ-ବହିସାଇଜ) | ଟ. ୩୫ |
| ୧୮୩୧ | ଶ୍ରୀମଦ୍ଭାଗବତ ମହାପୁରାଣ (ପ୍ରଥମ ଖଣ୍ଡ) | - |
| ୧୮୩୨ | ଶ୍ରୀମଦ୍ଭାଗବତ ମହାପୁରାଣ (ଦ୍ୱିତୀୟ ଖଣ୍ଡ) | - |

## ପରମ ଶ୍ରଦ୍ଧେୟ ଶ୍ରୀଜୟଦୟାଲ ଗୋୟନ୍ଦକାଙ୍କ ଦ୍ୱାରା ପ୍ରଣୀତ
## ଆତ୍ମକଲ୍ୟାଣକାରୀ ତଥା ଜୀବନୋପଯୋଗୀ ପ୍ରକାଶନ

| କୋଡ୍ ନଂ | ବହିର ନାମ | ମୂଲ୍ୟ | କୋଡ୍ ନଂ | ବହିର ନାମ | ମୂଲ୍ୟ |
|---|---|---|---|---|---|
| ୧୦୩୮ | ସନ୍ଥ ମହିମା | ଟ.୨ | ୧୧୬୩ | ବାଳକଙ୍କ କର୍ତ୍ତବ୍ୟ | ଟ.୪ |
| ୧୦୩୯ | ଭଗବାନଙ୍କର ଦୟା | ଟ.୨ | ୧୧୭୪ | ଆଦର୍ଶ ନାରୀ ସୁଶୀଳା | ଟ.୪ |
| ୧୦୪୦ | ସତ୍ସଙ୍ଗର କିଛି ସାରକଥା | ଟ.୨ | ୧୧୮୭ | ଆଦର୍ଶ ଭ୍ରାତୃ ପ୍ରେମ | ଟ. ୪ |
| ୧୦୭୮ | ଭଗବତ୍ ପ୍ରାପ୍ତିର ବିବିଧ ଉପାୟ | ଟ.୪ | ୧୨୦୩ | ନଳ-ଦମୟନ୍ତୀ | ଟ. ୪ |
| ୧୦୭୯ | ବାଲ୍ୟ-ଶିକ୍ଷା | ଟ.୪ | ୧୨୦୫ | ରାମାୟଣର କେତେକ ଆଦର୍ଶ ପାତ୍ର | ଟ. ୮ |
| ୧୦୮୯ | ଧର୍ମ କ'ଣ ? ଭଗବାନ କ'ଣ ? | ଟ.୨ | | | |
| ୧୦୯୦ | ପ୍ରେମର ବାସ୍ତବ ସ୍ୱରୂପ | ଟ.୨ | ୧୨୨୦ | ସାବିତ୍ରୀ ଓ ସତ୍ୟବାନ | ଟ. ୨ |
| ୧୦୯୧ | ଆମର କର୍ତ୍ତବ୍ୟ | ଟ.୨ | ୧୨୨୧ | ଆଦର୍ଶ ଦେବୀ ଚରିତ୍ର | ଟ. ୩ |
| ୧୨୭୪ | ପରମାର୍ଥ ସୂତ୍ର-ସଂଗ୍ରହ | ଟ. ୧୦ | ୧୨୫୩ | ପରଲୋକ ପୁନର୍ଜନ୍ମ ଏବଂ ବୈରାଗ୍ୟ | ଟ. ୩ |
| ୧୨୫୪ | ସାଧନ ନବନୀତ | ଟ. ୯ | | | |
| ୧୫୦୭ | ଉଦ୍ଧାର କିପରି ହେବ ? | ଟ. ୬ | | | |
| ୧୨୫୨ | ଭଗବାନଙ୍କ ରହିବାର ପାଞ୍ଚୋଟି ସ୍ଥାନ | ଟ.୩ | ୧୨୭୨ | ନିଷ୍କାମ ଶ୍ରଦ୍ଧା ଏବଂ ପ୍ରେମ | ଟ. ୧୦ |
| | | | ୧୫୦୬ | ଅମୂଲ୍ୟ ସମୟର ସଦୁପଯୋଗ | ଟ.୯ |

## ପରମଶ୍ରଦ୍ଧେୟ ଶ୍ରୀହନୁମାନ ପ୍ରସାଦ ପୋଦ୍ଦାରଙ୍କ
## ଦ୍ୱାରା ପ୍ରଣୀତ ଅମୂଲ୍ୟ ପ୍ରକାଶନ

| କୋଡ୍ ନଂ | ବହିର ନାମ | ମୂଲ୍ୟ |
|---|---|---|
| ୮୬୫ | ପ୍ରାର୍ଥନା | ଟ. ୪ |
| ୧୦୧୧ | ଆନନ୍ଦ ଲହରୀ | ଟ. ୨ |
| ୧୦୪୧ | ବ୍ରହ୍ମଚର୍ଯ୍ୟ ଓ ମନକୁ ବଶ କରିବାର କେତୋଟି ଉପାୟ | ଟ. ୨ |
| ୧୧୭୩ | ଭକ୍ତ ଚନ୍ଦ୍ରିକା | ଟ. ୬ |
| ୧୧୮୬ | ଶ୍ରୀଭଗବନ୍ନାମ | ଟ. ୩ |

# ପରମ ଶ୍ରଦ୍ଧେୟ ସ୍ୱାମୀ ରାମସୁଖଦାସଙ୍କ ଦ୍ୱାରା ପ୍ରଣୀତ
# ଆତ୍ମକଲ୍ୟାଣକାରୀ ତଥା ଜୀବନୋପଯୋଗୀ ପ୍ରକାଶନ

| କୋଡ୍‌ନଂ | ବହିର ନାମ | ମୂଲ୍ୟ | କୋଡ୍‌ନଂ | ବହିର ନାମ | ମୂଲ୍ୟ |
|---|---|---|---|---|---|
| ୪୩୦ | ଗୃହସ୍ଥାଶ୍ରମରେ କିପରି ରହିବା ? | ଟ. ୫.୦୦ | ୧୨୦୮ | ଆଦର୍ଶ କାହାଣୀ ଚୟନ | ଟ. ୮.୦୦ |
| ୭୫୭ | ଶରଣାଗତି | ଟ. ୪.୦୦ | ୧୨୦୮ | ପ୍ରଶ୍ନୋତ୍ତର ମଣିମାଳା | ଟ.୧୦.୦୦ |
| ୭୯୬ | ଦେଶର ବର୍ତ୍ତମାନ ଦଶା ତଥା ତାହାର ପରିଣାମ | ଟ. ୩.୦୦ | ୧୨୬୭ | ସହଜ ସାଧନା | ଟ. ୪.୦୦ |
| ୭୯୭ | ସନ୍ତାନର କର୍ତ୍ତବ୍ୟ ଏବଂ ସତ୍ୟଆଶ୍ରୟ | ଟ. ୨.୦୦ | ୧୨୬୮ | ବାସ୍ତବ ସୁଖ | ଟ. ୬.୦୦ |
| ୭୯୮ | ଗୁରୁତତ୍ତ୍ୱ | ଟ. ୨.୦୦ | ୧୨୬୯ | ଆବଶ୍ୟକ ଶିକ୍ଷା (ସନ୍ତାନର କର୍ତ୍ତବ୍ୟ ଓ ଆହାର ଶୁଦ୍ଧି ସହିତ) | ଟ.୬.୦୦ |
| ୮୧୭ | କର୍ମରହସ୍ୟ | ଟ. ୫.୦୦ | ୧୨୭୦ | ନିତ୍ୟଯୋଗର ଉପଲବ୍ଧି ସହିତ | ଟ.୬.୦୦ |
| ୮୫୨ | ମୂର୍ତ୍ତିପୂଜା ଏବଂ ନାମ ଜପ | ଟ. ୧.୫୦ | ୧୨୯୯ | ଭଗବାନ ଓ ଭଗବଦ୍ ଭକ୍ତି | ଟ. ୫.୦୦ |
| ୧୦୦୩ | ସତ୍‌ସଙ୍ଗ ମୁକ୍ତାହାର | ଟ. ୫.୦୦ | ୧୩୨୧ | ଈଶ୍ୱରମୟ ଏ ଜଗତ | ଟ. ୫.୦୦ |
| ୧୦୦୪ | ତାତ୍ତ୍ୱିକ ପ୍ରବଚନ | ଟ. ୬.୦୦ | ୧୪୬୪ | ଅମୃତ ବିନ୍ଦୁ | ଟ. ୮.୦୦ |
| ୧୦୦୫ | ମାତୃଶକ୍ତିର ଘୋର ଅପମାନ | ଟ. ୩.୦୦ | ୧୪୭୩ | ସାଧନ ସୁଧାସିନ୍ଧୁ | ଟ. ୧୨୦.୦୦ |
| ୧୧୩୦ | ଗୁରୁବିନା କ'ଣ ମୁକ୍ତି ନାହିଁ | ଟ. ୫.୦୦ | ୧୫୧୧ | ସର୍ବଜନ ଶ୍ରେୟ ପନ୍ଥା | ଟ. ୧୩.୦୦ |
| ୧୧୩୮ | ଆତ୍ମୀୟ ଭଗବାନ | ଟ. ୬.୦୦ | ୧୫୧୨ | ସାଧନାର ଦୁଇଟି ପ୍ରଧାନ ସୂତ୍ର | ଟ. ୪.୦୦ |
| ୧୧୩୯ | କଲ୍ୟାଣକାରୀ ପ୍ରବଚନ | ଟ. ୮.୦୦ | | | |

## ନିତ୍ୟପଠନୀୟ ସ୍ତୋତ୍ର ଆଦି

| | | | | | |
|---|---|---|---|---|---|
| ୮୫୬ | ଶ୍ରୀ ହନୁମାନ ଚାଳିଶା | ଟ. ୨.୦୦ | ୧୦୭୦ | ଆଦିତ୍ୟହୃଦୟସ୍ତୋତ୍ରମ୍ | ଟ. ୨.୦୦ |
| ୧୬୬୧ | ଶ୍ରୀ ହନୁମାନ ଚାଳିଶା(ଲଘୁ) | ଟ. ୧.୦୦ | ୧୧୫୪ | ଗୋବିନ୍ଦଦାମୋଦରସ୍ତୋତ୍ରମ୍ | ଟ. ୩.୦୦ |
| ୧୦୬୮ | ଗଜେନ୍ଦ୍ରମୋକ୍ଷସ୍ତୋତ୍ରମ୍ | ଟ. ୨.୦୦ | ୧୨୦୪ | ଶ୍ରୀରାମଚରିତମାନସ,ସୁନ୍ଦରକାଣ୍ଡ | ଟ. ୬.୦୦ |
| ୧୦୬୯ | ନାରାୟଣ କବଚମ୍ | ଟ. ୨.୦୦ | ୧୫୦୯ | ରାମରକ୍ଷାସ୍ତୋତ୍ରମ୍ | ଟ. ୨.୦୦ |

## ବିବିଧ

| | | | | | |
|---|---|---|---|---|---|
| ୮୨୬ | ଗର୍ଭପାତ ଉଚିତ ବା ଅନୁଚିତ ଆପଣ ଭାବନ୍ତୁ | ଟ. ୨.୦୦ | ୧୨୪୮ | ମୋହନ (ଚିତ୍ରକଥା) | ଟ. ୧୨.୦୦ |
| ୮୫୪ | ଭକ୍ତରାଜ ହନୁମାନ | ଟ. ୬.୦୦ | ୧୨୪୯ | କହ୍ନେଇ (ଚିତ୍ରକଥା) | ଟ. ୧୨.୦୦ |
| ୮୬୩ | ନବଦୁର୍ଗା (ଚିତ୍ରକଥା) | ଟ. ୧୨.୦୦ | ୧୪୯୪ | ଚିତ୍ରମୟ ଚୈତନ୍ୟଲୀଳା | ଟ. ୭.୦୦ |
| ୧୦୦୯ | ଜୟହନୁମାନ (ଚିତ୍ରକଥା) | ଟ. ୨୦.୦୦ | ୧୪୭୬ | ଦୁର୍ଗାସପ୍ତଶତୀ (ଅର୍ଥ ସହିତ) | ଟ. ୨୦.୦୦ |
| ୧୨୦୦ | ସତ୍ୟପ୍ରେମୀ ହରିଶ୍ଚନ୍ଦ୍ର | ଟ. ୫.୦୦ | ୧୨୫୧ | ଭବରୋଗର ଅବ୍ୟର୍ଥ ଔଷଧ | ଟ. ୯.୦୦ |
| ୧୨୦୧ | ମହାତ୍ମା ବିଦୁର | ଟ. ୩.୦୦ | ୧୩୪୨ | ବଡ ମଣିଷଙ୍କ ଜୀବନରୁ ଶିକ୍ଷା | ଟ. ୮.୦୦ |
| ୧୨୦୨ | ପ୍ରେମୀ ଭକ୍ତ ଉଦ୍ଧବ | ଟ. ୩.୦୦ | ୧୬୧୪ | ଶିକ୍ଷାପ୍ରଦ ଏଗାରଟି କାହାଣୀମାଳା | ଟ. ୭.୦୦ |
| ୧୨୫୦ | ନମଃ ଶିବାୟ (ଚିତ୍ରକଥା) | ଟ. ୧୫.୦୦ | ୧୬୩୫ | ପ୍ରେରଣାପ୍ରଦ କାହାଣୀମାଳା | ଟ. ୬.୦୦ |
| ୧୦୧୦ | ଅଷ୍ଟବିନାୟକ (ଚିତ୍ରକଥା) | ଟ. ୧୨.୦୦ | | | |

